ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ

# ଯାଯାବର ଚଲାପଥେ

ପଠାଣି ପଟ୍ଟନାୟକ



ପ୍ରାଜ୍ଞ ପଠାଣି ପଟ୍ଟନାୟକଙ୍କ ଆତ୍ମଜୀବନୀ

# ଜୀବନର ଚଲାପଥେ

ପଠାଣି ପଟ୍ଟନାୟକ



# ଜୀବନର ଚଲାପଥେ

(ଆତ୍ମଜୀବନୀ)

ରଚନା- ପଠାଣି ପଟ୍ଟନାୟକ

ପ୍ରକାଶକ : ବିଜୟିନୀ ପବ୍ଲିକେଶନ
ଶଙ୍କରପୁର, ଅରୁଣୋଦୟ ମାର୍କେଟ
କଟକ, ଓଡ଼ିଶା - ୭୫୩ ୦୧୨

ପ୍ରଥମ ପ୍ରକାଶ : ୨୦୦୮ (କାର୍ତ୍ତିକ ପୂର୍ଣ୍ଣିମା)
ଦ୍ୱିତୀୟ ସଂସ୍କରଣ : ଡିସେମ୍ବର,୨୦୧୦ (ବଡ଼ଦିନ)

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ଭାଗବତ ପ୍ରେସ୍, କଟକ

ମୂଲ୍ୟ : ₹ ୧୭୫

---

# Jibanara Chalapathe

**(An Autobiography)**

Author : **Pathani Pattnaik**

Publisher : **Bijayinee Publications**
Shankarpur, Arunoday Market
Cuttack, Odisha - 753 012

First Edition : 2008
Second Edition : 25 December, 2010

Cover Design : Bijoy Pradhan

Printed by : Bhagabat Press, Cuttack.

Price : **₹ 175**
(One Hundred Seventy Five only)

**ISBN : 978-81-89881-24-5**

## ଉତ୍ସର୍ଗ...

ଦେହ ଓ ଦେହାତୀତର
ଆଜୀବନ ସାଥୀ
ସ୍ୱର୍ଗତା ପ୍ରଭାତ କୁମାରୀଙ୍କ
ସ୍ମୃତି ଉଦ୍ଦେଶ୍ୟରେ ଅର୍ପିତ ।

-ପଠାଣି

# ''ଜୀବନର ଚଲାପଥେ'' ର ଜନ୍ମ-ରହସ୍ୟ

ଜଣେ ଲେଖକର ପ୍ରଧାନ ପ୍ରେରଣାର ଉତ୍ସ ହେଉଛି ତାର ପାଠକୀୟ ଶ୍ରଦ୍ଧା ଓ ଆଶୀର୍ବାଦ । ''ଜୀବନର ଚଲାପଥେ'' ସେହି ଆଗ୍ରହର ଫଳଶ୍ରୁତି ।

ତରୁଣବୟସରୁ ପରିଣତ ବୟସପର୍ଯ୍ୟନ୍ତ ଚଲାପଥରେ ଅଗ୍ରସର ହେଲାବେଳେ ଯେଉଁ ସାଂସ୍କୃତିକ ଅନୁଷ୍ଠାନ ଓ ସାରସ୍ୱତ-ସାଧକମାନଙ୍କ ସଂପର୍କରେ ଆସିଥିଲି, କଥା ପ୍ରସଙ୍ଗରେ ବନ୍ଧୁମେଳରେ ବେଳେବେଳେ ଆଲୋଚନା କରୁଥିଲି । ଅନେକ ତରୁଣ ଓ ପ୍ରବୀଣ ସାହିତ୍ୟସେବୀ ସେହି ଅନୁଭୂତିସକଳ ଲିପିବଦ୍ଧ କରିବାକୁ ଅନୁରୋଧ କରିଥାନ୍ତି । ସେମାନେ କହନ୍ତି, ଆପଣ ଆତ୍ମଜୀବନୀ ଲେଖୁନାହାନ୍ତି କାହିଁକି ? ସେମାନଙ୍କ ଅନୁରୋଧ ଓ ଆଗ୍ରହକୁ ହସିହସି ଏଡ଼ାଇ ଚାଲିଥାଏ । ମୋ ପରି ଜଣେ ସାଧାରଣ ମଣିଷର ଆତ୍ମକାହାଣୀ କ'ଣ ?

ପରମବନ୍ଧୁ ରଣଧୀର ଦାସ ଏକଦା ମୋତେ ବାଧ କରି ମୋର ବାଲ୍ୟଜୀବନର କିଛି ଅନୁଭୂତି ତାଙ୍କ ସଂପାଦିତ ''ଜୀବନ ରଂଗ'' ପତ୍ରିକାରେ ପ୍ରକାଶ କରିଥିଲେ । କାହିଁକି କେଜାଣି ଆଉ ଅଧିକ କିଛି ଲେଖିବା ପାଇଁ ମୋର ଆଗ୍ରହ ହେଲା ନାହିଁ । ସେହିଠାରେ ତାର ଯବନିକା ପଡ଼ିଲା । ଅବଶ୍ୟ ବାଲ୍ୟଜୀବନର ସେହି ଲେଖାଟି ପାଠ କରି କେତେଜଣ ସାହିତ୍ୟସେବୀ ବନ୍ଧୁ ମୋତେ ଅଭିନନ୍ଦନ ଜଣାଇଥିଲେ ।

''ଜନସୁଧା'' ମାସିକ ସାହିତ୍ୟପତ୍ରିକା ପ୍ରକାଶ ପାଇଲାଦିନଠାରୁ ତାର ସଂପାଦକ ଶ୍ରଦ୍ଧେୟ ଦିଲୀପ କୁମାର ବେଉରା ଏବଂ ଏହି ପତ୍ରିକା ସହିତ ଅନ୍ତରଙ୍ଗ ଭାବରେ ସଂପୃକ୍ତ ସୁଲେଖକ ଅଧାପକ ପ୍ରକାଶ କୁମାର ପରିଡ଼ାଙ୍କର ସାମୟିକ ସଖ୍ୟ ଲାଭ କରିବାର ସୁଯୋଗ ମିଳିଲା । ଏକଦା ସେ ଦୁହେଁ ଆସି ଆମର ବାସଭବନରେ ନାନା ଆଳାପ-ଆଲୋଚନାରେ ଆନ୍ତରିକ ଅନୁରୋଧ କଲେ ଆତ୍ମ-ଚରିତ ଲେଖିବା ପାଇଁ ।

ଏହି ସସ୍ନେହ ଆଗ୍ରହ ଏଡ଼ାଇଯିବା ସମ୍ଭବ ନଥିଲା । ପ୍ରାୟ ଦୁଇବର୍ଷକାଳ ''ଜନସୁଧା'' ଧାରାବାହିକ ଭାବରେ ''ଜୀବନର ଚଲାପଥେ'' ସ୍ଥାନିତ କରିବାର ସୁଯୋଗ ଦେଲେ । ସଂପାଦକ ଦିଲୀପ ଓ ମୋର ହିତାକାଂକ୍ଷୀ ଅଧାପକ ବିଜୟାନନ୍ଦ ସିଂହ ବାରମ୍ବାର ଜିଗର କରୁଥିଲେ ଲେଖା ଜାରି ରଖିବା ପାଇଁ । 'ଜନସୁଧା'ରେ ପ୍ରକାଶିତ ଲେଖା ପାଠକରି ଅନେକ ସାହିତ୍ୟସେବୀ ବନ୍ଧୁ ଉତ୍ସାହ ପ୍ରଦାନ କରୁଥିଲେ । ଶେଷରେ ବିଜୟିନୀ ପବ୍ଲିକେଶନ୍ସ, କଟକ-୧୨ ଅତ୍ୟନ୍ତ ଆଗ୍ରହରେ ଏହି ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ମୋର ଆନ୍ତରିକ ଧନ୍ୟବାଦାର୍ହ । ଏହି ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞ ।

ଏହି ଦୀର୍ଘଜୀବନର ଚଲାପଥରେ ଯେଉଁ ସ୍ମରଣୀୟ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କର ଆସିଥିଲି, ସେହି ଅନୁଭୂତି ଏହି ଗ୍ରନ୍ଥରେ ଲିପିବଦ୍ଧ ହୋଇଅଛି । ତେଣୁ ଏହା ସମକାଳୀନ ସାଂସ୍କୃତିକ ପରିବେଶର କିଞ୍ଚିତ ଝଲକ ମାତ୍ର ।

ଏହି ଜୀବନ-କାହାଣୀର ପ୍ରତ୍ୟେକଟି ଅଧ୍ୟାୟ ପ୍ରେସକୁ ଯିବାପୂର୍ବରୁ ତାର ପ୍ରଥମ ପାଠକ ଥିଲେ ମୋର ଧର୍ମପତ୍ନୀ ଶ୍ରୀମତୀ ପ୍ରଭାତ କୁମାରୀ ପଟ୍ଟନାୟକ । ଲେଖିବାରେ ବିଳମ୍ବ କଲେ ସେ ବାରମ୍ବାର ତାଗିଦ କରୁଥିଲେ ଲେଖା ଆରମ୍ଭ କରିବା ପାଇଁ । ଏହି ଗ୍ରନ୍ଥର ଶେଷ ଅଧ୍ୟାୟ ଲେଖିଲାବେଳକୁ ସେ ମୋତେ ନିଃସଙ୍ଗ କରି ମହାପଥର ଯାତ୍ରୀ ହୋଇଗଲେ । ଏହି ଅବସରରେ ତାଙ୍କର ପ୍ରେରଣା ଓ ଉତ୍ସାହ ପାଇଁ ଆଜୀବନ ଋଣୀ ହୋଇ ରହିଗଲି ।

ଯଦି ଏହି ଜୀବନ-ସ୍ମୃତି ପାଠକୀୟ ଆଦର ଲାଭ କରେ, ତେବେ ମୋର ଲେଖନୀ ଚାଳନା ସାର୍ଥକ ହୋଇଛି ବୋଲି ମନେକରିବି ।

ପ୍ରଭୁ ଶ୍ରୀଜଗନ୍ନାଥ ସମସ୍ତଙ୍କର ମଂଗଳ ବିଧାନ କରନ୍ତୁ ।

ବିନୀତ ଲେଖକ

**ପଠାଣି ପଟ୍ଟନାୟକ**

# ପ୍ରକାଶକଙ୍କ ପକ୍ଷରୁ

'ବିଜୟିନୀ ପବ୍ଲିକେଶନ୍ସ' ଜନ୍ମଗ୍ରହଣ କରିଥିଲା ୧୯୯୮ ମସିହାରେ ।

ତାହାପରଠାରୁ ସାହିତ୍ୟର ବିଭିନ୍ନ ବର୍ଗରେ ସବୁ ମିଶାଇ ୮୬ଟି ଶୀର୍ଷକ ଆମ ପ୍ରକାଶନୀ ତାଲିକା ମଣ୍ଡନ କରିସାରିଛି । ଏହା ହେଉଛି ୮୭ତମ ଶୀର୍ଷକ ।

ବିଜୟିନୀ ପ୍ରକାଶନୀର ଗୌରବ ହେଉଛି ଏବର ଖ୍ୟାତନାମା ଲେଖକଙ୍କ ପୁସ୍ତକ ପ୍ରକାଶ କରିବାର ସୁଯୋଗ ପାଇବା । ଗର୍ବର ସହିତ ଉଲ୍ଲେଖ କରାଯାଇପାରେ- ପ୍ରାବନ୍ଧିକ କବି ଚିନ୍ତାମଣି ବେହେରା, ପ୍ରଫେସର ଶରତ ଚନ୍ଦ୍ର ପ୍ରଧାନ, ଡକ୍ଟର ଧନେଶ୍ୱର ମହାପାତ୍ର, ଡକ୍ଟର ବିଭୂତି ପଟ୍ଟନାୟକ, ଡକ୍ଟର ହେମନ୍ତ କୁମାର ଦାସ, ଡକ୍ଟର ଉମେଶ ପତ୍ରୀ, ଶ୍ରୀ ସନତ ଦାସ ପଟ୍ଟନାୟକ, ଡକ୍ଟର ରତ୍ନାକର ଚଇନି, ଡକ୍ଟର ଶାନ୍ତି ବଳ(ମହାପାତ୍ର), କବି ବ୍ରହ୍ମାନନ୍ଦ ଦାସ, ଡକ୍ଟର ରବି ନାୟକ, ଡକ୍ଟର ପ୍ରକାଶ କୁମାର ପରିଡ଼ା, କବି ହୃଦାନନ୍ଦ ପାଣିଗ୍ରାହୀ, କଥାକାର ତରୁଣ କୁମାର ସାହୁ ପ୍ରମୁଖଙ୍କ ନାମ ଆମ ତାଲିକାରେ ଅଛି । ଅଛି, ପଠାଣି ପଟ୍ଟନାୟକଙ୍କ ''ସାହିତ୍ୟ : ତତ୍ତ୍ୱ ତଥ୍ୟ ତର୍ଜ୍ଜମା'', ଶରତ ଚନ୍ଦ୍ର ପ୍ରଧାନଙ୍କ ''ବୃକୋଦର'', ରତ୍ନାକର ଚଇନିଙ୍କ ''କଥା ନିର୍ବାଚିତ'', ବିଭୂତି ପଟ୍ଟନାୟକଙ୍କ ''ମୁହାଁମୁହିଁ କଥାବାର୍ତ୍ତା'', ଚିନ୍ତାମଣି ବେହେରାଙ୍କ ''ଉଦୟାସ୍ତର କାବ୍ୟ'', ଉମେଶ ପତ୍ରୀଙ୍କ ''ଆର୍ଯ୍ୟଙ୍କ ଆଦିନିବାସ'', ଅଧ୍ୟାପକ ବିଶ୍ୱରଂଜନଙ୍କ ''ସମୟର ସ୍ୱର'' ଏବଂ ଆର୍ଯ୍ୟକୁମାର ହର୍ଷବର୍ଦ୍ଧନଙ୍କ ସଂପାଦିତ ''ଶ୍ରୀରାଧା ବିତର୍କ'' ଭଳି ଚର୍ଚ୍ଚିତ ଗ୍ରନ୍ଥମାନ ।

''ଜନସୁଧା'' ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶ କରିବା ପାଇଁ ଆମେ ଚାହୁଁଥିଲୁ ଖଣ୍ଡିଏ ଆତ୍ମଜୀବନୀ । ତାହା ପୁଣି ହୋଇଥିବ ଏମିତି ଜଣେ ବ୍ୟକ୍ତିଙ୍କର ଯିଏ ହୋଇଥିବେ ପ୍ରାଜ୍ଞ, ପ୍ରତିଭାଦୀପ୍ତ ଓ ପାଠକ ପ୍ରିୟ ଲେଖକ । ସିଏ ନିଶ୍ଚୟ ବର୍ଷୀୟାନ ହୋଇଥିବେ ଓ କନିଷ୍ଠ ପିଢ଼ିକୁ ଆପଣାର କରିପାରିଥିବେ । ସେ ବିବଦମାନ ହୋଇନଥିବେ ।

ପତ୍ରିକାର ଉପଦେଷ୍ଟା ମଣ୍ଡଳୀରେ ଥିବା; ପତ୍ରିକାର ଶୁଭକାମୀ ଭାବେ ନିଜର ଭୂମିକା ନିର୍ବାହ କରୁଥିବା ଓ ପତ୍ରିକା ସଂପାଦନା ମଣ୍ଡଳୀର ପୂଜ୍ୟ ଓ ପ୍ରିୟ ଏମିତି କେତେଜଣଙ୍କ ନାମ ମନକୁ ଆସିଲା । ପ୍ରସ୍ତାବ କାହାଙ୍କୁ ଦିଆଯିବ, ପ୍ରସ୍ତାବଟି କୌଣସି କାରଣରୁ କାଟ ଖାଇଲେ ପରବର୍ତ୍ତୀ ବ୍ୟକ୍ତି କିଏ ହେବେ, ତାହା ଆମ ମୁଣ୍ଡବିନ୍ଧାର କାରଣ ପାଲଟିଲା ।
ଯୋଉମାନଙ୍କୁ ବିବେଚନାକୁ ନେଇଥିଲୁ ସମସ୍ତେ ବର୍ଷୀୟାନ ଏଣୁ ଊଣାଅଧିକ ଅସୁସ୍ଥତା ପୀଡ଼ିତ । ପ୍ରସ୍ତାବଟି ଖଣ୍ଡିଏ ପ୍ରବନ୍ଧ କି ସମୀକ୍ଷା କି ଗଳ୍ପଟିଏ ନୁହଁ ଯେ ଆମ ଅନୁରୋଧ ସମସ୍ତଙ୍କ ଦ୍ୱାରା

ଗ୍ରହଣୀୟ ହେବ । ଆମେ ଧାରାବାହିକ ଛାପୁଥିବୁ ଓ କୌଣସି ସଂଖ୍ୟାରେ ଧାରାବାହିକତା ବ୍ୟାହତ ହେଉନଥିବ; ଏଥିପାଇଁ ଶ୍ରମ ଓ ସମୟ କିଏ ଦେଇପାରିବେ ?

ପ୍ରଥମ ପ୍ରସ୍ତାବଟି କାଟ ଖାଇବ ନାହିଁ, ଏପରି ମହତ ହୃଦୟଙ୍କୁ ମନେମନେ ବିଚାରକୁ ନେଲୁ । ଦିନେ ସଂଧ୍ୟାରେ ମା' କଟକଚଣ୍ଡୀଙ୍କ ପାଖରେ ପୂଜା କରାଇ ନୂଆଖାତା ଓ କଲମଟିଏ ଧରି ପହଞ୍ଚିଲୁ ପଠାଣି ସାର୍‌ଙ୍କ ପାଖରେ । ସବୁଦିନ ପରି ସଂଖୋଳିଲେ ଆଗ୍ରହରେ । ନିଜଆଡୁ କେତେକଥା ଗପିଗଲେ । ଠାଏ ଅଟକି କହିଲେ- ''ଆଉ ମୁଁ ତ ପଚାରିଲି ନାହିଁ, ବାବୁମାନଙ୍କ ଆସିବାର ପ୍ରଧାନ ଉଦ୍ଦେଶ୍ୟ !''

ସାଙ୍ଗରେ ଥିଲେ ପ୍ରକାଶ କୁମାର ପରିଡ଼ା । ସ୍ୱଭାବ ସୁଲଭ ଢଂଗୀରେ ସେ କହିଲେ- ''ସାର୍ ! ପ୍ରଥମେ ଅସ୍ତୁ କରିଦିଅନ୍ତୁ, ତା'ପରେ ଅଭିପ୍ରାୟ ବ୍ୟକ୍ତ କରିବୁ ।''

ଆଦରରେ କହିଲେ- ''ହଉ, କୁହ । ମୋ ସାମର୍ଥ୍ୟ ଭିତରେ ଥିଲେ, ତାହା କରିବାକୁ ମୁଁ ଅବଶ୍ୟ ଚେଷ୍ଟା କରିବି ।''

ପ୍ରକାଶ ଭାଇ ତଥାପି କହୁଥାନ୍ତି- ନାଇଁ ଆଜ୍ଞା 'ଅସ୍ତୁ'ଟିଏ ମଞ୍ଜୁର କରନ୍ତୁ, ତା'ପରେ ଅଭିପ୍ରାୟ ।

ସାର୍ କହିଲେ- ''ହଉ ହେଲା ।''

ପ୍ରକାଶ ଭାଇ ମୋତେ ନିର୍ଦ୍ଦେଶ ଦେଲେ । ମୁଁ ଖାତାଟି ଉପରେ କଲମଟି ରଖି ଦୁଇ ହାତରେ ଅର୍ପଣ କରିବା ଢଂଗରେ ଧରି ସ'ର୍‌ଙ୍କ ପାଖକୁ ବଢ଼ାଇ ରଖିଲି । ପ୍ରକାଶ ଭାଇ କହୁଥାନ୍ତି- ''ଆପଣଙ୍କ ଆଶୀର୍ବାଦ-ଉପଦେଶ ପୁଷ୍ଟ ''ଜନସୁଧା'' ମାସିକ ସାହିତ୍ୟ ପତ୍ରର ପୃଷ୍ଠାରେ ଧାରାବାହିକ ଭାବେ ଆପଣଙ୍କ ଆତ୍ମଜୀବନ ଚରିତ ପ୍ରକାଶ ପାଇବ ଆସନ୍ତା ମାସରୁ । ଯେଣୁ ଆତ୍ମଜୀବନ ଚରିତ ତେଣୁ ତାହା କେବଳ ଆପଣ ହିଁ ଲେଖିବେ । ବହୁତ ବହି ଲେଖିଛନ୍ତି, ଜୀବନୀ ସାହିତ୍ୟ ସଂପର୍କରେ ପ୍ରାମାଣିକ ଗ୍ରନ୍ଥ ମଧ ଲେଖିଛନ୍ତି, ମାତ୍ର ଏପରି ଖଣ୍ଡେ ବହି ଆମେ ଆପଣଙ୍କଠାରୁ ଆଶା କରୁଛୁ ଯାହା ଆପଣଙ୍କୁ କେନ୍ଦ୍ରକରି ଆପଣଙ୍କ ବିବେଚନାରେ ଓଡ଼ିଶାର ଶିକ୍ଷା-ସାହିତ୍ୟ-ସମାଜ-ସଂସ୍କୃତିର ଏକ ପରିଚ୍ଛନ୍ନ ଆଲେଖ୍ୟ ହୋଇଥିବ । ପ୍ରତିମାସରେ ଆମେ ପହଞ୍ଚି ପତ୍ରିକା ପୃଷ୍ଠାର ଛାପା ଅଂଶ ଦେଉଥିବୁ ଓ ନୂଆ ଲେଖା ନେଇଯାଉଥିବୁ । ଆପଣ 'ଅସ୍ତୁ' କରିସାରିଛନ୍ତି, ଆମେ ଆଶ୍ୱସ୍ତ ହୋଇସାରିଛୁ ।''

ଏହି ଦୀର୍ଘ ସଂଳାପ ଶୁଣି ସାର୍ ହସିଲେ, ପୁଣି ଗମ୍ଭୀର ହୋଇଗଲେ, କିନ୍ତୁ ଖାତାଟି ଗ୍ରହଣ କଲେ । କହିଲେ, ତୁମ ଆଗ୍ରହର ଦାବି ପାଖରେ ମୋର ଅସାମର୍ଥ୍ୟ କି ଅପ୍ରସ୍ତୁତତା ବାଢ଼ିବି ନାହିଁ । ଜଗନ୍ନାଥ ସୁଦୟା କରନ୍ତୁ- ତାହାହିଁ ହେଉ ।

ଆଦୌ ବାଧାପ୍ରାପ୍ତ ନ ହୋଇ ''ଜୀବନର ଚଲାପଥେ'' ଶିରୋନାମରେ ପଠାଣି ପଟ୍ଟନାୟକଙ୍କ ଆତ୍ମଜୀବନୀର ଅଂଶବିଶେଷ ପ୍ରକାଶ ପାଇଚାଲିଲା । ତାହାର ପ୍ରଥମ ଉପୋଦ୍‌ଘାତୀରେ ଆମେ ଯାହା ଲେଖିଥିଲୁ ତାହା ପ୍ରତି ପରିଚ୍ଛେଦରେ ପୁନର୍ମୁଦ୍ରିତ ହେଉଥିଲା ଓ ସଂକ୍ଷେପରେ ପୂର୍ବ ପରିଚ୍ଛେଦ ସୂଚିତ ହେଉଥିଲା । ଲେଖାଟି ଏହିପରି-

- ଓଡ଼ିଆ ଶିକ୍ଷା, ସାହିତ୍ୟ, ଭାଷା ଓ ଭାଷଣ କ୍ଷେତ୍ରରେ ପ୍ରଥିତଯଶା ଓ ପ୍ରାଜ୍ଞ ବ୍ୟକ୍ତିତ୍ୱ ଅଧ୍ୟାପକ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ ।
- ଶିକ୍ଷକତା ନୁହେଁ ଶିକ୍ଷଣ, ସାହିତ୍ୟ ରଚନା ନୁହେଁ ସାହିତ୍ୟିକର ଜୀବନଯାପନ, ଭାଷା ପ୍ରୀତି ନୁହେଁ ଭାଷା ସୁରକ୍ଷା ପ୍ରତି ସଂଗ୍ରାମଶୀଳ ଏବଂ ଭାଷଣବାଜି ନୁହେଁ ସମ୍ଭାଷଣ ଓ ଅଭିଭାଷଣରେ ଦକ୍ଷ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ ।
- ସ୍ପଷ୍ଟବାକ୍ ମାତ୍ର ସୁଭାଷୀ, ନିରହଂକାର ମାତ୍ର ପ୍ରଚଣ୍ଡ ସ୍ୱାଭିମାନୀ, ସରଳ ମାତ୍ର ସଂଭ୍ରାନ୍ତ, ଏକାନ୍ତତା ପ୍ରିୟ ମାତ୍ର ମେଳାପୀ; ବହୁପାଠୀ, ଅଧ୍ୟବସାୟୀ, ଗୁଣଗ୍ରାହୀ, ଛାତ୍ରବତ୍ସଳ, ପ୍ରତିଭା ଚିହ୍ନରା ଓ ନମ୍ର ମଣିଷ ଭାବେ ପଠାଣି ପଟ୍ଟନାୟକଙ୍କ ପରିଚିତି ପ୍ରତିଷ୍ଠିତ ।
- ତାଙ୍କର ଅଛି ଆଠଟି ଦଶନ୍ଧିର ସୁଦୀର୍ଘ ଜୀବନାନୁଭୂତି । ଆଶୈଶବ ଅଦ୍ୟାପି ପ୍ରାକ୍‌ସ୍ୱାଧୀନ-ସ୍ୱାଧୀନ-ସ୍ୱାଧୀନତୋତ୍ତର ଭାରତ (ଓଡ଼ିଶା) ବର୍ଷର ରାଜନୈତିକ, ସାମାଜିକ, ସାଂସ୍କୃତିକ ପରିସ୍ଥିତି ସହ ତାଙ୍କର ଅଛି ପ୍ରତ୍ୟକ୍ଷ ସଂଯୋଗ । ସେଥିପ୍ରତି ପୁଣି ଅଛି ସ୍ୱକୀୟ ଦୃଷ୍ଟିକୋଣ ଓ ଅନୁଶୀଳନ ।
- ଓଡ଼ିଆ ସାହିତ୍ୟର ସର୍ଜନାଠାରୁ ସମୀକ୍ଷଣ, ସଂପାଦନା, ସଂକଳନ ସବୁକ୍ଷେତ୍ରରେ ତାଙ୍କର ଗତି ଓ ସ୍ଥିତି ଷାଠିଏ ବର୍ଷ ବ୍ୟାପୀ ଅବିରତ । ସେ ପୁଣି ଓଡ଼ିଆ ଜୀବନୀ ସାହିତ୍ୟ ସଂପର୍କରେ ପ୍ରଥମ ଆଲୋଚକ ।
- ରାଜ୍ୟପାଳ, ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ମୁଖ୍ୟ ବିଚାରପତି, ମୁଖ୍ୟ ପ୍ରଶାସକଙ୍କଠାରୁ ରଇତ ଓ ପାଠଚୋର ଚାଟଙ୍କ ପର୍ଯ୍ୟନ୍ତ ସମାଜର ବହୁସ୍ତର ମଣିଷଙ୍କ ନିକଟ ସଂସ୍ପର୍ଶରେ ଆସିଛନ୍ତି ସେ ।

ପ୍ରଥମ ପରିଚ୍ଛେଦ ପ୍ରକାଶ ଠାରୁ ପାଠକ ମହଲରୁ ସପ୍ରଶଂସ ପତ୍ରମାନ ଆମର ହସ୍ତଗତ୍ ହେଲା । ଫୋନ୍ ଯୋଗେ କିଛି ସାଧୁବାଦ ମିଳିଲା । ଧନ୍ୟବାଦ ମଧ୍ୟ ମିଳିଲା ଦୂରଦୂରାନ୍ତ ଓ ଆଖପାଖର ବୟୋଜ୍ୟେଷ୍ଠ ମାନଙ୍କଠାରୁ । ସଭାସମିତି ଅବସରରେ ଭେଟ ପଡ଼ିଲେ କେହି କେହି ମଧ୍ୟ କହିଲେ- ଖାସା କାମଟିଏ କଲେ ।

କେବଳ "ଜୀବନର ଚଲାପଥେ" ପଢ଼ିବା ପାଇଁ ପତ୍ରିକାଟିର ପ୍ରତିଟି ସଂଖ୍ୟା ଖୋଜୁଥିଲେ ଡକ୍ଟର ବିଭୂତି ପଟ୍ଟନାୟକ । ମହାପାତ୍ର ନୀଳମଣି ସାହୁ ଦେଖାହେବା ମାତ୍ରେ ପଚାରୁଥିଲେ, ଏଥର ପଠାଣି ବାବୁଙ୍କ ଆତ୍ମଜୀବନୀ ଅଛି ତ ?

ମଝିରେ ଥରେ ସାର୍ ଗୁରୁତର ଅସୁସ୍ଥ ହୋଇଗଲେ । ଆମେ ଆଶଙ୍କିତ ହୋଇଗଲୁ । ମା' କଟକଚଣ୍ଡୀ ଆମ ଡ଼ାକ ଶୁଣିଲେ । ମାତ୍ର କାଳ ଖାଲି ହାତରେ ଫେରିବ ନାହିଁ ବୋଲି ମାଉସୀଙ୍କୁ (ସାର୍‌ଙ୍କ ପତ୍ନୀ) ବଦଳରେ ନେଇଗଲା କି ? ଶେଷ ପରିଚ୍ଛେଦ ହିଁ ଲେଖା ଚାଲିଥିଲା, ଶେଷ ହେବା ମାତ୍ରେ ଗ୍ରନ୍ଥ ରୂପ ପାଉଛି ବୋଲି ବିଜ୍ଞାପନ ମଧ୍ୟ ଦିଆସରିଥିଲା, ସେତିକିବେଳେ ଅକସ୍ମାତ ଅଳ୍ପଭୋଗି ବହୁତ ଭୋଗାଇ ମାଉସୀ ଚାଲିଗଲେ ।

ନେପଥରେ ରହି ସାରଙ୍କୁ ଧାରାବାହିକ ଭାବେ ଲେଖି ଚାଲିବାପାଇଁ ତାଗିଦ କରୁଥିବା ଓ ଲେଖାଟିର ପ୍ରଥମ ପାଠିକା ଥିବା ମାତୃକଳ୍ପା ପ୍ରଭାତ କୁମାରୀ ପଟ୍ଟନାୟକ ଗ୍ରନ୍ଥ ରୂପରେ ଏହାକୁ ଦେଖି ନ ପାରିବା ଆମ ପାଇଁ ସବୁଠୁ ଅବସୋସର କଥା ହୋଇ ରହିଗଲା ।

''ଜନସୁଧା'' ପତ୍ରିକା ପୃଷ୍ଠାରେ ଏକଦା ସବୁଠୁ ଆକର୍ଷଣୀୟ ବିଭାଗଟି ଥିଲା ''ସୃଜନ ଆଳାପ'' । ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକଙ୍କ ଏକ ଦୀର୍ଘ ସାକ୍ଷାତ୍କାର ୨୦୦୩ ମସିହାର ଅଗଷ୍ଟ-ସେପ୍ଟେମ୍ବର ମିଳିତ ସଂଖ୍ୟାରେ ପ୍ରକାଶ ପାଇଥିଲା । ତହିଁରେ ଗୋଟିଏ ପ୍ରଶ୍ନ ଓ ତାହାର ଉତ୍ତର ଏହିପରି ଥିଲା-

ପ୍ରଶ୍ନ- ବଙ୍ଗଳାର ଜଣେ ରସାୟନ ବିଜ୍ଞାନ ଅଧ୍ୟାପକ ଡକ୍ଟର ପ୍ରତୁଲ ଚନ୍ଦ୍ର ରକ୍ଷିତ ଯେ'କି ୟୁ.ଜି.ସି. ମେମ୍ବର ହୋଇଥିଲେ; ତାଙ୍କର ଆତ୍ମଜୀବନୀ ''ପେରୀୟେ ଏଲାମ୍'' ର ଓଡ଼ିଆ ଅନୁବାଦ ''ପାରହୋଇଆସିଲି'' ପଢୁଥିଲି । ସୁଖପାଠ୍ୟ, ତଥ୍ୟଯୁକ୍ତ ଓ ପ୍ରେରଣାପ୍ରଦ । ଆପଣଙ୍କ ଜୀବନ ତାଙ୍କଠାରୁ ଅଧିକ ଘଟଣା ବହୁଳ । ଆପଣଙ୍କ ଜୀବନରେ ଅଛି ପ୍ରାକ୍ ସ୍ୱାଧୀନତା କାଳୀନ ୨୦ ବର୍ଷ ଓ ସ୍ୱାଧୀନତୋତ୍ତର କାଳର ୬୦ ବର୍ଷ । ଓଡ଼ିଆ ଅଧ୍ୟାପକଙ୍କ ଆତ୍ମଜୀବନୀ ପ୍ରାୟ ନାହିଁ । ଆପଣ ମଧ୍ୟ ''ଜୀବନୀ ସାହିତ୍ୟ ଏକ ଅଧ୍ୟୟନ'' ଗ୍ରନ୍ଥର ସ୍ରଷ୍ଟା । ଆପଣ ଆତ୍ମଜୀବନୀ ରଚନା କରିଛନ୍ତି ?

ଉତ୍ତର- ଜାଣେ ନାହିଁ ସେପରି ଲେଖାରେ ହାତ ଦେବି କି ନାହିଁ । ଆପଣଙ୍କର ଆଗ୍ରହ ଓ ଶୁଭଚିନ୍ତନ ପାଇଁ କୃତଜ୍ଞତା । (ପୃଷ୍ଠା-୧୨)

ଏହି ପ୍ରଶ୍ନୋତ୍ତର ସମୟରେ, ଏପରିକି ଏହାର ଦୁଇ ବର୍ଷ ପର ପର୍ଯ୍ୟନ୍ତ ପଠାଣି ସାର୍‌ଙ୍କ ଆତ୍ମଜୀବନ ଚରିତ ଯେ ଲେଖାଯିବ, ତାହା ପୁଣି ଆମ ପତ୍ରିକାରେ ଧାରାବାହିକ ହୋଇ ପ୍ରକାଶ ପାଇବ ଏବଂ ଶେଷରେ ଆମରି ପ୍ରକାଶନୀ ଦ୍ୱାରା ଗ୍ରନ୍ଥରୂପ ଘେନିବ ଏପରି ସମ୍ଭାବନା ସୁଦ୍ଧା ନଥିଲା ।

''ଜନସୁଧା'' ୨୦୦୫ ଏପ୍ରିଲ-ଜୁନ ସଂଖ୍ୟାରେ ''ଜୀବନର ଚଲାପଥେ'' ଶିରୋନାମରେ ଏବଂ 'ଛୋଟ ମୋର ଗାଁଟି' ପରିଚ୍ଛେଦ ଶୀର୍ଷକରେ ସାର୍‌ଙ୍କ ଆତ୍ମଜୀବନ ଚରିତ ପ୍ରକାଶ ପାଇଲା । ଶେଷ ପରିଚ୍ଛେଦ ଶିରୋନାମ ଥିଲା 'ପାରିବାରିକ ଜୀବନର କେତୋଟି ଝଲକ' ଯାହା ୨୦୦୮ ମସିହା ମହାପୂଜା ସଂଖ୍ୟା (ଅକ୍ଟୋବର) ମଣ୍ଡନ କରିଥିଲା ।

ନଭେମ୍ବର ୨୦୦୮ ରେ ଲୋକାର୍ପିତ ହେଉଛି ପ୍ରାଜ୍ଞ ପ୍ରାବନ୍ଧିକ ପଠାଣି ପଟ୍ଟନାୟକଙ୍କ ଆତ୍ମଜୀବନ ଚରିତ- ''ଜୀବନର ଚଲାପଥେ'' ।

ଓଡ଼ିଆ ଭାଷା-ସାହିତ୍ୟ-ସଂସ୍କୃତି ଓ ଶିକ୍ଷା କ୍ଷେତ୍ରକୁ ସମର୍ପିତ ଜଣେ ପ୍ରାଜ୍ଞ ଓ ପ୍ରବୃଦ୍ଧ ମଣିଷଙ୍କ ଏଇ ଆତ୍ମଜୀବନ ଚରିତ ''ଜୀବନର ଚଲାପଥେ'' ଅନାଗତ ଦୂର ଭବିଷ୍ୟ ପାଇଁ ଆଲୋକସ୍ତମ୍ଭ ରୂପେ ସ୍ଥାପନ କରିଯାଉଛୁ ।

-ଦିଲୀପ କୁମାର ବେଉରା

# ବିଷୟସୂଚୀ

# ଛୋଟ ମୋର ଗାଆଁଟି

**ଖୋର୍ଦ୍ଧା** ଜିଲ୍ଲାର ପଲ୍ଲୀ ଗାଁଟିଏ ଗୋଳବାଇ । ବର୍ଷତମାମ କ୍ଷୀଣସ୍ରୋତା ଅଥଚ ଚିର ପ୍ରବାହିନୀ ମଲାଗୁଣି ନଦୀ ଏହି ଗାଆଁର ପଦଧୌତ କରିଆସିଛି ଯୁଗ ଯୁଗ ଧରି । ଶେଷରେ ଦୟାନଦୀର ଜଳପ୍ରବାହ ସହିତ ଭାରତବିଖ୍ୟାତ ଚିଲିକା ହ୍ରଦରେ ଆତ୍ମବିସର୍ଜନ କରିଅଛି । କବି ରାଧାନାଥଙ୍କ ଭାଷାରେ ଏହି ନଦୀ ମନ୍ଦାକିନୀ ଅମନ୍ଦଗାମିନୀ । କବିଙ୍କ ଭାଷାରେ ଏହି ନଦୀର ଉତ୍ପତ୍ତିସ୍ଥଳ ''ରଣପୁର ରାଷ୍ଟ୍ର ବନବିହାରିଣୀ ।'' ବର୍ଷାକାଳରେ ଏହି ପାହାଡ଼ିଆ ନଦୀର ସ୍ରୋତ ଅତ୍ୟନ୍ତ ପ୍ରଖର ।

ଖୋର୍ଦ୍ଧା ଏକ ବୀରଭୂମି । କ୍ଷୁର ଧାର ଶବ୍ଦରୁ ଖୋର୍ଦ୍ଧା ଶବ୍ଦ ଜନ୍ମ ଗ୍ରହଣ କରିଛି ବୋଲି ଅନୁମିତ ହୁଏ । ଏହି ମାଟିରେ ବସବାସ କରୁଥିବା ସମରକୁଶଳୀ ପାଇକମାନଙ୍କର ଶୌର୍ଯ୍ୟବୀର୍ଯ୍ୟ କ୍ଷୁର ଧାର ପରି ତୀକ୍ଷ୍ଣ ହୋଇଥିବାରୁ ଏପରି ନାମକରଣ ହୋଇଥାଇପାରେ ।

ଗୋଳବାଇର ଅନତିଦୂରରେ ଘେରିକରି ରହିଛି ନରଣଗଡ଼, ତାପଙ୍ଗଗଡ଼, ମଳିପଡ଼ାଗଡ଼, ରାମେଶ୍ୱରଗଡ଼ ପ୍ରଭୃତି ଇତିହାସ ଯୁଗର ସାମରିକ କେନ୍ଦ୍ର । ପ୍ରତ୍ୟେକ ଗ୍ରାମରେ ଦଳେଇ, ଦଳବେହେରା ଓ ଅନେକ ପାଇକମାନଙ୍କର ଘର । କର୍ପୂର ଉଡ଼ିଯାଇଛି ସିନା, କନାଟି ପଡ଼ି ରହିଛି ସେମାନଙ୍କର କୁଳ ସାଙ୍ଗିଆକୁ ନିର୍ଦ୍ଦେଶ କରି । ଗୋଳବାଇରେ ଯେଉଁ ପାଇକମାନଙ୍କର ଘର, ସେମାନଙ୍କର କୁଳ ସାଙ୍ଗିଆ ହେଲା-ମାନସିଂହ, ସାମନ୍ତରାୟ, ଶ୍ରୀଚନ୍ଦନ, ହରିଚନ୍ଦନ, ବୈରୀଗଞ୍ଜନ, ପରିଡ଼ା (ପରିରାୟ), ଚହଟାସିଂହ, ଝପଟ୍‌ସିଂହ, ଭୁଜବଳ, ବଳବନ୍ତରାୟ, ମାର୍ଥା ପ୍ରଭୃତି ଅନେକ ପ୍ରକାର । ଏହି ବୀର ପାଇକ ଜାତି ଆଜି ଓଡ଼ଚଷା ଭାବରେ ପରିଚିତ ।

ଖୋର୍ଦ୍ଧା ଅଞ୍ଚଳର ଲୋକେ ନିଜକୁ ପରଙ୍ଗିଆ ଭାବରେ ପରିଚୟ ଦେଇଥାଆନ୍ତି । ପରାଙ୍ଗ ଅର୍ଥ ପାହାଡ଼ିଆ ଅଞ୍ଚଳ । ଖୋର୍ଦ୍ଧା ଜିଲାର ଚତୁର୍ଦ୍ଦିଗରେ ଅନେକ ଛୋଟ ବଡ଼ ପର୍ବତଶ୍ରେଣୀ । ଏକଦା ଏହି ପାର୍ବତ୍ୟ ଉପତ୍ୟକା ଥିଲା ନିଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ । ଶ୍ୱାପଦସଙ୍କୁଳ ମଧ୍ୟ ।

ମଲାଗୁଣୀ କୂଳରେ ଅବସ୍ଥିତ ସେହି ରମଣୀୟ ଗ୍ରାମରେ ମୋର ଜନ୍ମ ୧୯୨୮ ମସିହା ସେପ୍ଟେମ୍ବର ମାସ ୧୯ ତାରିଖରେ । ଗ୍ରାମର ଉପାନ୍ତରେ କ୍ଷୁଦ୍ର ଗୋଳବାଇ ମୁଣ୍ଡିଆ । ଋଷିଜନ ସେବିତ କେତୋଟି ପ୍ରାଚୀନ ଗୁମ୍ଫା ଏହି ପାହାଡ଼ରେ ବିଦ୍ୟମାନ । ଶୁଣାଯାଏ, ଏଠାରେ ଅନେକ ସାଧୁସନ୍ଥ ଅବସ୍ଥାନ କରୁଥିଲେ । ପାହାଡ଼ର ନିମ୍ନ ଅଂଶରେ ଏକ ବାମ୍ଫୀ

ବର୍ଷତମାମ ଜଳପୂର୍ଣ୍ଣ ରହିଥାଏ । ସେହି ପାହାଡ଼କୁ ଘେରି ରହିଥିଲା ନାନା ଉଦ୍ଭିଦ ପରିପୂର୍ଣ୍ଣ ଜଙ୍ଗଲ ସମ୍ପଦ । ନାନାପ୍ରକାର ପକ୍ଷୀଙ୍କର କଳରବରେ ମୁଖରିତ ହେଉଥିଲା ଏହି ଅରଣ୍ୟ । ଫୁଲ ଫଳରେ ଶ୍ରୀମଣ୍ଡିତ ଏହି ଜାଙ୍ଗଲିକ ପରିବେଶ ଗ୍ରାମବାସୀ ଓ ପଥିକମାନଙ୍କର ଥିଲା ଆକର୍ଷଣୀୟ ସ୍ଥାନ । ପାହାଡ଼ରୁ ମଳାଗୁଣୀ ନଦୀକୂଳକୁ ଓହ୍ଲାଇଗଲେ ଶୋଭାପାଏ ବିସ୍ତୀର୍ଣ୍ଣ ପ୍ରାନ୍ତର । ଲୋକମୁଖରେ ଏହାର ନାମ ଶଙ୍ଖଚକ୍ର ଟାଙ୍ଗି । ସେହିଠାରେ ଯଜ୍ଞ ମଣ୍ଡପର ପ୍ରସ୍ତରଖୋଦିତ ଚିହ୍ନ ଏବେ ମଧ୍ୟ ଦର୍ଶକର ଦୃଷ୍ଟିଗୋଚର ହୁଏ । ତାରି ଅନତି ଦୂରରେ ଛୋଟ ଗାଡ଼ିଆଟିଏ । ନାଁଟି ତାର ଛତିଗାଡ଼ିଆ । ଲୋକ ଉଚ୍ଚାରଣରେ କାଳକ୍ରମେ 'ସତୀ' ଶବ୍ଦଟି 'ଛତି' ଶବ୍ଦରେ ରୂପାନ୍ତରିତ । କେଉଁକାଳେ ସ୍ୱାମୀଙ୍କ ଚିତାରେ ଝାସଦେଇ କେହି ଜଣେ ସତୀ ହୋଇଥିଲେ ।

ସୂର୍ଯ୍ୟାସ୍ତର ଅବ୍ୟବହିତ ପୂର୍ବରୁ ସେହି ପାହାଡ଼ ଉପରେ ଦଣ୍ଡାୟମାନ ହେଲେ ସୁଦୂର ଦକ୍ଷିଣ ଦିଗର ଚକ୍ରବାଳରେ ପୁରୀ ଶ୍ରୀମନ୍ଦିରର ଉନ୍ନତ ଶିଖର ଦେଶର ସାମାନ୍ୟ ଅଂଶ ଦୃଷ୍ଟିଗୋଚର ହୋଇଥାଏ । ଯେଉଁମାନେ ପାହାଡ଼ ଉପରେ ବଣଭୋଜି କରିବାକୁ ଧାଇଁ ଆସନ୍ତି, ପ୍ରଥମେ ନୀଳଚକ୍ର ଉଦ୍ଦେଶ୍ୟରେ ପୂଜା ଅର୍ପଣ କରିବାର ବିଧି ଆଜି ମଧ୍ୟ ପ୍ରଚଳିତ ।

ପାହାଡ଼ ଉପରେ ଠିଆହେଲେ ଚତୁର୍ଦ୍ଦିଗର ଦିଗନ୍ତବିସ୍ତାରୀ ପ୍ରାକୃତିକ ଶୋଭା ମନ ଓ ପ୍ରାଣକୁ ଉଲ୍ଲସିତ କରିଦିଏ । ସେଦିନର ଅରଣ୍ୟସମ୍ପଦ ଆଜି ଶ୍ରୀହୀନ । ଜାଙ୍ଗଲିକ ଶୋଭାସମ୍ପଦ କଥାଟି ଆଜିର ତରୁଣ ସମାଜକୁ ବୁଢ଼ୀମା' କାହାଣୀ ପରି ମନେହେଉଥିବ ।

ବର୍ଷା କାଳରେ ସବୁଜ କ୍ଷେତର ମନଛୁଆଁ ଦୃଶ୍ୟ, ସଂଧ୍ୟାର ଆଗମନୀରେ ପଶ୍ଚିମ ଆକାଶରେ ଅସ୍ତମିତ ରବିର କୁଙ୍କୁମ କିରଣର ଆଭା, ମଳାଗୁଣୀର ପ୍ରବହମାନ ଜଳସ୍ରୋତର ଉପରିଭାଗକୁ ସ୍ପର୍ଶ କରି ସୁଲୁସୁଲୁ ଶୀତଳ ଦକ୍ଷିଣା ପବନ, ସର୍ବୋପରି ନୀଡ଼କୁ ଫେରି ଆସୁଥିବା ଅସୁମାରୀ ପକ୍ଷୀମାନଙ୍କର କଳରବ ଯେଉଁ ମନଲୋଭା ପ୍ରାକୃତିକ ଦୃଶ୍ୟପଟ୍ଟ ସୃଷ୍ଟି କରିଥାଏ, ସେହି ପରିବେଶ ମଧ୍ୟରେ ବିତିଥିଲା ମୋର ବାଲ୍ୟଜୀବନ ।

ଗୋଳବାଇ ବଡ଼ ଗାଁଟିଏ । ପାଖାପାଖି ଆଠଶହ ଘରର ସମଷ୍ଟି । ସବୁଜାତିର ଲୋକ କେଉଁକାଳରୁ ଏଠାରେ ବସତି ସ୍ଥାପନ କରିଆସିଛନ୍ତି । କେବଳ ମୁସଲମାନ ଅଧିବାସୀ ନାହାନ୍ତି । ପାହାଡ଼ର ଅନତିଦୂରରେ ସେକାଳର ଜଙ୍ଗଲ ମଧ୍ୟରେ କ୍ଷୁଦ୍ର ଶବରପଲ୍ଲୀ । ଏମାନଙ୍କର ପ୍ରଧାନ ପେଶା ଥିଲା ଜଙ୍ଗଲରେ ଶିକାର ଏବଂ ଲୋକାଳୟକୁ ଜାଳେଣୀକାଠ ଯୋଗାଇ ପେଟ ପୋଷିବା ।

ସେହି ସମୟର କଥା ସ୍ମୃତିପଟରେ ସଂଚରି ଯାଉଛି, ଯେତେବେଳେ ଏହି ପଲ୍ଲୀ ଗାଁଟିରେ ଆଧୁନିକ ସଭ୍ୟତାର ପଦଧ୍ୱନୀ ଶୁଣାଯାଇ ନଥିଲା, ଗ୍ରାମଟି ଥିଲା ସ୍ୱୟଂ ସଂପୂର୍ଣ୍ଣ । ତେଲି ବସ୍ତିର ଲୋକମାନେ ତେଲ ପେଡୁଥିଲେ । ତନ୍ତୀ ଓ ପାଟରୋମାନେ ଲୁଗା, ଚଦର ବୁଣୁଥିଲେ । କୁମ୍ଭାର ଗଢୁଥିଲା ହାଣ୍ଡିମାଠିଆ । କମାରମାନେ ଚାଷପାଇଁ ଲୁହା କଷୁଥିଲେ । କେଉଟମାନେ ଚିଲିକାକୂଳରୁ ନିଜ ଭାରରେ ମାଛ, ଶୁଖୁଆ ବୋହି ଆଣି ଗାଁମାନଙ୍କରେ

ବିକ୍ରୀ କରୁଥିଲେ । ବ୍ରାହ୍ମଣ ଓ ମାଳୀମାନେ ଦେବପୂଜାର ଦାୟିତ୍ୱ ନେଇଥିଲେ । ଗ୍ରାମର ଅଧିକାଂଶ ଅଧିବାସୀ ଥିଲେ ଓଡ଼ପାଇକ ବା ଚଷା । ସେମାନଙ୍କୁ ଓଡ଼ିଆଘର ବୋଲି କୁହାଯାଉଥିଲା । ଏହି ଚଷାକୁଳ ଜମିଚାଷ କରି ଫସଲ ଅମଳ କରୁଥିଲେ ।

ଏତେବଡ଼ ଗାଁରେ 'ତୋଷ' ସାଙ୍ଗିଆଧାରୀ ଗୋଟିଏ ପରିବାର । ସେମାନେ ଅନ୍ୟତମ ଧନୀ ପରିବାର ଥିଲେ । ଖଳାବାରିରେ ତାଙ୍କର ଆକାଶ ଛୁଆଁ କଳେଇଗଦା ଦେଖିଲେ ଠେକା ଖସିପଡ଼ିବ । ତନ୍ତୀକୁଳର ହେଲେ ମଧ ଏମାନେ ଯେ ବଙ୍ଗୀୟ ପରିବାର, ସେକଥା ଗ୍ରାମରେ କେହି ଜାଣନ୍ତି ନାହିଁ । କେଉଁକାଳରୁ ଏଠାରେ ଅବସ୍ଥାନ କରି ସେମାନେ ବଙ୍ଗୀୟ ଚଳଣୀ ବିସ୍ମୃତ ହୋଇ ଓଡ଼ିଆ ସଂସ୍କୃତି ସହିତ ମିଶିଯାଇଛନ୍ତି । ପରିଣତ ବୟସରେ 'ତୋଷ' ସାଙ୍ଗିଆ ଆମ ଓଡ଼ିଆଙ୍କର ନୁହେଁ ବୋଲି ମନରେ ଏକ ଖିଆଲ ଆସିଲା । ତୋଷ ପରିବାରର ଜଣେ ଉଚ୍ଚଶିକ୍ଷିତ ବାଲ୍ୟବନ୍ଧୁକୁ ପଚାରି ବୁଝିଲି, ବାସ୍ତବରେ ସେମାନେ ମୂଳତଃ ବଙ୍ଗାଳୀ ଥିଲେ । କିପରି ସେମାନେ ଓଡ଼ିଶାକୁ ଆସିଥିଲେ, ତାହା ଏକ ରୋମାଞ୍ଚକର କାହାଣୀ ।

ଏ ହେଉଛି ଗଜପତି ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳର କଥା । ଶ୍ରୀ ଜଗନ୍ନାଥଙ୍କ ପ୍ରତିମା ବଡ଼ଦେଉଳରେ ପ୍ରତିଷ୍ଠା ହେଲାପରେ ଗୋଟିଏ ସମସ୍ୟା ଆସିଲା । ପ୍ରଭୁ ଜଗନ୍ନାଥଙ୍କୁ ପାଟବସ୍ତ୍ର ଯୋଗାଇବାକୁ କୁଶଳୀ ବୁଣାକାର ଆବଶ୍ୟକ ହେଉଥିଲେ । ମହାରାଜା ଅନଙ୍ଗଭୀମ ଦେବ ବଙ୍ଗଦେଶର ଗଙ୍ଗାକୂଳରେ ବସତି ସ୍ଥାପନ କରିଥିବା ତେରଘର ପଟରା (ପାଟରା) ବା ପାଟବସ୍ତ୍ର ବୁଣାକାରଙ୍କୁ ଓଡ଼ିଶାରେ ଆଣି ଖୋର୍ଦ୍ଧା ନିକଟରେ ଶ୍ରୀଜଗନ୍ନାଥଙ୍କ ଜମିରେ ରଖାଇଲେ । ପ୍ରଥମେ ଆସିଥିଲେ ନଅଘର (ନଅବାଡ଼ିଆ) । ସେମାନେ ହେଲେ ତୋଷ, କୁଣ୍ଡୁ, ପାତ୍ର, ଦେବ଼ୈତା, ପରିଡ଼ା, ଦାସ, ନାଗ, ସିଂହ, ଚଣ୍ଡ ସାଙ୍ଗିଆଧାରୀ । ତା'ପରେ ଆସିଲେ ଚାରିଘର (ଚାରିବାଡ଼ିଆ) । ଯଥା- ଅକ୍ଷୀତ, ପଣ୍ଡିତ, ଶେଣ ସାଙ୍ଗିଆ ଥିବା ପରିବାର । ଏମାନେ ନିଷ୍କର ଜମି ଭୋଗ କରୁଥିଲେ ରାଜାଙ୍କ ଆଦେଶରେ । ପ୍ରଥମେ ଏମାନେ ଖୋର୍ଦ୍ଧା ନିକଟ ରାଉତପଡ଼ା, ଡିଙ୍ଗର ଗ୍ରାମରେ ବସବାସ କରିଥିଲେ । ବଂଶବୃଦ୍ଧି ସଙ୍ଗେ ସଙ୍ଗେ ଏହି ପ୍ରାଚୀନ ପରିବାର ବର୍ତ୍ତମାନ ରହୁଛନ୍ତି ଗୋଳବାଇ, ବାଜପୁର, ରାଉତପଡ଼ା, ସିମର, ସରପାରି, ଡିଙ୍ଗର ଓ କଟକ ଜିଲ୍ଲାର ନୂଆପାଟଣାରେ । ଏହି ପରିବାର ଶ୍ରୀଜଗନ୍ନାଥଙ୍କୁ ପାଟଦେଉଡ଼ି, ମଠାବସ୍ତ୍ର ଓ ପାଟବସ୍ତ୍ର ଯୋଗାଇ ଆସୁଛନ୍ତି ପୁରୁଷାନୁକ୍ରମେ ।

ଗୋଳବାଇ ବାସ୍ତବିକ ଅତୀତ ଇତିହାସର ଏକ ରଙ୍ଗସ୍ଥଳୀ । ଗ୍ରାମର ନାମକରଣ କାହିଁକି ଏପରି ହେଲା ବୋଲି ପଚାରିଲେ ବୃଦ୍ଧମାନେ କହୁଥିଲେ ମଜାଦାର କଥାଟିଏ । ଏହି ଗ୍ରାମର ଅଧିକାଂଶ ଅଧିବାସୀ ହେଲେ ଖଣ୍ଡାୟତ । ସେମାନଙ୍କର କୁଳସାଙ୍ଗିଆ ସାମରିକ ମର୍ଯ୍ୟାଦା ବହନ କରିଥାଏ । ଏହି ଖଣ୍ଡାୟତମାନେ ଗୋଳ ଅର୍ଥାତ୍ ଯୁଦ୍ଧରେ ବାଇ ବୋଲି ଗ୍ରାମର ଏପରି ନାମକରଣ । ସେଦିନର ଉତ୍କଳ ସେନାପତି ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଖୋର୍ଦ୍ଧାର ପାଇକବାହିନୀ ବିଦ୍ରୋହ କରି ଇଂରେଜ ସରକାରଙ୍କୁ ଥରହର କରିଦେଇଥିଲେ । ଏହି ଗ୍ରାମର ବୁଢ଼ାମାନେ କହିବାର ଶୁଣିଛି- କେଉଁ ଦୂର ଅତୀତରେ ସେମାନେ ଯୁଦ୍ଧ ଜୟ

କରି ଫେରିବା ସମୟରେ ଏହିଠାରେ ଘର କରି ରହିଗଲେ । କାରଣ ଏଠାରେ ଗୋଟିଏ ଛଞ୍ଚାଣକୁ ପାରାଟିଏ ମାଡ଼ିବସିଥିବା ସେମାନଙ୍କ ନଜରକୁ ଆସିଲା । ଅତଏବ ଏହା ନିଶ୍ଚୟ ଏକ ବୀରଭୂମି ଏବଂ ବୀର ପାଇକମାନଙ୍କର ବାସସ୍ଥଳୀ ପାଇଁ ଯୋଗ୍ୟ । ଅବିକଳ ଏହିପରି ଏକ ସ୍ମୃତିଚାରଣ କରାଯାଇଛି ମାଦଳାପାଞ୍ଜିରେ । ଚଉଦୁଆର ରାଜଧାନୀରୁ ରାଜା ମହାନଦୀ ପାରିହୋଇ କଟକର ବିଡ଼ାନାସୀ ଗ୍ରାମରେ ଅବିକଳ ଏହି ପ୍ରକାର ଏକ ଦୃଶ୍ୟ ଦେଖିଥିଲେ । ତେଣୁ ନିର୍ମାଣ କଲେ ବିଡ଼ାନାସୀ ଦୁର୍ଗ ।

ଏହି ଗ୍ରାମର ଆରାଧ ଠାକୁରାଣୀ ହେଲେ ଗୋଳବାଇ ଠାକୁରାଣୀ । ଗ୍ରାମର ଅନେକ ଅଧିବାସୀ ତନ୍ତୀ ଏବଂ ପାଟରା ଜାତିର । ଅତୀତରେ ଏମାନେ ବୌଦ୍ଧଧର୍ମାବଲମ୍ବୀ ଥିଲେ ବୋଲି ଜଣାଯାଏ । ତେଣୁ ବୌଦ୍ଧଧର୍ମର ଶକ୍ତି ଉପାସନା ଗ୍ରାମରେ ପ୍ରଚଳିତ ହୋଇଥିବା ଅତ୍ୟନ୍ତ ସ୍ୱାଭାବିକ । ବୌଦ୍ଧଧର୍ମର ତନ୍ତ୍ର ମତରେ ଜଣେ ଠାକୁରାଣୀଙ୍କ ନାମ ହେଉଛି ''ଗେଲବାଇ'' । ତେଣୁ ଆରାଧ ଗ୍ରାମଦେବୀ ହୁଏତ ଏହି ଗୋଳବାଇ ଠାକୁରାଣୀ । କାଳକ୍ରମେ 'ଗେଲବାଇ', ଗୋଳବାଇରେ ଉଚ୍ଚାରିତ ହେବା ଅସମ୍ଭବ ନୁହେଁ । ତେଣୁ ଠାକୁରାଣୀଙ୍କ ନାମାନୁସାରେ ଗ୍ରାମର ନାମ ଗୋଳବାଇ ହେବା ଅତ୍ୟନ୍ତ ସମୀଚୀନ ।

ପୁନଶ୍ଚ ଗୋଳବାଇ ଠାକୁରାଣୀଙ୍କ ବିଜେସ୍ଥଳୀର ଅଳ୍ପଦୂରରେ ବ୍ରାହ୍ମଣ ଶାସନ । ସେହି ଶାସନଗ୍ରାମର ପ୍ରଥମରୁ 'ଜାଗୁଳେଇ' କୂଅ । ସେହି କୂଅ ମଧ୍ୟରେ ଗୋଟିଏ କଣରେ ଜାଗୁଳେଇ ଠାକୁରାଣୀ ଅଛନ୍ତି ବୋଲି ବିଶ୍ୱାସ କରାଯାଏ । ଜାଗୁଳେଇ ମଧ ବୌଦ୍ଧ ତନ୍ତ୍ର ମତର ଅନ୍ୟ ଏକ ଦେବୀ । ଗ୍ରାମରେ ଏକ ପ୍ରସିଦ୍ଧ ପର୍ବ ହେଉଛି କାଠିଯାତ୍ରା । ଏହିଦିନ କାଠିଦେବୀଙ୍କୁ ପୂଜକମାନେ ନଚାଇ କୂଅ ଚାରିପଟେ ଘୂରିଆସିବା ଏକ ପ୍ରାଚୀନ ବିଧି ହୋଇ ରହିଆସିଛି ।

ଗ୍ରାମର ପ୍ରତ୍ୟେକ ସାହିରେ ଓ ବଜାର ମଧ୍ୟସ୍ଥଳରେ ଅନେକ ଦେବଦେବୀଙ୍କର ମନ୍ଦିର । ବୋଧହୁଏ କ୍ୱଚିଦ୍ ଗ୍ରାମରେ ଏତେ ସଂଖ୍ୟାରେ ଦେବଦେବୀ ମନ୍ଦିର ଦୃଷ୍ଟିଗୋଚର ହୋଇଥାଏ । ଏହି ଗ୍ରାମରେ ଶିବମନ୍ଦିରଗୁଡ଼ିକର ପରିଚୟ ଏହିପରି- କୃଷ୍ଣେଶ୍ୱର ଦେବ, ଗ୍ରାମେଶ୍ୱର ଦେବ, ବିଶ୍ୱନାଥ ଦେବ, ଜଳେଶ୍ୱର ଦେବ, ଅନନ୍ତେଶ୍ୱର, ରାମନିଧି ଦେବ, ଖରାଖିଆ ବୈଦ୍ୟନାଥ, ଗୁପ୍ତେଶ୍ୱର, ଭୁବନେଶ୍ୱର, ଆଖଣ୍ଡଳମଣି, ବିଲେଶ୍ୱର, ନୀଳକଣ୍ଠେଶ୍ୱର, କାମନାଲିଙ୍ଗ । ସେହିପରି ବିଷ୍ଣୁଙ୍କ ମନ୍ଦିର ଭାବରେ ପତିତପାବନ (ଜଗନ୍ନାଥ), ମଦନମୋହନ, ସତ୍ୟନାରାୟଣ, କୁଞ୍ଜବିହାରୀ ପ୍ରସିଦ୍ଧ । ଦେବୀଙ୍କ ପୀଠ ହେଲା ଗୋଳବାଇ, ଭଗବତୀ, ଚଣ୍ଡୀ, ଯୋଗମାୟା, ବାଟମଙ୍ଗଳା, ମଙ୍ଗଳା, କପିଳାବଘେଇ ଠାକୁରାଣୀ, ବସନ୍ତ ଠାକୁରାଣୀ । ଗୋଟିଏ ନିର୍ଦ୍ଦିଷ୍ଟ ସାହିରେ ମାଟିର ପୀଠ ଗାଦିବ୍ରହ୍ମ ରୂପେ ପୂଜା ପାଉଅଛନ୍ତି । ଏହି ଦେବଦେବୀଙ୍କୁ ଆଶ୍ରୟ କରି ବର୍ଷତମାମ ନାନାପ୍ରକାର ଉତ୍ସବ ପାଳନ କରାଯାଇଥାଏ । ଏହା ବ୍ୟତୀତ ଗ୍ରାମର ଘରେଘରେ ଶିବଙ୍କୁ ଈଶାଣରୂପେ ପୂଜା କରାଯାଏ । ଘରଣୀମାନେ ଏହି ଈଶାଣଦେବଙ୍କୁ ପ୍ରଥମେ ବଡ଼ବଡ଼ିଆ ରୂପରେ ଅର୍ଘ୍ୟପ୍ରଦାନ କରିସାରି ଗୃହକର୍ମରେ ନିଯୁକ୍ତ ହୋଇଥାଆନ୍ତି । ପ୍ରତ୍ୟେକ ପରିବାରରେ ତୁଳସୀ ଚଉରାରେ ଜଳଅର୍ଘ୍ୟ ପ୍ରଦାନ କରାଯାଏ ।

ଗ୍ରାମର ପ୍ରସିଦ୍ଧ ପର୍ବ ହେଲା ଦଶହରା, କାଠିଯାତ୍ରା ଓ ଗହ୍ମାପୂର୍ଣ୍ଣିମା । ଦଶହରା ଏକ ମିଳନ ପର୍ବ । ବିଦେଶୀ ଗ୍ରାମବାସୀ ଏହି କେତେଦିନ ଗ୍ରାମକୁ ଫେରିଆସି ଆନନ୍ଦଉତ୍ସବରେ ମାତିରହନ୍ତି । ଭଗବତୀ ଠାକୁରାଣୀଙ୍କ ପାଖରେ ଯନ୍ତାଳ ଭୋଜି ହୁଏ । ଏହା ଏକ ସାମୂହିକ ଆନନ୍ଦ ମେଳା । ଶ୍ରାବଣପୂର୍ଣ୍ଣିମା ତିଥିରେ ପଶ୍ଚିମଦିଗରେ ମାଟିର ବେଦି ନିର୍ମିତ ହୁଏ । ଏହା ହେଲା ଗହ୍ମା ବେଦି । ପ୍ରତ୍ୟେକ ଚାଷୀଘରେ ଗୋରୁମାନଙ୍କୁ ପୂଜା କରାଯାଏ । ଗହ୍ମାବେଦିରେ ପୂଜା କରି ବାଛୁରୀଟିଏ ମାଟିକୁନ୍ଦକୁ ଡିଆଇଁ ଦିଆଯାଏ । ସମସ୍ତ ଗ୍ରାମବାସୀ ଏଥିରେ ଅଂଶଗ୍ରହଣ କରନ୍ତି । କାଠିଯାତ୍ରା ଦିନ ଭଗବତୀ ଠାକୁରାଣୀଙ୍କ ପ୍ରତିନିଧିରୂପରେ ଏକ ବିଶାଳ ବଂଶଦଣ୍ଡକୁ ନାନା ପାଟବସ୍ତ୍ରରେ ସଜାଇ ଦିଆଯାଏ କୁଞ୍ଚିତ ଆକାରରେ । ବାଜା ବଡ଼କାଠ, ଢୋଲବାଦ୍ୟର ତାଳେତାଳେ ସେବକ ମାଳୀମାନେ ଠାକୁରାଣୀଙ୍କୁ ଗ୍ରାମଦାଣ୍ଡରେ ନଚାଇ ପ୍ରତ୍ୟେକ ବ୍ରାହ୍ମଣଘରୁ ପୂଜାଅର୍ଘ୍ୟ ଗ୍ରହଣ କରନ୍ତି । ସେହିଦିନ ସମଗ୍ର ଗ୍ରାମରେ ଜାତି ବର୍ଣ୍ଣ ନିର୍ବିଶେଷରେ ନାନାପ୍ରକାର ପିଠା, ଖେଚୁଡ଼ି, କ୍ଷୀରି ରାନ୍ଧଣା କରି ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ଘରେଘରେ ପୂଜାଅର୍ପଣ କରନ୍ତି । ଏହା ଏକ ମଧରାତ୍ରିର ଯାତ୍ରା । ସେହିଦିନ ଅଧିକାଂଶଙ୍କ ଘରେ ଦୂରଗ୍ରାମର ବନ୍ଧୁବାନ୍ଧବ ଅତିଥି ହୋଇ ଆସିବା ଏକ ସାଧାରଣ କଥା । ଓଡ଼ିଶାର କ୍ୱଚିତ ଗ୍ରାମରେ କାଠିଯାତ୍ରା ଦୃଷ୍ଟିଗୋଚର ହୋଇଥାଏ । ସେହିପରି ଦୋଳପୂର୍ଣ୍ଣିମା ଦିନ ଭଗବତୀ ଠାକୁରାଣୀଙ୍କର ଚଳନ୍ତିପ୍ରତିମା ଚଉଦୋଳରେ ସାହିସାହି ଭ୍ରମଣ କରି ପୂଜା ଅର୍ଘ୍ୟ ଗ୍ରହଣ କରନ୍ତି । ଦଶଦିନ ପରେ ହୁଏ ମେଳଣ ପଡ଼ିଆରେ ବିରାଟ ଦୋଳମେଳଣ । ଗ୍ରାମର ଦେବଦେବୀ ଓ ନିକଟବର୍ତ୍ତୀ ଗ୍ରାମର ଦେବଦେବୀଙ୍କର ଚଳନ୍ତି ପ୍ରତିମା ନାନା ପଟୁଆରରେ ଆସନ୍ତି ମେଳଣ ପଡ଼ିଆକୁ । ନାନା କିସମର ଦୋକାନବଜାର ବସିଯାଏ । ବାହାରୁ ଅନେକ ବ୍ୟବସାୟୀ ଆସି ନିଜର ବିପଣୀ ଖୋଲିଦିଅନ୍ତି । ଯାତ୍ରା ଓ ରାମଲୀଳାର ଆୟୋଜନ ହୁଏ । କୁମାରପୂର୍ଣ୍ଣିମା ଦିନ ବାଦିପାଲାର ବ୍ୟବସ୍ଥା ହୋଇଥାଏ । ଗ୍ରାମର ପ୍ରାୟ ପ୍ରତ୍ୟେକ ସାହିରେ ଝାମୁଯାତ୍ରା ହୁଏ । କର୍ମ ଜଞ୍ଜାଳ ମଧ୍ୟରେ ଗ୍ରାମବାସୀ ନାନାପ୍ରକାର ମେଳାମହୋତ୍ସବ ଆୟୋଜନ କରି ଅବସର ବିନୋଦନ କରିଥାଆନ୍ତି ।

ଗୋଳବାଇ ଏକଦା ବିଖ୍ୟାତ ହୋଇଥିଲା ଏହାର ପାଲା ସଂସ୍କୃତି ପାଇଁ । ଏହି ଗ୍ରାମର ପ୍ରସିଦ୍ଧ ପାଲାକାର ଓ କବି ବାଙ୍କା ଦାସ ଆଜକୁ ଏକଶହ ବର୍ଷ ପୂର୍ବେ ଓଡ଼ିଶାର ବିଖ୍ୟାତ ପାଲାଗାୟକ ଥିଲେ । ଏତେକାଳ ପରେ ମଧ ଓଡ଼ିଶାର ପ୍ରସିଦ୍ଧ ପାଲାଗାୟକଗଣ ବାଙ୍କା ଦାସଙ୍କ ରଚିତ ଛାନ୍ଦ, ଚଉପଦୀ ଗାନ କରିବାକୁ ଗୌରବ ମଣିଥାଆନ୍ତି ।

ବାଙ୍କା ଦାସ ଥିଲେ ଦେବୀ ଭଗବତୀଙ୍କର ବରପୁତ୍ର । କୌଣସି ପାରମ୍ପରିକ ଶିକ୍ଷାର ଅଧିକାରୀ ନ ହୋଇ ସୁଦ୍ଧା ସେ ଦେବୀଙ୍କ କୃପାରୁ ହୋଇଥିଲେ କବି ପ୍ରତିଭାର ଅଧିକାରୀ । କିଛିକାଳ ପୂର୍ବେ ହଳଦିଆଗଡ଼ର ଜଣେ ସଂସ୍କୃତିପ୍ରେମୀ ବାଙ୍କା ଦାସଙ୍କ ରଚିତ ଅନେକ ଗୀତ ସଂକଳନ କରିଅଛନ୍ତି । କଟକର ଦାଶରଥି ପୁସ୍ତକାଳୟ ମଧ୍ୟ ଏକଦା ବାଙ୍କା ଦାସଙ୍କର କେତୋଟି ଗୀତ ପୁସ୍ତକ ଆକାରରେ ପ୍ରକାଶ କରିଥିଲେ । ଏଠାରେ ବାଙ୍କା ଦାସଙ୍କର ଗୋଟିଏ 'ଜଗନ୍ନାଥ ଭଜନ' ଉଦ୍ଧାର କରିବା ସମୀଚୀନ ହେବ ।

'ଦୀନ ବାନ୍ଧବ ହେ ! ତୁମ୍ଭେ କିମ୍ପା ହେବ ଈନ
ଜନମରୁ ଦୁଃଖ ନଯାଏ କା ପାଶ ମୋତେ ଲୋଡ଼େ ପ୍ରତିଦିନ ।
ଦୁଃଖ ନୋହିଲା ଶମନ ଭୁବନ ମୋ ପାପ କରୁ ଲିଖନ,
ଆନ ନର୍କୀତର୍କୀ କେତେ ତରିଗଲେ ସେ କିପରି ତୁମ୍ଭ ନାମ ।
ଲକ୍ଷ୍ମୀ ଆଜ୍ଞାକାରୀ ଅଟନ୍ତି ତୁମ୍ଭରି ତା' ଜ୍ୟେଷ୍ଠ ମୋର ଭବନ,
ବିପତ୍ତି ଉପରେ ଥାଅ ଅହର୍ନିଶ ମୁଁ ତ ପତିତ ଜନ ।
(ଆଜି) ନୀଳାଚଳେ ରହି କାଷ୍ଠରୂପ ବହି ଉଡ଼େ ପତିତପାବନ,
ବୋଲେ ବିପ୍ର ବାଙ୍କା ମୁଁ ତ ଦୀନ ରଙ୍କା ଉଡ଼େ ଦରିଦ୍ର ବସନ ।'

ଗୋଳବାଇରେ ସେକାଳରେ ଆଉଜଣେ ପାଲାକାର ଖୁବ୍ ସୁନାମ ଅର୍ଜନ କରିଥିଲେ । ତାଙ୍କର ନାମ ଦୀନବନ୍ଧୁ । ସେ ଜଣେ ପଣ୍ଡିତ ପାଲାକାର ଥିଲେ । କବିତ୍ୱ ପ୍ରତିଭା ତାଙ୍କର ନଥିଲା ।

ମୋର ପିଲାଦିନେ ଜଣେ କୁଟୁମ୍ବୀ ଜେଜେଙ୍କୁ ଦେଖିବାର ସୁଯୋଗ ପାଇଥିଲି । ତାଙ୍କର ନାମ ସାଧୁଚରଣ ପଟ୍ଟନାୟକ । ସେ ଥିଲେ ଏକାଧାରରେ ଜଣେ କବି, କବିରାଜ ଓ ତାନ୍ତ୍ରିକ । ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରି କବି ସାଧୁଚରଣ ପଲ୍ଲୀ ସଂସାରରେ ଯେଉଁପରି ଶ୍ରଦ୍ଧା ଓ ସମ୍ମାନ ପ୍ରାପ୍ତ ହେଉଥିଲେ, ତାହା ଗ୍ରାମର ସ୍ୱଚ୍ଛଳ ଓ ଧନୀ ବ୍ୟକ୍ତିମାନଙ୍କ ଭାଗ୍ୟରେ ଜୁଟୁ ନଥିଲା । ଖୋର୍ଦ୍ଧା ଅଞ୍ଚଳର ଅନେକ ପାଲାକାର ଓ ଯାତ୍ରାବାଲା କବିଙ୍କୁ ଅଶେଷ ସମ୍ମାନ ଜଣାଇ ତାଙ୍କ ରଚିତ ଗୀତ ନେଇଯାଉଥିଲେ ବୋଲିବା ପାଇଁ । ଦୁଃଖର କଥା, ଏହି ଗୀତଗୁଡ଼ିକ ସଂକଳିତ ହୋଇପାରିଲା ନାହିଁ । ଏ ତ ମୋର ପିଲାଦିନର କଥା । ଗ୍ରାମର ଚାରିଆଡ଼େ ଜଙ୍ଗଲ । ସଂଧ୍ୟାକାଳରେ ଘରକୁ ଚାଷଜମିରୁ ଫେରି ଆସୁଥିବା ଚାଷୀମାନେ ଅନେକ ସମୟରେ ପାଗଳା ବିଲୁଆ ଆକ୍ରମଣର ସମ୍ମୁଖୀନ ହୋଇଥାଆନ୍ତି । ବେଳେବେଳେ ପାଗଳା କୁକୁର ମଧ୍ୟ ଆଘାତ କରିଥାଏ । ଏହି ରୋଗୀମାନେ ସାଧୁଚରଣଙ୍କ ମନ୍ତ୍ରଚିକିତ୍ସାରେ ଆରୋଗ୍ୟ ହୋଇଯାଉଥିବା ମୋର ବାଲ୍ୟଜୀବନର ଆଖିଦେଖା କଥା ।

ମଳାଗୁଣୀ ନଦୀକୂଳରେ ଏକ କ୍ଷୁଦ୍ର ମାଟିର ପାହାଡ଼ । ଲୋକମୁଖରେ ପରିଚୟ ହେଲା ମାଳିଡ଼ିପ । ଗିରିଶଙ୍କଟ ପରି ଶଗଡ଼ରାସ୍ତାଟିଏ ଲମ୍ବିଯାଇଛି ନଦୀକୂଳକୁ ମାଟି ପାହାଡ଼କୁ ଦୁଇଭାଗ କରି । ଅନେକ କାଳର ପ୍ରାଚୀନ ଇଟା ବିକ୍ଷିପ୍ତ ହୋଇ ଚାରିଆଡ଼େ ପଡ଼ିରହିଛି । ଏହି କୁଦ ଉପରେ ଭଗ୍ନ ଅବସ୍ଥାରେ ଏକାଧିକ ଶିବ ମନ୍ଦିର । ନଦୀକୂଳକୁ ଲାଗି କାରୁକାର୍ଯ୍ୟ ପୂର୍ଣ୍ଣ ଅତୁଟ ଜଳେଶ୍ୱର ଶିବ ମନ୍ଦିର । ଏକାଦଶ ଶତାବ୍ଦୀ ହେଉଛି ଏହାର ନିର୍ମାଣକାଳ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଏହାର ସମକାଳୀନ । ମାଳିଡ଼ିପ ସଂପର୍କରେ ଏକ ଚମତ୍କାର କିମ୍ବଦନ୍ତୀ ଲୋକମୁଖରେ ଆଜି ମଧ୍ୟ ପ୍ରଚଳିତ ।

କେଉଁ ଅତୀତ ଯୁଗରେ ଶେଣ କବିରାଜ ଏଠାରେ ଅବସ୍ଥାନ କରୁଥିଲେ । କବିରାଜି ବିଦ୍ୟାରେ ତାଙ୍କର ଥିଲା ନାଁ ଡାକ । ଲଙ୍କାର ନରପତି ବିଭୀଷଣ କୁଆଡ଼େ ତାଙ୍କ ଚିକିତ୍ସାରେ

ଆରୋଗ୍ୟ ଲାଭ କରିଥିଲେ । ଲଙ୍କପତି ପ୍ରଚୁର ଧନରତ୍ନ ଉପହାର ଦେଇଥିଲେ । ବର୍ଷାକାଳରେ ମାଟି ଧୋଇଗଲେ ଲୋକମାନେ ଖୋଜିବୁଲନ୍ତି ଏହି ମାଟି କୁଦର ଉପର । କାଳେ କିଛି ଧନରତ୍ନ ମିଳିଯିବ ପରା ! ଶେଣ କବିରାଜ ଏକ କାଳ୍ପନିକ ନାମ ନୁହେଁ । ତାଙ୍କ ଲିଖିତ କବିରାଜ ଶାସ୍ତ୍ର ପୋଥି ଆକାରରେ ପ୍ରାପ୍ତ ହୋଇଅଛି ।

ଗ୍ରାମର ଚତୁର୍ଦ୍ଦିଗରେ ପ୍ରସ୍ତର ଶଯ୍ୟା ଦିଗନ୍ତବିସ୍ତାରୀ । ଅଥଚ ମାଳିଢ଼ିପରେ ବଡ଼ବଡ଼ ପୋଡ଼ାଇଟାର ଆବଶ୍ୟକତା ପଡ଼ିଲା କାହିଁକି ? ବୌଦ୍ଧଯୁଗର ସ୍ତୁପ ନିର୍ମାଣରେ ଇଟାର ଆବଶ୍ୟକ ହୋଇଥାଏ । ୧୯୮୫ ସାଲରେ ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ମାଳିଢ଼ିପର ଗୋଟିଏ ଅଂଶ ଖନନ କରି ଏକ ପ୍ରାଚୀନ ସଭ୍ୟତାର ନିଦର୍ଶନ ଆବିଷ୍କାର କରିଛନ୍ତି । ବହୁ ବିସ୍ମୟକର ଉପାଦାନ ଲୋକଲୋଚନକୁ ଆସିପାରିଛି ।

ଏହି ଖନନରୁ ପ୍ରାକ୍ ଐତିହାସିକ ସଭ୍ୟତାର ସନ୍ଧାନ ମିଳିଛି । ସେଗୁଡ଼ିକ ମଧ୍ୟରେ ଲୁହା ଓ ତମ୍ବାରେ ନିର୍ମିତ ସାମଗ୍ରୀ, ଚିତ୍ରକଳା ସମ୍ବଳିତ ମାଟିପାତ୍ର, ପଶୁ ଓ ମଣିଷର ଅସ୍ଥିସାର, କଙ୍କଣ, ମୁଦି, ହାର ପ୍ରଭୃତି ଧାତବ ଅଳଙ୍କାର ପ୍ରଭୃତି ପ୍ରଧାନ । ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଶତାବ୍ଦୀବେଳକୁ ଏଠାରେ ଏକ ଉନ୍ନତ ସଭ୍ୟତା ଗଢ଼ି ଉଠିଥିଲା । ଧାନ, କୋଳଥ ଆଦି ଖାଦ୍ୟଶସ୍ୟର ଯେଉଁ ନମୁନା ମିଳିଛି, ତହିଁରୁ ସେ ସମୟର ଅଧିବାସୀମାନେ ଉନ୍ନତ କୃଷିଜୀବୀ ଥିଲେ ବୋଲି ଜଣାଯାଉଛି । ପ୍ରତ୍ନତାତ୍ତ୍ୱିକ ଖନନରୁ ଯେଉଁ ସଭ୍ୟତାର ପରିଚୟ ମିଳିଲା, ତାହା ସମଗ୍ର ଭାରତରେ ଅନନ୍ୟସାଧାରଣ ବୋଲି ଭାରପ୍ରାପ୍ତ ଗବେଷକ ମାନଙ୍କର ଅଭିମତ । କେବଳ କାଶ୍ମୀର ଅଞ୍ଚଳରେ ଏହି ପ୍ରକାର ସଭ୍ୟତା ଆବିଷ୍କାର କରାଯାଇଛି ।

ସେମାନେ କହନ୍ତି ଖ୍ରୀଷ୍ଟପୂର୍ବ କାଳରେ ପୃଥିବୀ ପ୍ରସିଦ୍ଧ ଚିଲିକା ବନ୍ଦର ମଲାଗୁଣୀ ନଦୀର ଖୁବ୍ ନିକଟବର୍ତ୍ତୀ ଥିଲା । ନୌବାଣିଜ୍ୟ ପାଇଁ ଏହି ଅଞ୍ଚଳ ପ୍ରସିଦ୍ଧି ଅର୍ଜନ କରିଥିଲା ।

ମାଳିଢ଼ିପରୁ ତିନିଗୋଟି ସଭ୍ୟତାର ଅବଶେଷ ମିଳିଅଛି । (କ) ନୂତନ ପ୍ରସ୍ତର ଯୁଗ (ଖ) ତାମ୍ର ପ୍ରସ୍ତର ଯୁଗ (ଗ) ଲୌହ ଯୁଗ । ପ୍ରଥମ ସ୍ତରରୁ ହସ୍ତନିର୍ମିତ ମୃଣ୍ମୟ ପାତ୍ର, ଦ୍ୱିତୀୟ ସ୍ତରରୁ ପଥର ନିର୍ମିତ ଅସ୍ତ୍ର, ହାଡ଼ର ଅସ୍ତ୍ର, ତମ୍ବାର ସାମଗ୍ରୀ, ଟେରାକୋଟା ସାମଗ୍ରୀ, ହସ୍ତନିର୍ମିତ ବଡ଼ବଡ଼ ହାଣ୍ଡିର ଅବଶେଷ, ସତରଗୋଟି ଗୋଲାକୃତି ଘରର ନକ୍ସା ଓ ଭଗ୍ନାବଶେଷ । ମଶାଣି ଓ କବରଖାନାର ଭଗ୍ନାବଶେଷ ମଧ୍ୟ ମିଳିଛି । ତୃତୀୟ ସ୍ତରରୁ ମିଳିଛି ଅନେକ ମୃଣ୍ମୟ ପାତ୍ର, ପଥର ଓ ହାଡ଼ର ଅସ୍ତ୍ର ଏବଂ ସର୍ବୋପରି ଲୌହ ସାମଗ୍ରୀ । ଏହି ସଭ୍ୟତାର ପରିବ୍ୟାପ୍ତି ଖ୍ରୀ.ପୂ. ୧୬୦୦ ରୁ ଖ୍ରୀଷ୍ଟାବ୍ଦ ୯୦୦ ପର୍ଯ୍ୟନ୍ତ ଅଟକଳ କରାଯାଇଛି ।

ଏହିପରି ଏକ ଅତି ପ୍ରାଚୀନ ଗରିମାମୟ ଐତିହ୍ୟକୁ କୋଳରେ ଧାରଣ କରିଥିବା ଗୋଳବାଇ ମାଟିରେ ମୁଁ ପ୍ରଥମେ ପାଦ ଦେଇଥିଲି । ମୁଁ ଯେଉଁଠାରେ ଥାଏ ନା କାହିଁକି, ତାହାର ପ୍ରତିଟି ଧୂଳିକଣା ମୋତେ ଜୀବନବ୍ୟାପୀ ସ୍ୱପ୍ନବିଭୋର କରିଆସିଛି ।

• • •

# ବାଲ୍ୟଜୀବନର ଅଭୁଲା ସ୍ମୃତି

**ଗୋ**ଲବାଇର ଗୁଣ୍ଡୁଣୀ ସାହିରେ ଆମର ଘର । ଆମ ପରିବାର ତିନୋଟି କୁଟୁମ୍ବଙ୍କର ଘରକୁ ବାଦଦେଲେ ସାହିର ସମସ୍ତେ ଓଡ଼ିଆଘର ଅର୍ଥାତ୍ ଖଣ୍ଡାୟତ ପରିବାର । ମୋର ଜେଜେ ବାଉରୀବନ୍ଧୁ ପଟ୍ଟନାୟକ । ଗୋସେଇଁ ମା' ହୃଦୟମଣି । ସେମାନଙ୍କର ବଡ଼ପୁଅ ଅକାଳରେ ବାହୁଡ଼ି ଯାଇଥିଲେ । ବାକି ଦୁଇଝିଅ ଓ ତିନିପୁଅ । ସେହି ପୁଅମାନଙ୍କ ମଧ୍ୟରେ ମୋର ବାପା ଥିଲେ ବୟସରେ ବଡ଼ । ଅନ୍ୟଦୁଇ ଦାଦା ହେଲେ ଗୋପୀନାଥ ଓ କାଶୀନାଥ । ପିଇସି ହେଲେ ଆଶାମଣି ଓ ନିଶାମଣି ।

ବାପା ସୋମନାଥ ଏବଂ ବୋଉ ଚିତ୍ରମାଳୀଙ୍କର ପ୍ରଥମ ସନ୍ତାନ ଝିଅଟିଏ ଅକାଳରେ ସେପୁରକୁ ବାହୁଡ଼ି ଯାଇଥିଲେ । ବହୁବର୍ଷ ପର୍ଯ୍ୟନ୍ତ କୌଣସି ସନ୍ତାନସନ୍ତତି ଆସିଲେ ନାହିଁ । ଅନେକ ପୂଜାବ୍ରତ ପାଳନ ପରେ ବୋଧହୁଏ ମୋର ଜନ୍ମ ହୁଏ । ପରିବାରରେ ଆନନ୍ଦ ଉଲ୍ଲାସ ସହିତ ଆଶଙ୍କା ମଧ୍ୟ ଲାଗିରହିଥାଏ । କେଉଁ ବିଶ୍ୱାସ ଅଛି ଯମ ଅଇଣ୍ଠାକୁ । ଏପରି ପିଲା ହେଲେ ଅପର୍ତ୍ତିଆଣି । ସେମାନଙ୍କ ପାଇଁ କୌଣସି ଉତ୍ସବ ପାଳନ କରାଯାଏ ନାହିଁ । ଭଲ ନାଁଟିଏ ମଧ୍ୟ ଦିଅହେବା ମନା । ତେଣୁ ଯମଦାଢ଼ରୁ ବଞ୍ଚାଇବା ପାଇଁ ଗୋଟିଏ ଅପରିଚ୍ଛନିଆ ନାଁ ଦିଆଗଲା ପଠାଣି ।

ସେକାଳର ପଲ୍ଲୀସଂସାରରେ ତାହାହିଁ ଥିଲା ଲୋକବିଶ୍ୱାସ । ଅସୁନ୍ଦର ନାଁ ଦେଲେ ଯମ ଦେବତା ଆଉ ପାଖ ପଶିବେ ନାହିଁ । ତେଣୁ ଅପର୍ତ୍ତିଆଣି ପିଲାଙ୍କର ନାଁ ଦିଆଯାଉଥିଲା ଅଇଁଠା, କାଙ୍ଗାଳୀ, ଅପର୍ତ୍ତି, ଭିକାରୀ, ଅରକ୍ଷିତ, ଗନ୍ଧିଆ, ହାଡ଼ି, ବାଉରୀ, କଣ୍ଟୁରୀ, ଫକୀର ଇତ୍ୟାଦି ଅନେକ କିଛି ।

ସେଇ ଯମ ଅଇଁଠା ପିଲାଟିକୁ ରକ୍ଷା କରିବା ପାଇଁ ନାନା ଉପାୟ ଖଂଜା ଯାଇଥିଲା । ପ୍ରଥମେ ଜଣେ ଗାଁ ହାଡ଼ିଆଣୀ ହାତକୁ ଟେକି ଦିଆଗଲା । ତେଣୁ ପିଲାଟିଦିନୁ ଅଚ୍ଛବ । ଯମ କେମିତି ଛୁଇଁବ ? ଗାଁ ସ୍କୁଲରେ ପାଠ ପଢ଼ିଲା ବୟସ ଯାଏ ସେହି ହାଡ଼ିଆଣୀ ବୁଢ଼ୀକୁ ଦାଣ୍ଡଦୁଆରେ ଦେଖିଛି । ମୋତେ ଦେଖିଲେ ''ମୋ ପୁଅସାଆନ୍ତ'' ବୋଲି କେତେ ଆଦରରେ ଡାକ ପକାଏ । ସାହି ପିଲାଏ, ସାଙ୍ଗସାଥୀ ହସି ଉଠନ୍ତି । ମୋର ମନ ବିଦ୍ରୋହ କରିଉଠେ । କ'ଣ ହେଲା ! ଛାର ହାଡ଼ିଆଣୀ ବୁଢ଼ୀ ମୋତେ ପୁଅ ବୋଲି ଡାକିବ ? ପୁଅମାନଙ୍କ ମେଳରେ କେତେ ଟାହିଟାପରା ଶୁଣିବାକୁ ମିଳେ । ମୋର ବାଁ କାନ ଫୋଡ଼ା ହୋଇ ଗୋଟିଏ ସୁନାର

ଫାସିଆ ପିନ୍ଧିଥାଏ । ପୁଅପିଲାମାନେ ଏପରି ପିନ୍ଧନ୍ତି ନାହିଁ । ସେଥିପାଇଁ ମଧ୍ୟ ଥଟା ରହସ୍ୟ ଲାଗି ରହିଥାଏ । ମାଇନର ସ୍କୁଲରେ ଭର୍ତ୍ତି ହେଲାଯାଏ ଫାସିଆ ପିନ୍ଧୁଥିଲି । ଘର ଲୋକଙ୍କର ତାଗିଦା ଯୋଗୁ କାଢ଼ିପାରୁ ନଥାଏ । ମାତ୍ର ମନକୁ ସବୁବେଳେ ନୀରବରେ ପଚାରି ବସେ । ମୋର ସାଙ୍ଗ ପୁଅପିଲାଏ କେହି ଫାସିଆ ଲଗାଉନାହାନ୍ତି । ମୁଁ କାହିଁକି ଲଗାଇବି ? ଯାହାହେଉ ମାଇନର ପଢ଼ିବାକୁ ଗଲାବେଳେ ଫାସିଆ କାଢ଼ି ଦିଆଗଲା । ପିଲାମାନଙ୍କର କଟାକ୍ଷରୁ ରକ୍ଷା ପାଇଲି ।

ମୁଣ୍ଡରେ ପ୍ରଚୁର ତେଲ ମାଲିସ ହୁଏ । କିନ୍ତୁ କୁଣ୍ଡାଇବା ମନା । ଅପର୍ତ୍ତିଆଣି ପିଲାକୁ ସଜବାଜ କ'ଣ ? ତେଣୁ କ୍ରମେ ମୁଣ୍ଡରେ ଦୁଇଟି ଜଟ ଓହଳିଥାଏ । ଗଲାଆଇଲା ପିଲାମାନେ ଜଟକୁ ଭିଡ଼ି ଆନନ୍ଦ ପାଆନ୍ତି ସିନା ମୋର ଲଜ୍ଜା ଅପମାନର ସୀମା ନଥାଏ । ତେଣୁ ପିଲାଦିନୁ ସାଙ୍ଗମେଳରୁ ଦୂରେଇ ରହିବାକୁ ଭଲପାଏ । ଆଜି ପରିଣତ ବୟସରେ ମଧ୍ୟ ଏହି ଏକାଟିଆପଣ ଆବୋରି ବସିଛି । ଜଟ ଦୁଇଟି ଯଚା ହୋଇଥିଲା ନୟାଗଡ଼ ଓଡ଼ଗାଁ ରଘୁନାଥଙ୍କୁ ଓ କଟକର ଧବଳେଶ୍ୱର ମହାଦେବଙ୍କୁ । ବନ୍ଧୁବାନ୍ଧବ ମେଳରେ ଜଟ ଦୁଇଟି ଏହି ଦୁଇଟି ପୀଠରେ ଉତ୍ସର୍ଗ ହେଲାବେଳେ ବଡ଼ ଉତ୍ସବର ଆୟୋଜନ ହୋଇଥିଲା ।

ସେହି ପିଲା ବୟସରେ ଏହି ଅପର୍ତ୍ତିଆଣି ପିଲାକୁ ପୁରୀ ସହରକୁ ନିଆଗଲା । ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ଆଗରେ ଅରୁଣଖମ୍ବ । ହଜାର ହଜାର ଯାତ୍ରୀଙ୍କର ଯିବା ଆସିବା ଲାଗି ରହିଥାଏ । ସେହି ବଡ଼ଦାଣ୍ଡରେ ଅନ୍ୟ ଭିକାରୀମାନଙ୍କ ମେଳରେ ତଳେ ଗୋଟିଏ ଲୁଗା ପାରିଦେଇ ମୋତେ ବସାଇ ଦିଆଗଲା । ଅପମାନିତ ହେଉଥାଏ ସିନା, ଗୁରୁଜନମାନଙ୍କ ଆଦେଶ ପାଳନ ବ୍ୟତୀତ ଆଉ ଉପାୟ କ'ଣ ଥାଏ । ପୁରୀ ସହରରେ ଆମର ଅନେକ ବନ୍ଧୁବାନ୍ଧବ । ସମସ୍ତେ ଖବର ପାଇ ଆସିଲେ ମୋତେ ଭିକ୍ଷା ଦେବାପାଇଁ । ଅଳ୍ପ ସମୟ ମଧ୍ୟରେ ମୋ ପାରିଆ ଲୁଗାରେ ଚାଉଳ, ପଇସା ଭର୍ତ୍ତି ହୋଇଗଲା । ପାଖରେ ବସିଥିବା ଅନ୍ୟ ଭିକାରୀମାନେ କାବା ହୋଇ ଅନାଇ ଥାଆନ୍ତି । ପିଲାଟିତ ଥିଲାଘର ପୁଅ ପରି ଦେଖାଯାଉଛି । ବଡ଼ଦାଣ୍ଡରେ ଆମ ସହିତ ବସି ଭିକ ମାଗୁଛି କାହିଁକି ? ଗଲାଆଇଲା ଭକ୍ତମାନେ ମଧ୍ୟ ପିଲାଟିଏ ବୋଲି ଦୟାକରି ପଇସା ପକାଇ ଯାଉଥାଆନ୍ତି । କେତେ ସମୟ ପରେ ଭିକ୍ଷା ମିଳିଥିବା ସମସ୍ତ ଚାଉଳ ଓ ପଇସା ଜଣେ ବ୍ରାହ୍ମଣକୁ ଦାନ କରିଦିଆଗଲା । ବ୍ରାହ୍ମଣ ହସିହସି ଆଶୀର୍ବାଦ କରି ଚାଲିଗଲେ ।

ଏତିକିରେ ଦୁଃଖ ସରିଲା ନାହିଁ । ବାଇଶିପାହାଚରେ ମୋତେ ଗଡ଼ିବା ପାଇଁ ଆଦେଶ ହେଲା । ଆଖିରୁ ଲୁହ ବୋହିଯାଉଥାଏ । ତଥାପି ମୁରବୀମାନଙ୍କର ଆଦେଶ ପାଳନ କରିବାକୁ ହେବ । କଳ୍ପନା କରନ୍ତୁ, ବାଇଶିଟିଯାକ ପାହାଚକୁ ଗଡ଼ିଗଡ଼ି ତଳକୁ ଆସିବା କେତେ କଷ୍ଟକର ହୋଇନଥିବ ? ଶେଷରେ ଗରୁଡ଼ଖମ୍ବ ନିକଟରେ ଶ୍ରୀଜଗନ୍ନାଥଙ୍କୁ ଦଣ୍ଡପ୍ରଣାମ କରିବାକୁ କୁହାଗଲା । ବନ୍ଧୁବାନ୍ଧବ ଏକାଠି ହୋଇ ମହାପ୍ରସାଦ ସେବନ କରି କଲ୍ୟାଣ କରି ଫେରିଗଲେ । ଏଣିକି ଆଉ ଯମଦେବତା ତରତର ହୋଇ ନେବ ନାହିଁ ବୋଲି ପରିବାର ଲୋକେ ଆଶ୍ୱସ୍ତ ହୋଇଥିବେ ।

ମୋର ଜେଜେ ଦୁଇଭାଇ । ବଡ଼ ଜେଜେ ଗୀର୍ଦ୍ଧାରି ପଟ୍ଟନାୟକ ଖୁବ୍ ଧନୀ ଥିଲେ । ପୁରୀ ସହରରେ ତାଙ୍କର କୋଠାଘର । ଗାଁରେ ପ୍ରଚୁର ଜମିବାଡ଼ି । ସେ ରାଧାକୃଷ୍ଣ ମନ୍ଦିର ପ୍ରତିଷ୍ଠା କରି ପ୍ରଚୁର ଜମି ସେବାପୂଜା ପାଇଁ ଖଞ୍ଜି ଯାଇଛନ୍ତି । ସେବକମାନଙ୍କ ପାଇଁ ଛୋଟ ସାହି ବସ୍ତି । ତାଙ୍କ ପ୍ରତାପରେ ଗାଁ ଦାଣ୍ଡ ଥରହର ହେଉଥାଏ । କିନ୍ତୁ ସେ ଥିଲେ ସନ୍ତାନହୀନ । ଉତ୍ତରାଧିକାରୀ ଜଣେ ଆସିବାପାଇଁ ସେ ଏକାଧିକ ବିବାହ କରିଥିଲେ । ମାତ୍ର କନିଷ୍ଠ ଭାଇ ମୋର ଜେଜେ ବାଉରୀବନ୍ଧୁ ପଟ୍ଟନାୟକ ଦାୟରେ ପଡ଼ି ତାଙ୍କର ବହୁତ ଜମିବାଡ଼ି ବିକି ଦେଇଥିଲେ । ଏହି ଗରିବ ଭାଇକୁ ସ୍ୱଚ୍ଛଳ ବଡ଼ଭାଇ ପାଖରେ ପୂରାଉ ନଥିଲେ ବୋଲି ଶୁଣିଛି । ବଡ଼ଭାଇ ଥିଲେ ମହାଜନ । ଗରିବ ପ୍ରଜାମାନଙ୍କୁ ଅତ୍ୟାଚାର କରିବା ଥିଲା ତାଙ୍କର ବଡ଼ପଣ ।

ମାତ୍ର କନିଷ୍ଠ ବାଉରୀବନ୍ଧୁ ଗରିବ ହେଲେ ହେଁ ଥିଲେ ଧର୍ମପରାୟଣ। ଓ ପ୍ରେମୀ ମଣିଷଟିଏ । ମୁଁ ଦଶମାସର ଶିଶୁଟିଏ, ସେ ସବୁଦିନ ପାଇଁ ମୁହଁ ଲୁଚାଇଦେଲେ । ଆଗରୁ ତାଙ୍କର ସ୍ତ୍ରୀ ଅହ୍ୟ ତେଙ୍କୁରା ବଜାଇ ଚାଲିଯାଇଥିଲେ । ତେଣୁ ଜେଜେ ଓ ଗୋସେଇଁମାଆଙ୍କର କୋଳରେ ଗେହ୍ଲା ହେବାର ସୌଭାଗ୍ୟ ପାଇପାରି ନାହିଁ । ଅପର୍ତ୍ତିଆଣି ପିଲାର ଭାଗ୍ୟ କ'ଣ ଏଇଆ ? ତେବେ ଜେଜେଙ୍କ ସଂପର୍କରେ ସାହିର ବୁଢ଼ାଲୋକମାନଙ୍କଠାରୁ ଯାହା ପରେ ଶୁଣିଲି, ଆନନ୍ଦରେ ମୋର ଛାତି ଫୁଲିଉଠେ ।

ଜେଜେ ଘରୁ ବାହାରିଲେ ଖାଲି ହାତରେ ଯାଆନ୍ତି ନାହିଁ । ଯେଉଁଦିନେ ଯେଉଁ ଫଳ ମିଳେ, ସେଥିରୁ ଦୁଇଚାରିଟା ପକେଟରେ ପଡ଼ିଥାଏ । ଗାଁ ଦାଣ୍ଡରେ ଛୋଟଛୋଟ ପିଲାମାନେ ବୁଢ଼ାଙ୍କୁ ଘେରି ଯାଉଥିବେ । ସାଇତିଥିବା ଫଳକୁ ଛୁରୀରେ ଖଣ୍ଡଖଣ୍ଡ କରି ପିଲାମାନଙ୍କୁ ଧରାଇଦେବାରେ ତାଙ୍କର ଆନନ୍ଦ କହିଲେ ନସରେ । ଏହି ପ୍ରକାର ବାଲ୍ୟଲୀଳା ଲାଗି ରହିଥାଏ ବର୍ଷସାରା । କେବଳ ଏତିକି ନୁହେଁ, ରାସ୍ତାକଡ଼ରୁ ଛନଛନ କଅଁଳିଆ ଘାସ ଉପାଡ଼ି ହାତରେ ଧରିଥିବେ । ଆଗରୁ ଜାଣିଲାପରି ଗାଁ ଦାଣ୍ଡରେ ବାଛୁରୀମାନେ ତାଙ୍କର ବାଟ ଓଗାଳିବେ । ବୁଢ଼ାଙ୍କ ହାତରୁ ଘାସ ଖାଇ ଲାଙ୍ଗୁଡ଼ ହଲାଇ ସେମାନେ ଚାଲିଗଲାବେଳେ ଜେଜେଙ୍କର ଆନନ୍ଦ ଦେଖେ କିଏ ? ତାଙ୍କର ପରଆପଣା ଭାବ ନଥିଲା । ସାହିର ପିଲାମାନେ ତାଙ୍କର ପଥର ଚାନ୍ଦିନୀରେ ହୋହଲ୍ଲା କଲେ ସେ ସୁଖ ପାଉଥିଲେ ।

ଗାଁରେ କେବଳ ଲୋଅର ପ୍ରାଇମେରୀ ସ୍କୁଲଟିଏ ଥିଲା । ସେକାଳରେ ଶିକ୍ଷାନୁଷ୍ଠାନ ଥିଲା ସ୍ୱପ୍ନପ୍ରାୟ । ତେଣୁ ଜେଜେଙ୍କର ଶିକ୍ଷା ହୁଏତ ସେହି ଚାହାଳୀ ପାଠ ଓ ଲୋଅର ପ୍ରାଇମେରୀ ସ୍କୁଲ ପର୍ଯ୍ୟନ୍ତ ହୋଇଥିବ । ମାତ୍ର ଯାବଜ୍ଜୀବନ ସେ ଶିକ୍ଷାପ୍ରେମୀ ଥିଲେ । ଘରେ ଅନେକ ତାଳପତ୍ର ପୋଥିରେ ପୁରାଣ ଥିଲା ସାଇତା ହୋଇ । ସେ ନିଜେ ନଦୀରେ ଗାଧୋଇ ଆସି ବାରିସିକାଠରେ ଧୂନି ଲଗାଉଥିଲେ । ସେଥିରେ ଗୁଆଘିଅ ଅଳ୍ପ ହେଉ ପଛକେ ଆହୂତି ଦେଇ ବୋଲୁଥିଲେ ଶ୍ଳୋକଟିଏ-

''ଓଁ କାଣ୍ଡାତ୍ କାଣ୍ଡାତ୍ ପରୋହନ୍ତୀ ପରୁଷ ପରୁଷ ସ୍ୱରି ।
ଏବା ନୋ ଦୂର୍ବେ ପ୍ରତନୁନଃ ସହସ୍ରେଣ ଶତେନ ଚ ।''

ଏହାର ଶବ୍ଦାର୍ଥ ହେଲା- କାଣ୍ଡାତ୍ କାଣ୍ଡାତ୍- ସମସ୍ତ ଅବୟବରୁ; ପ୍ରରୋହନ୍ତୀ- ଅତ୍ୟନ୍ତ ବିସ୍ତୃତ ହୋଇ; ପରୁଷ ପରୁଷ- ସମସ୍ତ ଗଣ୍ଠିରୁ; ସରି- ସବୁଆଡୁ; ଏବା- ନିଶ୍ଚୟ; ଦୁର୍ବେ-ଦୁବଘାସ; ପ୍ରତନୁ - ବିସ୍ତାର କରାନ୍ତୁ; ନଃ-ଆମ୍ଭମାନଙ୍କୁ (ପୁତ୍ର, ପୌତ୍ର ଓ ଐଶ୍ୱର୍ଯ୍ୟାଦି); ସହସ୍ରେଣ ଶତେନଚ- ବହୁ ସଂଖ୍ୟାରେ ଓ ବହୁପ୍ରକାରେ ।

ଏହି ମନ୍ତ୍ରର ମର୍ମାର୍ଥ ହେଲା- ଦୁବଘାସ ଯେଉଁପରି ତାହାର ସମସ୍ତ ଅବୟବ ଓ ଗଣ୍ଠିରାଜିରୁ ବିଶେଷ ଭାବରେ ବର୍ଦ୍ଧିତ ହୋଇ ବିସ୍ତୃତି ଲାଭ କରେ ତୁମେ ସେହିପରି ଆମ୍ଭମାନଙ୍କୁ ପୁତ୍ର, ପୌତ୍ର ଓ ଐଶ୍ୱର୍ଯ୍ୟ ଦ୍ୱାରା ବିସ୍ତାର କରାଅ । ଜେଜେ ତାଙ୍କର ଉତ୍ତରପୁରୁଷ ପାଇଁ ପ୍ରତ୍ୟେକ ଦିନ ସ୍ନାନ କରିସାରିବାପରେ ହୋମ ଅଗ୍ନିରେ ଆହୂତି ଦେଇ ଏହି ପ୍ରକାର ପ୍ରାର୍ଥନା କରୁଥିଲେ । ନିଜ ଗାଁ ମୁଣ୍ଡରେ ଛୋଟ ପାହାଡ଼ଟିଏ ବିଦ୍ୟମାନ । ତହିଁରେ ରହିଛି ବଡ଼ବଡ଼ ଦୁଇଟି ଗୁମ୍ଫା ଓ ନିତ୍ୟଜଳପୂର୍ଣ୍ଣ ବାମ୍ଫିଟିଏ । ପରିବ୍ରାଜକ ସାଧୁସନ୍ଥମାନେ ଏହି ଗୁମ୍ଫାରେ କିଛିକାଳ ଅବସ୍ଥାନ କରି ପୁନର୍ବାର ପର୍ଯ୍ୟଟନରେ ବାହାରିଯାଉଥିଲେ । ସାଧୁଜଣେ ଅବସ୍ଥାନ କଲେ ଜେଜେଙ୍କର ଆନନ୍ଦ କହିଲେ ନସରେ । ସେ ନିଜର ଶକ୍ତିଅନୁସାରେ ସାଧୁଙ୍କ ପାଇଁ ଭିକ୍ଷା ଅର୍ପଣ କରି ତାଙ୍କର ସଖ୍ୟଲାଭ କରୁଥିଲେ ।

ସଂଧ୍ୟା ହେଲେ ଦାଣ୍ଡଦୁଆର ପଥର ଚାନ୍ଦିନୀରେ ପୋଲାଙ୍ଗ ଦୀପ ଆଲୁଅରେ ପୁରାଣପଣ୍ଡା ପୋଥି ବୋଲନ୍ତି । ସାହିର ବୟସ୍କ ଲୋକମାନେ ଜେଜେଙ୍କୁ ଘେରି ବସନ୍ତି ଭାଗବତ, ରାମାୟଣ ଶୁଣିବା ପାଇଁ । ଜେଜେଙ୍କ ଅମଳ କଥା ତ ଶୁଣିବା କଥା, ମାତ୍ର ମୋର ପିଲାଦିନ ପର୍ଯ୍ୟନ୍ତ ଏହି ଧାରା ଗଡ଼ି ଆସିଥିଲା । ସଂଧ୍ୟା ହେଲେ ସାହିର ଲୋକମାନେ ଚାଷକାର୍ଯ୍ୟରୁ ଫେରି ଚାନ୍ଦିନୀ ଅଥବା ନିଜ ପିଣ୍ଡାରେ ବିଶ୍ରାମ କରନ୍ତି । ପୁରାଣ ପାଠକ ଶଙ୍କର ମହାପାତ୍ର ସୁଲଳିତ କଣ୍ଠରେ ରାମାୟଣ ପୋଥି ବୋଲି ଲୋକମାନଙ୍କୁ ମୁଗ୍ଧ କରିଦିଅନ୍ତି ।

ରାମାୟଣ ପାରାୟଣ ଆରମ୍ଭରୁ ପ୍ରତ୍ୟେକଦିନ ଶଙ୍କର ଭାଇନା ବୋଲିବାର ଶୁଣିଛି-

''ଆଦ୍ୟେ ରାମ ତପୋବନଂ ପ୍ରଗମନଂ ହତ୍ୱା ମୃଗଂ କାଞ୍ଚନମ୍
ବୈଦେହୀ ହରଣଂ ଜଟାୟୁ ମରଣଂ ସୁଗ୍ରୀବ ସମ୍ଭାଷଣମ୍
ବାଳୀନିଗ୍ରହଣଂ ସମୁଦ୍ରତରଣଂ ଲଙ୍କାପୁରୀ ଦହନମ୍
ପଶ୍ଚାଦ୍ରାବଣ କୁମ୍ଭକର୍ଣ୍ଣନିଧନଂ ଏତଦ୍ଧି ରାମାୟଣମ୍ ।''

ଭାଇନା ପୁନଶ୍ଚ ବୋଲୁଥିଲେ-

ରାମ ଲକ୍ଷ୍ମଣ ପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରଂ
କାକୁସ୍ଥଂ କରୁଣାକରଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକଂ
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ
ଶ୍ୟାମଳଂ ଶାନ୍ତମୂର୍ତ୍ତିଂ

ବନ୍ଦେ ଲୋକାଭିରାମଂ ରଘୁକୁଳତିଳକଂ

ରାଘବଂ ରାବଣାରିମ୍ ।''

ଏହି ଶ୍ଳୋକ ଦୁଇଟି ବୋଲି ସାରିଲା ପରେ ପୋଥିପଢ଼ା ଆରମ୍ଭ ହେଉଥିଲା । ଶ୍ଲୋକର ଅର୍ଥ କିଛି ବୁଝି ନପାରିଲେ ସୁଦ୍ଧା ଶୁଣିଶୁଣି ସେହି ପିଲା ବୟସରେ ଏହା ମନେ ରହିଯାଇଥିଲା । ପୁରାଣ ପଢ଼ା ଶେଷ ହେଲା ପରେ ଭାଇନା ବୋଲୁଥିଲେ-

''ଭୀମଶ୍ୟାପି ରଣେଭଙ୍ଗୋ ମୁନିରପି ମତିଭ୍ରମ

ଯଦି ଶୁଦ୍ଧ ଅଶୁଦ୍ଧ ବା ମମଦୋଷ ନ ଦିୟତେ ।''

ତା'ପରେ ପୋଥିରେ ଡୋରି ବନ୍ଧା ହେଉଥିଲା । ଶ୍ରୋତାମାନେ ଯେ ଯାହା ଘରକୁ ବାହୁଡ଼ିଯାଉଥିଲେ । ଏବେ ଅନେକବର୍ଷ ହେଲା ଏପରି ଦୃଶ୍ୟ ଗାଁ ଦାଣ୍ଡରେ ଦେଖିବାକୁ ମିଳୁନାହିଁ । ପୁରାଣ ପାରାୟଣର ଯୁଗ ବିଦାୟ ନେଇଯାଇଛି ।

ପ୍ରତ୍ୟହ ସକାଳ ଓ ସଂଜରେ ଜେଜେ ଗ୍ରାମର ଆଦ୍ୟାଶକ୍ତି ଭଗବତୀଠାକୁରାଣୀଙ୍କୁ ଦର୍ଶନ ନ କରି ଜଳଗ୍ରହଣ କରୁନଥିଲେ । ଏସବୁ ମୋର ଶୁଣିବା କଥା । ମାତ୍ର ଆମର କୁଟୁମ୍ବରେ ଆଉଜଣେ ଜେଜେ ଥିଲେ ସାଧୁଚରଣ ପଟ୍ଟନାୟକ । ମୋର ମାଟ୍ରିକ ପଢ଼ା ସରିଲା ପର୍ଯ୍ୟନ୍ତ ସେ ବଞ୍ଚିଥିଲେ । ସେ ଥିଲେ ଏକାଧାରରେ ଜଣେ କବି, କବିରାଜ ଓ ମନ୍ତ୍ରସାଧକ । ମୋ ପିଲାଦିନେ ଗାଁର ଲଗାଲଗି ବିସ୍ତୃତ ଜଙ୍ଗଲ ଅଞ୍ଚଳ ଥିଲା । ଚାଷୀମାନେ ଅନେକ ସମୟରେ ଜଙ୍ଗଲବାଟରେ ସଂଧ୍ୟାପରେ ଫେରିଲେ ବା ଠଆ ବିଲୁଆ ଆକ୍ରମଣରେ କ୍ଷତବିକ୍ଷତ ହେଉଥିଲେ । ସେମାନେ କିଛି ବିଲମାଟି ଓ ନଡ଼ିଆଟିଏ ଧରି ଆସୁଥିଲେ ଜେଜେଙ୍କ ପାଖକୁ । ନଡ଼ିଆ ପାଣିରେ ମାଟିକୁ ଓଦା କରି କ୍ଷତ ସ୍ଥାନରେ ମନ୍ତ୍ରପାଠ କରି ଘଷୁଥିବାର ଅନେକ ଦୃଶ୍ୟ ଦେଖିଛି । ରୋଗୀଏ ଆରୋଗ୍ୟ ହୋଇ ଖୁସୀ ମନରେ ବିଦାୟ ନେଉଥିଲେ । ଡାକ୍ତରୀ ଚିକିତ୍ସା ଥିଲା ସ୍ୱପ୍ନପ୍ରାୟ । ଜେଜେ ଥିଲେ ପାଞ୍ଚଦଶଖଣ୍ଡି ଗାଁର ସାହାଭରସା । ଅନେକ ଲୋକଙ୍କୁ ଦୀର୍ଘଦିନ ଜ୍ୱର ଲାଗିରହିଥାଏ । ସେମାନେ ଆସନ୍ତି ଜେଜେଙ୍କ ସାହାଯ୍ୟ ପାଇଁ । ସେ ମନ୍ତ୍ରଫୁଙ୍କି ରୋଗୀକୁ ଝାଡ଼ି ଦିଅନ୍ତି ଏବଂ ତାଳପତ୍ରରେ ମନ୍ତ୍ରଟିଏ ଲେଖି ତାର ବାହୁରେ ବାନ୍ଧି ଦିଅନ୍ତି । ରୋଗୀ ଆରୋଗ୍ୟ ଲାଭ କରେ ।

କବି ହିସାବରେ ସେ ଥିଲେ ସେ ଅଞ୍ଚଳରେ ସୁପରିଚିତ । ସମ୍ପୂର୍ଣ୍ଣ ଭଞ୍ଜୀୟ ଶୈଳୀରେ ରାଶିରାଶି କବିତା ସେ ଲେଖିଚାଲିଥିଲେ ଲୁହା ଲେଖନୀ ଓ ତାଳପତ୍ର ପୋଥିରେ । କାଳିକଲମ ଓ କାଗଜର ବ୍ୟବହାର ବିଶେଷ ନଥିଲା । ବିଭିନ୍ନ ଅଞ୍ଚଳର ପାଲାକାରମାନେ ତାଙ୍କର ଗୀତ ନେଇ ବୋଲିଲାବେଳେ ଶେଷପଦଟି ଗାଇ ଦିଅନ୍ତି- ''କହଇ ସାଧୁଚରଣ ।'' ସେତେବେଳେ ମନେପଡ଼ିଯାଏ-''ଆମ ଜେଜେଙ୍କ ଗୀତ ।'' ପ୍ରାଚୀନ ଓଡ଼ିଆ ପୁରାଣ ଓ କାବ୍ୟ ସାହିତ୍ୟରେ ତାଙ୍କର ଥିଲା ଅଗାଧ ପାଣ୍ଡିତ୍ୟ । ମୁଁ ବୁଝେ କି ନ ବୁଝେ, ଗୀତଟିଏ ଲେଖି ସାରି ମୋତେ ପାଖରେ ବସାଇ ସ୍ୱର ଧରି ବୋଲୁଥିଲେ । ପଲ୍ଲୀସଂସାରରେ କବିଙ୍କର ଥିଲା ଅଶେଷ ଖାତିରି । ଜେଜେଙ୍କର ମନ୍ତ୍ରସିଦ୍ଧି ବିଷୟରେ ଅନେକ କାହାଣୀ ଘରେ ଓ ବାହାରେ ପ୍ରଚଳିତ ଥାଏ ।

ବନ୍ଧୁବାନ୍ଧବ ଆସିଲେ ସେ ଅଟ୍ଟାରେ ସେମାନଙ୍କ ପିଡାରେ ପିଢ଼ା ଲଗାଇ ଦେଉଥିଲେ । ବିଚରା କୁଣିଆ ଲୋକଟି ଲାଜରେ ସଢ଼ି ଯାଉଥିଲା । ଗାଁ କୁ ଯେତେ ପାଲାକାର ଆସୁଥିଲେ ପ୍ରଥମେ କବିଙ୍କୁ ସମ୍ମାନ ଜଣାଇ ଅନ୍ୟ ଦୁଆରେ ପାଲା ପରିବେଷଣ କରିବା ଥିଲା ଏକ ବିଧି । ଯଦି କେହି ଏହାର ଅନ୍ୟଥା ଆଚରଣ କରେ, ମାନ୍ତ୍ରିକ ସାଧୁଚରଣ ମନ୍ତପାଠ କରି ତାର ସ୍ୱର ବନ୍ଦ କରି ଦେଉଥିଲେ । ପରେ ସେ ଅନୁତପ୍ତ ହୋଇ କ୍ଷମାପ୍ରାର୍ଥନା କଲେ ରକ୍ଷା ପାଉଥିଲା ।

ଜେଜେ ଓ ମା' ଥିଲେ ଅତିଶୟ ପୁରାଣପ୍ରିୟ । ସେହି ପିଲାବୟସରେ ମୋତେ ପାଖରେ ବସାଇ ପୁରାଣ ଶୁଣୁଥିଲେ । ରାମାୟଣ, ଭାଗବତ ଓ ନାନା ପୁରାଣ ସେହିଦିନୁ ପଢ଼ିବାର ସୁଯୋଗ ପାଇଥିଲି । ମହାଭାରତ ବିଷୟରେ ଏକ କୁସଂସ୍କାର ରହିଥିଲା । ବ୍ରାହ୍ମଣଙ୍କ ବ୍ୟତୀତ ତାକୁ ଅନ୍ୟମାନେ ପାଠ କରିବା ମନା । କାଳେ ପରିବାରରେ କଳି ଲାଗିବ ।

ପିଲାଦିନୁ ଦେଖି ଆସିଛି, ବାପା ଦାଦା ପୁରୀରେ ରହୁଥିଲେ । ବାପା ଥିଲେ ଭାରତ ପ୍ରସିଦ୍ଧ ଏମାର ମଠ ଜମିଦାରୀର ଲ' ଏଜେଣ୍ଟ । ବଡ଼ ଦାଦା ମଧ ଥିଲେ ବିଖ୍ୟାତ ଜମିଦାର ଲୋକନାଥ ମିଶ୍ରଙ୍କର ଲ' ଏଜେଣ୍ଟ । ପୁରୀରେ ଆମର ନିଜର ଘର ଥିଲେ ମଧ ଅନେକଦିନ ପର୍ଯ୍ୟନ୍ତ ଜମିବାଡ଼ି ବୁଝିବା ପାଇଁ ବୋଉ ଓ (ପିଇସି) ଆଶାଅପା ଗାଁରେ ରହୁଥିଲେ । ଆଶାଅପା ବାଲ୍ୟବିଧବା ଏବଂ ବାପାଙ୍କର ବଡ଼ଭଉଣୀ । ତାର ସ୍ନେହ, ଶ୍ରଦ୍ଧା ଓ ବ୍ୟକ୍ତିତ୍ୱ ପାଇଁ ସେ ଥିଲା ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର ଅପା । ଆମଘରର ପରିଚୟ ଥିଲା ଆଶାଅପାଙ୍କ ଘର । ଅକାଳେ ସକାଳେ ଅଭାବୀ ଚାଷୀ ଭାଇମାନଙ୍କୁ ସାହାଯ୍ୟ କରିବା ଥିଲା ତାର ଧର୍ମ । ସେଦିନର ବୁଝାମଣା ଓ ଭାଇଚାରା କ୍ରମେ ଦୁର୍ଲ୍ଲଭ ହୋଇପଡ଼ିଛି । ଆଜି ଚାରିଆଡ଼େ ସ୍ୱାର୍ଥର ଖେଳ, ବିଷୟଭୋଗର ଇନ୍ଦ୍ରଜାଲ ।

ସେକାଳର ଝିଅମାନେ ସ୍କୁଲକୁ ଯାଉ ନଥିଲେ । ମୋର ବୋଉ ରଣପୁର ଗଡ଼ଜାତର ଏକ ରକ୍ଷଣଶୀଳ ଅଭିଜାତ ପରିବାରର ଝିଅ । ଘରେ ଘରେ ଏହି ବାଳିକା ବୟସରୁ ସେ ପ୍ରାଚୀନ ଓଡ଼ିଆ କାବ୍ୟ, ପୁରାଣ ପ୍ରଭୃତି ଚର୍ଚ୍ଚା କରିବାର ସୁଯୋଗ ପାଇଥିଲା । ଆମ ଘରକୁ ବୋହୂ ହୋଇ ଆସିଲାବେଳେ କିଛି କଂସାବାସନ ଓ ସୁନାରୂପା ଅଳଙ୍କାର ନିଶ୍ଚୟ ଆଣିଥିବ । ମାତ୍ର ଏକ ପେଟରାଭର୍ତ୍ତି ବହି ଆଣିଥିଲା । ଛପା ହୋଇଥିବା ପୁରାଣ ଓ କାବ୍ୟ । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ଅଳ୍ପ ପାଠୁଆ ହୋଇମଧ ଗୌରୀଶଙ୍କର ରାୟଙ୍କ ସଂପାଦିତ ବିଦଗ୍ଧ ଚିନ୍ତାମଣି ଓ ଅନ୍ୟାନ୍ୟ ଭଞ୍ଜୀୟ କାବ୍ୟ, ବଙ୍ଗଳା ସାହିତ୍ୟର କୃତ୍ତିବାସଙ୍କ ରାମାୟଣ ପ୍ରଭୃତି ଶାଶୁଘରେ ତାର ଥିଲା ଆଜୀବନ ସହଚର । ବୋଉ ପାଖରେ ବସି କୃତ୍ତିବାସଙ୍କ ରାମାୟଣ ଶୁଣୁଶୁଣୁ ମୋର ପିଲାଦିନରୁ ବଙ୍ଗଳା ପଢ଼ିବା ଅଭ୍ୟାସ ହୋଇଯାଇଥିଲା । ପରିଣତ ବୟସରେ ସୁଦ୍ଧା ଅନପଢ଼ ବୋଉର ପଢ଼ିବା ଅଭ୍ୟାସ ଆଦୌ ଛାଡ଼ି ନଥିଲା ।

ଆମ ସାହିରେ ମୁଁ ପ୍ରଥମେ ମାଟ୍ରିକ ପାସ୍ କରିଥିଲି । ଆମ ତିନୋଟି ପରିବାରକୁ ବାଦ ଦେଲେ ସାହିର ସମସ୍ତେ ଥିଲେ ନିରକ୍ଷର ଚାଷୀ । ଅନେକ ଚାଷୀପୁଅ ସୁଦୂର ରେଙ୍ଗୁନ ସହରକୁ ଯାଉଥିଲେ ପେଟପୋଷିବା ପାଇଁ । ସେମାନଙ୍କ ପାଖରୁ ଚିଠିଟିଏ ଆସିଲେ ବୁଢ଼ାବୁଢ଼ୀଏ

ମୋତେ ଡାକିନିଅନ୍ତି ପୁଅ ପୁତୁରାଙ୍କର ଚିଠି ପାଠ କରିବା ପାଇଁ । ମୋରି ହାତରେ ସେମାନଙ୍କ ପାଖକୁ ଦୁଃଖସୁଖର ଚିଠି ଲେଖା ହୁଏ । କେହି ଟଙ୍କା ପଠାଇବାକୁ ଇଚ୍ଛା କଲେ ମୋତେ ଲୋଡ଼ାହୁଏ ମନିଅର୍ଡ଼ର ଫର୍ମ ପୂରଣ କରିଦେବା ପାଇଁ । ସୁଖର କଥା ଆଜିକାଲି ଏପରି ଅନ୍ଧକାର ଆଉ ନାହିଁ । ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ସହିତ ଶିକ୍ଷାର ପ୍ରସାର ଲାଗି ରହିଛି ।

ସାହିରେ ଖୁଦୁରୁକୁଣୀ ଓଷା, ବୁଧେଇ ଓଷା, ମାଣଓଷା ପ୍ରଭୃତି ପାଳନ କରାଯାଏ । ପାଞ୍ଚ ସାତ ଘରର ବୋହୂ ଝିଆଷୁଣି ଏକାଠି ହୁଅନ୍ତି ଓଷାର ଭୋଗଡାଲା ଧରି ଜଣକର ଦାଣ୍ଡଘରେ । ପୂଜାସ୍ଥଳୀକୁ ନାନା ଫୁଲରେ ସଜାଇ ଦିଆଯାଏ । ମୋତେ ଡକରା ହୁଏ ଓଷାମାନଙ୍କର ଗୀତ ବୋଲିବାପାଇଁ । ସେହି ନିରକ୍ଷରା ମହିଳାମାନେ କେତେ ନିଷ୍ଠାର ସହିତ ବ୍ରତ କଥା ଶୁଣିବା ଅବସରରେ ମଝେ ମଝେ ହୁଳହୁଳି ଦେଉଥାଆନ୍ତି । ପୂଜାଶେଷରେ କେତେ ସ୍ନେହରେ ଅଜାଡ଼ି ଦିଅନ୍ତି ମୋ ଅଣ୍ଟିରେ ଭୋଗ ହୋଇଥିବା ଖଇ ଉଖୁଡ଼ା । ଗଡ଼ ଜିଣିଲାପରି ଅଣ୍ଟିଭର୍ତ୍ତି ଭୋଗ ଉଖୁଡ଼ା ଧରି ଘରକୁ ଦଉଡ଼ି ଆସେ । ସାଙ୍ଗ ପିଲାମାନେ ଏକାଠି ବସି ଭୋଗ ଉଖୁଡ଼ା ଖାଇ ମଉଜ କରୁ ।

ବର୍ଷତମାମ ଘର ମାନଙ୍କରେ ବ୍ରତ ଉପବାସ ଲାଗି ରହିଥାଏ । ଏକାଦଶୀ, କାର୍ତ୍ତିକ, ଶିବ ଚତୁର୍ଦ୍ଦଶୀ, ସୋମନାଥ ବ୍ରତ, ଅନନ୍ତ ବ୍ରତ, ମହାଲକ୍ଷ୍ମୀବ୍ରତ, ମଙ୍ଗଳବାର ଓଷା, ରବିନାରାୟଣ ବ୍ରତ, ଏଇମିତି କେତେ କ'ଣ । ବ୍ରତ ଉପବାସ ଆଳରେ ଏକପ୍ରକାର ଧର୍ମବିଶ୍ୱାସ ଓ ଆଧ୍ୟାତ୍ମିକ ବାତାବରଣ ପରିବାରକୁ ଆଚ୍ଛନ୍ନ କରି ରଖିଥାଏ । ଆଜିକାଲିର କର୍ମଜୀବୀ ପାଠୋଇ ଝିଅ ବୋହୂମାନେ କ୍ରମଶଃ ଏହି ଧାରାରୁ ବିଚ୍ଛିନ୍ନ ହୋଇଯାଉଛନ୍ତି । ବୈଷୟିକ ଐଶ୍ୱର୍ଯ୍ୟର ଆକର୍ଷଣ ହୋଇଛି ସମସ୍ତଙ୍କର ଜପାମାଳି ।

ପଲ୍ଲୀ ସଂସାରରେ ଘରେ ଘରେ ତୁଳସୀଚଉରା ଓ ରୋଷାଇ ଘରେ ଐଶାନ କୋଣରେ ବଡ଼ବଡ଼ିଆ ଠାକୁର । ସକାଳେ ସଞ୍ଜରେ ଗ୍ରାମବଧୂମାନେ ତୁଳସୀମୂଳରେ ଓ ବଡ଼ବଡ଼ିଆଙ୍କ ପାଖରେ ପୂଜା କରିସାରି ଘରକରଣାରେ ମନ ଦିଅନ୍ତି । ମାତ୍ର ସହରର କଲୋନୀ ଜୀବନରେ ତୁଳସୀଗଛଟିଏ ଥାଇପାରେ, ମାତ୍ର ବଡ଼ବଡ଼ିଆ ଓ ମାଣପେଡ଼ିର ଆଉ ସ୍ଥାନ ନାହିଁ ।

ବୈଶାଖ ମାସର ଉଦୁଉଦିଆ ଦ୍ୱିପ୍ରହର ଖରା । ନଚେତ କାର୍ତ୍ତିକମାସର ଖରାବେଳ । ଗାଁ ଦାଣ୍ଡରେ ତାଳପତ୍ର ଛତାଟିଏ ଧରି ଚକୁଳିଆପଣ୍ଡାଙ୍କର ଆବିର୍ଭାବ ହୁଏ । ସେମାନେ କାହାରି ଦୁଆରେ ହାତ ପତାଇବେ ନାହିଁ । ଦାଣ୍ଡେ ଦାଣ୍ଡେ ଗୀତ ବୋଲି ଯାଉଥିବେ । ଘର ଭିତରୁ ବୋହୂମାନେ ଗୀତ ଶୁଣିଲେ ଭିକ୍ଷାଧରି ପହଞ୍ଚିଯିବେ । ସାହିବସ୍ତିର ଛୋଟଛୋଟ ପିଲାମାନେ ଚକୁଳିଆପଣ୍ଡା ଗୀତ ଶୁଣିବା ପାଇଁ ଦାଣ୍ଡପିଣ୍ଡାରେ ଧାଡ଼ିବାନ୍ଧି ଠିଆ ହୋଇଥିବେ । ପଣ୍ଡାଏ ଚାଲୁଚାଲୁ ବଡ଼ପାଟିରେ ବୋଲୁଥିବେ–

"ଦାଣ୍ଡରେ ଯାଉଛି ନନା ଆଜି ଏକାଦଶୀ
ଯାହା ଦାନ ଦେବା କଥା ଦିଅ ହସିହସି ।
ଦୟାବନ୍ତ ପ୍ରାଣୀମାନେ ଯଦି କିଏ ଥିବ
ଆଜିର ତିଥିରେ ନନାକୁ ଦାନ ଯେ କରିବ ।

ଦେଇଥିଲେ ପାଇ, ବୁଣିଥିଲେ ଦାଇ
ପଡ଼ିଆ ଭୂମିରେ ଗୋଧନ ଚରାଇ ।''

ଚକୁଳିଆ ପଣ୍ଡାମାନେ ଆଶୁକବି । ଏମାନେ ମନରୁ ଫାନ୍ଦି ଗୀତ ଗାଆନ୍ତି ଏବଂ ଜନମାନସକୁ ଆକର୍ଷଣ କରନ୍ତି ।

ଆଜିକାଲି ଘରେଘରେ ରେଡ଼ିଓ ଆଉ ଟେଲିଭିଜନ । ମନୋରଞ୍ଜନ ପାଇଁ କେତେ ଉପାୟ ବାହାରିଲାଣି । ଶିକ୍ଷାନୁଷ୍ଠାନର ପ୍ରସାର ହେତୁ ପିଲାମାନେ ଧୀରେଧୀରେ ଶିକ୍ଷିତ ହେଉଛନ୍ତି । ସେମାନଙ୍କର ବିଶ୍ୱାସ ଓ ରୁଚିର ମଧ୍ୟ ପରିବର୍ତ୍ତନ ହେବାରେ ଲାଗିଛି । ଗାଁ ଦାଣ୍ଡରେ ମୁଣ୍ଡପୋତା କେଳାର ଗାତ ଖୋଳି ମୁଣ୍ଡ ପୋତିବା ଓ ପେଟପୋଷିବାର ସୁଯୋଗ ଆଉ ଆସିବ ନାହିଁ । କାରଣ ଏବେ ଗାଁ ରାସ୍ତା ପିଚୁ ହୋଇଯାଉଛି । କେହି କେହି ମାଙ୍କଡ଼ ଓ ଭାଲୁ ନଚାଇ ଗୁଜୁରାଣ ମେଣ୍ଟାଉଥିଲେ । ସେମାନେ ବେତଟିଏ ଧରି ଭୂଇଁରେ ପିଟୁଥିଲେ ଓ ବୋଲୁଥିଲେ–

''ମନୁ ମୋର ନାଟ କରିବ
ମନୁ ମୋର ହାଟକୁ ଯିବ
ମନୁ ମୋର ସାଇବ ହବ ।''

ଗୀତର ତାଳେତାଳେ ମାଙ୍କଡ଼ଟି ନାଚୁଥାଏ ଏବଂ ପିଣ୍ଡାରେ ଠିଆ ହୋଇ ସାହିର ପିଲାମାନେ ଉପଭୋଗ କରୁଥିଲେ । ଧୀରେ ଧୀରେ ଏପରି ଦୃଶ୍ୟ ବିରଳ ହୋଇଯାଉଛି ।

ବର୍ଷସାରା କିଛି ନା କିଛି ମେଳାମହୋତ୍ସବ ସହିତ ଆମୋଦ ପ୍ରମୋଦ ପାଇଁ ନାନା ଆୟୋଜନ ଦେଖିବାକୁ ମିଳୁଥିଲା । କୃଷକ ଭାଇ ଦିନଯାକର ଖଟଣି ପରେ ରାତିରେ ଉପଭୋଗ କରୁଥିଲା ବିଭିନ୍ନ ଋତୁରେ ପାଲା, ରାମଲୀଳା, ଝାମୁଜାତ, ଯାତ୍ରା, ଅଷ୍ଟପ୍ରହରୀ ନଚେତ ମନ୍ଦିରମାନଙ୍କରେ କୀର୍ତ୍ତନ । ସହରୀ ସଭ୍ୟତାର ପ୍ରାଦୁର୍ଭାବରେ ପଲ୍ଲୀସଂସାରରେ ଆସିଛି ଅନେକ ପରିବର୍ତ୍ତନ । ପରଂପରାରେ ପ୍ରଚଳିତ ଅନେକ ଅନୁଷ୍ଠାନ କ୍ରମେକ୍ରମେ ସମାଜଜୀବନରୁ ହଜିଯାଉଛନ୍ତି । ସୌଦାଗରୀ ସଭ୍ୟତା ସହିତ ଯାନବାହନର ସୁଲଭ ସମାବେଶ ଲୋକ– ଚଳଣିରେ ଆଣିଛି ଅଭାବନୀୟ ପରିବର୍ତ୍ତନ । ନିର୍ବାଚନ ରାଜନୀତି ସରଳ ଗ୍ରାମ୍ୟଜୀବନକୁ କ୍ରମେ ଜଟିଳ କରିଦେଇଛି । ରାଜନୈତିକ ଦଳାଦଳି ଯୋଗୁ ଗ୍ରାମ୍ୟଜୀବନ ଅତ୍ୟନ୍ତ ଅଶାନ୍ତ ହୋଇଉଠିଛି ।

ସେଦିନର ସରଳ ଜୀବନ ଆଉ ଦେଖିବାକୁ ମିଳୁନାହିଁ । ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ଅତିକ୍ରମ କରିଥିଲେ ସୁଦ୍ଧା ଆମ ଅଞ୍ଚଳରେ ଜଳସେଚନର ସୁବିଧା ହୋଇନାହିଁ । ଚାଷୀପୁଅ ଆଜି ଇନ୍ଦ୍ରଙ୍କ କରୁଣା ଉପରେ ନିର୍ଭର କରି ରହିଥାଏ । ଚାରିଆଡ଼େ ଅଭାବ ଓ ଅନାଟନ । ଦୈନିକ ମଜୁରୀ ଥାଏ ମୂଲିଆ ପୁଅର ମାତ୍ର ତିନିଅଣା । ବେଳେବେଳେ ଅଧଓଳିକର କାମ ମିଳିଲେ ରୋଜଗାର ହୁଏ ମାତ୍ର ଛଅ ପଇସା ।

ଏହିପରି ଗୋଟିଏ ଘଟଣା ଆଖି ଆଗରେ ନାଚି ଯାଉଛି । ଆମ ବାରି ସଫା କରି ଜଣେ ମୂଲିଆ ଛଅଟି ପଇସା ମଜୁରୀ ଗ୍ରହଣ କଲା । ପିଲାମନର ଆଗ୍ରହ ରଖି ପଚାରିଲି– ଏ

ପଇସା ନେଇ କ'ଣ କରିବ ? ସେ କହିଲା- ବାବୁ ! ଚାରୋଟି ପଇସା ଦେଇ ଅଧସେର ଚାଉଳ ଆଣିବି । ସେକାଳରେ ଚାଉଳ ସେର ଥିଲା ଦୁଇଅଣା । ବାକି ରହିଲା ଦୁଇପଇସା । ଗୋଟିଏ ପଇସା ଦେଲେ ଅଧବିଶାଏ ପାତୁଆ ମାଛ । ବାକି ପଇସାକ ପାଞ୍ଚବୋଡ଼ି । ଏଥିରେ ବୋଡ଼ିକର ରାଶିତେଲ, ବୋଡ଼ିକର ଲୁଣ, ବୋଡ଼ିକର ଶୋରିଷ, ବୋଡ଼ିକର ପାନ, ଅନ୍ୟବୋଡ଼ିକର ଗୁଆଗୁଣ୍ଡି । ଗୋଟିଏ ଓଳିର ଭାତ, ତରକାରୀ ଓ ପାନଖିଆ ଚଳିଯିବ । ଆଉ ଓଳିକି ଚିନ୍ତା ନାହିଁ । ଏହାହିଁ ଥିଲା ଅଧିକାଂଶ ଅଭାବୀ ଲୋକଙ୍କର ନିତିଦିନର ଚଳଣି । ସେମାନେ ଅଭାବୀ ଥିଲେ, ମାତ୍ର ଅଭିଳାଷ ନଥିଲା । ନିରକ୍ଷର ଗ୍ରାମବାସୀ ସରଳ ଥିଲେ, ସଚ୍ଚୋଟ ଥିଲେ, ଆଦୌ କର୍ମକୁଣ୍ଠ ନଥିଲେ । ପରସ୍ପର ପ୍ରତି ସାହାଯ୍ୟ ଓ ସହାନୁଭୂତି ଲାଗିରହିଥିଲା ।

ଆଉ ଗୋଟିଏ ଦିନର ଘଟଣା ମନେପଡୁଛି । ଆମ ସାହିର ଚାଷୀପୁଅଟିଏ ଆମ ଘରକୁ ଆସି ସେରଟିଏ ଚାଉଳ ଉଧାର ମାଗିଲା । ଅପା ପଚାରିଲା-'ଆଜି କ'ଣ ପୁଅ କାମକୁ ଗଲୁ ନାହିଁକି ?'' ସେ କହିଲା- ''ଅପା ! ଦୂର ଗାଁରୁ ଜ୍ୱୋଇଁପୁଅ ଆସିଛି । ଘରେ କିଛି ନାହିଁ । ସେଥିପାଇଁ ଚାଉଳ ଉଧାର ନେବାକୁ ଆସିଛି ।''

ଅପା ତାର ଗାମୁଛା କାନିରେ ଚାଉଳ ସେରେ ମାପିଦେଲା । ସେ ଯିବାପୂର୍ବରୁ କହିଲା- ହଇରେ ପୁଅ· ଜ୍ୱୋଇଁପୁଅ ଆମ ସାହିରେ କୁଣିଆ । ତାକୁ ନାକଟେକା କରିବୁ ନାହିଁ । ଏହା କହି ତା' କାନିରେ କିଛି ମୁଗଡ଼ାଇ, ଦୁଇଟି ବିଲାତି ଆଳୁ, କିଛି ବଡ଼ି ଓ ବାରିରୁ ବଡ଼ ଖଡ଼ାଗଛଟିଏ ଉପାଡ଼ି ଧରାଇଦେଲା । ତାକୁ ବତାଇଦେଲା-ପୁଅ ! ବୋହୂକୁ କହିବୁ, ଖଡ଼ିକାରେ ଗୁଞ୍ଛି ଆଳୁକୁ ଡାଲିରେ ସିଝାଇଦେବ, ତାକୁ କାଢ଼ି ଆଣି ଭରତା କରିବ । ବଡ଼ିକି ଭାଜିବ । ଖଡ଼ାକୁ ରାଇ କରିଦେବ ଏବଂ ଖଡ଼ା ଶାଗକୁ ଭାଜିଦେବ । ଗାଁ ହାଟର ପାତୁଆମାଛ ଆଣି ହଳଦି ପାଣି କରିଦେବୁ । ଜ୍ୱୋଇଁପୁଅ ଖୁସୀମନରେ ଚର୍ଚ୍ଚା ହୋଇଯିବ ।

ଏପରି ଦିଆନିଆରେ ବଡ଼ପଣିଆ ନଥିଲା, ସ୍ନେହ ଓ ସହାନୁଭୂତିର ଝରଣାଟିଏ ପ୍ରବାହିତ ହେଉଥିଲା ପରା !! ବର୍ତ୍ତମାନ ଅର୍ଥନୈତିକ ମାନଦଣ୍ଡରେ ଉନ୍ନତି ହୋଇଛି ସିନା, ସେଦିନର ସେହି ସ୍ନେହପ୍ରବଣ ମନ ଆଜି ସ୍ୱପ୍ନପ୍ରାୟ ।

ଏବେ ଗାଁ ଦାଣ୍ଡରେ ନୋଇଲେ ପଞ୍ଝୁଦୋଳ ପଡ଼ିଆରେ ଦଳଦଳ ପିଲାଙ୍କର କ୍ରିକେଟ ଖେଳ । ଦୂରଦର୍ଶନର ପ୍ରଚାରଯୋଗୁ ପିଲାମାନେ ଏଥିପାଇଁ ପାଗଳ । ଆମ ପିଲାବେଳରେ ଏହି ଖେଳର ନାଁ କେହି ଶୁଣିନଥିଲେ । ପିଲାମାନଙ୍କର ଏକମାତ୍ର ଖେଳଥିଲା ଡୁଡୁ ଖେଳ ଓ ବୋହୂଚୋରୀ । ବହୁଦିନ ପରେ ମାଇନର ସ୍କୁଲ ଓ ହାଇସ୍କୁଲ ପ୍ରତିଷ୍ଠା ହେବାରୁ ଶିକ୍ଷକମାନଙ୍କ ପ୍ରେରଣାରେ ଫୁଟବଲ ଖେଳ ଆରମ୍ଭ ହୋଇଥିଲା ।

ବର୍ଷ ତମାମ କେତେ ଓଷା ପର୍ବ ଲାଗିରହିଥାଏ । ସତେ ଯେପରି ସମସ୍ତ ଗ୍ରାମବାସୀଙ୍କର ଏହା ଥିଲା ମିଳନପର୍ବ । ରଜପର୍ବରେ ଘରେ ଘରେ କେତେ ରକମର ପିଠାପଣା । ଚାଷୀଭାଇର ସମ୍ପୂର୍ଣ୍ଣ ବିଶ୍ରାମ । ବିଲକୁ ହଳଯିବ ନାହିଁ । ବାରିବଗିଚାରେ କୌଣସି ଖୋଳାଖୋଳି ମନା । ରଜ ହେଂସ ଉଠିବ ନାହିଁ । ପାଞ୍ଚ ସାତ ଘରର ଅଭିଆଡ଼ି ଝିଅମାନେ ଜଣକଘରେ ରଜ ପାଳି ବସିବେ । କେହି ଭୂଇଁରେ ପାଦ ଦେବେ ନାହିଁ । ଚଟିଯୁଗ ତ ଆସି ନଥିଲା । ଗୁଆ ଗଛର

ଚୋପି ପାଦରେ ଚଟି ପରି ବ୍ୟବହାର କରାଯାଉଥିଲା । ରଜବେଳେ ସାହିସାହି ମଧରେ ପ୍ରତିଯୋଗିତାମୂଳକ ଡୁଡୁ ଖେଳ ହୁଏ । ହସଖୁସୀରେ ରଜ ତିନୋଟି ଦିନ ଚାହୁଁଚାହୁଁ ସରିଯାଏ ।

ଗ୍ରାମ ଠାକୁରାଣୀଙ୍କ ପାଖରେ ବର୍ଷକେ ଥରେ ହୁଏ ଯନ୍ତାଳ ଭୋଗ । ସମସ୍ତ ଗ୍ରାମର ପରିବାର ଏଥିରେ ଅଂଶୀଦାର । ଏପରି ସାର୍ବଜନୀନ ମିଳନପର୍ବ କ୍ରମେକ୍ରମେ ଦୁର୍ଲ୍ଲଭ ହୋଇଯାଉଛି ।

ରଜପର୍ବରେ ସାହି ବସ୍ତିରେ ବାଦିପାଲା ହେବା ଥିଲା ଏକ ମନୋଜ୍ଞ ପରମ୍ପରା । ପାଲା ସଂସ୍କୃତି ଯୋଗୁ ଅନପଢ଼ ଗ୍ରାମବାସୀଙ୍କ ତୁଣ୍ଡରେ କବି ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, କବିସୂର୍ଯ୍ୟଙ୍କର ଗୀତ ଶୁଣିବାକୁ ମିଳୁଥିଲା । ବୁଢ଼ାମାନେ କଥାକଥାକେ ଓଡ଼ିଆ ଭାଗବତରୁ ପଦୁଟିଏ ବୋଲି ଦେଉଥିଲେ ।

ବର୍ତ୍ତମାନ ସ୍କୁଲ କଲେଜ ଶିକ୍ଷାର ପ୍ରସାର ସହିତ ପାଲା ସଂସ୍କୃତି ଓ ଭାଗବତ ପାରାୟଣ କ୍ରମଶଃ ଦୂରେଇ ଯାଇଛି । ନୂତନ ପିଢ଼ିର ଶିକ୍ଷାପ୍ରାପ୍ତ ପିଲାମାନେ ଏଣିକି ଅବକାଶ ସମୟରେ ଥିଏଟର କରିବାକୁ ସୁଖ ମଣୁଛନ୍ତି । ଅତ୍ୟନ୍ତ ଆଗ୍ରହ ଓ ଉତ୍ସାହର ସହିତ ସେଥିରେ ଅଂଶଗ୍ରହଣ କରୁଛନ୍ତି ।

ଆମ ପିଲାବେଳେ ବହୁଦୂର ଗାଁରେ ଥିଲା ଏକମାତ୍ର ପୋଷ୍ଟ ଅଫିସ । ଆବଶ୍ୟକ ହେଲେ ପୋଷ୍ଟଅଫିସ ଦ୍ୱାରା ଟେଲିଗ୍ରାମ୍ କରାଯାଇ ଜରୁରୀ ଖବର ପଠାଯାଉଥିଲା । ପୋଷ୍ଟମ୍ୟାନ ଯଦି କେବେ ଟେଲିଗ୍ରାମ ଧରି ଗାଁରେ ପହଞ୍ଚୁଥିଲେ, ଚହଳ ପଡ଼ିଯାଉଥିଲା । କିଛି ଖରାପ ଖବର ଆସିଲାକି ? ବିଶେଷତଃ ଆତ୍ମୀୟମାନଙ୍କର ମୃତ୍ୟୁର ଖବର ଦୂରସ୍ଥାନରୁ ଟେଲିଗ୍ରାମ ଜରିଆରେ ପହଞ୍ଚୁଯାଉଥିଲା । ଟେଲିଫୋନର ନାଁ ଶୁଣାନଥିଲା । କେବଳ ରେଳଷ୍ଟେସନରେ ଟେଲିଫୋନ ବ୍ୟବହାର ରହିଥାଏ । ଖବରକାଗଜ ପାଠ କରିବାର ଅଭ୍ୟାସ କାହାରି ନଥିଲା । କେହିଜଣେ ସ୍ୱଚ୍ଛଳ ବ୍ୟକ୍ତି ଯଦି ସାପ୍ତାହିକ ଖବରକାଗଜ ଡାକରେ ମଗାଉଥିଲେ, ତାହା ଥିଲା ସମସ୍ତ ଗ୍ରାମର ଆକର୍ଷଣ । ଛାପା ହୋଇଥିବା ଖବର ଗାଁ ସାରା ପ୍ରଚାରିତ ହୋଇଯାଉଥିଲା କେବଳ ଶୁଣାଶୁଣିରେ ।

ଆଜି ପଲ୍ଲୀଗାଁର ପୂର୍ବ ଚେହେରା ଆଉ ନାହିଁ । ଏବେ ସାହି ସାହିରେ ପିଚୁରାସ୍ତା । ଘରେ ଘରେ ବିଜୁଳି ଆଲୁଅ, ଟେଲିଫୋନ ଓ ଟେଲିଭିଜନ । ଚାଳଘର ସ୍ଥାନରେ ଅନେକ କୋଠାଘର ଠିଆ ହୋଇଗଲାଣି । ସ୍କୁଲ କଲେଜ ଫେରନ୍ତା ଅର୍ଦ୍ଧଶିକ୍ଷିତ ବେକାର ଯୁବକମାନେ ଗ୍ରାମ୍ୟରାଜନୀତିରେ ଅଂଶଗ୍ରହଣ କରି ବଡ଼ପଣ ଜାହିର କରିବାରେ ବ୍ୟସ୍ତ । ସେମାନେ ଆଜି ନିରଙ୍କୁଶ ।

ଦୀର୍ଘ ପରଂପରାରେ ପ୍ରଚଳିତ ମୁରବିପଣିଆ ଓ ଭାଇଚାରା କ୍ରମେ ସୁଦୂର ପରାହତ ହେବାକୁ ବସିଲାଣି । ବୈଷୟିକ ସଭ୍ୟତାର ପ୍ରସାର ସହିତ ଗ୍ରାମ୍ୟଜୀବନର ସରଳତା, ନୀତିମୟ ଜୀବନଯାପନ ଓ ପାରସ୍ପରିକ ସହଯୋଗର ହସ୍ତପ୍ରସାରଣ ଧୀରେଧୀରେ ବିଦାୟ ନେଇଯାଉଛି ।

କି ଥିଲା ଏ ଗାଁ, କି ହୋଇଛି ଆଜ !!!

• • •

# ସେଦିନର ସ୍କୁଲ ଜୀବନ

ପିଲାଦିନର କଥା । ଅଧିକାଂଶ ଗ୍ରାମରେ ସ୍କୁଲଟିଏ ନଥାଏ । ଗାଁ ଗଣ୍ଡାର ପିଲାମାନେ ମାଟିବଂଶ ଅବଧାନଙ୍କ ଚାହାଳୀରେ ପାଠ ପଢୁଥିଲେ । ଅକ୍ଷରଶିକ୍ଷା ସହିତ ମିଶାଣ, ଫେଡ଼ାଣ, ହରଣ, ଗୁଣନ ପ୍ରଭୃତି ଅଙ୍କ ଶିଖିବାକୁ ହେଉଥିଲା । ପିଲା ଯଦି ଭାଗବତ ଅଧାୟେ ପଢ଼ିପାରିଲା, ନିରକ୍ଷର ବାପା ମା' କୃତ୍ୟକୃତ୍ୟ ହେଉଥିଲେ । ସରକାରୀ ସ୍କୁଲ ବିଶେଷ ନଥିଲା । ତେଣୁ ଚାରିଆଡ଼େ ଅଶିକ୍ଷାର ଘନ ଅନ୍ଧକାର । କାଗଜପତ୍ରରେ ଅଧିକାଂଶ ନିରକ୍ଷର ପଲ୍ଲୀବାସୀ ଦସ୍ତଖତ ବଦଳରେ ଟିପ ଚିହ୍ନର ସନ୍ତକ ଦେଉଥିଲେ ।

ଲୋକସଂଖ୍ୟା ଦୃଷ୍ଟିରୁ ଆମ ଗାଁଟି ସେହି ଅଞ୍ଚଳରେ ବିଖ୍ୟାତ ଥିଲା । ତେଣୁ ସରକାର ସେଠାରେ ଗୋଟିଏ ଲୋଅର ପ୍ରାଇମେରୀ ସ୍କୁଲ ବସାଇଥିଲେ । ଟିଣଛପର ପଥରର ଘର ଦୁଇ ବଖରା । ଚଟାଣଟି ଗୋବରରେ ଲିପା । ସ୍କୁଲଟିଏ ଥିବା ସତ୍ତ୍ୱେ ବଡ଼ ଗାଁଟିରେ ତିନିଚାରିଗୋଟି ଅବଧାନିଆ ଚାହାଳୀ ଥିଲା । ଅଶିକ୍ଷିତ ମୁରବୀମାନେ ପିଲାମାନଙ୍କୁ ସ୍କୁଲକୁ ନପଠାଇ ଚାହାଳୀରେ ଦେଉଥିଲେ । ଅଳ୍ପକିଛି ଅକ୍ଷର ଶିକ୍ଷା, ବହିପଢ଼ା ପରେ ପିଲାମାନେ ବାପାମା'ଙ୍କୁ ଚାଷ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ସବୁଦିନ ପାଇଁ ପାଠରେ ଡୋରୀ ବନ୍ଧା ହେଉଥିଲା । ଏହି ଅନପଢ଼ ପିତାମାତା କହୁଥିଲେ, ଆମ ପିଲାର ପାଠ କ'ଣ ହେବ ? ସେ ଟିକିଏ ବଡ଼ ହେଇଗଲେ ଗାଈ ବଳଦ ଚରାଇ ନେବ, ଘାସ କାଟି ଆଣିଦେବ, ତୋଟାରୁ ଶୁଖିଲା ପତର ଗୋଟାଇ ଘରର ଜାଳେଣୀ କାର୍ଯ୍ୟ ତୁଲାଇପାରିବ ।

ତେଣୁ ଗାଁ ସ୍କୁଲରେ ପ୍ରାୟତଃ ସମାଜର ଉଚ୍ଚବର୍ଣ୍ଣର ପିଲାମାନେ ଅଧିକ ନାଁ ଲେଖାଇଥିଲେ । ଯଦି କେହି ହରିଜନ ପିଲାଟିଏ ପାଠ ପଢ଼ିବାକୁ ଆସିଲା, ସେ ଅଲଗା ହୋଇ ବସୁଥିଲା । ତାକୁ ଶିକ୍ଷକ ଅଥବା ଅନ୍ୟ ଉଚ୍ଚବର୍ଣ୍ଣର ପିଲାମାନେ ଛୁଉଁ ନଥିଲେ । ଯଦି କେହି ଛୁଇଁଦେଲା, ତେବେ ଗାଧୋଇବାକୁ ପଡୁଥିଲା । ଶିକ୍ଷକ ଯଦି ତାକୁ ଦଣ୍ଡ ଦେବାକୁ ଇଚ୍ଛା କରୁଥିଲେ, ତେବେ ଅଛୁଆଁ ହେତୁ ତା' ଉପରକୁ ବେତ ଫିଙ୍ଗୁଥିଲେ । ନଚେତ୍ ଘଣ୍ଟାଘଣ୍ଟା ଆଣ୍ଠୁମାଡ଼ି ବସିବାକୁ ବାଧ କରୁଥିଲେ । ଚାରୋଟି ଶ୍ରେଣୀ ପାଇଁ ଦୁଇଜଣ ଶିକ୍ଷକ ଥାଆନ୍ତି । ଗୋଟିଏ ଘରେ ଦୁଇଟି କ୍ଲାସର ପିଲାଏ ବସିବେ । ଜଣେ ମାତ୍ର ଶିକ୍ଷକ ପାଳି କରି ସେମାନଙ୍କର ପାଠ କଥା ବୁଝିବେ । ସରକାରୀ ସ୍କୁଲରେ ଛପା ବହି ପାଠ୍ୟ ହେଉଥାଏ । ଚାହାଳୀରେ କିନ୍ତୁ ଅବଧାନଙ୍କ ତାଳପତ୍ର ପୋଥି । ଚାହାଳୀପିଲାଏ ଖଡ଼ିଗୋଟାକିରେ ଭୂଇଁରେ ଲେଖି ଅକ୍ଷର ଶିକ୍ଷା କରନ୍ତି, ଅଙ୍କ କଷନ୍ତି । ସ୍କୁଲରେ କିନ୍ତୁ ବାଲିକାଗଜର ଖାତା ବ୍ୟବହାର ହେଉଥାଏ ।

ଏକ୍‌ସରସାଇଜ୍ ଖାତା କି ଧଳାକାଗଜର ପ୍ରଚଳନ ନଥାଏ । ସିଲଟ ଓ ଖଡ଼ି ମଧ୍ୟ ବ୍ୟବହାର ହୁଏ ।

ପିଲାମାନେ ପାଳି କରି ରବିବାର ଦିନ ସ୍କୁଲଘରକୁ ଗୋବରରେ ଲିପନ୍ତି ।

ସ୍କୁଲଘର ସାମନାରେ ବଗିଚାଟିଏ । କଣ୍ଟାବାଡ଼ରେ ଘେରାଉ ହୋଇଥାଏ । ପିଲାମାନେ ପାଳି କରି ରବିବାର ଦିନ ବଗିଚାରେ କାମ କରନ୍ତି । ଘାସ ଉପାଡ଼ିବା, ଗଛମୂଳ କୋଡ଼ିବା, ଫୁଲଗଛରେ ପୋକ ଲାଗିଥିଲେ ଛଡ଼ାଇବା, ପାଣି ଦେବାପାଇଁ ମନ୍ଦାକରିବା, ଶୁଖିଲା ଗୋବରକୁ ଗୁଣ୍ଡ କରି ଗଛମୂଳରେ ଦେବା ଭଳି କାମ ଲାଗି ରହେ । କିନ୍ତୁ ଦିନେଛଡ଼ା ଦିନେ ପିଲାମାନେ ପାଳି କରି ଗଛମୂଳରେ ପାଣି ଦିଅନ୍ତି କୂଅରୁ କାଢ଼ି । ବର୍ଷତମାମ କେତେପ୍ରକାର ଫୁଲ ଫୁଟି ବାସନା ମହକୁଥାଏ ।

ଏବେ ତ ଡଟ୍ କଲମ୍‌ର ଯୁଗ । ଫାଉଣ୍ଟେନ୍ ଯୁଗ ମଧ୍ୟ ବିଦାୟ ନେବା ଉପରେ । ଆମର ସ୍କୁଲଜୀବନରେ କେବଳ ହରିଡ଼ା କାଳି ଆଉ କାଠି ଅଥବା ପର କଲମ । ହେଡ୍‌ମାଷ୍ଟ୍ରେ ହରିଡ଼ାକାଳି ତିଆରି କରି ପିଲାମାନଙ୍କୁ ଦିଅନ୍ତି । ଅଧିକାଂଶ ପିଲା ପେନ୍‌ସିଲରେ ଲେଖୁଥିଲେ ।

ସେକାଳରେ ବସନ୍ତ ରୋଗ ବଡ଼ ଭୀଷଣ ଥିଲା । ଲୋକମାନଙ୍କର ଅନେକ ଅନ୍ଧବିଶ୍ୱାସ । ସେମାନେ ଭାବୁଥିଲେ ବସନ୍ତ ଠାକୁରାଣୀ ଦେହକୁ ଆସିଛି । ତେଣୁ ବସନ୍ତ ରୋଗୀ ପାଖରେ ପଣାଭୋଗ ଦେଉଥିଲେ । ପରିବାରର ଲୋକେ ରୋଗୀକୁ ଠାକୁରାଣୀ ମନେକରି ଅଧିଆ ପଡୁଥିଲେ । ବସନ୍ତ ରୋଗର ନିରାକରଣ ପାଇଁ ସରକାର ଟୀକାଦେବା ପ୍ରଚଳନ କଲେ । ବେଳେବେଳେ ଟୀକା ଦେବାପାଇଁ ସରକାରୀ ଲୋକ ସ୍କୁଲକୁ ଆସୁଥିଲେ । ଏକ ଛୋଟ ଛୁରୀରେ ହାତର କୌଣସି ଅଂଶକୁ ଧାରଧାର କରି ଚିରି ଦେଇ ଟୀକା ଔଷଧ ଲଗାଇ ଦେଉଥିଲେ । ଟୀକାନେଲେ ଅନେକ ଦିନ ଜ୍ୱର ଭୋଗିବାକୁ ହେଉଥାଏ । ପିଲାବୟସରେ ଟୀକାଦିଆ ଆସିଲା ବୋଲି ଜାଣିଲେ କୋକୁଆ ଭୟ । ସ୍କୁଲ ଝରକାବାଟେ ଡେଇଁ କରି ଅନେକ ପିଲା ଛାନିଆ ହୋଇ ଘରମୁହାଁ ହେଉଥିଲେ । ଘରେ ଯଦି କେହି ପିଲା ଦୁଷ୍ଟାମି କରୁଥାଏ, ଟୀକାଦିଆ ଆସିଲା ବୋଲି ଡରାଇଦେଲେ ସେ ଚୁପ୍ ହୋଇଯାଏ ।

ସେତେବେଳେ ହଇଜା ରୋଗକୁ ମଧ୍ୟ ଲୋକମାନେ ଠାକୁରାଣୀ ବୋଲି ଭାବୁଥିଲେ । ଚିକିତ୍ସାର ବିଶେଷ ବ୍ୟବସ୍ଥା ନଥାଏ । ଘରେଘରେ ଲୋକେ ମରି ଶୁଅନ୍ତି । ଗାଁରେ ତାଟିକବାଟ ପଡ଼ିଯାଏ । ପାଖଆଖରେ ଡାକ୍ତରଖାନା ଅଥବା ହସ୍‌ପିଟାଲ ନଥାଏ । ରୋଗୀକୁ ନେବା ଆଣିବା ପାଇଁ ଯାନବାହନ ଅଥବା ରାସ୍ତାଘାଟର ସୁବିଧା ନଥାଏ । ହଇଜା ଲାଗିଲେ ଅନପଢ଼ ପଲ୍ଲୀବାସୀ ରୋଗର ଚିକିତ୍ସା ପାଇଁ ଧ୍ୟାନ ନଦେଇ ଗ୍ରାମ ଠାକୁରାଣୀଙ୍କ ପାଖରେ ହୋମ କରୁଥିଲେ । ସ୍ୱାସ୍ଥ୍ୟରକ୍ଷା ବିଷୟରେ ଜନସାଧାରଣଙ୍କର ବିଶେଷ ସଚେତନତା ନଥିଲା । ସେମାନେ ଭାବୁଥିଲେ ଠାକୁରାଣୀଙ୍କୁ ପୂଜାଅର୍ଘ୍ୟ ଦେଲେ, ସାହିସାହିରେ ହରିନାମ କୀର୍ତ୍ତନ କଲେ ହଇଜାଠାକୁରାଣୀ, ବସନ୍ତଠାକୁରାଣୀ ଗାଁ ଛାଡ଼ି ପଳାଇଯିବେ ।

ଯେଉଁଦିନ ଅକାଳେ ସକାଳେ ଗାଁ ସ୍କୁଲକୁ ପରିଦର୍ଶନ କର୍ମଚାରୀ ଆସୁଥିଲେ, ଶିକ୍ଷକ

ଦୁଇଜଣ କାତର ହୋଇପଡୁଥିଲେ । ପରିଦର୍ଶକ ବାବୁଙ୍କୁ ସନ୍ତୁଷ୍ଟ କରିବା ପାଇଁ ନାନା ଭାବରେ ଆପ୍ୟାୟିତ କରିବାରେ ଯତ୍ନର ଅଭାବ ରହୁ ନଥିଲା ।

ସ୍କୁଲରେ ଦୁଇଟି ଦିନ ଉତ୍ସବ ହୁଏ-ଗଣେଶ ଚତୁର୍ଥୀ ଓ ସରସ୍ୱତୀ ପଞ୍ଚମୀ । ବର୍ତ୍ତମାନ ମୂର୍ତ୍ତିପୂଜା ହେଲାଣି । ଆମ ପିଲାଦିନେ ଫଟୋ ପୂଜା ହେଉଥିଲା । ଘରୁ ପିଲାମାନେ ନାନାପ୍ରକାର ଶୁଖିଲି ଜିନିଷ ଟାଙ୍ଗୁଡ଼ିରେ ଆଣି ଭୋଗ ବାଢୁଥିଲେ । ଗଣେଶ ଚତୁର୍ଥୀ ଦିନ ନଡ଼ିଆ ବାଡ଼େଇବା ଥିଲା ଏକ ବିଧି । ନାନା ଚିତ୍ର ବିଚିତ୍ର ହୋଇ ପୂର୍ଣ୍ଣକୁମ୍ଭ ଢାଳରେ ଯେଉଁ ନଡ଼ିଆଟି ପୂଜା ହେଉଥାଏ, ପୂଜା ପରେ ତାହାକୁ ଧରି ପିଲାମାନେ ଗୀତ ବୋଲି ସାହିସାହିରେ ମାଗୁଣି କରୁଥିଲେ । ଗୀତର ପ୍ରଥମ ଧାଡ଼ିଟି ହେଉଛି-''ବନ୍ଦଇ ହରି ଦେବ ମୁରାରୀ ଲକ୍ଷ୍ମୀଦେବୀଙ୍କର କାନ୍ତ ।'' ମୁରବୀମାନେ ପିଲାମାନଙ୍କର ଥଳିରେ ଚାଉଳ, ପଇସା ଇତ୍ୟାଦି ଶକ୍ତି ଅନୁସାରେ ପକାଇ ଦେଉଥିଲେ । ଏହି ସମସ୍ତ ମାଗୁଣିଜିନିଷ ଶିକ୍ଷକ ଦୁହିଁଙ୍କ ମଧ୍ୟରେ ଭାଗବଣ୍ଟା ହେଉଥିଲା ।

ଗାଁ ସ୍କୁଲରେ ସମସ୍ତେ ଖାଲି ଦେହରେ ପଢ଼ିବା ପାଇଁ ଯାଉଥିଲେ । ଗେଞ୍ଜି, ସାର୍ଟର ପ୍ରଚଳନ ନଥାଏ । ସମସ୍ତେ ଲୁଗାପିନ୍ଧି ଯାଉଥିଲେ । ଶିକ୍ଷକ ଦୁଇଜଣ ମଧ୍ୟ ଧୋତୀ ପିନ୍ଧି ଦୋସଡ଼ା ପକାଉଥିଲେ । ମୋର ବାପା-ଦାଦା ପୁରୀ ସହରରେ ଚାକିରୀ କରିଥିବାରୁ ମୋ ପାଇଁ ସହରରୁ ହାପ୍‌ପ୍ୟାଣ୍ଟ ଆଣି ଦେଇଥିଲେ । ସ୍କୁଲରେ ବହୁତଦିନ ପର୍ଯ୍ୟନ୍ତ ମୁଁ ଏକମାତ୍ର ହାପ୍‌ପ୍ୟାଣ୍ଟ ପିନ୍ଧୁଥିଲି । ତେଣୁ ହେଡମାଷ୍ଟ୍ରେ ମୋତେ ସାହେବ ବୋଲି ଡାକୁଥିଲେ ।

ସ୍କୁଲରେ କ'ଣ ପଢ଼ା ହେଉଥିଲା, ସ୍ମରଣ ହେଉନାହିଁ । କିନ୍ତୁ ଘରେ ପ୍ରତ୍ୟେକ ଦିନ ପୁରାଣ ପଢ଼ା ହେଉଥାଏ । ପୁରୀ ସହରରୁ ଛପା ବହିର ପୁରାଣ ସବୁ କିଣା ହୋଇ ଆସିଥିଲା । ସେହି ବୟସରେ ଜଗନ୍ନାଥ ଦାସଙ୍କ ଭାଗବତ, ନୃସିଂହପୁରାଣ, ମାର୍କଣ୍ଡେୟ ପୁରାଣ, କାର୍ତ୍ତିକ ମହାତ୍ମ୍ୟ, ମାଣବସା ବହି, ବୁଧେଇ ଓଷା ବହି, ଅନନ୍ତବ୍ରତ ବହି, ଖୁଦୁରୁକୁଣୀ ଓଷା ବହି, ବଳରାମ ଦାସଙ୍କ ରାମାୟଣ ପ୍ରଭୃତି ଅନେକ ବହି ଆମ ଘରେ ଥିଲା । ପୁରାଣପଣ୍ଡା ନ ଆସିଲେ ମୋତେ ପଢ଼ିବାକୁ କୁହାଯାଉଥିଲା । ପୋଲାଙ୍ଗ ଦୀପ ଆଲୁଅରେ ପୁରାଣ ପାଠ କରାଯାଏ । ପୁରାଣପାଠବେଳେ ଆମ କୁଟୁମ୍ବ ତିନିଘରର ସ୍ତ୍ରୀଲୋକମାନେ ଏକାଠି ହୋଇ ପୁରାଣ ଶୁଣୁଥିଲେ । ପୁରାଣ ଶେଷ ହେଲାଦିନ ଉଜୁଆଁ ହୁଏ ଓ ବ୍ରାହ୍ମଣଙ୍କୁ ଭୋଜନ ସହିତ ଦକ୍ଷିଣା ଦିଆଯାଏ ।

ସକାଳେ ସ୍କୁଲକୁ ଯିବା ପୂର୍ବରୁ ବଢ଼ାଭାତ ଖିଆ ହେଉଥିଲା । ଆଶାଅପା (ବାପାଙ୍କର ବଡ଼ଭଉଣୀ ଓ ବାଲ୍ୟବିଧବା) ପାହାନ୍ତାରୁ ଉଠି ବଢ଼ାଭାତ ରାନ୍ଧି ଦେଉଥିଲେ । ସେ ଭାତରୁ ପେଜ ଗଳାହୁଏ ନାହିଁ । ସେଥିରେ ମୁଗଡାଲି, ଆଳୁ ସିଝିଥାଏ । ଗୁଆଘିଅ ପକାଇ ଏହି ନଳରାନ୍ଧଣା ବଢ଼ାଭାତ ଖିଆଯାଏ । ଏ ଯୁଗର ମା' ପିଲାଙ୍କୁ ଏହା କାହାଣୀ ପରି ମନେହେଉଥିବ ।

ଆମ ପିଲାଦିନେ ପାଞ୍ଚବର୍ଷ ନହେଲେ କେହି ସ୍କୁଲକୁ ଅଥବା ଚାହାଳୀକୁ ଯାଉ ନଥିଲେ । ନଅବର୍ଷରେ ଗାଁ ସ୍କୁଲର ପାଠ ସରିଯାଏ । ଗାଁର ଅଧିକାଂଶ ପିଲାଙ୍କର ଏହି ଗାଁ ସ୍କୁଲ ପରେ ପାଠରେ ଡୋରି ବନ୍ଧା ହୋଇଥାଏ । ଦୂର ଗାଁରେ ମାଇନର ପାଠ ପଢ଼ିବା ପାଇଁ ମୁରବୀମାନେ

ବିଶେଷ ଉତ୍ସାହିତ ହୁଅନ୍ତି ନାହିଁ । ତେଣୁ ଅକାଳରେ ଅନେକ ପ୍ରତିଭା ପରିସ୍ଥିତିର ଚାପରେ ମଉଳିଯାଏ ।

ଆମ ଗାଁଠାରୁ ତିନିମାଇଲ ଦୂରରେ ମଲାଗୁଣୀ ନଦୀର ଆର ପାଖରେ ରାମେଶ୍ୱର ଗାଁ । ବିଶାଳ ଏକ ଆକାଶଚୁମ୍ବୀ ପର୍ବତ ପାଦଦେଶରେ ଏହି ଗାଁଟି ଶୋଭା ପାଉଥାଏ । ଗାଁରେ ଅନେକ ପ୍ରାଚୀନ ମନ୍ଦିର । ବିଶେଷତଃ ଅଷ୍ଟଶମ୍ଭୁ ଶୋଭିତ ରାମନିଧି ଦେବ ଅତ୍ୟନ୍ତ ବିଖ୍ୟାତ ଠାକୁର । ବନବାସ କାଳରେ ସ୍ୱୟଂ ରାମଚନ୍ଦ୍ର ଏହି ଠାକୁରଙ୍କୁ ନିଧି ଅର୍ପଣ କରି ପୂଜା କରିଥିବାରୁ ଏପରି ଭାବରେ ନାମିତ ବୋଲି ପୁରୋହିତମାନେ ପ୍ରଚାର କରିଥାଆନ୍ତି । ଏହି ଗ୍ରାମର ଅନତି ଦୂରରେ ନିରାକାରପୁରରେ ଏକ ସୁଉଚ୍ଚ ପର୍ବତର ନାମ ଚିତ୍ରକୂଟ । ତେଣୁ ପୂଜକମାନଙ୍କୁ ସୁବିଧା ହୁଏ କହିବା ପାଇଁ ଯେ ଏହି ଗ୍ରାମରେ ରାମନିଧିଦେବଙ୍କୁ ପୂଜା କରି ରାମ, ଲକ୍ଷ୍ମଣ ଓ ସୀତା ଚିତ୍ରକୂଟ ପର୍ବତରେ ଅବସ୍ଥାନ କରିଥିଲେ । ଏହି ଅଳ୍ପଶିକ୍ଷିତ ପୂଜକମାନେ ଜାଣନ୍ତି ନାହିଁ ଯେ ପୂର୍ବତନ କୋରାପୁଟ ଜିଲ୍ଲାରେ ଦଣ୍ଡକାରଣ୍ୟରେ ରାମଚନ୍ଦ୍ର ବନବାସ କରିଥିଲେ ।

ରାମେଶ୍ୱର ବିଖ୍ୟାତ ହୋଇଥିଲା ଏହାର ମାଇନର ସ୍କୁଲ ପାଇଁ । ସେକାଳରେ କୋଡ଼ିଏ-ତିରିଶ ମାଇଲ ବ୍ୟାସାର୍ଦ୍ଧରେ ସ୍ୱତନ୍ତ୍ର ମାଇନର ସ୍କୁଲଟିଏ ନଥିଲା । କେବଳ ଏ ସୁଦୂର ଖୋର୍ଦ୍ଧା ସହରରେ ସରକାରୀ ହାଇସ୍କୁଲ, ଓଲସିଂହରେ ଘରୋଇ ହାଇସ୍କୁଲ ଓ ବାଣପୁରରେ ଘରୋଇ ହାଇସ୍କୁଲଟିଏ ଥିଲା । ସେକାଳର ଖୋର୍ଦ୍ଧା ସବ୍‌ଡିଭିଜନର ଏତିକିମାତ୍ର ସ୍କୁଲ । କଲେଜର ପ୍ରଶ୍ନହିଁ ନଥିଲା । ତେଣୁ ଉଚ୍ଚଶିକ୍ଷା ଲାଭ କରିବା ଥିଲା କାଠିକର ପାଠ ।

ଲୋଅର ପ୍ରାଇମେରୀ ଶିକ୍ଷାପରେ ମାଇନର ପଢ଼ିବା ପାଇଁ ରାମେଶ୍ୱର ସ୍କୁଲରେ ଭର୍ତ୍ତି ହେଲି । ସାତ ଆଠଜଣ ଅଭାବୀ ପିଲା ଗାଁରୁ ଚାଲିଚାଲି ନଈପାରି ହୋଇ ରାମେଶ୍ୱରରେ ନାଁ ଲେଖାଇଲେ । ଆମେ ଦୁଇ ତିନିଜଣ ମାତ୍ର ହଷ୍ଟେଲରେ ଅନ୍ତେବାସୀ ହେଲୁ ।

ସେତେବେଳେ ରାମେଶ୍ୱର ମି:ଇ ସ୍କୁଲ କେବଳ ଏକ ପ୍ରାଚୀନ ଶିକ୍ଷାନୁଷ୍ଠାନ ନଥିଲା, ଏହା ଥିଲା ଏକ ଆଦର୍ଶ ମାଇନର ସ୍କୁଲ । ବହୁ ଦୂରଦୂରାନ୍ତର ପିଲାମାନେ ଏଠାରେ ହଷ୍ଟେଲରେ ରହି ପାଠ ପଢୁଥିଲେ । ଦୁଇଜଣ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ତିନୋଟି ହଷ୍ଟେଲ କକ୍ଷରେ ପ୍ରାୟ ଅଶିଜଣ ଛାତ୍ର ଅବସ୍ଥାନ କରୁଥିଲେ । ସ୍କୁଲର ଉଦ୍ୟାନ ଥିଲା ଅତ୍ୟନ୍ତ ବିସ୍ତୃତ । ପିଲାମାନଙ୍କ ପରିଶ୍ରମରେ କେତେପ୍ରକାର ଫୁଲ ଓ ଫଳ ଗଛରେ ଉଦ୍ୟାନଟି ଶୋଭା ପାଉଥିଲା । ସାଧାରଣ ଶିକ୍ଷା ବ୍ୟତୀତ ଏଠାରେ ପିଲାମାନେ ଲୁଗାବୁଣା ମଧ୍ୟ ଶିକ୍ଷା କରୁଥିଲେ । ଏଥିପାଇଁ ଏକ ସ୍ୱତନ୍ତ୍ର କକ୍ଷରେ ତିନିଚାରୋଟି ଲୁଗାବୁଣା ତନ୍ତ ବସିଥିଲା ।

ପାଠପଢ଼ା ସହିତ ଅବସର ସମୟରେ ନାନା ପ୍ରକାର କ୍ରୀଡ଼ାରେ ଅଂଶ ଗ୍ରହଣ କରି ପିଲାମାନେ ଉପଭୋଗ କରୁଥିଲେ । ଫୁଟବଲ, ବ୍ୟାଡ଼ମିଣ୍ଟନ, ଭଲି, ରିଙ୍ଗ୍‌ବଲ ପ୍ରଭୃତି ଖେଳର ଯେପରି ବ୍ୟବସ୍ଥା ରହିଥିଲା, ବୋଡ଼ିଂ ଅନ୍ତେବାସୀଙ୍କ ପାଇଁ ଅଧ୍ୟୟନ ସମୟ ବାହାରେ ଅବସର ବିନୋଦନର ମାଧ୍ୟମ ଥିଲା କ୍ୟାରମ, ବାଗ୍‌ଚାଲି, ଲୁଡ଼ୋ, ସ୍ନେକଲାଡ଼ର ଓ ୱାର୍ଡ଼ମିନିଂ ଖେଳ । କିଶୋର ବୟସର ପିଲାମାନେ ଅନେକଦୂରରୁ ଆସି ହଷ୍ଟେଲରେ ରହୁଥିଲେ ହେଁ ପାଠପଢ଼ା

ସହିତ ଚିତ୍ତବିନୋଦନର ଅନେକ ବ୍ୟବସ୍ଥା ଥିବାରୁ ଛାତ୍ରଜୀବନ ଥିଲା ଅତ୍ୟନ୍ତ ଉପଭୋଗ୍ୟ । ବେଳେବେଳେ 'କଥାସାଗର' ଆସି ଘଣ୍ଟାଘଣ୍ଟା ସମୟ ମନୋରଞ୍ଜନ କାହାଣୀ କହି ମୁଗ୍ଧ କରି ଦେଉଥିଲେ । ଶିକ୍ଷକମାନଙ୍କ ନିର୍ଦ୍ଦେଶନାରେ କଳାପ୍ରାଣ ଛାତ୍ରମାନେ 'ଦାସକାଠିଆ' ଅଥବା 'ପାଲା'ର ଅଭିନୟ କରୁଥିଲେ । ବର୍ଷକେ ଥରେ ଅଧେ ନାଟକ ଅଭିନୟ ହେଉଥିଲା । ମୋଟ ଉପରେ କଠୋର ଶୃଙ୍ଖଳା ମଧ୍ୟରେ ଥାଇ ସୁଦ୍ଧା ଛାତ୍ରମାନେ ହସଖୁସୀରେ ସମୟ ବିତାଉଥିଲେ । ଆମ ସମୟରେ କୌଣସି ବାଳିକା ନାଁ ଲେଖାଇବା ଶୁଣା ନଥିଲା ।

ମୁଁ ଯେତେବେଳେ ଚତୁର୍ଥଶ୍ରେଣୀରେ ନାଁ ଲେଖାଇଲି, ଏତେ ଛୋଟ ଥିଲି ଯେ ମୋ ସହପାଠୀମାନେ ପିମ୍ପୁଡ଼ି ବୋଲି ଥଟ୍ଟା କରୁଥିଲେ । ସେହି ଗାଁର ଜଣେ ଅତ୍ୟନ୍ତ ବୁଦ୍ଧିମାନ ଛାତ୍ର ଜାନକୀବଲ୍ଲଭ ପଟ୍ଟନାୟକ ସପ୍ତମଶ୍ରେଣୀରେ ଅଧ୍ୟୟନ କରୁଥିଲେ । ସେ କ୍ଲାସ୍‌ରେ ସର୍ବଦା ପ୍ରଥମ ହେଉଥିଲେ । ତାଙ୍କର ପିତା ଗୋକୁଳାନନ୍ଦ ପଟ୍ଟନାୟକ ଜଣେ ପଲ୍ଲୀକବି ହିସାବରେ ଖ୍ୟାତ ହୋଇଥିଲେ ଏବଂ ସ୍ଥାନୀୟ ଲୋଅର ପ୍ରାଇମେରୀ ସ୍କୁଲର ଥିଲେ ପ୍ରଧାନ ଶିକ୍ଷକ । ଜଣେ ବିଖ୍ୟାତ କବି, ଆଦର୍ଶଶିକ୍ଷକ ଓ ସମ୍ଭ୍ରାନ୍ତ ବ୍ୟକ୍ତିଭାବରେ ସେ ଥିଲେ ସୁପରିଚିତ । ତାଙ୍କର ଏକମାତ୍ର ପୁତ୍ର ଜାନକୀବଲ୍ଲଭ ପରବର୍ତ୍ତୀ କାଳରେ ଓଡ଼ିଶାର ରାଜନୀତି ଓ ସାରସ୍ୱତ କ୍ଷେତ୍ରରେ ହେଲେ ଅତ୍ୟନ୍ତ ସ୍ୱନାମଧନ୍ୟ ଓ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ।

ମନେପଡୁଛି ଆଉଜଣେ ସହପାଠୀ ଫକୀର ହରିଚନ୍ଦନର କଥା । ପାଠପଢ଼ା, ଖେଳ ଓ ଦୁଷ୍ଟାମି, ଅଭିନୟ ଓ କବିତା ଲେଖା- ସବୁ ବିଭାଗରେ ସେ ଥିଲା ଆଗଧାଡ଼ିର । ଦାରିଦ୍ର୍ୟର ତୀବ୍ର କଷାଘାତ ତା'ର ସାଧନା ଓ ବ୍ୟକ୍ତିତ୍ୱକୁ ଆଦୌ ମ୍ଲାନ କରିପାରିନଥିଲା । ପରିଣତ ବୟସରେ ତାର କବିତ୍ୱ, ଗଳ୍ପଲେଖା ଓ ଇତିହାସ ଗବେଷଣା ଆଜି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି । ଏହି ପିଲାବୟସରେ ସେ କିପରି ଏଡେ ଚମତ୍କାର ଗୀତ ଲେଖିପାରୁଥିଲା ଯାହାକୁ ନେଇ ଗ୍ରାମର ଦାସକାଠିଆ ଦଳ ଗୀତ ଗାଉଥିଲେ । ସେମାନେ ଭଣତିରେ 'କହଇ ଫକୀର ହରିଚନ୍ଦନ' ଗାଇଲାବେଳେ ଆମେ ସବୁ ଭାବୁଥିଲୁ, ଏହି କବି ଫକୀର କେହି ଜଣେ ବଡ଼ ମଣିଷ ହୋଇଥିବ !!

ଥରେ ଲମ୍ବୋଦରପୁର ଥିଏଟର ଦଳ ଅଭିନୟ ଦେଖାଇବାକୁ ଡେରା ପକାଇଲେ । ବହୁପରେ ଏହି ଦଳର ପରିଚୟ ହୋଇଥିଲା ଅନ୍ନପୂର୍ଣ୍ଣା ଥିଏଟର । ସେହି ଦଳ ପେଟ୍ରୋମାକ୍ସ ଲାଇଟ ଜାଳି ପ୍ରଥମ ରାତିରେ ଅଶ୍ୱିନୀକୁମାର ଘୋଷଙ୍କର ନାଟକ ''କଳାପାହାଡ଼'' ଅଭିନୟ କଲେ । ଦିନଯାକ ପ୍ରଚାର ହେଉଥାଏ-କୌଣସି ଗର୍ଭିଣୀ ସ୍ତ୍ରୀଲୋକ ଓ ଛୋଟପିଲା ଥିଏଟର ଦେଖିବାକୁ ମନା । କାରଣ କଳାପାହାଡ଼ ଏପରି ଗର୍ଜନ କରିବ ଯେ ଗର୍ଭିଣୀ ସ୍ତ୍ରୀ ପେଟରୁ ପିଲା ଖସିପଡ଼ିବ । ଛୋଟପିଲାମାନେ ବେହୋସ ହୋଇପଡ଼ିବେ । ହଷ୍ଟେଲର ବଡ଼ପିଲାମାନେ ଶିକ୍ଷକଙ୍କର ଅନୁମତି ନେଇ ଥିଏଟର ଦେଖିଲେ । ଛୋଟପିଲା ହୋଇଥିବାରୁ ମୋର ପ୍ରଶ୍ନ ଉଠିଲା ନାହିଁ । ବହୁକାଳ ପରେ କଟକ ଅବସ୍ଥାନ କାଳରେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚର ଅଭିନୀତ ନାଟକ ନିଶ୍ଚୟ ଦେଖୁଥିଲି ବାଲ୍ୟକାଳର ସେହି ତିକ୍ତ ଅନୁଭୂତିକୁ ସ୍ମରଣ କରି । ଆମ ସ୍କୁଲଟି ଥିଲା ପୂରାପୂରି ଗ୍ରାମର ବାହାରେ । ଆଗରେ ବିରାଟ ଆମ୍ବ ବଗିଚା ଓ ପଞ୍ଝୁଦୋଳ ପଡ଼ିଆ ।

ବିଶାଳକାୟ ରାମେଶ୍ୱର ପର୍ବତର ନିଘଞ୍ଚ ଜଙ୍ଗଲ ଲମ୍ବି ଆସିଛି ସ୍କୁଲର ସୀମା ପର୍ଯ୍ୟନ୍ତ । ଜଙ୍ଗଲମଧ୍ୟରେ ହରେକ ପ୍ରକାର କୋଳିଗଛ । ସାଙ୍ଗମେଳରେ କୋଳି ଖାଇବାର ସେ ମଧୁର ଅନୁଭୂତି ଆଜି ସ୍ୱପ୍ନପ୍ରାୟ । ସେ ଜଙ୍ଗଲ ଆଉ ନାହିଁ । ଚାରିଆଡ଼ ଖାଲିଖାଲି । ଅନେକ ସମୟରେ ଦୂର ଜଙ୍ଗଲରୁ ବାଘ ବୋଧହୁଏ ପାଖେଇ ଆସୁଥାଏ ରାମେଶ୍ୱର ପାହାଡ଼ ଜଙ୍ଗଲ ଆଡ଼କୁ । ପବନରେ ବାଘର ଆଇଁଷିଣିଆ ଗନ୍ଧ ଭାସି ଆସେ । ଝରକା କବାଟ ବନ୍ଦ କରି ଅତ୍ୟନ୍ତ ତ୍ରସ୍ତ ଭାବରେ କାଳ କାଟନ୍ତି ହଷ୍ଟେଲର ଅନ୍ତେବାସୀଗଣ । ଆଇଁଷିଣିଆ ଗନ୍ଧ ସମ୍ପୂର୍ଣ୍ଣ ଦୂର ହେଲେ ଅନୁମାନ ହୁଏ ବାଘ ଆଉ ପାଖଆଖରେ ନାହିଁ । ଆମ୍ବ ପାଚିଲା ଦିନରେ ପାହାଡ଼ ଜଙ୍ଗଲରେ ଭାଲୁମାନଙ୍କର ଯିବା ଆସିବା ଲାଗି ରହିଥାଏ । ନାନା ପକ୍ଷୀଙ୍କର କଳରବରେ ଜଙ୍ଗଲ ପରିବେଶ ମୁଖରିତ ହୋଇ ଏକ ଅଭୁଲା ଅଲିଭା ଶିହରଣ ସୃଷ୍ଟି କରିଥାଏ । ବେଳେବେଳେ ରାତିଅଧରେ ସ୍କୁଲ ସାମ୍‌ନା ଗଛରେ ହୁଁ ହାଁ ଚଢ଼େଇ, ପେଚା ରାବ କରନ୍ତି । ଆମେ ହଷ୍ଟେଲର ପିଲାମାନେ କେତେ ଆତଙ୍କରେ ରାତି ବିତାଉ । ତାହା ଆଜି କଳନା କରିହେବ ନାହିଁ ।

କିଛି ଦୂରରେ ଏକ ଗହଳିଆ ତୋଟା ମଧ୍ୟରେ କେଉଁକାଳର ବରଗଛ ମୂଳରେ ଗ୍ରାମର ଶ୍ମଶାନ । ସେହି ବୁଢ଼ାଗଛଟି ଅସଂଖ୍ୟ ଶାଗୁଣା ପକ୍ଷୀଙ୍କୁ ଆଶ୍ରା ଦେଇଥାଏ । ରାତିଅଧରେ ବେଳେବେଳେ ଅଣ୍ଡିରା ବିଲୁଆ ବୋବାଇଲେ ପିଲାବୟସରେ ଛାତି ଧଡ଼୍‌ଧଡ଼୍‌ ହେଉଥିଲା । ଅନେକ ସମୟରେ କିଟିକିଟିଆ ଅନ୍ଧାର ରାତିରେ ଶ୍ମଶାନରେ କେତୋଟି ଆଲୋକପିଣ୍ଡ ଦଉଡ଼ାଦଉଡ଼ି ହେଉଥିବାର ଦେଖାଯାଏ ହଷ୍ଟେଲକୁ । ବଡ଼ପିଲାମାନେ ଆମପରି ଛୋଟପିଲାମାନଙ୍କୁ ଅଭୟ ଦେଇ କହନ୍ତି- ଡାହାଣୀ ଚିରଗୁଣୀ ଖେଳୁଛନ୍ତି । ଝରକା ବନ୍ଦ କରି ଆରାମରେ ଶୋଇଯାଅ । ବଡ଼ ହେଲାପରେ ଜାଣିଲି ଯେ ଶ୍ମଶାନର ନିଆଁ ଅନ୍ୟପ୍ରକାର । ଶବ ପୋଡ଼ାର ପାଉଁଶ ଦେହରେ ଫସ୍‌ଫରସ ଥାଏ । ତହିଁରେ ପବନ ବାଜିଲେ ନିଆଁ ଜଳିଉଠେ । ଅଥବା ବିଲୁଆମାନେ ଆଁ କରି ଚଲାବୁଲା କଲେ ପାଟି ଭିତରଟା ନିଆଁ ଜଳିଲା ପରି ଆଲୋକିତ ହୁଏ । ଅନ୍ଧବିଶ୍ୱାସର ଅଧୀନ ହୋଇ ଆମେ ତାକୁ ଡାହାଣୀ ଚିରଗୁଣୀ ନିଆଁ କହି ଭୟ କରିଥାଉ ।

ବାପା ଦାଦା ପ୍ରଭୃତି ପୁରୀ ସହରରେ ଥିଲେ କର୍ମଜୀବୀ । ସହରରେ ସେମାନେ ପୂଜାରୀ ରଖି ବସାଘରେ ରହୁଥିଲେ । ବୋଉ, ଖୁଡ଼ି ଇତ୍ୟାଦି ଗାଁରେ ରହୁଥିଲେ ଜମିବାଡ଼ିର ଦେଖାରଖା କରିବା ପାଇଁ । ଘରଠାରୁ ଦୂରରେ ହଷ୍ଟେଲରେ ରହିବାରୁ ମୋର ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଲା । ବାରମ୍ବାର ଅସୁସ୍ଥ ହେଉଥିଲି । ଆମ ସମୟରେ ମାଇନର ଶେଷପରୀକ୍ଷା ଥିଲା କେନ୍ଦ୍ର ପରୀକ୍ଷା । ପରିଶ୍ରମ ନକଲେ ମାଇନର ଶେଷ ପରୀକ୍ଷାରେ ସଫଳ ହେବା ଥିଲା କଷ୍ଟକର । ତେଣୁ ମୋତେ ରାମେଶ୍ୱରରୁ ଉଠାଇ ଆଣି ନିଜ ତତ୍ତ୍ୱାବଧାନରେ ପୁରୀରେ ପଢ଼ାଇବା ପାଇଁ ମୁରବୀମାନେ ନିଷ୍ପତ୍ତି କଲେ । ଗାଁ ଭୂଇଁର ସେହି ସବୁଜ ସୁଖକୁ ବିଦାୟ ଦେଇ ଆରମ୍ଭ କଲି ସହରୀଜୀବନ ।

• • •

# ଦ୍ୱିତୀୟ ମହାଯୁଦ୍ଧର ଅମା ଅନ୍ଧକାର

ଏହା ହେଉଛି ୧୯୪୧ ମସିହାର କଥା । ସେତେବେଳକୁ ଇଉରୋପରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଯାଇଥାଏ । ଚାରିଆଡ଼େ କୋକୁଆଭୟ । ଶୁଣାଯାଉଥାଏ କଟକରୁ ରାଜଧାନୀ ଉଠିଯାଇଛି ସମ୍ବଲପୁରକୁ ବୋମାମାଡ଼ ଭୟରେ । ପୁରୀ ସହର ହେଲା ସମୁଦ୍ର କୂଳରେ । ବଡ଼ମାନେ କଥା ହେଉଥାନ୍ତି ଜାପାନୀ ଜାହାଜରୁ ବୋମାବର୍ଷା ହେବ । ବଡ଼ ଦେଉଳ ମାଟିରେ ମିଶିଯିବ । ଘୋର କଳିକାଳ ଶେଷ ହେବା ଉପରେ । ମଫସଲର ଯେଉଁ କର୍ମଜୀବୀମାନେ ସହରରେ ପରିବାର ନେଇ ଭଡ଼ାଘରେ ରହୁଥିଲେ, ସେମାନେ ମାଇପି ପିଲାଙ୍କୁ ଗାଁକୁ ପଠାଇଦେଲେ । କିଏ କହିବ, ଅଚାନକ କେତେବେଳେ କ'ଣ ବିପତ୍ତି ପଡ଼ିବ ।

ସଂଧ୍ୟା ହେଲେ ଚାରିଆଡ଼େ ଅନ୍ଧାର । ବିଜୁଳିଖୁଣ୍ଟର ଆଲୁଅବତୀ କଳାରଙ୍ଗ ବୋଳାହୋଇ କେବଳ ଖୁଣ୍ଟମୂଳକୁ ଆଲୁଅ ପକାଉଥାଏ । କୋଠାଘରର କାଚ ଝରକା ବାଟେ କାଳେ ଆଲୁଅ ଦେଖାଯିବ ବୋଲି କଳାରଙ୍ଗ ବୋଳାଯାଇଥାଏ । ଟର୍ଚ୍ଚ ଲାଇଟ୍ କାଚ ଉପରେ ମଧ୍ୟ ଅଳ୍ପ ମୁହଁ ରଖି କାଗଜ ମଡ଼ା ଯାଇଥାଏ ।

ସହରର ପ୍ରଧାନ ରାସ୍ତାମାନଙ୍କରେ ଦୀର୍ଘ ଆୟତନରେ ଖାଲ ଖୋଳା ହୋଇଥାଏ । ଶତ୍ରୁ ଜାହାଜ ସହର ଆକାଶରେ ପଇନ୍ତରା ମାରିବାର କଳ୍ପନା କରି ଏପରି ବ୍ୟବସ୍ଥା । ସତର୍କ କରି ସାଇରନ୍ ବାଜି ଉଠିଲେ ଲୋକମାନେ ଜୀବନ ବିକଳରେ ଏହି ଖାଲମାନଙ୍କରେ ଛପି ରହୁଥିଲେ । ଆକାଶ ସଫା ହୋଇଗଲା ବୋଲି ପୁନର୍ବାର ସାଇରନ୍ ବାଜିଲେ ଲୋକମାନେ ଗାତରୁ ବାହାରି ଆସୁଥିଲେ ।

ଯୁଦ୍ଧକାଳୀନ ଗୋଟିଏ ସରକାରୀ ବିଭାଗର ନାଁ ହେଉଛି ଏ.ଆର.ପି ଅର୍ଥାତ୍ ଏଆର ରେଡ୍ ପ୍ରିକସନ୍ । ଏହି ବିଭାଗରେ ସହରର ଅନେକ ଯୁବକ ଯୋଗ ଦେଇଥାନ୍ତି । ସେମାନଙ୍କର ଦେହରେ ଖାକୀ ପୋଷାକ, ମୁଣ୍ଡରେ ଲୁହାର ଟୋପି ।

ବୋମାବର୍ଷି ବିମାନର ଆଗମନ କଳ୍ପନା କରି ଲୋକମାନଙ୍କୁ ସତର୍କ ହେବାରେ ଅଭ୍ୟସ୍ତ ହେବାପାଇଁ ମଧ୍ୟେ ମଧ୍ୟେ ସାଇରନର ଗର୍ଜନ ସହରର ଆକାଶକୁ ପ୍ରକମ୍ପିତ କରିଦିଏ । ପଥଚାରୀ ଯେ ଯେଉଁ କାମରେ ଯାଉଥିବେ, ଦଉଡ଼ିଆସି ଟ୍ରେଞ୍ଚ ଭିତରେ ପଶିଯିବେ । ବଡ଼ବଡ଼ ଇଟାର ପ୍ରାଚୀର ମଧ୍ୟ ତିଆରି ହୋଇଥାଏ । କେହିକେହି ତାରି ଆଢୁଆଳରେ ଆଶ୍ରୟନେବେ । ଏହି ସମୟରେ ଏ.ଆର.ପି ପୋଲିସର କାମ ହେଲା ସାହି ବସ୍ତିରେ ବୁଲି ଲୋକମାନଙ୍କୁ ସାବଧାନ

କରିବା । ଲୋକମାନେ ଏକପ୍ରକାର ଆତଙ୍କିତ ଅବସ୍ଥାରେ ଥାଆନ୍ତି । ସେତେବେଳେ ତ ରେଡ଼ିଓର ଲୋକପ୍ରିୟତା ଆସି ନଥିଲା । ସାଧାରଣ ଲୋକଙ୍କ ଘରେ ରେଡ଼ିଓ ନଥିଲା । ସରକାରଙ୍କ ପ୍ରଚାର ବିଭାଗ ଟାଉନହଲରେ ଗୋଟିଏ ରେଡ଼ିଓ ରଖିଥିଲେ ସର୍ବସାଧାରଣଙ୍କ ପାଇଁ । ଆଜିକାଲି ପରି ମଧ୍ୟ ଏତେ ଖବରକାଗଜ ନଥିଲା । ''ସମାଜ'' ହିଁ ଥିଲା ଏକମାତ୍ର ଦୈନିକ । ଦୈନିକ ''ନବଭାରତ'' କିମ୍ବା ''ଆଶାର'' ଏପରି ଆଦର ନଥିଲା । ୟୁରୋପରେ ଯେଉଁ ଦୁଇଟି ଶକ୍ତି ଯୁଦ୍ଧରେ ବ୍ୟାପୃତ ହୋଇଥିଲେ ସେମାନେ ନାମିତ ହୋଇଥିଲେ ମିତ୍ରଶକ୍ତି ଓ ଚକ୍ରଶକ୍ତି ନାମରେ । ମିତ୍ରଶକ୍ତିରେ ଥିଲେ, ଗ୍ରେଟବ୍ରିଟେନ ଓ ଫ୍ରାନ୍ସ । ପରେ ଏମାନଙ୍କ ସହିତ ଯୋଗ ଦେଲେ ସୋଭିୟେତ ଋଷିଆ । ଚକ୍ରଶକ୍ତିରେ ମୁଖ୍ୟତଃ ଥିଲେ ଜର୍ମାନୀ ଓ ଇଟାଲୀ । ତାଙ୍କୁ ସମର୍ଥନ କରି ପୂର୍ବଗୋଲାର୍ଦ୍ଧରେ ଜାପାନ ଯୁଦ୍ଧକୁ ଜାରି ରଖିଥିଲା । ବହୁ ପରେ ଯୁକ୍ତରାଷ୍ଟ୍ର ଆମେରିକା ମିତ୍ରଶକ୍ତିକୁ ସମର୍ଥନ କରିଥିଲା ।

ସହରର କାନ୍ଥବାଡ଼ରେ ବିଶାଳ ବିଜ୍ଞାପନ ଚିତ୍ର ଛପାଯାଇଥାଏ । ଅତି ଭୟଙ୍କର ସେ ଚିତ୍ର । ଜାପାନୀ ଓ ଜର୍ମାନୀ ରାକ୍ଷସମାନେ କିପରି ମଣିଷର ମୁଣ୍ଡ ମୋଡ଼ିବାରେ ଲାଗିଛନ୍ତି, ଏପରି ଧାରଣା ଦିଆଯାଉଥାଏ ପ୍ରଚାର ହେଉଥାଏ ଜର୍ମାନୀ ଏବଂ ଜାପାନ ଉଭୟ ଦିଗରୁ ମାଡ଼ି ଆସିଲେ ଭାରତର ଅବସ୍ଥା ଏହିପରି ହେବ ।

ଚାହୁଁଚାହୁଁ ଜାପାନ ବ୍ରହ୍ମଦେଶ ପର୍ଯ୍ୟନ୍ତ (ବର୍ତ୍ତମାନର ମିୟାମାର) ଦଖଲ କରି ଭାରତ ଆଡ଼କୁ ମାଡ଼ି ଆସୁଥାଏ । ଭାରତର ଉପକୂଳରେ ଜାପାନ ବୋମା ବର୍ଷଣ କରି ଇଂରେଜ ରଣତରୀକୁ ଧ୍ୱଂସ କରୁଥାଏ । ଅନେକ ପ୍ରକାର ଉଡ଼ାଖବରରେ ସମସ୍ତ ବାତାବରଣ ଥାଏ ସରଗରମ ।

ସମସ୍ତ ପ୍ରକାର ଆବଶ୍ୟକୀୟ ଜିନିଷ ଯୁଦ୍ଧ ପାଇଁ ଯୋଗାଇ ଦିଆଯାଉଥାଏ । ତେଣୁ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ କ୍ରମେକ୍ରମେ ଖୋଲାବଜାରରେ ଆଉ ମିଳିଲା ନାହିଁ । ଜନ ଅସନ୍ତୋଷ ପ୍ରବଳ ହେଲା । ଖୋଲା ବଜାରରେ ଚିନି, କିରୋସିନି, ଦିଆସିଲି, କାଗଜ, ଲୁଗାପଟା ଇତ୍ୟାଦି ମିଳିଲା ନାହିଁ । ସରକାର କଣ୍ଟ୍ରୋଲ ଜାରି କଲେ । ଜିନିଷପତ୍ରର ଦରଦାମ ହୁହୁ ହୋଇ ବଢ଼ିବାରେ ଲାଗିଲା । ବିବାହ ଓ ବ୍ରତଘର ପାଇଁ ଆବଶ୍ୟକ ଲୁଗା ଓ ଶାଢ଼ୀ ଇତ୍ୟାଦି ମନଇଚ୍ଛା କିଣାଯାଇ ପାରିଲା ନାହିଁ । ଚିନି ବଦଳରେ ଲୋକମାନେ ବାଧ୍ୟ ହୋଇ ଗୁଡ଼ ବ୍ୟବହାର କଲେ । ଅନେକ ଲୋକ ଦିଆସିଲି ଅଭାବରେ ଝକମକି ପଥର ଘସି ତୁଳା ଅଥବା କତାରେ ନିଆଁ ଧରାଉଥିଲେ । କାଗଜ ଅଭାବ ପାଠ ପଢ଼ିବା ପିଲାମାନଙ୍କ ପାଇଁ ହେଲା ଏକ ସମସ୍ୟା । ତାକୁ ମଧ୍ୟ କଣ୍ଟ୍ରୋଲ ଦରରେ ସରକାର କୁଣ୍ଠିତ ହୋଇ ଯୋଗାଉଥିଲେ । ଚିଠିପତ୍ର ଲେଖିବାପାଇଁ ମଧ୍ୟ କାଗଜ ସୁଲଭ ହେଲାନାହିଁ । ଡାକଘରେ ପୁରୁଣା ଏନ୍‌ଭଲପ୍‌କୁ ଆଉଥରେ ବ୍ୟବହାର କରିବାକୁ କୁହାଯାଉଥିଲା ।

ପୁରୀ ସହରରେ ଗୋଟିଏ ସିନେମାଘର ଥିଲା ଲକ୍ଷ୍ମୀଟକିଜ । ସେତେବେଳେ ଡାକବାଜି ଯନ୍ତ୍ରର ଯୁଗ ଆସିନାହିଁ । ନୂଆ ଚଳଚ୍ଚିତ୍ରଟିଏ ପଡ଼ିଲେ ହାଣ୍ଡବିଲ ଛାପି ଶଗଡ଼ଗାଡ଼ିରେ ଅଥବା

ହାତଟଣା ରିକ୍ସାରେ ବସି ଦାଣ୍ଡେଦାଣ୍ଡେ ବଣ୍ଟା ଯାଉଥିଲା । କାଗଜ ତ ମିଳିଲା ନାହିଁ । ତେଣୁ ଖଲିପତ୍ରକୁ ସାଇଜ କରି ହାତ ପ୍ରେସ୍‌ରେ ସିନେମା ବିଜ୍ଞାପନ ଛପାଯାଉଥିଲା ବିତରଣ ହେବାପାଇଁ ।

ବୟାଳିଶ ମସିହାର ଭାରତଛାଡ଼ ଆନ୍ଦୋଳନ ଯୋଗୁ ଭାରତର ନେତୃବର୍ଗ ଓ ରାଜନୈତିକ କର୍ମୀମାନେ ସମସ୍ତେ କାରାଗାରରେ ଆବଦ୍ଧ । ଲୋକଙ୍କର କଥା କହିବା ପାଇଁ କେହି ନାହିଁ । ବେଳେବେଳେ ପୁରୀର ଏମାରମଠ ଚଉତରାରେ ସରକାରୀ ଲୋକେ ସଭା କରି ଯୁଦ୍ଧର କପୋଳକଳ୍ପିତ କାହାଣୀ ବର୍ଣ୍ଣନା କରନ୍ତି । ଯୁବକମାନଙ୍କୁ ଯୁଦ୍ଧରେ ଯୋଗଦେବାପାଇଁ ଆହ୍ୱାନ ଦିଅନ୍ତି । ପ୍ରଚାର ବିଭାଗର ଅଫିସରମାନେ ସ୍କୁଲକୁ ଯାଇ ବୁଝାଉଥିଲେ ଯୁଦ୍ଧରେ ଯୋଗ ଦେବାପାଇଁ ।

ଲୋକମାନଙ୍କୁ ଅଧିକ ଭୟଭୀତ କରିବାପାଇଁ ସରକାରୀ ଦଲାଲମାନେ ସାହିବସ୍ତିରେ ଚାଳଘରେ ନିଆଁ ଲଗାଇ ଦେଉଥିଲେ । କେତେବେଳେ କେଉଁଠାରେ ନିଆଁ ଲାଗିବ, ତାର ଠିକଣା ନଥାଏ । କିଏ ଲଗାଉଛି, ତାହାର ଚିହ୍ନବର୍ଣ୍ଣ ନଥାଏ । ତେଣୁ ପ୍ରତ୍ୟେକ ସାହିବସ୍ତିରେ ଯୁବକମାନେ ପାଳି କରି ରାତିସାରା ପହରା ଦେଉଥାନ୍ତି । ମଝିରେ ମଝିରେ ସେଇ ଅନ୍ଧାର ରାତିରେ ଶୁଣାଯାଉଥାଏ-‘‘ବସ୍ତିବାଲା ହୁସିଆର ହୋ ।’’

ସହରରେ ଗୋରା ସାହେବ ସୈନ୍ୟଙ୍କର ଏକ ଛାଉଣି ଥାଏ ସୁନାର ଗୌରାଙ୍ଗ ଅଞ୍ଚଳରେ । ମଝିରେ ମଝିରେ ସେମାନେ ପ୍ରଧାନ ରାସ୍ତାରେ ମାର୍ଚ୍ଚିଂ କରି ଯାଉଥାଆନ୍ତି । ଲୋକମାନଙ୍କ ମନରେ ଆତଙ୍କ ଖେଳିଯାଏ । ଅନେକ ସମୟରେ ପକ୍ଷୀ ଉଡ଼ିଲା ପରି ଆକାଶମାର୍ଗରେ ଉଡ଼ାଜାହାଜ ପଇନ୍ତରା ମାରୁଥାଆନ୍ତି । ଯୁଦ୍ଧଭୟ ପାଇଁ ପୁରୀ ସହରକୁ ବାହାରୁ ତୀର୍ଥଯାତ୍ରୀ ଆସିବା ଅନେକ କମିଯାଇଥାଏ । ବାହାଘର ବ୍ରତଘରରେ ଆଡ଼ମ୍ବର ନଥାଏ । ଆଲୋକସଜା ତ ପୂରାପୂରି ମନା । ଭୋଜିଭାତ ମଧ୍ୟ ଅତି ସାଧାସିଧା ।

ଏହିପରି ଏକ ଦୁର୍ଦ୍ଦିନରେ ପୁରୀ ସହରକୁ ଆସିଲି । ନାଁ ଲେଖା ହେଲା ଏଡ଼ୋଓ୍ୱାଡ଼ ମି.ଇ. ସ୍କୁଲରେ । ପୁରୀ ସହରର ପଶ୍ଚିମ ଦିଗରେ ଏକ ନିର୍ଜନ ବାଲିପଡ଼ିଆରେ ଏହି ଶହେବର୍ଷର ସ୍କୁଲଟି ବିଦ୍ୟମାନ । ଅଳ୍ପବାଟ ଗଲେ ଅତ୍ୟନ୍ତ ବିଖ୍ୟାତ ଶ୍ରୀଲୋକନାଥଙ୍କ ମନ୍ଦିର । ଚାରିଆଡ଼େ ଝାଉଁଗଛ, ପୋଲାଙ୍ଗ ଗଛ ଓ ଲଙ୍କାଆମ୍ବ ଗଛର ବଣ । ମନୋରମ ପ୍ରାକୃତିକ ପରିବେଶ । ଲୋକନାଥଙ୍କ ମନ୍ଦିର ପୂର୍ବରୁ ପୁରୀର କୃଷ୍ଣାଶ୍ରମ । ତାହାରି ପଛପଟ ବାଲି ରାସ୍ତାରେ ଗଲେ ଏକ ବାଲୁକା ପାହାଡ଼ ଗୀର୍ଣ୍ଣାରିବନ୍ତ । ଗୋଟିଏ ମାତ୍ର ଘର ତା' ଉପରେ । ସେଇଠି ଏକାକୀ ରହୁଥିଲେ ଲଂଗୁଳି ବାବା । ସର୍ବଦା ନଗ୍ନ ଦେହରେ ପଦ୍ମାସନରେ ଆସୀନ । ବିଶେଷ କଥା ହୁଅନ୍ତି ନାହିଁ । ତାଙ୍କ ବିଷୟରେ ଅନେକ କାହାଣୀ । ତାଙ୍କୁ କୁଆଡ଼େ ପାଞ୍ଚଶହ ବର୍ଷ ହେଲାଣି । ସେ ହିମାଳୟରେ ତପସ୍ୟା କରୁଥିଲେ । ବର୍ତ୍ତମାନ ପୁରୀରେ ନିର୍ଜନ ଅଧିବାସ । ଅଧ୍ୟାପକ ଜୀବନରେ ଜାଣିଲି ଯେ ଏହି ଲଙ୍ଗୁଳିବାବା ହେଉଛନ୍ତି ବିଖ୍ୟାତ ସନ୍ଥ ତୋତାପୁରୀ ମହାରାଜ । ସେ ଭାରତବିଖ୍ୟାତ ରାମକୃଷ୍ଣ ପରମହଂସଙ୍କୁ ଦୀକ୍ଷା ପ୍ରଦାନ କରିଥିଲେ । ବିଂଶ ଶତକର

ଷଷ୍ଠ ଦଶକବେଳକୁ ସେ ଦେହ ତ୍ୟାଗ କରିଥିଲେ । ବର୍ତ୍ତମାନ ଗୀର୍ଣ୍ଣାରିବନ୍ତରେ ପୂର୍ବର ନିର୍ଜନ ପରିବେଶ ନାହିଁ । ବିରାଟ ସ୍ମୃତି ମନ୍ଦିର ଓ ଅସଂଖ୍ୟ ଜନବସତି । ପୂର୍ବର ଜାଙ୍ଗଲିକ ସୁଷମା ମଧ ଆଜି ସ୍ୱପ୍ନପ୍ରାୟ ।

ସେହି ଜଙ୍ଗଲ ମଧ୍ୟରେ ଧର୍ମପ୍ରଚାରକ ଖ୍ରୀଷ୍ଟିଆନ ପାଦ୍ରୀମାନେ କେଉଁକାଳରୁ ଏକ ଚର୍ଚ୍ଚ ପ୍ରତିଷ୍ଠା କରିଥିଲେ । ସ୍ଥାନୀୟ ବଣୁଆଜାତିକୁ ଧର୍ମାନ୍ତରିତ କରି ସେମାନଙ୍କୁ ଶିକ୍ଷିତ କରିବାରେ ଉଦ୍ୟମ କରିଛନ୍ତି ।

ପୁରୀର ବିଖ୍ୟାତ ପଞ୍ଚ ମହାଦେବଙ୍କ ମଧ୍ୟରେ ଶ୍ରୀଲୋକନାଥ ଅତ୍ୟନ୍ତ ବିଖ୍ୟାତ । ବର୍ଷତମାମ ସେହି ଲିଙ୍ଗ ଜଳରେ ବୁଡ଼ିକରି ଥାଆନ୍ତି । ଜାଗର ଯାତ୍ରା ପୂର୍ବଦିନ ପଙ୍କ ଉଝଲା ଏକାଦଶୀରେ ମନ୍ଦିର ଅଭ୍ୟନ୍ତରର ଜମିଥିବା ପାଣିକୁ ଖାଲି କରିଦିଆଯାଏ । ଉତ୍କଣ୍ଠିତ ଭକ୍ତମାନେ ଲୋକନାଥଙ୍କୁ ଦର୍ଶନ କରନ୍ତି । ସାରାରାତି ସେହି ବାଲୁକାପ୍ରାନ୍ତରରେ ହଜାର ହଜାର ନରନାରୀ ଜାଗରଜାଳି ପୁଣ୍ୟ ଅର୍ଜନ କରନ୍ତି । ସେହି ଗୋଟିଏ ଦିନ ଶ୍ରୀଲୋକନାଥଙ୍କୁ ଦର୍ଶନ କରିବାର ସୌଭାଗ୍ୟ ମିଳିଥାଏ । ଶ୍ରୀଜଗନ୍ନାଥଙ୍କ ପୀଠରେ ଶ୍ରୀଲୋକନାଥଙ୍କର ପ୍ରତାପ ଅଧିକ । ଲୋକମାନେ ଭୟ କରନ୍ତି । ନ୍ୟାୟନିଶାପରେ ଲୋକନାଥଙ୍କର ରାଣ ପକାଇଲେ ସତ୍ୟକଥା ବାହାରିଆସେ ।

ଏଡ଼ୋଓ୍ୱାର୍ଡ଼ ମି.ଇ. ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ କୃଷ୍ଣଚନ୍ଦ୍ର ରଥ । ସେ ହେଉଛନ୍ତି ବିଖ୍ୟାତ ଐତିହାସିକ, ସତ୍ୟବାଦୀ ଆନ୍ଦୋଳନର ଅନ୍ୟତମ ପଞ୍ଚସଖା କୃପାସିନ୍ଧୁ ମିଶ୍ରଙ୍କର କନିଷ୍ଠ ଭ୍ରାତା । ଆଦର୍ଶ ଶିକ୍ଷକ । ନିଷ୍ଠାପର ପ୍ରଶାସକ । ସପ୍ତମ ଶ୍ରେଣୀର ପିଲାମାନଙ୍କୁ ନିଜ ଘରେ ବସାଇ ଇଂରାଜୀ ପାଠର କୋଚିଂ କ୍ଲାସ୍ କରନ୍ତି । କୌଣସି ପ୍ରକାର ପ୍ରାପ୍ୟ ଗ୍ରହଣ କରନ୍ତି ନାହିଁ । ସାହିତ୍ୟଶିକ୍ଷକ ଥିଲେ ବାସୁଦେବ ମହାପାତ୍ର । ସେ ମଧ ବିନା ବେତନରେ ବର୍ଷ ସାରା ସପ୍ତମଶ୍ରେଣୀ ପିଲାଙ୍କୁ ନିଜଘରେ କୋଚିଂକ୍ଲାସ୍ କରାଉଥିଲେ । ସେମାନେ ଥିଲେ ସ୍ୱଳ୍ପବେତନ ଭୋଗୀ । କିନ୍ତୁ ଟିଉସନର ନାମ ଗନ୍ଧ ଶୁଣା ନଥିଲା । ସମସ୍ତେ ଥିଲେ ଛାତ୍ରବତ୍ସଳ । ସ୍କୁଲର ଯେପରି ସୁନାମ ହେବ, ସେହି ଅନୁରୋଧରେ ଲାଗି ପଡ଼ିଥିଲେ । ଆଉ ଜଣେ ଶିକ୍ଷକ ଥିଲେ ଦୀନବନ୍ଧୁ ସାର୍ । ଅତ୍ୟନ୍ତ ବୟସ୍କ । କେଉଁକାଳୁ ଶିକ୍ଷକତା କଲେଣି । ସେ ଅଧିକାଂଶ ଛାତ୍ରଙ୍କର ମୁରବୀମାନଙ୍କର ଶିକ୍ଷକ ଥିଲେ । କୌଣସି ଛାତ୍ର ନଇଁକରି ବସିଲେ ପଛଆଡୁ ପିଠିରେ ସାର୍‌ଙ୍କର ବେତ ପ୍ରହାର । ତେଣୁ ସମସ୍ତେ ସାବଧାନ । ସିଧା ହୋଇ ବସିବାକୁ ହୁଏ । ବେତମାଡ଼ରେ ଯଦି କେହି ଛାତ୍ର କାନ୍ଦି ଉଠିଲା, ତତ୍‌କ୍ଷଣାତ୍ ପକେଟରୁ ପିଜୁଳି କିମ୍ବା ଆଉ କିଛି କୋଳି କାଢ଼ି ତା'ର ପାଟିରେ ମାଡ଼ି ଦେଉଥିଲେ । କ୍ଲାସ୍‌ରେ ହସ ବୃଷ୍ଟି ହୁଏ । ତା'ର ମଧ କାନ୍ଦ ବନ୍ଦ ହୋଇଯାଏ । ଅନ୍ୟଜଣେ ସହକାରୀ ଶିକ୍ଷକ ଥିଲେ ଜଗନ୍ନାଥ ସାର୍ । ଭର୍ଣ୍ଣାକୁଲେର ପର୍ଯ୍ୟନ୍ତ ଶିକ୍ଷା । କିନ୍ତୁ ଅତି ଦକ୍ଷ ଶିକ୍ଷକ । କେବଳ ଇଂରେଜୀ ପଢ଼ାକୁ ଛାଡ଼ିଦେଲେ ସେ ସାହିତ୍ୟ, ଭୂଗୋଳ, ଇତିହାସ, ସ୍ୱାସ୍ଥ୍ୟରକ୍ଷା, ଡ୍ରଇଂ, ଅଙ୍କ ପ୍ରଭୃତି ପ୍ରତ୍ୟେକ ବିଷୟରେ ଥିଲେ ଧୂରୀଣ ଶିକ୍ଷାଦାତା । ତାଙ୍କଠାରୁ ଶିକ୍ଷାଲାଭ କଲେ ଛାତ୍ରର ମୂଳଦୁଆ ସୁଦୃଢ଼ ହୋଇଯାଉଥିଲା ।

ଆଜିକାଲି ସେପରି ପୁଣ୍ୟଶ୍ଲୋକ ଶିକ୍ଷକମାନେ ଆଉ ନାହାନ୍ତି । ପାଠପଢ଼ା ଏକ ବ୍ୟବସାୟ ହୋଇଯାଇଛି । ଟିଉସନର ବେପାର ବ୍ୟତୀତ ଶିକ୍ଷକମାନଙ୍କର ଆଉ କୌଣସି ସଂପର୍କ ନାହିଁ । ଏହି ରୋଗ ସଂକ୍ରମଣ ହୋଇ ମହାବିଦ୍ୟାଳୟ ଓ ଟେକ୍‌ନିକାଲ ଅନୁଷ୍ଠାନ ପର୍ଯ୍ୟନ୍ତ ପ୍ରସାରିତ ହୋଇଯାଇଛି ।

ମାଇନର ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ପରୀକ୍ଷା ଫଳ ''ସମାଜ'' କାଗଜରେ ପ୍ରକାଶିତ ହେଲା । ସେହି ପିଲାବୟସରେ ନିଜର ନାଁ କୁ ଛପା ଅକ୍ଷରରେ ଦେଖି ଯେଉଁ ପୁଲକ ଆସିଥିଲା ତାହା ଅବର୍ଣ୍ଣନୀୟ । ସେହି ଖବରକାଗଜ ଖଣ୍ଡକ ବହୁବର୍ଷ ପର୍ଯ୍ୟନ୍ତ ପାଖରେ ରଖିଥିଲି ଏବଂ ବେଳେବେଳେ ନିଜ ନାଁଟି ପଢ଼ି ଦେଇ ଖୁସି ହେଉଥିଲି । ବୋଧହୁଏ ନିଜର ନାଁଟି ସାହିତ୍ୟ ଲେଖା ଜରିଆରେ ସାମୟିକ ପତ୍ରରେ ପ୍ରକାଶିତ ହେବାରୁ ଏହି ଅନୁଭବର ଆଉ ଆବଶ୍ୟକ ପଡ଼ିଲା ନାହିଁ ।

ସେତେବେଳେ ପୁରୀ ସହରରେ ମହାବିଦ୍ୟାଳୟ ନଥିଲା । ପୁରୀ ଜିଲ୍ଲା ସ୍କୁଲ ଥିଲା ପ୍ରଧାନ ଶିକ୍ଷାୟତନ । 'ଆଙ୍ଗଲୋବେଙ୍ଗଲି' ନାମରେ ଗୋଟିଏ ମାଇନର ସ୍କୁଲ ମଧ୍ୟ ରହିଥିଲା । ବହୁପରେ ଏହା ବିଶ୍ୱମ୍ଭର ବିଦ୍ୟାପୀଠ ନାମରେ ହାଇସ୍କୁଲରେ ପରିଣତ ହୋଇଛି । ପୁରୀର ପଶ୍ଚିମ ଦିଗରେ ବିଶାଳ ଜନବସତି । ଅଥଚ ପିଲାଏ ପାଠ ପଢ଼ିବାକୁ ହାଇସ୍କୁଲଟିଏ ନାହିଁ । ଏମାର ମଠର ତତ୍କାଳୀନ ଶିକ୍ଷାପ୍ରେମୀ ମହନ୍ତ ମହାରାଜ ଗଦାଧର ରାମାନୁଜ ଦାସଙ୍କ ଅକୁଣ୍ଠ ଦାନରେ ଏଡ଼ୋଓ୍ୟାର୍ଡ଼ ମି.ଇ ସ୍କୁଲ ହତାରେ ଆରମ୍ଭ ହେଲା ଏକ ହାଇସ୍କୁଲ ଏବଂ ନାମକରଣ କରାଗଲା ପ୍ରତିଷ୍ଠାତାଙ୍କୁ ସ୍ମରଣ କରି ଗଦାଧର ହାଇସ୍କୁଲ ୧୯୪୨ ମସିହାରେ । ମାଇନର ପାସ୍ କଲାପରେ ମୁରବୀମାନେ ଇଚ୍ଛା କରୁଥିଲେ ପୁରୀ ଜିଲ୍ଲା ସ୍କୁଲରେ ମୋର ନାମ ଲେଖାଇବା ପାଇଁ । ମାତ୍ର ଶିକ୍ଷକମାନଙ୍କ ଅନୁରୋଧରେ ଏହି ପ୍ରସ୍ତାବିତ ହାଇସ୍କୁଲର ପ୍ରଥମ ବ୍ୟାଚରେ ନାମ ଲେଖାଗଲା । ଏହି ସମୟରୁ ମୋର ସହପାଠୀ ଏବଂ ଅନ୍ତରଙ୍ଗ ବନ୍ଧୁ ହୋଇଗଲେ ହରିହର ବାହିନୀପତି । ଏହି ବାହିନୀପତି ପରବର୍ତ୍ତୀ ଜୀବନରେ ପୁରୀ ସହରର ବିଖ୍ୟାତ ରାଜନୈତିକ ନେତା ଭାବରେ ଓଡ଼ିଶା ବିଧାନ ସଭାରେ ପ୍ରତିନିଧିତ୍ୱ କରିଥିଲେ ଏବଂ ଉପବାଚସ୍ପତିର ଆସନ ମଧ୍ୟ ଅଳଙ୍କୃତ କରିଥିଲେ । ଦରିଦ୍ର ଓ ଅବହେଳିତ ଜନତାଙ୍କର ସେ ଥିଲେ ନିଷ୍ଠାପର ସେବକ । ସେମାନଙ୍କର ଦାବୀ ହାସଲ ପାଇଁ ସେ ବାରମ୍ବାର ଜେଲ୍‌ଜୀବନ ମଧ୍ୟ ବରଣ କରିଥିଲେ ହସିହସି । ସେ ଥିଲେ ଏକାଧାରରେ ଜଣେ କବି, ଔପନ୍ୟାସିକ ଓ ଅନୁବାଦକ । ଛାତ୍ରଜୀବନରେ ଲେଖିଥିଲେ ପ୍ରଥମ ଉପନ୍ୟାସ 'ନରକର କଇଁ' । ଏହି ପୁସ୍ତକର ମୁଖବନ୍ଧ ଲେଖିଥିଲେ ବିଖ୍ୟାତ ନେତା ଓ ସୁଲେଖକ ଗୋଦାବରୀଶ ମିଶ୍ର । ଛାତ୍ରଜୀବନରୁ ବାହିନୀପତି ଥିଲେ ଜଣେ ଶକ୍ତିଶାଳୀ ବକ୍ତା । ଗୋଟିଏ ଦିନର ଘଟଣା ମନେପଡୁଛି । ସେହି ସମୟରେ ଓଡ଼ିଶାର ସ୍କାଉଟ କମିସନର୍ ଥିଲେ ବିଖ୍ୟାତ ହୋମିଓପାଥ୍ ଡାକ୍ତର ଜେ.ଚୌଧୁରୀ । ସେ ଏହି ନୂଆ ଆରମ୍ଭ ହୋଇଥିବା ଗଦାଧର ହାଇସ୍କୁଲ ପରିଦର୍ଶନରେ ଆସିଲେ । କେବଳ ଅଷ୍ଟମଶ୍ରେଣୀ ଖୋଲାଯାଇଥାଏ । ଶିକ୍ଷକ ଓ ଛାତ୍ରମାନଙ୍କ ମେଳରେ ଡାକ୍ତର ଚୌଧୁରୀ ଉପସ୍ଥିତ

ରହି ଅନେକ ଉପଦେଶ ଦେଲେ । ଘୋଷଣା କଲେ, ଯେଉଁ ଛାତ୍ର ସ୍କାଉଟ ବିଷୟରେ ପାଞ୍ଚମିନିଟ କହିପାରିବ, ତାକୁ ପାଞ୍ଚଟଙ୍କା ପୁରସ୍କାର ଦିଆଯିବ । ଆମେ ଅଧିକାଂଶ ଛାତ୍ର ''ସ୍କାଉଟ''ର ନାଁ ମଧ୍ୟ ଶୁଣିନଥିଲୁ । ତେଣୁ ନୀରବ ରହିବା ସ୍ୱାଭାବିକ । ତା'ଛଡ଼ା ପାଞ୍ଚଜଣଙ୍କ ଆଗରେ ଠିଆ ହୋଇ କହିବାର ସାହାସ କେଉଁଠି ଥିଲା ? ମୋ ପାଖରେ ବସିଥିବା ବାହିନୀପତି ହଠାତ୍ ଠିଆ ହୋଇ ଭାଷଣ ଆରମ୍ଭ କରିଦେଲେ । ଶିକ୍ଷକମାନେ ଓ ସହପାଠୀ ସମୂହ ଚକିତ ହୋଇ ଚାହିଁ ରହିଥାଉ । ଡାକ୍ତର ଜେ.ଚୌଧୁରୀ ସାବାସ କହି ତୁରନ୍ତ ପାଞ୍ଚଟଙ୍କା ପୁରସ୍କାର ଦେଲେ । ୧୯୪୨ ମସିହାରେ ପାଞ୍ଚଟି ଟଙ୍କାର ମୂଲ୍ୟ ଯଥେଷ୍ଟ ଥିଲା ।

କଥାରେ ଅଛି Morning shows the day ଯାହା ନହୋଇଛି ବାଳୁତକାଳେ, ତାହା କି ହୋଇବ ପାଚିଲାବାଳେ । ବାସ୍ତବିକ ପରବର୍ତ୍ତୀ ଜୀବନରେ କି ରାଜନୀତି, କି ସାହିତ୍ୟ, ପ୍ରତ୍ୟେକ କ୍ଷେତ୍ରରେ ବାହିନୀପତି ଥିଲେ ଜଣେ ପ୍ରଭାବଶାଳୀ ବକ୍ତା, ସୁସଂଗଠକ ଓ ଲୋକପ୍ରିୟ ନେତା ।

ଆରମ୍ଭ ହୋଇଥାଏ ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନ । ଇଂରେଜ ସରକାରଙ୍କ ବିରୁଦ୍ଧରେ ସ୍ଲୋଗାନ ଦେଇ ପୁରୀ ଜିଲ୍ଲା ସ୍କୁଲର ପିଲାମାନେ ଏକ ବିରାଟ ପ୍ରସେସନରେ ଆସି ଜମା ହୋଇଗଲେ ଆମ ସ୍କୁଲ ଫାଟକ ପାଖରେ । ଶିକ୍ଷକମାନେ କ୍ଲାସ୍‌ରୁମ୍‌ରୁ ବାହାରି ଆସି ବାରଣ୍ଡାରେ ପହରା ଦେଲାପରି ଠିଆ ହେଲେ ।

ଅଚାନକ ବାହିନୀପତି କ୍ଲାସରୁ ବାହାରିଯାଇ ଖୁବ୍ ବଡ଼ପାଟିରେ ଶ୍ରେଣୀକକ୍ଷରୁ ବାହାରି ଆସିବା ପାଇଁ ଆହ୍ୱାନ ଦେଲେ । ସେ ଭାଷାରେ କି ଯାଦୁକରୀ ସ୍ପର୍ଶ ଥିଲା କେଜାଣି, ଆମେ ସମସ୍ତ ସହପାଠୀ ବାହାରି ଆସି ପ୍ରସେସନ୍‌ରେ ଯୋଗଦେଲୁ । ଏହା ଥିଲା ଅଧିକାଂଶ ଛାତ୍ରଙ୍କ ପାଇଁ ଏକ ଗଡ୍ଡାଳିକା ପ୍ରବାହ । ଆମେ ଜାଣି ନଥିଲୁ କାହିଁକି କ୍ଲାସ୍ ଛାଡ଼ିଲୁ । କାହିଁକି ପ୍ରସେସନ୍‌ରେ ଏପରି ଶ୍ଲୋଗାନ ଦିଆ ହେଉଛି । ୧୯୪୨ ଆନ୍ଦୋଳନ ବିଷୟରେ ଆମ୍ଭମାନଙ୍କର ଧାରଣା ହିଁ ନଥିଲା । ସାମୟିକ ଉତ୍ତେଜନାରେ ସ୍କୁଲଛାଡ଼ି ଘରକୁ ପଳାଇ ସିନା ଆସିଲି । କିନ୍ତୁ ଏ କି ପ୍ରମାଦ ! ଘରେ ମୁରବୀମାନଙ୍କ ନାଲି ଆଖିର ଧମକରେ ପୁନର୍ବାର ସ୍କୁଲକୁ ଫେରିଗଲି । ଅଧିକାଂଶ ପିଲା ଫେରିଆସିଲେ କ୍ଲାସ୍‌ରେ ଯୋଗ ଦେବାପାଇଁ । ମୋର ପିତା ଥିଲେ ଏମାରମଠ ପରି ଏକ ବିଶାଳ ଜମିଦାରୀର ଲ' ଏଜେଣ୍ଟ । ପରବର୍ତ୍ତୀ କାଳରେ କଲିକତାର ବାରିଷ୍ଟର ଓ ଜମିଦାର ସୁରେଶ ଘୋଷ ଓ ତ୍ରିମାଳୀମଠ ଜମିଦାରୀର ମଧ୍ୟ ଲ' ଏଜେଣ୍ଟ ହୋଇଥିଲେ । ବଡ଼ଦାଦା ଗୋପୀନାଥ ପଟ୍ଟନାୟକ ଥିଲେ ଆଉ ଏକ ବିଖ୍ୟାତ ଜମିଦାର ଏବଂ ଇଂରେଜ ସରକାରଙ୍କର ଦୃଢ଼ ସମର୍ଥକ ରାୟବାହାଦୂର ଲୋକନାଥ ମିଶ୍ରଙ୍କ ଜମିଦାରୀର ଲ' ଏଜେଣ୍ଟ । ତେଣୁ ସେମାନେ ସ୍ୱଭାବତଃ ରାଜଭକ୍ତ ହେବା ସ୍ୱାଭାବିକ । ତେଣୁ ତାଙ୍କର ପିଲାମାନେ ରାଜଦ୍ରୋହ ଆନ୍ଦୋଳନରେ ଯୋଗଦେବେ, ଏହା ସେମାନେ କିପରି ଅବା ସହ୍ୟ କରିପାରିବେ ?

ଆଉଦିନକର କଥା । ଯୁଦ୍ଧକାଳୀନ ପ୍ରଚାର ବିଭାଗର ଅଫିସର ଭାବରେ ସ୍କୁଲକୁ ଆସିଲେ ବୈକୁଣ୍ଠ ପଟ୍ଟନାୟକ । ଶିକ୍ଷକ ଓ ପିଲାମାନେ ଗୋଟିଏ କକ୍ଷରେ ଏକାଠି ହେଲେ

ତାଙ୍କର ଭାଷଣ ଶୁଣିବା ପାଇଁ । ସେ କହୁଥାଆନ୍ତି, ଯେଉଁମାନେ ଭଲ ପଢୁଛନ୍ତି ସେମାନେ ଥାଆନ୍ତୁ । ମାତ୍ର ଭଲ ପାଠ ହେଉନଥିବା ପିଲାମାନଙ୍କୁ ମୁଁ ଆହ୍ୱାନ କରୁଛି, ଏହି ଯୁଦ୍ଧରେ ସୈନିକ ହିସାବରେ ଯୋଗ ଦିଅନ୍ତୁ । ମୋଟା ଦରମା ମିଳିବ । ସୁଖରେ ରହିବ । କଲେଜରେ ପଢ଼ିବା ସମୟରେ ଏହି ବୈକୁଣ୍ଠ ପଟ୍ଟନାୟକ ପୁରୀ ଜିଲ୍ଲା ସ୍କୁଲର ହେଡମାଷ୍ଟର ଥିଲେ । ଆଉ ମଧ୍ୟ ଜାଣିଲି ଜଣେ ବଡ଼ କବି ବୋଲି । ତାଙ୍କର ଲେଖା କାବ୍ୟ ସଞ୍ଚୟନ କଲେଜର ସାହିତ୍ୟଶ୍ରେଣୀରେ ପାଠ୍ୟ ରହିଥିଲା । ସେ ପୁଣି ଥିଲେ ଓଡ଼ିଆ ସାହିତ୍ୟରେ ସବୁଜ ଆନ୍ଦୋଳନର ଅନ୍ୟତମ ସାଥୀ । ସେତେବେଳେ ଓଡ଼ିଶାରେ ଏମ.ଏ. ଉପାଧିଧାରୀ ଅଳ୍ପ ଲୋକ ଥିଲେ । ତେଣୁ ଏମ.ଏ. ପାସ୍ କରିଥିବା କତିପୟ ସ୍କୁଲ ଶିକ୍ଷକ କିଛିକାଳ ରେଭେନ୍ସା କଲେଜରେ ଅଧ୍ୟାପକ ହୋଇ ପୁନର୍ବାର ସ୍କୁଲ କର୍ମକ୍ଷେତ୍ରକୁ ଫେରି ଆସୁଥିଲେ । ଏହିପରି ଦୁଇଜଣ ସ୍ମରଣୀୟ ବ୍ୟକ୍ତିତ୍ୱ ହେଉଛନ୍ତି ବୈକୁଣ୍ଠ ପଟ୍ଟନାୟକ ଓ ରାଜକିଶୋର ରାୟ । ଅଧ୍ୟାପକ ରାୟ ପରବର୍ତ୍ତୀ କାଳରେ ସବୁ ସମୟ ପାଇଁ ମହାବିଦ୍ୟାଳୟର ଅଧ୍ୟାପକ ହୋଇଥିଲେ । ଉଭୟ ବୈକୁଣ୍ଠ ପଟ୍ଟନାୟକ ଓ ରାଜକିଶୋର ରାୟ ଶିକ୍ଷାବିଭାଗର ପରିଦର୍ଶକ କର୍ମଚାରୀ ଭାବରେ ଅବସର ଗ୍ରହଣ କରିଥିଲେ । ଉଭୟ ଥିଲେ ସାହିତ୍ୟ କ୍ଷେତ୍ରରେ ସ୍ୱନାମଧନ୍ୟ ।

ସ୍କୁଲ ଚାଲିଥିଲାବେଳେ କେତେଗୋଟି ପିରିଅଡ଼ ମଝିରେ ଖେଳଛୁଟୀ ହୁଏ କୋଡ଼ିଏ ମିନିଟ୍ ପାଇଁ । ଘଣ୍ଟା ବାଜିଲା ମାତ୍ରକେ କିଲିକିଲା ଚିତ୍କାର କରି ଶ୍ରେଣୀକକ୍ଷରୁ ପିଲାମାନେ ବାହାରି ଆସୁଥିଲେ ଖୋଲା ପଡ଼ିଆ ଉପରକୁ । ସତେଯେପରି ସେମାନେ କିଛି ସମୟ ପାଇଁ ବନ୍ଦୀଶାଳାରୁ ଛାଡ଼ ପାଇଯାଇଛନ୍ତି । ଏହି ସମୟରେ ବୁଲାବିକାଳିମାନେ ଅପେକ୍ଷା କରିଥାଆନ୍ତି । କେତେପ୍ରକାର ଖାଇବା ଜିନିଷ । ଯେଉଁମାନେ ଘରୁ ପଇସା ଆଣିଥାଆନ୍ତି ଆନନ୍ଦମନରେ କିଣି କରି ଖାଆନ୍ତି ।

ଘରେ ତ ଖାଇ କରି ଆସୁ । ପୁଣି ଘରେ ପହଞ୍ଚିଲେ ଭୋଜନ । ତେଣୁ ଆମ ଘରେ ପାଠ ପଢ଼ିବା ପିଲାଙ୍କୁ ହାତଖର୍ଚ୍ଚ ଦେବାର ଆବଶ୍ୟକତା ଅନୁଭୂତ ହେଉ ନଥାଏ । ସମସ୍ତେ ଖେଳ ପିରିଅଡ଼ରେ ଖାଉଥିବେ, ସେମାନଙ୍କ ପାଖରେ ମୋତେ ଠିଆ ହେବାପାଇଁ ଲାଜ ଲାଗେ । ମାଡ଼ିମାଡ଼ି ପଡ଼େ । ଅନେକ ପିଲା ଖେଳିବା ପାଇଁ ପଡ଼ିଆ ମଝିକୁ ଧାଆନ୍ତି । ଦୁର୍ବଳ ଶରୀର ହୋଇଥିବାରୁ ମୋତେ କେହି ଖେଳୁଆଡ଼ ପିଲାମାନେ ପାସଙ୍ଗରେ ପକାନ୍ତି ନାହିଁ । ପଡ଼ିଆ ମଝିରେ ଗୋଟିଏ ଥୁଣ୍ଟା ପୋଲାଙ୍ଗ ଗଛ ଥାଏ । ଅଳ୍ପ ଉଚ୍ଚ । ଗାଢ଼ ସବୁଜ ପତ୍ର ଡାଳରେ ଭରା । ମୋର ସହପାଠୀ ବଟ ସହିତ ଖେଳ ଛୁଟୀରେ ସେହି ଗଛରେ ଚଢ଼ି ମଝି ଡାଳରେ ପତ୍ର ଗହଳରେ ବସି ରହେ । ଦୁଇବନ୍ଧୁ କଥା ହୋଇ ଖେଳଛୁଟୀଟା ବିତାଇ ଦେଉ । ଘଣ୍ଟା ବାଜିଲେ ଗଛରୁ ଓହ୍ଲାଇ କ୍ଲାସ୍ କକ୍ଷରେ ପ୍ରବେଶ କରୁ । ମାଟ୍ରିକ ପାସ୍ କଲା ପର୍ଯ୍ୟନ୍ତ ଚାରିବର୍ଷକାଳ ଏହିପରି ଅଭ୍ୟାସ ରହିଥିଲା ।

ଆମେ କେତେଜଣ କ୍ଲାସ୍‌ରେ ଭଲ ପାଠ ପଢୁଥିଲୁ ଏବଂ ଶିକ୍ଷକମାନଙ୍କର ସ୍ନେହାଦରର ଭାଗୀଦାର ଥିଲୁ । ମୋର ଅନ୍ତରଙ୍ଗ ବନ୍ଧୁଥିଲେ ଅନ୍ତର୍ଯ୍ୟାମୀ ମହାନ୍ତି ଓ ହରିହର ବାହିନୀପତି ।

ଅନ୍ତର୍ଯ୍ୟାମୀ ଶ୍ରେଣୀରେ ଅନବରତ ପ୍ରଥମ ହୁଏ ଏବଂ ମୁଁ ଦ୍ୱିତୀୟସ୍ଥାନ ଗ୍ରହଣ କରେ । ବାହିନୀପତି ଥାଏ ତୃତୀୟ ସ୍ଥାନରେ ।'

ଅହେତୁକ ଭାବରେ ତିନିବନ୍ଧୁ ବିଚାର କଲୁ, ଗୋଟିଏ ହାତଲେଖା ପତ୍ରିକା ବାହାର କରି ଲେଖାଲେଖି କରିବା । ଘରେ କିମ୍ବା ବାହାରେ କେହି ଆମକୁ ଉପଦେଶ ଦେଇ ନଥିଲେ । କାହିଁକି ଏପରି ପରିକଳ୍ପନା ଆମ ମନକୁ ଆସିଥିଲା, ତାହା ଆଜି ପରିଣତ ବୟସରେ ଭାବିପାରେ ନାହିଁ । ଚାନ୍ଦା କରି ବନ୍ଧେଇ ଖାତାଟିଏ କିଣା ହେଲା । ପତ୍ରିକାର ନାଁ ଦିଆଗଲା ''ନୀଳାଚଳ'' । ମୋର ହସ୍ତାକ୍ଷର ସେହି ବୟସରେ ଖୁବ୍ ଗୋଲଗୋଲ୍ ଥିଲା । ତେଣୁ ମୋ ଉପରେ ଦାୟିତ୍ୱ ରହିଲା ମେଗାଜିନ୍‌ର ଲିଖନକାର ହେବାପାଇଁ । ମନେପଡୁଛି, ପ୍ରଥମ ସଂଖ୍ୟାରେ ମୋର ଗୋଟିଏ କବିତା ପ୍ରକାଶିତ ହୋଇଥିଲା ଏହି ''ନୀଳାଚଳ'' ଶୀର୍ଷକରେ । ପିଲାମାନେ ଉତ୍ସାହିତ ହେଲେ ଆମର ଉଦ୍ୟମ ଦେଖି । ଗଳ୍ପ, କବିତା ଓ ପ୍ରବନ୍ଧରେ ''ନୀଳାଚଳ''ର ପୃଷ୍ଠା ମଣ୍ଡିତ ହେବାକୁ ଲାଗିଲା । ଶିକ୍ଷକମାନେ ଏପରି ଉଦ୍ୟମ ଦେଖି ସନ୍ତୋଷ ପ୍ରକାଶ କଲେ ଏବଂ ଆଶୀର୍ବାଦ ଜଣାଇଲେ । ଛାତ୍ରଜୀବନର ଏହି ଉତ୍ସାହ ଗୋଟିଏ ଦୁଇଟି ବର୍ଷରେ ମଉଳି ଗଲା । ''ନୀଳାଚଳ''ର ଅକାଳ ମୃତ୍ୟୁ ହେଲା ସିନା, ମନରେ କେଉଁ ଅଜଣା ସ୍ଥାନରେ ଛାପ ମାରିଦେଇଗଲା ସବୁଦିନ ପାଇଁ ।

ଆମର ସହପାଠୀମାନଙ୍କ ମଧ୍ୟରେ କେତେଜଣ ଭଲ ଗୀତ ଗାଉଥିଲେ । ଅଭିନୟ କରିବା ପାଇଁ ସୁଖ ପାଉଥିଲେ । ଆମର ଜଣେ ସାହିତ୍ୟ ଶିକ୍ଷକ ଥିଲେ ଜଗନ୍ନାଥ ଚଇନି । ତାଙ୍କର ସଙ୍ଗୀତ ଓ ବାଦ୍ୟର ନିଶା ପ୍ରବଳ ଥିଲା । ସହରର ନାମକରା ସଙ୍ଗୀତକାରମାନଙ୍କୁ ସେ ନିମନ୍ତ୍ରଣ କରି ଆଣିଲେ । ଏକ ନାଟକର ଅଭିନୟ କଲେ ପିଲାମାନେ କିଛିଦିନ ଅଭ୍ୟାସ କରି । ଝିଅ ଭୂମିକାରେ ମଧ୍ୟ ପୁଅ ପିଲାଙ୍କର ଅଭିନୟ ଅତ୍ୟନ୍ତ ଚମତ୍କାର ହେଉଥିଲା । ତା'ପରେ ଚାଲିଲା ବିଭିନ୍ନ ବାଦ୍ୟଯନ୍ତ୍ରର ରିଆଜ । ଏହିସବୁ ଅନୁଷ୍ଠାନର ଛାତ୍ରମାନଙ୍କ ସହିତ ଶିକ୍ଷକମାନେ ମଧ୍ୟ ମିଶି ରହିଥିଲେ । ପାଠପଢ଼ା ସାଙ୍ଗକୁ ସାମୟିକ ଆମୋଦପ୍ରମୋଦ ସ୍କୁଲଜୀବନକୁ ଅତ୍ୟନ୍ତ ମଧୁମୟ କରି ରଖିଥିଲା । ୧୯୪୫ ମସିହାରେ ଏହି ସ୍କୁଲରୁ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାସ୍ କଲି । ସ୍କୁଲଜୀବନ ଉଦ୍‌ଯାପିତ ହୋଇଗଲା ।

ସ୍କୁଲଜୀବନର ଆଉ ଏକ ଅନୁଭୂତି ମନେପଡୁଛି । ତାହା ହେଲା ୧୯୪୨ ସାଲର ପ୍ରବଳ ତୋଫାନ । କୌଣସି ଏକ ପର୍ବଦିନ ଥିବାରୁ ବାପା, ଦାଦା ଗାଁକୁ ଯାଇଥାଆନ୍ତି । ପୁରୀ ବସାରେ ଥାଉ ମୁଁ ଓ ଆମ ପୂଜାରୀ । ସେ ମଧ୍ୟ ମୋରି ପରି ପିଲାଟିଏ । ରାତିରେ ପ୍ରବଳ ତୋଫାନ ଆରମ୍ଭ ହୋଇଗଲା । ଚାରିଆଡ଼େ ବିକଟାଳ ଅନ୍ଧାର । ଝଡ଼ପବନର ଗର୍ଜନରେ କଲିଜା ଥରିଉଠୁଥାଏ । ଆମ ଘରର ଚାଳକୁ ସତେ ଯେପରି କେହି ଟେକି ଫିଙ୍ଗିଦେବ । ରାତିବିକାଳି କଥା । କାଳେ କାନ୍ଥ ଭୁଷୁଡ଼ି ତାରି ତଳେ ଆମେ ରହିଯିବୁ । ସେଥିପାଇଁ ଗୋଟିଏ ଲମ୍ବା ଖଟତଳେ ଦୁଇଜଣ ପଶିଗଲୁ । ସାରାରାତି ଆଖିରେ ନିଦ ନାହିଁ । ସକାଳର ଆଲୋକ ଆସିଲା । ଝଡ଼ ଥମି ଯାଇଛି । ଆମେ ଅଗଣାପଟ ଦୁଆର ବଡ଼ କଷ୍ଟରେ ଠେଲି

ବାହାରକୁ ଆସିଲୁ । ଅଣ୍ଟାଏ ଉଚ୍ଚର ତାଳପତ୍ର, କାଠିକୁଟାରେ ଅଗଣା ପୋତି ହୋଇଯାଇଛି । ଦୁହେଁଯାକ ଲାଗିପଡ଼ି ଅଳିଆମାଳିଆ ବୋହି ନେଇ ଦାଣ୍ଡରେ ପକାଇଲୁ ।

ସାଙ୍ଗପିଲାଙ୍କ ସାଙ୍ଗରେ ବୁଲି ବାହାରିଲି ଝଡ଼ର ପ୍ରକୋପ ଦେଖିବାପାଇଁ । ଅସୁମାରୀ ଗଛ ଭାଙ୍ଗି ପଡ଼ି ରାସ୍ତା ପ୍ରତିବନ୍ଧକ ହୋଇଛି । ଅନେକ ପକ୍ଷୀ ମରିପଡ଼ିଛନ୍ତି । ସମୁଦ୍ର ଦିଗବାରଣ ଖୁଣ୍ଟି ଡେଇଁ ଉପରକୁ ମାଡ଼ି ଆସିଥିଲା । ତେଣୁ କୂଳରେ ଥିବା ସିମେଣ୍ଟ ଚଉତରାଗୁଡ଼ିକ ଓଲଟି ପଡ଼ିଛି । ବାଡ଼ିବଗିଚାର ନଡ଼ିଆଗଛ ଉପୁଡ଼ି ପଡ଼ିଛି । ବିଜୁଳିଖୁଣ୍ଟ ଧନୁ ପରି ବଙ୍କା ହୋଇଯାଇଛି । ସତେ ଯେପରି ପୁରୀ ସହରଟା ଛାରଖାର ହୋଇଯାଇଛି ଅଳ୍ପ ସମୟ ମଧ୍ୟରେ ।

ରାସ୍ତାକଡ଼ର କେତେ ଭିକାରୀ ମରି ଶୋଇଛନ୍ତି । କେହି ସାହା ନାହିଁ କି ଭରସା ନାହିଁ । ମନେପଡୁଛି, ଆମ ସ୍କୁଲ ରାସ୍ତାରେ ଗୋଟିଏ ମୃତ ଶରୀର ପଡ଼ିରହିଥାଏ । ମାଛି ଭଣଭଣ । କେହି ତାର ଆତ୍ମୀୟ ନାହାନ୍ତି ଶବସତ୍କାର କରିବା ପାଇଁ । ଏହି ସମୟରେ ପହଞ୍ଚିଲେ ଆସି କଟକର ପୂର୍ଣ୍ଣପରାକ୍ରମକେଶରୀ ବର୍ମା । ସେ ଡାକ୍ତର ଜେ.ଚୌଧୁରୀଙ୍କ ସହକାରୀ ଭାବରେ ସ୍କାଉଟ୍ ଅଫିସର୍ ହୋଇ ପିଲାମାନଙ୍କୁ ଅଭ୍ୟାସ କରାଉଥିଲେ । ରାସ୍ତାକଡ଼ରେ ଶବପଡ଼ିଥିବା ଦେଖି ସେ ସେହିଠାରେ ପଥଚାରୀ ମାନଙ୍କଠାରୁ ଚାନ୍ଦା ମାଗିବା ଆରମ୍ଭ କରିଦେଲେ । ଆମେ କେତେଜଣ ଛାତ୍ର ସହଯୋଗ କରୁଥାଉ । ଶବସତ୍କାର ପାଇଁ ଆବଶ୍ୟକୀୟ ଚାନ୍ଦା ଆଦାୟ ହୋଇଗଲା । ବାଉଁଶ ଆଣି କୋକେଇ ବାନ୍ଧି ଶବକୁ ବୋହିନେଲେ ସାଙ୍ଗପିଲାମାନେ ସ୍ୱର୍ଗଦ୍ୱାର ଶ୍ମଶାନକୁ । ସେମାନଙ୍କ ସହିତ ମୁଁ ମଧ୍ୟ ଯାଇଥିଲି । ଶବ ଦେଖିବା ଏବଂ ପୋଡ଼ାହେବା ଥିଲା ମୋ ପାଇଁ ସେହି ପିଲାବୟସରେ ଆଦ୍ୟ ଅନୁଭୂତି ।

ପୁରୀର ରଥଯାତ୍ରା ଭାରତପ୍ରସିଦ୍ଧ । ଭାରତର ଚାରିଆଡୁ ଅସଂଖ୍ୟ ଯାତ୍ରୀ ଚାଲିଚାଲି ଆସୁଥିଲେ । ସେଦିନର କଥା । ଆଜିକାଲି ପରି ବସ୍, କାର୍ ଅଥବା ରେଳଗାଡ଼ିର ବିଶେଷ ପ୍ରଚଳନ ନଥାଏ । କଲିକତାଠାରୁ ଅଳ୍ପ କିଛି ସ୍ୱତନ୍ତ୍ର ରେଳବଗି ଆସୁଥାଏ ମାତ୍ର ।

ଲକ୍ଷାଧିକ ଲୋକଙ୍କର ସମାଗମ । ସହରର ସ୍ୱାସ୍ଥ୍ୟକର ଅବସ୍ଥା ଥାଏ ପ୍ରଶ୍ନବାଚୀ । ତେଣୁ ମହାମାରୀରେ ଅନେକ ଯାତ୍ରୀଙ୍କର ଜୀବନଦୀପ ଲିଭିଯାଉଥିଲା । ତେବେ ରଥଯାତ୍ରା ସମୟରେ ପୁରୀ ସେବାସମିତି ଓ ଭାରତ ସେବାଶ୍ରମ ସଂଘ ନିରବଚ୍ଛିନ୍ନ ସେବା କରୁଥିଲେ । ଆଜି ମଧ୍ୟ କରୁଛନ୍ତି । ପୁରୀ ସେବାସମିତିର ପ୍ରଧାନ ପରିଚାଳକ ଥିଲେ ସ୍ୱାଧୀନତା ସଂଗ୍ରାମୀ ମୁରାରୀ ତ୍ରିପାଠୀ । ତାଙ୍କ ପରି ନିଷ୍ଠାପର ସେବକ ଚିରସ୍ମରଣୀୟ । ତାଙ୍କର ପ୍ରେରଣାରେ ଛାତ୍ରଜୀବନରେ ଅନେକ ବର୍ଷ ପୁରୀ ସେବା ସମିତିର ବ୍ୟାଜ୍ ମାରି ରଥଯାତ୍ରାରେ ସ୍ୱେଚ୍ଛାସେବକ ହେବାର ଅପୂର୍ବ ଅନୁଭୂତି ମନେପଡୁଛି । ଗଡ଼ଜାତ ମିଶ୍ରଣର ଅବ୍ୟବହିତ ପୂର୍ବରୁ ଶାସକମାନେ ତରବର ହୋଇ ପ୍ରତି ରାଜ୍ୟରେ ଲୋକ ଦେଖାଣିଆ ସରକାର ଗଠନ କରିଥିଲେ ଆପଣାର ପ୍ରିୟ ଲୋକଙ୍କୁ ନେଇ । ଏହି ମୁରାରୀ ତ୍ରିପାଠୀ ନୟାଗଡ଼ ଗଡ଼ଜାତ ରାଜ୍ୟ ଆସେମ୍ବ୍ଲିର ବାଚସ୍ପତି ଆସନ ଅଳଂକୃତ କରିଥିଲେ । ରାଜାମାନଙ୍କର ଏହି ଚକ୍ରାନ୍ତ ଫଳପ୍ରସୂ ହେଲା ନାହିଁ । ଗଡ଼ଜାତର କିଛି ପ୍ରଜାମଣ୍ଡଳ ସଭ୍ୟ ଏହି ଉଦ୍ୟମକୁ କ୍ଷମତା ଲୋଭରେ ସାମୟିକ ସହଯୋଗ କରିଥିଲେ ହେଁ ଶେଷରେ ରାଜପଦ ବିଲୁପ୍ତ ହୋଇଗଲା ।

ଓଡ଼ିଶାରେ ଏକମାତ୍ର ପ୍ରଧାନ ମହାବିଦ୍ୟାଳୟ ଥିଲା କଟକର ରେଭେନ୍ସା କଲେଜ । ୧୯୪୪ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଜନ୍ମ ଗ୍ରହଣ କରେ । ତା'ପରେ ପ୍ରତ୍ୟେକ ଜିଲ୍ଲାର ମୁଖ୍ୟ ଦପ୍ତରରେ ମହାବିଦ୍ୟାଳୟ ପ୍ରତିଷ୍ଠା ହୁଏ । ମୋର ପରମ ସୌଭାଗ୍ୟ ଯେ ୧୯୪୫ ରେ ମାଟ୍ରିକ୍ ପାସ୍ କଲାବେଳକୁ ପୁରୀ କଲେଜ ପ୍ରତିଷ୍ଠା ହୋଇସାରିଛି । ଏଣିକି ଆରମ୍ଭ ହେଲା କଲେଜ ଜୀବନ ।

•••

# କଲେଜ ଜୀବନର ଅବିସ୍ମରଣୀୟ ଝଲକ

୧୯୪୬ ମସିହାର କଥା । ମାଟ୍ରିକ୍ ପାସ୍ କରି ଘରେ ବସିଥାଏ । ସମୁଦ୍ରକୂଳରେ ପୁରୀର ସହପାଠୀ ବନ୍ଧୁମାନେ ଏକାଠି ହେଉ । କେତେ ସ୍ୱପ୍ନ, କେତେ ପରିକଳ୍ପନା । ଅନ୍ତରଙ୍ଗ ବନ୍ଧୁମାନେ କଥା ହେଉଥାଆନ୍ତି କଲେଜରେ ପଢ଼ିବା ପାଇଁ ।

ପୂର୍ବରୁ କହିଛି ବିଶ୍ୱବିଦ୍ୟାଳୟ ହେବା ଯୋଗୁ ପ୍ରତ୍ୟେକ ଜିଲ୍ଲାର ସଦର ମହକୁମାରେ ହାଇସ୍କୁଲ ବିଲଡିଙ୍ଗରେ କଲେଜ କ୍ଲାସ୍ ଖୋଲିଲା । ପୁରୀ ଜିଲ୍ଲା ସ୍କୁଲରେ ଏହି ସୁଯୋଗରେ କଲେଜ କ୍ଲାସ ଆରମ୍ଭ ହୋଇଥାଏ । ସାଧାରଣ ପରିବାରର ପିଲାମାନଙ୍କ ପାଇଁ କଲେଜ ଛାତ୍ର ହେବା ଥିଲା ଆକାଶ କଇଁଆ ଚିଲିକା ମାଛ । ସ୍ୱଚ୍ଛଳ ପରିବାରର ପିଲାମାନେ ଅଥବା ବୃତ୍ତିଧାରୀ ପିଲମାନେ କଲେଜରେ ନାଁ ଲେଖାଇବା ପାଇଁ ସାହସ ବାନ୍ଧୁଥିଲେ ।

ସେତେବେଳେ ମାଟ୍ରିକ ପାସ୍ କରିବା ଲୋକ ମଧ୍ୟ ଅଳ୍ପ ଥିଲେ । ତେଣୁ ମାଟ୍ରିକ ଖଣ୍ଡକ ପାସ୍ କରିଗଲେ ଗଡ଼ ଜିଣିଲା ପରି ମନେ ହେଉଥିଲା । ତା'ପରେ ମୁରବୀମାନଙ୍କର ସ୍ୱପ୍ନ ଥାଏ ପୁଅ କିପରି ଚାକିରୀ କରି ଘରକୁ ସାହାଯ୍ୟ କରିବ । ଅବଶ୍ୟ ମାଟ୍ରିକ ପାସ୍ କରିବା ପିଲାମାନଙ୍କୁ ସରକାରୀ ଚାକିରୀ ପାଇବାରେ ବିଶେଷ ଅସୁବିଧା ହେଉନଥାଏ । ତେଣୁ ମୋର ମୁରବୀମାନେ ପ୍ରକାରାନ୍ତରେ ଚାକିରି ଖୋଜିବା ପାଇଁ କହୁଥାଆନ୍ତି । କଲେଜ ପଢ଼ାର ନାଁ ଧରୁ ନଥାନ୍ତି । ସାଙ୍ଗପିଲାମାନେ କଲେଜକୁ ଯିବେ ବୋଲି ଶୁଣିଲା ପରେ ମନଟା ବିକଳ ହେଉଥାଏ । ତେବେ ଉପାୟ କ'ଣ ?

ଦ୍ୱିତୀୟ ମହାଯୁଦ୍ଧ କାଳରେ ଗ୍ରୋ-ମୋର-ଫୁଡ଼ ଡିପାର୍ଟମେଣ୍ଟ ଖୋଲିଥାଏ । କାଳେ ଚାକିରୀ ଖାଲିଥିବ ଅନୁମାନ କରି ଦରଖାସ୍ତ ପକାଇଥାଏ । ମାତ୍ର ମୋର କିରାନୀ ଚାକିରୀ ପାଇଁ ମନ ଡାକୁ ନଥାଏ ।

ମୋର ଗାଁର ଜଣେ କୁଟୁମ୍ବ ବଡ଼ଭାଇ ଖଡ଼ଗପୁରରେ ରେଳବିଭାଗରେ ଚାକିରୀ କରିଥାଆନ୍ତି । କାହିଁକି କେଜାଣି ମନ ଉଚ୍ଚାଟ ହେଉଥାଏ ରେଳବିଭାଗରେ ଚାକିରୀଟିଏ ମିଳନ୍ତା ହେଲେ, ତେବେ ରେଳ ଯୋଗେ ପାସ୍ ନେଇ କେତେ ଅଞ୍ଚଳ ବୁଲିବାର ସୁଯୋଗ ପାଆନ୍ତି । ଚାକିରୀଟିଏ ବୁଝିଦେବା ପାଇଁ ସେହି ଗାଁର ସଂପର୍କୀୟ ବଡ଼ଭାଇ ବଟ ନନାକୁ ଚିଠି ଲେଖିଲି । ମୋର ଚିଠି ପାଇ ବଟନନା ମୋତେ ଯେଉଁ ଉତ୍ତର ଦେଇଥିଲେ ତାହା ମୋର ଜୀବନର ଗତିପଥକୁ ବଦଳାଇ ଦେଇଥିଲା । ଆଜୀବନ ସେହି ସ୍ୱର୍ଗତ ନନାଙ୍କୁ ମନେମନେ

ସ୍ମରଣ କରି ଆସିଛି ଅତ୍ୟନ୍ତ କୃତଜ୍ଞ ହୋଇ । ତାହାହିଁ ବୋଧେ ଥିଲା ବିଧି ନିର୍ଦ୍ଦିଷ୍ଟ । ସେହି ଚିଠିଟି ଏହିପରି-

ଖଡ୍ଗପୁର
ତା ୨୯.୬.୪୫

କଲ୍ୟାଣୀୟ ପଠାଣି,

ତୋର ଚିଠି ଖଣ୍ଡିକ ଠିକ୍ ସମୟରେ ପାଇଛି । ଉତ୍ତର ଖଣ୍ଡେ ଲେଖିଦେବି ବୋଲି ଭାବେ କିନ୍ତୁ ସମୟ ପାଏ ନାହିଁ । ତୁ ବି.ଏନ୍.ଆର୍‌ରେ ଟେକ୍‌ନିକାଲରେ ପଶିବାକୁ ମାଟ୍ରିକ ପାଶ୍ କରିଲେ ଚଳିବ ନାହିଁ । ଆଇ.ଏସ୍‌ସି. ରୁ ତଳକୁ ହେଲେ ୫ବର୍ଷ ଖଟିବାକୁ ପଡ଼ିବ । ତା' ପୁଣି କୁଲିଙ୍କଠାରୁ ହୀନ । ଅନ୍ୟ ଚାକିରୀ ଭିତରେ କିରାନୀ ଚାକିରୀ ବା ଏ.ଏସ୍.ଏମ୍ ଚାକିରୀ । ଏଥିପାଇଁ ତୋ କ୍ୱାଲିଫିକେସନ୍ ଚଳିବ । ତୁ ଯଦି ଏସବୁ କରିବାକୁ ପ୍ରସ୍ତୁତ ତା' ହେଲେ ମୁଁ ତତେ ଢୁକେଇବାର ଚେଷ୍ଟା କରିବି । ମୋ ମତରେ ଘରେ ଖାଇ ଆଇ.ଏ. ଖଣ୍ଡକ ପଢ଼େ । ପୁରୀ ସୁବିଧା ଯେପରି ତମମାନଙ୍କର ଅଛି ସେପରି ସ୍ଥଳେ ଏମ୍.ଏ. ପର୍ଯ୍ୟନ୍ତ ଚାଲିଯିବାର ରାସ୍ତା ଖୋଲିଦିଆଯାଇଛି । ପଢ଼ିବାକୁ ଇଚ୍ଛା ଥିଲେ ଦାଦା ଟଙ୍କା ଦେଇନପାରିଲେ ମଧ୍ୟ ଟ୍ୟୁସନ କରି କଷ୍ଟେମଷ୍ଟେ ଚଳି ପଢ଼ିଯାଇପାରିବୁ । ପୋଷ୍ଟୱାର ସ୍କିମ୍‌ରେ ଓଡ଼ିଶାରେ କେତେ କ'ଣ ଖୋଲିଯିବ । ଆଇ.ଏ. ପଢ଼, ଯଦି ଆଇ.ଏସ୍‌ସିକୁ ଆର୍ଥିକ ଅବସ୍ଥା ଦୃଷ୍ଟିରୁ ସାହସ ହେଉନାହିଁ । ଆଇ.ଏ. ପାସ୍ କଲେ ହେଲେ ଗାର୍ଡ଼ ଚାକିରୀ ଯାହାକି କିରାଣୀ ବା ଏ.ଏସ୍.ଏମ୍. ଚାକିରୀଠାରୁ ବେଶି କଦର୍ଯ୍ୟ ହେଲେ ମଧ୍ୟ ଦିପଇସା ଅଛି । ଖଣ୍ଡିଏ ପାଇବାକୁ କଷ୍ଟ ପଡ଼ନ୍ତା ନାହିଁ । ମୁଁ ନିକଟରେ ପୁରୀ ଯିବାକୁ ମନସ୍ଥ କରିଛି । ଗଲେ ବୁଝାଇ କହିବାକୁ ସୁଯୋଗ ପାଇବି । କାଶୀଦାଦାଙ୍କ ନିକଟକୁ ଖଣ୍ଡେ ଚିଠି ଦେଇଥିଲି ମାସେ ତଳେ । ତାର ଉତ୍ତର ପାଇଲି ନାହିଁ । ଖୁଡ଼ିଙ୍କୁ ଦାଦାଙ୍କୁ ପ୍ରଣାମ ଦେବୁ । ତ୍ରିଲୋଚନ, ବାସୁ, ବୁଢ଼ା, ଜଗୁଙ୍କୁ କଲ୍ୟାଣ ଦେବୁ ।

ତୋର
ବଟ ନନା

ଏଇ ଚିଠିଟି ମୋ ମନରେ ସ୍ୱପ୍ନର ଜୁଆର ସୃଷ୍ଟି କରିଦେଲା । ଯେପରି ହେଉ କଲେଜରେ ପାଠ ପଢ଼ିବି । ବାପାଙ୍କୁ ଚିଠିଟି ପଢ଼ାଇବାରୁ ସେ ଆଉ ପଢ଼ିବା ପାଇଁ ଆପତ୍ତି କଲେନାହିଁ । ପୁରୀର ଏହି ନୂତନ ଆରମ୍ଭ ହୋଇଥିବା କଲେଜରେ ବିଜ୍ଞାନ ଶ୍ରେଣୀ ଖୋଲି ନଥିଲା । ତେଣୁ କଟକ ରେଭେନ୍ସା କଲେଜରେ ଆଇ.ଏସ୍.ସି ପଢ଼ିବା ପାଇଁ ଦରଖାସ୍ତ କଲି ।

ପ୍ରଥମ କରି କଟକ ଆସିଛି । ମହାନଦୀ ଓ କାଠଯୋଡ଼ିର ପଥର ବନ୍ଧ, ବାରବାଟୀ କିଲାର ଭଗ୍ନସ୍ତୁପ, ଗଡ଼ଗଡ଼ିଆ ମନ୍ଦିର, କଟକଚଣ୍ଡୀ ଓ କାଳୀମନ୍ଦିର ପ୍ରଭୃତି ଦର୍ଶନ କରି ଆଖି ଖୋସି ହୋଇଗଲା । ଦୁଇ ନଦୀରେ ଅକାତକାତ ପାଣି । ଦୁଇଟି ସିନେମା ଘର- ପ୍ରଭାତ ସିନେମା ଓ କ୍ୟାପିଟାଲ ସିନେମା । ଗୋଟିଏ ବୋଲି ଥିଏଟର ହଲ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ । ଗୋଟିଏ ମେସ୍ ମଧ୍ୟ ଠିକ୍ କଲି କଟକ ଆସିଲେ ସେଇଠି ରହିବି ବୋଲି । ଦୁଇଦିନ ମନଖୁସିରେ ରେଭେନ୍ସା କଲେଜ ବୁଲି ଦେଖୁଥାଏ । ଏପରି ଚମତ୍କାର ବିଲ୍ଡିଂ ଦେଖି ନଥିଲି । ଆଖି ଖୋସି ହୋଇଯାଉଥାଏ । ଭାଗ୍ୟରେ ଥିଲେ ଏଡ଼େବଡ଼ କୋଠାରେ ପାଠ ପଢ଼ିବାର ସୁଯୋଗ ମିଳେ ।

ପୁରୀ ଫେରିଯାଇ ଅପେକ୍ଷା କଲି ରେଭେନ୍ସା କଲେଜରୁ ନାଁ ଲେଖାଇବାର ତଲବ ପାଇବି ବୋଲି । କାଳେ ରେଭେନ୍ସାରେ ସିଟ୍ ନ ମିଳିବ, ସେଥିପାଇଁ ପୁରୀ କଲେଜରେ ମଧ୍ୟ ଦରଖାସ୍ତ ପକାଇଥାଏ । ଦୁଇଟି କଲେଜରୁ ଏକାବେଳକେ ଚିଠି ପାଇଲି । ବାପା ରାଜି ହେଲେ ନାହିଁ କଟକ ପଠାଇବା ପାଇଁ । ପୁରୀରେ ଘରେ ରହି କଲେଜରେ ପଢ଼ିବା ପାଇଁ କିଛି ଅସୁବିଧା ହେବ ନାହିଁ ବିଚାର କଲେ ।

ଆରମ୍ଭ ହେଲା କଲେଜ ଜୀବନ । ମୋର ଅନେକ ସହପାଠୀ ଆର୍ଥିକ ଅନଟନ ଯୋଗୁ କଲେଜକୁ ଆସିପାରିଲେ ନାହିଁ ବୋଲି ମନଦୁଃଖ କରୁଥାଆନ୍ତି । ଶେଷରେ ବଟନନାଙ୍କ ଚିଠି ପାଇ ବାପା ରାଜି ହେଲେ ବୋଲି ମୋର ଆନନ୍ଦର ସୀମା ନଥାଏ ।

ଭାରତର ସ୍ୱାଧୀନତା ଆସି ନଥାଏ । କିନ୍ତୁ ଇଂରେଜ ସାମ୍ରାଜ୍ୟବାଦୀ ସରକାର ଭାରତକୁ ସ୍ୱାଧୀନତା ଦେବାପାଇଁ ପ୍ରସ୍ତୁତ ହେଉଥାଆନ୍ତି । ଗାନ୍ଧିଜୀଙ୍କର ଭାରତଛାଡ଼ ଆନ୍ଦୋଳନ, ନେତାଜୀ ସୁଭାଷ ବୋଷଙ୍କ ନେତୃତ୍ୱରେ ଜାତୀୟ ବାହିନୀର ସଂଗ୍ରାମ, ଦ୍ୱିତୀୟ ମହାଯୁଦ୍ଧର କ୍ଷୟକ୍ଷତି ମଧ୍ୟରେ ଇଂଲଣ୍ଡରେ ଧ୍ୱଂସଲୀଳା ସର୍ବୋପରି ବମ୍ବେରେ ଭାରତୀୟ ନୌବାହିନୀରେ ବିଦ୍ରୋହ ପ୍ରଭୃତି ଘଟଣା ଇଂରେଜମାନଙ୍କୁ ବାଧ୍ୟ କରିଥିଲା କ୍ଷମତା ହସ୍ତାନ୍ତର କରିବା ପାଇଁ ।

ସ୍ୱାଧୀନତା ଆସିବାର ଅବ୍ୟବହିତ ପୂର୍ବରୁ ଓଡ଼ିଶାରେ ଯେଉଁ ଅନ୍ତରୀଣ ସରକାର ଗଠନ କରାଗଲା, ତାର ପ୍ରଧାନମନ୍ତ୍ରୀ ହେଲେ ହରେକୃଷ୍ଣ ମହତାବ । ସେତେବେଳେ ମହତାବ ଥିଲେ ଜଣେ ସର୍ବମାନ୍ୟ ଭାରତୀୟ କଂଗ୍ରେସ ନେତା । ଓଡ଼ିଶା କଂଗ୍ରେସ ଅନୁଷ୍ଠାନରେ ମଧ୍ୟ ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ । ଗାନ୍ଧିଜୀଙ୍କ ଆହ୍ୱାନରେ ଭାରତର ସର୍ବଶେଷ ସ୍ୱାଧୀନତା ସଂଗ୍ରାମ ହେଲା ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନ । ଗାନ୍ଧିଜୀଙ୍କ ଡାକରାରେ ଆକୁମାରୀ ହିମାଚଳ ସମଗ୍ର ଭାରତବର୍ଷରେ ଇଂରେଜ ସରକାର-ବିରୋଧୀ ସଂଗ୍ରାମ ତେଜି ଉଠିଲା । ପ୍ରତିହିଂସା ପରାୟଣ ଇଂରେଜ ସରକାର କଂଗ୍ରେସ ନେତାମାନଙ୍କୁ ଅଚାନକ ଗିରଫ କରିନେଲେ ଏବଂ ନିଷ୍ଠୁର ଭାବରେ ଅତ୍ୟାଚାର ଚଳାଇଲେ । ଏହି ସମୟରେ ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟ ଭାବରେ ମହତାବ ହେଲେ ସହବନ୍ଦୀ ବମ୍ବେ ପ୍ରଦେଶର ଅହମ୍ମଦାବାଦର ଦୁର୍ଗ ମଧ୍ୟରେ; ପଣ୍ଡିତ ଜହରଲାଲ ନେହେରୁ, ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଆଚାର୍ଯ୍ୟ କୃପାଳିନୀ, ଗୋବିନ୍ଦବଲ୍ଲଭ ପନ୍ଥ, ମୌଲାନା ଆବୁଲକଲମ ଆଜାଦ, ରଫି ଅହମ୍ମଦ କିଦୱାଇ, ଅସିଫ୍ ଅଲି ପ୍ରଭୃତି ନେତୃବୃନ୍ଦଙ୍କ ସହିତ ।

ଦ୍ୱିତୀୟ ମହାଯୁଦ୍ଧର ଯବନିକା ପଡେ ୧୯୪୫ ମସିହାରେ । ଭାରତର ନେତୃବୃନ୍ଦଙ୍କୁ ଇଂରେଜ ସରକାର ଖଲାସ କରିଦେଲେ । ଏହି ସମୟରେ ମହତାବ ଓଡ଼ିଶାର ଶାସନଭାର ଗ୍ରହଣ କଲେ ବିଧାନସଭାରେ କଂଗ୍ରେସ ଦଳର ନିର୍ବାଚିତ ନେତା ଭାବରେ ।

କଲେଜର ଅନ୍ତେବାସୀଙ୍କର କେତେ ସ୍ୱପ୍ନ, କେତେ ଅଭିଳାଷ ଛାତ୍ରମାନଙ୍କୁ ରାଜନୀତିରେ ସଚେତନ କରିବା ପାଇଁ ଦୁଇଟି ସର୍ବଭାରତୀୟ ଛାତ୍ର ଅନୁଷ୍ଠାନ କାର୍ଯ୍ୟ କରୁଥାଏ । ଗୋଟିଏ ହେଲା ଛାତ୍ର ଫେଡ଼େରେସନ, ଅନ୍ୟଟି ଛାତ୍ର କଂଗ୍ରେସ । ଛାତ୍ର ଫେଡେରେସନ ପ୍ରାଚୀନ ଅନୁଷ୍ଠାନ ହେଲେ ହେଁ କମ୍ୟୁନିଷ୍ଟ ଦଳର ପ୍ରଭାବରେ ଭାରତଛାଡ଼ ଆନ୍ଦୋଳନକୁ ବିରୋଧ କରି ଅତ୍ୟନ୍ତ ଅପ୍ରିୟ ହୋଇଯାଇଥାଏ । ତେଣୁ କଂଗ୍ରେସ ନେତୃବୃନ୍ଦଙ୍କ ପ୍ରୋତ୍ସାହନରେ ଗଠନ କରାଯାଇଥାଏ ଛାତ୍ର କଂଗ୍ରେସ ।

ସେତେବେଳେ ଓଡ଼ିଶା ପ୍ରଦେଶ ଛାତ୍ରକଂଗ୍ରେସର ସଭାପତି ଥିଲେ ପ୍ରଦୀପ୍ତ କିଶୋର ଦାସ ଯେକି ପରବର୍ତ୍ତୀ କାଳରେ ବିଧାୟକ ତଥା ଶିକ୍ଷା ଓ ସ୍ୱାସ୍ଥ୍ୟମନ୍ତ୍ରୀ ଭାବରେ କିଛିକାଳ କାର୍ଯ୍ୟ କରିଥିଲେ । ପୁରୀରେ ଯେଉଁ କଲେଜଛାତ୍ରମାନେ ନେତୃତ୍ୱ ପ୍ରଦାନ କରି ପୁରୀଜିଲ୍ଲା ଛାତ୍ରକଂଗ୍ରେସ ଗଠନ କରିଥିଲେ, ସେମାନେ ହେଲେ ଚନ୍ଦ୍ରଶେଖର ମହାପାତ୍ର, ଶଶିଭୂଷଣ ମିଶ୍ର, ନେତ୍ରାନନ୍ଦ ମିଶ୍ର, ସୋମନାଥ ପଟ୍ଟନାୟକ, ହରିହର ବାହିନୀପତି, ସତ୍ୟବାଦୀ ମିଶ୍ର, ଫକୀର ମିଶ୍ର ପ୍ରମୁଖ ଅନେକ ଛାତ୍ରନେତା ।

ପୁରୀ କଲେଜରେ ପ୍ରବେଶ କରୁକରୁ ଛାତ୍ରକଂଗ୍ରେସ ଅନୁଷ୍ଠାନରେ ଆଗ୍ରହରେ ଯୋଗ ଦେଇଥିଲି । ପୁରୀ ଜିଲ୍ଲା ଛାତ୍ର କଂଗ୍ରେସର ସଂସ୍କୃତି ବିଭାଗ ସଂପାଦକ ଭାବରେ କିଛିକାଳ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା । କଲେଜ ଇଉନିଅନ ନିର୍ବାଚନରେ ଛାତ୍ର କଂଗ୍ରେସ ଅଂଶ ଗ୍ରହଣ କରି ବିପୁଳ ସମର୍ଥନ ସହିତ ଜୟଯୁକ୍ତ ହୋଇଥିଲା । ସେଥିରେ ପୁରୀ କଲେଜ ସାହିତ୍ୟ ସମାଜର ସହକାରୀ ସଂପାଦକ ଭାବରେ ନିର୍ବାଚିତ ହୋଇଥିଲି ।

ବର୍ତ୍ତମାନ କଲେଜ ଇଉନିଅନ ନିର୍ବାଚନ ବ୍ୟୟବହୁଳ ହୋଇଯାଇଛି । ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ ଏଥିରେ ପରୋକ୍ଷ ଭାବରେ ହସ୍ତକ୍ଷେପ କରି ଅର୍ଥ ସାହାଯ୍ୟ କରୁଛନ୍ତି । ବେଳେବେଳେ ହିଂସାକାଣ୍ଡ ପାଇଁ ପୋଲିସ୍ ମୁତୟନ ହେଉଛନ୍ତି । ଛାତ୍ର ରାଜନୀତି ପଙ୍କିଳ ହୋଇଯାଇଛି । ଛାତ୍ର ପ୍ରତିନିଧିମାନେ ରାଜନୈତିକ ଆଦର୍ଶ ପାଇଁ ନିର୍ବାଚନରେ ପ୍ରବେଶ କରୁନାହାନ୍ତି । ବ୍ୟକ୍ତି ସ୍ୱାର୍ଥ ଓ ବାହୁବଳର ଜୟଜୟକାର । ଏଥିପାଇଁ ରାଜନୈତିକ ଦଳମାନେ ଦାୟୀ । ସେମାନେ ରାଜନୈତିକ ଆଦର୍ଶ ବିଷୟରେ ଛାତ୍ରମାନଙ୍କୁ ଅବଗତ କରାଉନାହାନ୍ତି ।

ମନେପଡୁଛି, ଛାତ୍ର କଂଗ୍ରେସ ଆନୁକୂଲ୍ୟରେ ପ୍ରତ୍ୟେକବର୍ଷ ଗ୍ରୀଷ୍ମ ଅବକାଶରେ ''ରାଜନୀତି ଶିକ୍ଷା ସ୍କୁଲ'' ଅଥବା ସମର ସ୍କୁଲ ଅଫ୍ ପଲିଟିକ୍ସର ଆୟୋଜନ । ଏହି ଅନୁଷ୍ଠାନ ମାଧ୍ୟମରେ ଛାତ୍ରସମାଜକୁ ରାଜନୀତିର ତତ୍ତ୍ୱ ଶିକ୍ଷା ଦେବାପାଇଁ ଉଦ୍ୟମ କରାଯାଉଥିଲା । ଦେଶବିଦେଶର ସ୍ୱାଧୀନତା ଆନ୍ଦୋଳନ ଓ ସାମାଜିକ ଆନ୍ଦୋଳନ ବିଷୟରେ ମଧ୍ୟ ଆଲୋଚନା

ହେଉଥିଲା । ସେ ସମୟରେ ପୁରୀ ସମୁଦ୍ରକୂଳରେ ଅନେକ କୋଠାଘର ଖାଲି ପଡ଼ିଥାଏ କଲିକତାର ଅଧିବାସୀ ବଙ୍ଗାଳୀ ଜମିଦାରମାନଙ୍କର । ବର୍ତ୍ତମାନ ସେ ପରିବେଶ ଆଉ ନାହିଁ । ସମୁଦ୍ରକୂଳରେ ଆଜି ଉଦ୍‌ବେଳିତ ଜନଗହଳି । ତେବେ ଏହିପରି ଗୋଟିଏ ଖାଲି କୋଠାରେ ଗ୍ରୀଷ୍ମ ଅବକାଶରେ ଏକମାସ କାଳ ରାଜନୀତିର ଶିକ୍ଷଣୀୟ ଅନୁଷ୍ଠାନ ଆରମ୍ଭ ହୁଏ । ଛାତ୍ର କଂଗ୍ରେସର ସଭ୍ୟମାନେ ଏଠାରେ ଅନ୍ତେବାସୀ ଭାବରେ ଯୋଗ ଦିଅନ୍ତି । ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ ନିମନ୍ତ୍ରିତ ହୋଇ ଆସନ୍ତି ଶିକ୍ଷା ଦେବାପାଇଁ । ସେମାନେ ମଧ୍ୟ ଛାତ୍ରମାନଙ୍କ ସହିତ ପଙ୍‌କ୍ତି ଭୋଜନରେ ଅଂଶ ଗ୍ରହଣ କରନ୍ତି । ସେହି ସମୟରେ ଯେଉଁ ନେତାମାନଙ୍କଠାରୁ ରାଜନୀତି-ଶ୍ରେଣୀରେ ଭାଷଣ ଶୁଣିବାର ସୌଭାଗ୍ୟ ହୋଇଥିଲା, ସେମାନେ ହେଲେ- କମ୍ୟୁନିଷ୍ଟ ପାର୍ଟିର ମୋହନ ଦାସ, ଗୁରୁଚରଣ ପଟ୍ଟନାୟକ; କଂଗ୍ରେସ ଦଳର ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ଲୋକନାଥ ମିଶ୍ର (ପଙ୍କବାବୁ), ସାମ୍ୟବାଦୀ ଦଳର ସୁରେନ୍ଦ୍ରନାଥ ଦ୍ୱିବେଦୀ, ବାଙ୍କବିହାରୀ ଦାସ ଏବଂ ସର୍ବୋପରି ଗାନ୍ଧିବାଦୀ ପ୍ରଫେସର ନିର୍ମଳ କୁମାର ବୋଷ । ଏହି ନିର୍ମଳବାବୁ ଓଡ଼ିଶାର ସଂସ୍କୃତି ପ୍ରସଙ୍ଗରେ ଜଣେ ସୁବିଖ୍ୟାତ ଲେଖକ । ଦେଶ ବିଭାଜନ ସମୟରେ ସେଦିନର ପୂର୍ବ ବଙ୍ଗଳାରେ ଯେଉଁ ନରସଂହାର ଚାଲିଥିଲା ତାହାକୁ ପ୍ରଶମିତ କରିବା ପାଇଁ ମହାତ୍ମାଗାନ୍ଧୀ ଗସ୍ତ କରୁଥିଲେ । ସେହି ସମୟରେ ପ୍ରଫେସର ନିର୍ମଳକୁମାର ବୋଷ ଥିଲେ ତାଙ୍କର ପ୍ରାଇଭେଟ ସେକ୍ରେଟାରୀ ।

ଛାତ୍ରମାନେ ରାଜନୀତିର ତତ୍ତ୍ୱ ଅଧ୍ୟୟନ କରନ୍ତୁ ଏବଂ ସଚେତନ ନାଗରିକ ଭାବରେ ନିଜକୁ ଗଢ଼ିବାକୁ ସାଧନା କରନ୍ତୁ, ଏହା ହିଁ ଥିଲା ସମର ସ୍କୁଲ ଅଫ୍ ପଲିଟିକ୍ସର ମୁଖ୍ୟ ଭୂମିକା । ସେଥିପାଇଁ ଏହି ସ୍କୁଲରେ ଦେଶବିଦେଶର ବିଭିନ୍ନ ରାଜନୈତିକ ମତବାଦର ତତ୍ତ୍ୱ ଓ ଆଦର୍ଶ ବିଷୟରେ ଆଲୋଚନା କରାଯାଉ‌ଥିଲା । ପରସ୍ପର ମଧ୍ୟରେ ଭାଇଚାରା ବୃଦ୍ଧି କରିବାକୁ ବକ୍ତାମାନେ ପ୍ରାଧାନ୍ୟ ଦେଉଥିଲେ । ବତୀୟ କୁସଂସ୍କାର ଓ ଜାତିଗତ ଅହଂକାରରୁ ଦୂରରେ ରହିବା ପାଇଁ କେବଳ ଶିକ୍ଷା ଦିଆଯା ଥିଲା, ମନରୁ ସେହି ସ୍ପର୍ଶକାତର ଭାବ ଦୂର କରିବା ପାଇଁ ଏଠାରେ ରନ୍ଧାବଢ଼ାର ଦାୟିତ୍ୱ ନେଇଥିଲେ କେତେଜଣ ଅସବର୍ଣ୍ଣ ଯୁବକ । ସେମାନଙ୍କ ରନ୍ଧା ଖାଉଛୁ ବୋଲି ମନରେ ଅହେତୁକ ଗର୍ବ ଆସୁଥିଲା । ସତେ ଯେପରି ସମାଜର ଏହି କଳଙ୍କିତ ପ୍ରଥା ବିରୁଦ୍ଧରେ ଆମେ ଯୁଦ୍ଧ ଘୋଷଣା କରିବାକୁ ବସିଛୁ । ଆମର ଏହି ଅଭିନବ ଅନୁଭୂତି ଘରେ ମୁରବୀମାନେ ଶ୍ରଦ୍ଧାରେ ଗ୍ରହଣ କରିପାରୁନଥିଲେ । ଏଠାରେ ପ୍ରାଧାନ୍ୟ ଦିଆଯାଉଥିଲା ସାଧାରଣ ସଭାରେ ଭାଷଣ ଦେବାର କଳାକୌଶଳ ଶିକ୍ଷା କରିବା ପାଇଁ ।

ଛାତ୍ର କଂଗ୍ରେସ ଏକ ଉଚ୍ଚମାନର ଲାଇବ୍ରେରୀ ପ୍ରତିଷ୍ଠା କରିଥିଲେ । ନାନା ପତ୍ରିକା ଅଣାଯାଉଥିଲା । ଏହି ସୁଯୋଗରେ ସେହି ତରୁଣ ବୟସରେ ପାଠ କରିଥିଲି ମହାତ୍ମାଗାନ୍ଧୀଙ୍କ ଆତ୍ମଜୀବନୀ, ଜବାହରଲାଲଙ୍କ ଜୀବନୀ, ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ମୌଲାନା ଆବୁଲକାଲାମ୍ ଆଜାଦ, ଜୟପ୍ରକାଶ ନାରାୟଣ, ଗାନ୍ଧୀ-ଅର୍ଥନୀତିଜ୍ଞ କୁମାରପା

ପ୍ରଭୃତିଙ୍କର ଲେଖାଗୁଡ଼ିକ । ଏହାଦ୍ୱାରା ମନ ପ୍ରସାରିତ ହେଉଥିଲା, ତୁଳନାତ୍ମକ ବିଚାର କରିବା ପାଇଁ ସୁଯୋଗ ମିଳୁଥିଲା । ଭାବପ୍ରବଣ ହୋଇ ରାଜନୀତିର ସ୍ଲୋଗାନରେ ଭାସିଯିବାର ଅବକାଶ ନଥିଲା । ବର୍ତ୍ତମାନ ଅନେକ ଛାତ୍ର ଅନୁଷ୍ଠାନ କାର୍ଯ୍ୟ କରୁଛନ୍ତି । କେବଳ ନିର୍ବାଚନ ରାଜନୀତି ପାଇଁ ପ୍ରସ୍ତୁତି ବ୍ୟତୀତ ଛାତ୍ରୀମାନଙ୍କର ବୌଦ୍ଧିକ ବିକାଶ ପାଇଁ ଆଦୌ ଯତ୍ନବାନ ହେଉ ନାହାନ୍ତି । ସେମାନେ କେବଳ ଦଳୀୟ ନେତାମାନଙ୍କର ହାତବାରିସି ହୋଇ କାର୍ଯ୍ୟ କରୁଛନ୍ତି ସାମୟିକ ସ୍ୱାର୍ଥ ସାଧନର ପ୍ରଲୋଭନରେ ।

ଏହି ସମୟରେ ମହାତ୍ମାଗାନ୍ଧି ଦେଶର ପୁରପଲ୍ଲୀରେ ଗଠନମୂଳକ କାର୍ଯ୍ୟ କରିବା ପାଇଁ ଷୋହଳସୂତ୍ରୀ କାର୍ଯ୍ୟକ୍ରମ ଜାରି କରିଥାଆନ୍ତି । ଭାରତର ଆତ୍ମା ରହିଛି ଏ ଦେଶର ଗ୍ରାମମାନଙ୍କରେ । ସେଠାରେ ରାଜପଣ କରୁଛି ଅନଗ୍ରସରତା ଓ କୁସଂସ୍କାରର ଅମାଅନ୍ଧକାର । ଷୋଳସୂତ୍ରୀ କାର୍ଯ୍ୟକ୍ରମରେ ତାହାର ଦୂରୀକରଣ ପାଇଁ ବ୍ୟବସ୍ଥା ରହିଥିଲା । ଗାନ୍ଧିଜୀଙ୍କ ଡାକରା ଥିଲା, ''ଗ୍ରାମକୁ ଫେରିଚାଲ ।'' ଯଦି ଭାରତର ଉନ୍ନତି କରିବାର କାମନା ରଖିଛ, ତେବେ ଗ୍ରାମମାନଙ୍କର ଉନ୍ନତି କରିବାର ଧ୍ୟାନ ଦିଅ ।''

ତରୁଣମାନଙ୍କର ମନରେ ଗାନ୍ଧିଜୀଙ୍କର ଏହି ଆହ୍ୱାନ ପ୍ରବଳ ଆବେଗ ସୃଷ୍ଟି କରୁଥାଏ । ନୂଆ ହୋଇ କଲେଜଛାତ୍ର ଭାବରେ ମନରେ ଅନେକ ସ୍ୱପ୍ନର ଜୁଆର । ଦେଶପାଇଁ କିଛି କରିବାକୁ ପ୍ରେରଣା ମିଳୁଥାଏ । ସେହି ତରୁଣ ବୟସରେ ଆମେ ଚାରିଜଣ ସହପାଠୀ ପୂଜା ଅବକାଶରେ ବାହାରିଲୁ ପୁରୀ ସହରର ଅନତିଦୂରରେ ବ୍ରହ୍ମଗିରି ଅଞ୍ଚଳ ଅଭିମୁଖେ ଗାନ୍ଧିଜୀଙ୍କ ଷୋଳସୂତ୍ରୀ ବିଧାନ ପ୍ରଚାର କରିବା ପାଇଁ । ଚିଲିକା ନିକଟବର୍ତ୍ତୀ ଏହି ଅଞ୍ଚଳ ଥିଲା ଅତ୍ୟନ୍ତ ଅନଗ୍ରସର । ତାହା ପୁଣି ଧୋଇଆ ଅଞ୍ଚଳ । ବର୍ଷପରେ ବର୍ଷ ବନ୍ୟା ବିପ୍ୟାତରେ ଏହି ଅଞ୍ଚଳ ଛାରଖାର ହୋଇଯାଏ । ଚତୁର୍ଦ୍ଦିଗରେ ଦାରିଦ୍ର୍ୟର ବିକଟାଳ ମୂର୍ତ୍ତି ବିରାଜମାନ । ସେ ଅଞ୍ଚଳକୁ ରାସ୍ତା ନାହିଁ, ଶିକ୍ଷାନୁଷ୍ଠାନ ମଧ୍ୟ ନାହିଁ । ଶାସନକଳ କୌଣସି ପ୍ରକାରର ଉନ୍ନୟନର ସମ୍ଭାବନା ମଧ୍ୟ ରଖିନାହାନ୍ତି । ଇଂରେଜ ଶାସନକାଳରେ ଏ ଅଞ୍ଚଳ ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ରହିଛି ।

କୌଣସି ଯାନବାହାନର ସୁବିଧା ନଥିବାରୁ ବିଲ ରାସ୍ତାରେ ପୁରୀରୁ ଚାଲିଚାଲି ସାନ ଓରା ନାମକ ଗ୍ରାମରେ କ୍ୟାମ୍ପ ପକାଇଲୁ । ସେଠାରେ ପୁରୀର ଜଣେ ଜମିଦାରଙ୍କର ଖମାର ଘର ହେଲା ଆମର ଆଶ୍ରୟସ୍ଥଳୀ । ପନ୍ଦରଦିନ କାଳ ସେ ଅଞ୍ଚଳର ବିଭିନ୍ନ ଗ୍ରାମରେ ସକାଳଓଳି ଗ୍ରାମ ସଫେଇତି, ପୋଖରୀରୁ ଦଳକଢ଼ା ଇତ୍ୟାଦି କରୁ । ସଂଧ୍ୟାରେ ଯାଇଁ ସଭା କରୁ । ଆମେ ସଂଧ୍ୟାରେ ଯିବାପୂର୍ବରୁ ଗାଁ ଦାଣ୍ଡରେ ଛାମୁଣ୍ଡିଆ ବନ୍ଧା ଯାଇଥାଏ । ତଳେ ପଡ଼ିଥାଏ ଚାଞ୍ଚରା ପଟି । ଦୁଇ ଚାରିଟି ଲଣ୍ଠନ ଆଲୁଅ ସଭାସ୍ଥଳକୁ ଆଲୁଅ ପ୍ରଦାନ କରୁଥାଏ । ବୟସରେ ଆମେ ପିଲା, ପୁଣି କଲେଜ ଛାତ୍ର । ସରଳ ଗ୍ରାମବାସୀଙ୍କର ସ୍ନେହ, ଆଦର ଓ ଆତିଥେୟତା ଆମ ଚାରିବନ୍ଧୁଙ୍କୁ ବିହ୍ୱଳ କରିଦେଇଥାଏ । ପୁରୀ ଫେରିଲୁ ନୌକାରେ ବସି ଚିଲିକା ଉପକୂଳର ଏକ ରେଳ ଷ୍ଟେସନ ବାଟେ ରେଳଗାଡ଼ିରେ । କଲେଜରେ ରାଧାନାଥଙ୍କର ଚିଲିକା କାବ୍ୟ

ଆମର ପାଠ୍ୟ ଥିଲା । ''ଉତ୍କଳ ସେହି ଶୋଭାର ଭଣ୍ଡାର'' ଚିଲିକା ବକ୍ଷରେ ପ୍ରଥମଥର ପାଇଁ ନୌକାଯାତ୍ରା ସାରା ଜୀବନ ପାଇଁ ଅଭୁଲା ସ୍ମୃତି ହୋଇ ରହିଛି ।

କଲେଜରେ ପ୍ରବେଶ କରିବା ସମୟରେ ଉତ୍କଳ ସମ୍ମିଳନୀ ନେତୃତ୍ୱରେ ଆରମ୍ଭ ହେଲା ଡୁଡୁମା ଆନ୍ଦୋଳନ । ଡୁଡୁମା ଜଳପ୍ରପାତ ବିଷୟରେ ଆମର କୌଣସି ପ୍ରକାର ଧାରଣା ନଥାଏ । କିନ୍ତୁ ଏତିକି ଶୁଣିଥାଉ ମହତାବ ମନ୍ତ୍ରୀମଣ୍ଡଳ ଅନେଶତବର୍ଷ ପାଇଁ ଡୁଡୁମାର ବିଜୁଳି ଉତ୍ପାଦନ ଅଧିକାର ମାନ୍ଦ୍ରାଜ ସରକାରଙ୍କୁ ଅର୍ପଣ କରିବାକୁ ଯାଉଛନ୍ତି । ପୁରୀ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଉତ୍କଳ ସମ୍ମିଳନୀ ନେତୃତ୍ୱରେ ଏକ ବିରାଟ ସଭାର ଆୟୋଜନ କରାଯାଇଥିଲା । ପ୍ରତ୍ୟେକ ଜିଲ୍ଲାର ନେତୃବୃନ୍ଦ ଏଥିରେ ଯୋଗଦାନ କରି ଜ୍ୱାଳାମୟୀ ଭାଷଣ ଦେବାକୁ ଲାଗିଲେ । ସେଠାରେ ନିଷ୍ପତ୍ତି ହେଲା ବ୍ରହ୍ମପୁର ସହରରେ ଆଉ ଏକ ଅଧିବେଶନରେ ଏହି ପ୍ରସଙ୍ଗ ଆଲୋଚନା ହେବ । ମୋର ଅନ୍ତରଙ୍ଗ ବନ୍ଧୁ ହରିହର ବାହିନୀପତି ସହିତ ଏହି ବ୍ରହ୍ମପୁର ଅଧିବେଶନରେ ଯୋଗଦେବାକୁ ଗଲି । ସେଠାରେ ଦକ୍ଷିଣ ଓଡ଼ିଶାର ନେତୃବୃନ୍ଦ ଅଧିକ ଯୋଗଦାନ କରିଥିଲେ । ଦୀର୍ଘକାଳର ପରାଧୀନତା ଓ ପଡୋଶୀ ପ୍ରଦେଶର ଚକ୍ରାନ୍ତ ଯୋଗୁ ଓଡ଼ିଆ ଭାଷାକୁ କିପରି ବିକୃତ କରି ଦିଆଯାଇଛି, କିପରି ଖାଣ୍ଟି ଓଡ଼ିଆ ମାନଙ୍କୁ ତେଲୁଗୁ ଲୋକ ବୋଲି ଲେଖେଇ ନିଆଯାଇଛି, ପ୍ରତ୍ୟେକ ଜନଗଣନାରେ ଓଡ଼ିଆ ଜନସଂଖ୍ୟା କିପରି ଚକ୍ରାନ୍ତ କରି କମ୍ କରାଯାଉଛି, ବୈମାତୃକ ମନୋଭାବ ନେଇ ମାନ୍ଦ୍ରାଜ ସରକାର କିପରି ଏହି ବିସ୍ତୃତ ଓଡ଼ିଆଭାଷୀ ଅଞ୍ଚଳକୁ ଅତ୍ୟନ୍ତ ଅନଗ୍ରସର ଏବଂ ଅନୁନ୍ନତ କରି ରଖିଅଛନ୍ତି । ଏହିସବୁ ପ୍ରସଙ୍ଗ ଉପରେ ନେତାମାନେ ଆଲୋକପାତ କରୁଥାଆନ୍ତି । ତହିଁରେ ପୁଣି ଡୁଡୁମା ପରି ଜଳସଂପଦକୁ ଅପହରଣ କରିବାର ହୀନପ୍ରୟାସ । ସଭାସ୍ଥଳରେ ଭୀଷଣ ଉନ୍ମାଦନା ଓ ଜାଗରଣ । ଏଇଠାରେ ପ୍ରଥମେ ବହୁ ନେତୃବୃନ୍ଦଙ୍କ ଗହଣରେ ସାକ୍ଷାତ ପାଇଲି ଲୋକସେବକ ମଣ୍ଡଳର ରାଧାନାଥ ରଥ, ନିଆଁଖୁଣ୍ଟା ସଂପାଦକ ଗୋଦାବରୀଶ ମହାପାତ୍ର, ହିନ୍ଦ୍ ସେବକ ସଂଘର ସର୍ବଭାରତୀୟ ନେତା ଲକ୍ଷ୍ମୀନାରାୟଣ ସାହୁ, ଜୟପୁରର ହରିହର ମିଶ୍ର, ବ୍ରହ୍ମପୁରର ଦିବାକର ପଟ୍ଟନାୟକ ପ୍ରଭୃତି ନେତୃବୃନ୍ଦଙ୍କ ସହିତ ।

ଉତ୍କଳ ସମ୍ମିଳନୀର ଛାତ୍ର ଅନୁଷ୍ଠାନ ଥିଲା ଉତ୍କଳ ବାହିନୀ । ସେତେବେଳେ ଏହି ଅନୁଷ୍ଠାନର ପ୍ରାଦେଶିକ ସଭାପତି ଥିଲେ ଚିନ୍ତାମଣି ପାଣିଗ୍ରାହୀ । ଏହି ଚିନ୍ତାମଣି ପାଣିଗ୍ରାହୀ ପରବର୍ତ୍ତୀ ସମୟରେ ପ୍ରଜାତନ୍ତ୍ର ଓ ମାତୃଭୂମିର ସଂପାଦକ, କେନ୍ଦ୍ରମନ୍ତ୍ରୀ ଓ ଗଭର୍ଣ୍ଣର ହୋଇଥିଲେ । ସେ ଥିଲେ ସୁଲେଖକ । ଅନେକ ଉତ୍ସାହୀ ତରୁଣ ଏଥିରେ ଯୋଗ ଦେଇଥିଲେ । ଡୁଡୁମା ସମ୍ମିଳନୀ ଉପଲକ୍ଷେ କବି କୁଞ୍ଜବିହାରୀ ଦାଶଙ୍କର ସ୍ମରଣୀୟ କାବ୍ୟ ପ୍ରକାଶିତ ହୋଇ ଚହଳ ପକାଇଥିଲା ।

ପୁରୀରେ ଉତ୍କଳ ବାହିନୀର କୌଣସି ଶାଖା କାର୍ଯ୍ୟ କରୁନଥିଲା । ବ୍ରହ୍ମପୁରରୁ ଫେରି କେତେଜଣ ଉତ୍ସାହୀ ଛାତ୍ରବନ୍ଧୁଙ୍କ ସହଯୋଗରେ ଗଠନ କଲୁ ପୁରୀଜିଲ୍ଲା ଉତ୍କଳ ବାହିନୀ, ଏହି ଅନୁଷ୍ଠାନର ପ୍ରଥମ ସଂପାଦକ ଭାବରେ ମୋତେ ଦାୟିତ୍ୱ ଦିଆଯାଇଥିଲା । ପୁରୀର କଲେଜର

ଚାରିବର୍ଷ ଛାତ୍ରଜୀବନ କାଳରେ ଉତ୍କଳବାହିନୀ ଖୁବ୍ କ୍ରିୟାଶୀଳ ଅନୁଷ୍ଠାନ ଥିଲା । ଏହି ଅନୁଷ୍ଠାନ ଆନୁକୂଲ୍ୟରେ ୧୯୪୮ ମସିହାରେ ଆମେ ତିନିଜଣ ବନ୍ଧୁ ସିଂହଭୂମିର ବିଚ୍ଛିନ୍ନାଞ୍ଚଳରେ ପନ୍ଦରଦିନ ଭ୍ରମଣ କରି ଓଡ଼ିଆ ଅଧିବାସୀମାନଙ୍କ ସହିତ ନିବିଡ଼ ସଂପର୍କ ସ୍ଥାପନ କରିଥିଲୁ । ଓଡ଼ିଆ ଭାଷାର ଜୀବନ୍ମୃତ ଅବସ୍ଥା ନିରୀକ୍ଷଣ କରି ବିଚଳିତ ହୋଇପଡ଼ିଥିଲୁ । ଓଡ଼ିଆ ଭାଷାଭାଷୀ ଗ୍ରାମରେ ବଂଗଳା ପ୍ରାଇମେରୀ ସ୍କୁଲ । ଓଡ଼ିଆ ଲୋକେ ସେଠାରେ ଶିକ୍ଷକ ଓ ପୃଷ୍ଠପୋଷକ । ଘର ଭିତରେ ଲୋକମାନେ ଓଡ଼ିଆରେ କଥା ହୁଅନ୍ତି । ମାତ୍ର ଦାଣ୍ଡ ପିଣ୍ଡାକୁ ଓହ୍ଲାଇପଡ଼ିଲେ ବଙ୍ଗଳା ଭାଷାରେ କଥାବାର୍ତ୍ତା । ଓଡ଼ିଆ ଭାଷା ମଧ୍ୟ ବିକୃତ ହୋଇଯାଇଥାଏ । ପଢ଼ିଥିଲି, ପଣ୍ଡିତ ଗୋପବନ୍ଧୁ ଦାସ ସିଂହଭୂମିରେ ଓଡ଼ିଆଭାଷୀ ଆନ୍ଦୋଳନ ଆରମ୍ଭ କରିଥିଲେ । ତାଙ୍କରି ଉଦ୍ୟମରେ ଚକ୍ରଧରପୁର, ଚାଇଁବସା ପ୍ରଭୃତିରେ ଓଡ଼ିଆ ମାଧ୍ୟମ ସ୍କୁଲ ଜନ୍ମଗ୍ରହଣ କରେ । ପଣ୍ଡିତ ଗୋଦାବରୀଶ ମିଶ୍ର ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ଏହି ଆନ୍ଦୋଳନରେ ଅଂଶୀଦାର ହେଲେ । ସିଂହଭୂମିର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, କାହ୍ନୁଚରଣ ପାଣି ସମଧର୍ମା କତିପୟ ନେତୃବୃନ୍ଦ ଗୋଦାବରୀଶ ମିଶ୍ରଙ୍କୁ ସାହାଯ୍ୟ କରୁଥିଲେ । ଭାଷା ଭିତ୍ତିରେ କଂଗ୍ରେସ ଅନୁଷ୍ଠାନର ପ୍ରାଦେଶିକ ଶାଖା ଗଠନ ହେବାରୁ ଓଡ଼ିଶା ପ୍ରାଦେଶିକ କଂଗ୍ରେସ ଅନୁଷ୍ଠାନର ଅଙ୍ଗ ଭାବରେ ସିଂହଭୂମି କଂଗ୍ରେସ କମିଟି କାର୍ଯ୍ୟ କରୁଥାଏ । ମାତ୍ର ବିହାର ପ୍ରଦେଶର ଶକ୍ତିଶାଳୀ କଂଗ୍ରେସ ନେତାଙ୍କର ପ୍ରଭାବରେ ସିଂହଭୂମି କଂଗ୍ରେସ କମିଟି ବିହାର ପ୍ରଦେଶ କଂଗ୍ରେସ କମିଟିର ଅଧୀନ ହେଲା । ଓଡ଼ିଆଭାଷୀ ଅଞ୍ଚଳ ଭାବରେ ଓଡ଼ିଶା ସହିତ ସିଂହଭୂମିର ମିଶ୍ରଣ ହୋଇଗଲା ସୁଦୂର ପରାହତ ।

ପୁରୀ କଲେଜରେ ଛାତ୍ରପ୍ରତିନିଧିମାନଙ୍କୁ ନେଇ ପ୍ରଥମ କରି କଲେଜ ଇଉନିଅନ ଗଠନ କରାଗଲା । ଏହାର ପ୍ରଥମ ସଭାପତି ଥିଲେ ଶଶିଭୂଷଣ ମିଶ୍ର ଓ ସଂପାଦକ ମୋର ଅନ୍ତରଙ୍ଗ ସହପାଠୀ କୁଳମଣି ରଥ । ଛାତ୍ରମାନଙ୍କୁ ସାଂସ୍କୃତିକ କ୍ଷେତ୍ରରେ ସଚେତନ କରିବା ପାଇଁ କଲେଜ ଇଉନିଅନ ବର୍ଷସାରା ନାନାପ୍ରକାର ସାଂସ୍କୃତିକ ଉତ୍ସବର ଆୟୋଜନ କରୁଥିଲେ । ଏଥିରେ ଉଦ୍‌ବୋଧନ ଦେବାପାଇଁ ଓଡ଼ିଶାରୁ ଏବଂ ଓଡ଼ିଶା ବାହାରୁ ବିଦ୍ୱାନମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା । କଲେଜର ଅଧ୍ୟକ୍ଷ ଥିଲେ ପ୍ରସିଦ୍ଧ ସାହିତ୍ୟିକ ଓ ଇଂରାଜୀ ପ୍ରଫେସର ଗିରିଜାଶଙ୍କର ରାୟ । ଅନେକ ସଂସ୍କୃତିପ୍ରେମୀ ଅଧ୍ୟାପକ କଲେଜରେ କର୍ମରତ ଥିଲେ । ସେମାନଙ୍କ ମଧ୍ୟରେ ରାଜକିଶୋର ରାୟ, ସିଦ୍ଧେଶ୍ୱର ହୋତା, ଗୋଲକ ବିହାରୀ ଧଳ, ସଦାଶିବ ଦାଶ, ଉପେନ୍ଦ୍ର ମିଶ୍ର, ଶ୍ରୀରାମଚନ୍ଦ୍ର ଦାଶ, ଗୁରୁପ୍ରସାଦ ମହାନ୍ତି, ମି. ଓବ୍ରାୟନ, ଟି. ଜୟରମନ, ସର୍ବେଶ୍ୱର ଦାଶ, ଶ୍ୟାମକୁମାର ଚଟ୍ଟୋପାଧ୍ୟାୟ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ପିଲାମାନଙ୍କର ଉତ୍ତରୋତ୍ତର ପ୍ରଗତି ପାଇଁ ପ୍ରେରଣା ପ୍ରଦାନ କରୁଥିଲେ ।

ମନେପଡୁଛି, ଅତିଥିଭାବରେ ଆସିଥିଲେ ପଣ୍ଡିତ ନୀଳକଣ୍ଠ ଦାସ, ଲକ୍ଷ୍ମୀନାରାୟଣ ସାହୁ, ହରେକୃଷ୍ଣ ମହତାବ, ଶିକ୍ଷାମନ୍ତ୍ରୀ ଲିଙ୍ଗରାଜ ମିଶ୍ର, ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ଆଦିବାସୀ ମନ୍ତ୍ରୀ ରଣଜିତ ସିଂହ ବରିହା, ଔପନ୍ୟାସିକ ଲକ୍ଷ୍ମୀଧର ନାୟକ, ନିଖିଳ ଭାରତ ଛାତ୍ର କଂଗ୍ରେସ ସଭାପତି ରବି ବର୍ମା ଏବଂ ସର୍ବୋପରି ଦକ୍ଷିଣ ଭାରତର ବିଖ୍ୟାତ ଐତିହାସିକ

ଡଃ ଶ୍ରୀନିବାସ ଶାସ୍ତ୍ରୀ ପ୍ରଭୃତି ସଜ୍ଜନ ବୃନ୍ଦ । ପିଲାମାନଙ୍କ ମଧ୍ୟରେ କଲେଜ ଇଉନିୟନ ଗଳ୍ପ, କବିତା ଓ ପ୍ରବନ୍ଧ ପାଇଁ ପ୍ରତିଯୋଗିତାର ଆୟୋଜନ କରୁଥିଲେ । ବକ୍ତୃତା ପ୍ରତିଯୋଗିତା ମଧ୍ୟ ହେଉଥିଲା । କୌତୁକ-ବିଧାନ ସଭା (ମକ୍ ଆସେମ୍ବ୍ଲି) ରେ ସଭାପତି ହେବାପାଇଁ ଆସିଥିଲେ ଓଡ଼ିଶା ବିଧାନସଭାର ବାଚସ୍ପତି ମାନ୍ୟବର ଲାଲମୋହନ ପଟ୍ଟନାୟକ । ଛାତ୍ରମାନଙ୍କ ମନରେ କି ଉତ୍ସାହ ଓ ଭାବପ୍ରବଣତା । ମନ୍ତ୍ରୀମଣ୍ଡଳ ଆସନରେ ଏବଂ ବିପକ୍ଷଦଳ ଆସନରେ ଆସୀନ ଛାତ୍ର ପ୍ରତିନିଧିମାନଙ୍କର ତର୍କବିତର୍କ କଲେଜ ହଲକୁ ଆନ୍ଦୋଳିତ କରି ଦେଉଥିଲା । ମନେପଡୁଛି, ଦିବା ଛାତ୍ରମାନଙ୍କ ପାଇଁ ଅନୁଷ୍ଠିତ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ଗଳ୍ପ ଓ କବିତା ପାଇଁ ମନ୍ତ୍ରୀ ରଣଜିତ ସିଂହ ବରିହାଙ୍କଠାରୁ ପୁସ୍ତକ କେତେଖଣ୍ଡ ପୁରସ୍କାର ପାଇଥିଲି ଇଉନିଅନ ଉତ୍ସବରେ । ଅନେକ ଦିନ ପରେ ସେହି ପୁସ୍ତକ ଦେଖି ମନରେ ଦୁଃଖ ଅନୁଭବ କରେ । କାରଣ କବିତା ଓ ଗଳ୍ପ କ୍ଷେତ୍ରରେ ନିଷ୍ଠାପର ହୋଇପାରିଲି ନାହିଁ । ଏହି ବୟସରେ ଅନେକ ଗଳ୍ପ ଓ କବିତା ଲେଖି ସାମୟିକ ପତ୍ରିକାରେ ପ୍ରକାଶ କରିଥିଲି । ପାଠକୀୟ ଶ୍ରଦ୍ଧା ମଧ୍ୟ ମିଳିଥିଲା । ବୋଧହୁଏ ସେହି ତରୁଣ କବି ପୁରୁଷର ଅକାଳ ମୃତ୍ୟୁ ବିଧିନିର୍ଦ୍ଦିଷ୍ଟ ଥିଲା ।

ଏ ଯୁଗରେ ମହାବିଦ୍ୟାଳୟ ମାନଙ୍କରେ ସାମାନ୍ୟ କଥାରେ କର୍ତ୍ତୃପକ୍ଷଙ୍କୁ ଘେରାଉ, ତାଲାବନ୍ଦ, ଅସଦ୍‌ବ୍ୟବହାର, ହିଂସାକାଣ୍ଡ ଏବଂ ହରତାଳ ହେଉଛି । ଛାତ୍ରଶିକ୍ଷକମାନଙ୍କ ମଧ୍ୟରେ ଭଲ ବୁଝାମଣା ରହୁନାହିଁ । ଶିକ୍ଷାୟତନର ଇଜ୍ଜତ ରକ୍ଷାପାଇଁ ଅନ୍ତେବାସୀମାନେ ନିଜର କର୍ତ୍ତବ୍ୟ ବୋଲି ବିଚାରୁ ନାହାନ୍ତି । ପୁରୀ କଲେଜରେ ଚାରିବର୍ଷର ଛାତ୍ରଜୀବନରେ ମାତ୍ର ଦୁଇଥର ଛାତ୍ର ଆନ୍ଦୋଳନ ହୋଇଥିଲା ବୋଲି ମନେପଡୁଛି । ଏକଦା କଲେଜର ଅତ୍ୟନ୍ତ ଛାତ୍ରବତ୍ସଳ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାସ ତତ୍କାଳୀନ ପୁରୀ କଲେକ୍ଟରଙ୍କ ଦ୍ୱାରା ଅସମ୍ମାନିତ ହେବାର ଖବର ଜଣାପଡ଼ିଲା । ଏହାପରେ ପିଲାମାନେ ହରତାଳ କରି କଚେରୀ ପର୍ଯ୍ୟନ୍ତ କେବଳ ସ୍ଲୋଗାନ ଦେଇ ଯାଇ ନଥିଲେ, କଲେଜର କୌଣସି ଅନୁଷ୍ଠାନରେ କଲେକ୍ଟରଙ୍କୁ ବାଛନ୍ଦ କରିବାର ନିଷ୍ପତ୍ତି ହୋଇଥିଲା । ଇଉନିଅନ ସାଂସ୍କୃତିକ ଉତ୍ସବକୁ ମନ୍ତ୍ରୀମାନେ ଆସିଲେ କଲେକ୍ଟରଙ୍କ ଉପସ୍ଥିତି ଏକାନ୍ତ ବାଞ୍ଛନୀୟ । ଶେଷରେ କଲେକ୍ଟର ଓ ଅଧ୍ୟାପକ ମଧ୍ୟରେ ସମ୍ମାନଜନକ ସାଲିସ ହୋଇପାରିଥିଲା । ମଠରେ ଅବସ୍ଥାନ କରୁଥିବା ବିଦ୍ୟାର୍ଥୀମାନଙ୍କୁ କେତେକ ମଠର ମହନ୍ତ ଭଲ ବ୍ୟବହାର କରୁନଥିଲେ । ଏଥିପାଇଁ ମଧ୍ୟ ଛାତ୍ର ଆନ୍ଦୋଳନ ହୋଇଥିଲା ।

କଲେଜର ବାତାବରଣ ଥିଲା ଅତ୍ୟନ୍ତ ସୌହାର୍ଦ୍ଦ୍ୟପୂର୍ଣ୍ଣ ଏବଂ ପ୍ରେରଣାଦାୟକ । ଛାତ୍ର ଓ ଶିକ୍ଷକ ଥିଲେ ଗୋଟିଏ ପରିବାର ।

• • •

# ଜୀବନ ଜାହ୍ନବୀରେ ଆଦ୍ୟ ସପନର ଢେଉ

ବସନ୍ତ ଋତୁର ଶୀତଳ ସମୀରଣ ମନକୁ ଉଲ୍ଲସିତ କରେ କାହିଁକି ? କେଉଁ ଅହେତୁକ ଆକର୍ଷଣରେ ଆମ୍ରଗଛର ଡାଳରୁ ଭାସି ଆସୁଥିବା କୋଇଲିର ପଞ୍ଚମ ସ୍ୱର କର୍ଣ୍ଣକୁହରରେ ସୃଷ୍ଟିକରେ ଅପୂର୍ବ ଝଙ୍କାର । ଶରତକାଳୀନ ଚାନ୍ଦିନୀ ରାତିର ଏତେ ମାଦକତା କି ଚମତ୍କାର ପ୍ରଶାନ୍ତି ସୃଷ୍ଟିକରେ ! ଋତୁମାନଙ୍କର ତ ପରିବର୍ତ୍ତନ ଚାଲିଥାଏ । କେଉଁ ଅରୂପ ରାଇଜରୁ ବାହାରି ଆସନ୍ତି ଅସରନ୍ତି କେତେ ରକମର ଫୁଲ ଓ ଫଳ ? ଗଛେ ଗଛେ କିଶଳୟର ଶ୍ୟାମଳ ତରଙ୍ଗ । ଉପବନର ପୁଷ୍ପ ବାଟିକାରେ ଫୁଲମାନଙ୍କର ହସହସ କେଳି କଉତୁକ ଉପଭୋଗ କରିବାପାଇଁ କେଉଁଠାରୁ ଟାଣି ହୋଇ ଆସନ୍ତି ରାଶିରାଶି ମହୁମାଛି ଓ ଭ୍ରମର ? ପର୍ବତର ବୁକୁ ବିଦାରଣ କରି ଖଳଖଳ ଛଳଛଳ ପ୍ରବାହ ମଧ୍ୟରେ ଝରଣାଟିଏ ଟାଣି ହୋଇଯାଏ କେଉଁ ଅଚିହ୍ନା ପ୍ରଦେଶର ଆହ୍ୱାନରେ ? କେଉଁ ଆବେଗର ଆହ୍ୱାନରେ ପଶୁ ଓ ପକ୍ଷୀମାନଙ୍କର ଶାବକମାନେ ମାଆର କୋଳ ପରିତ୍ୟାଗ କରି ମୁକ୍ତ ହେବାକୁ ବ୍ୟାକୁଳ ହୋଇପଡ଼ନ୍ତି ?

ଠିକ୍ ସେମିତି, କେଉଁ ଅଦୃଶ୍ୟ ଶକ୍ତିର ଯାଦୁକରୀ ଆହ୍ୱାନରେ ତରୁଣ ପ୍ରାଣ ବିହ୍ୱଳିତ ହୋଇ ଉଠୁଥାଏ ନିଜକୁ ପ୍ରକାଶିତ କରିବାପାଇଁ । କଳ୍ପନାର ଡେଣା ଲାଗିଯାଏ । କଳ୍ପନାହିଁ କଳାକୁ ନିମନ୍ତ୍ରଣ କରିଆଣେ ।

ସେହି ସ୍ମରଣୀୟ ମଧ୍ୟାହ୍ନର ଏକ ଅବିସ୍ମରଣୀୟ ଅନୁଭୂତି । ପୁରୀ କଲେଜର ପ୍ରଥମବର୍ଷର କେତେଜଣ ଅନ୍ତରଙ୍ଗ ସହପାଠୀ ଏକାଠି ହୋଇଥିଲେ ପୁରୀ ଶ୍ରୀମନ୍ଦିରର କୋଇଲି ବୈକୁଣ୍ଠ ଉପବନରେ ଏକ ଅନୁଚ୍ଚ ଚମ୍ପା ଗଛରେ । ଚାରିଆଡ଼କୁ ଡାଳଗୁଡ଼ିକ ବିଛାଡ଼ି ହୋଇଯାଇଥାଏ । ପ୍ରତି ଡାଳରେ ଜଣେଜଣେ ବନ୍ଧୁ । ନାନା ଆଡ଼ର ଆଳାପ୍ ଆଲୋଚନା ମଧ୍ୟରେ ପ୍ରସ୍ତାବ ହେଲା - ଚାଲ ଆମେ ସମସ୍ତେ ଏକାଠି ହୋଇ ଗୋଟିଏ ଅନୁଷ୍ଠାନ କରିବା । ତାର ନାମ ହେବ ''ତରୁଣ ସାହିତ୍ୟ ମନ୍ଦିର'' । ପ୍ରତି ସପ୍ତାହରେ ଛୁଟୀଦିନରେ ଏକାଠି ହୋଇ ଆଲୋଚନା ସଭାଟିଏ କରିବା । ସେଥିରେ ସାହିତ୍ୟ ଆଲୋଚନା ହେବ ମୁଖ୍ୟ ପ୍ରସଙ୍ଗ । ଆମେ ସମସ୍ତେ ଗଳ୍ପ କବିତା ଲେଖିବା । ତାକୁ ପ୍ରକାଶ କରିବା ଗୋଟିଏ ହାତ ଲେଖା ପତ୍ରିକାରେ । ସମସ୍ତେ ସମସ୍ୱରରେ ସମର୍ଥନ କଲେ । ନିଷ୍ପତ୍ତି ହେଲା, ପତ୍ରିକାର ନାମ ଦିଆଯିବ ''ପ୍ରତିଭା'' । ସେହି ଗଛ ଉପରେ ଅନୁଷ୍ଠାନ ପାଇଁ ନିର୍ବାଚନ ହେଲା । ପ୍ରଥମ ସଂପାଦକ ଭାବରେ ମୋତେ ସ୍ଥିର କରାଗଲା । ପତ୍ରିକାର ଯୁଗ୍ମ ସଂପାଦକ ହେଲେ ମୋ ସହିତ ସହପାଠୀ ବନ୍ଧୁ ବଳରାମ ପଟ୍ଟନାୟକ । ନିଜକୁ ପ୍ରକାଶ କରିବାପାଇଁ ଆରମ୍ଭ ହେଲା ଏକ ଅଭିଯାନ । ସେଦିନ ତରୁଣ

ସାହିତ୍ୟ ମନ୍ଦିରରେ ଯେଉଁମାନେ ଏକାଠି ହୋଇଥିଲେ ସେମାନେ ହେଲେ ମୋ ସହିତ ହରିହର ବାହିନୀପତି, ବଳରାମ ପଟ୍ଟନାୟକ, ଲକ୍ଷ୍ମୀଧର ମହାନ୍ତି, ଗୋରାଚାନ୍ଦ ପଟ୍ଟନାୟକ, ଚକ୍ରନାରାୟଣ ଘଟୁଆରୀ, ଭୀମସେନ ସାହୁ, ଅଖିଳମୋହନ ପଟ୍ଟନାୟକ, ପ୍ରହ୍ଲାଦ ମହାନ୍ତି, ରାମଚନ୍ଦ୍ର ରଥ, ଅନ୍ତର୍ଯ୍ୟାମୀ ମହାନ୍ତି, କୁଳମଣି ରଥ ପ୍ରମୁଖ ।

ପୁରୀ କଲେଜରେ ଚାରିବର୍ଷର ଛାତ୍ର ଜୀବନ ସହିତ ତରୁଣ ସାହିତ୍ୟ ମନ୍ଦିର ଚଳଚଞ୍ଚଳ ରହିଥିଲା । ପ୍ରତ୍ୟେକ ମାସରେ ହାତଲେଖା 'ପ୍ରତିଭା' ପତ୍ରିକା ପ୍ରକାଶ ପାଉଥିଲା । ଏହି ପତ୍ରିକା ଓ ସାପ୍ତାହିକ ଆଲୋଚନା ସଭାକୁ ଆକୃଷ୍ଟ ହୋଇଥିଲେ ସମଧର୍ମା ଅନେକ ସହପାଠୀ ।

ସେହି ସମୟରେ କବି କୁଞ୍ଜବିହାରୀ ଦାଶ ଥାଆନ୍ତି ସଂସ୍କୃତ ବିଭାଗର ସୁପରିଟେଣ୍ଡେଣ୍ଟ ଏବଂ ତାଙ୍କର ଅଫିସ ଥାଏ ପୁରୀ ଜିଲ୍ଲା ସ୍କୁଲ ହଷ୍ଟେଲର ଏକ କକ୍ଷରେ । ତରୁଣ ଲେଖକମାନଙ୍କୁ ଉତ୍ସାହ ପ୍ରଦାନ କରିବା ପାଇଁ ସେ ଅକୁଣ୍ଠ ଚିତ୍ତରେ ଆଶୀର୍ବାଦ କରୁଥିଲେ । ମନେପଡୁଛି ତରୁଣ ସାହିତ୍ୟ ମନ୍ଦିରର ପ୍ରଥମ ବାର୍ଷିକ ସମ୍ମିଳନୀ । ଏମାର ମଠର ରଘୁନନ୍ଦନ ଲାଇବ୍ରେରୀ କକ୍ଷରେ ଏହି ଅଧିବେଶନ ବସିଥାଏ । ସଭାପତି ହେଲେ ପ୍ରସିଦ୍ଧ ସାହିତ୍ୟିକ ଓ ପୁରୀ କଲେଜର ଅଧକ୍ଷ ଗିରିଜାଶଙ୍କର ରାୟ । ସଭାରେ ଉପସ୍ଥିତ ଥିଲେ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶ, ଅଧ୍ୟାପକ ରାଜକିଶୋର ରାୟ, ସାମ୍ବାଦିକ ଓ ଲେଖକ ସୂର୍ଯ୍ୟନାରାୟଣ ଦାଶ, ଗାଳ୍ପିକ ପ୍ରାଣବନ୍ଧୁ କର ଓ କବି କୁଞ୍ଜବିହାରୀ ଦାଶ । ପୁରୀ ସହରରେ ପୂର୍ବରୁ କୌଣସି ସାହିତ୍ୟ ଅନୁଷ୍ଠାନ ନଥିଲା । ତରୁଣମାନଙ୍କର ଏହି ସାରସ୍ୱତ ଜୟଯାତ୍ରା ବୁଦ୍ଧିଜୀବୀ ସମାଜର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ଦ୍ୱିତୀୟ ବାର୍ଷିକ ସମ୍ମେଳନ ମହାସମାରୋହରେ ଅନୁଷ୍ଠିତ ହେଲା ସବୁଜକବି କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ପୌରୋହିତ୍ୟରେ ।

ତାରୁଣ୍ୟର ଉଚ୍ଛ୍ୱାସ ନେଇ ପ୍ରଚୋଦନା ଦେଉଥିଲେ କବିତା ଓ ଗଳ୍ପ ଲେଖିବାପାଇଁ । ପ୍ରବନ୍ଧ ପ୍ରାୟ କେହି ଲେଖୁ ନଥିଲେ । ଏହି ବୟସରେ ଅନେକ ଗଳ୍ପ ଓ କବିତା ଲେଖିଥିଲି ଏବଂ ତାହା 'ପ୍ରତିଭା'ର ପୃଷ୍ଠା ମଣ୍ଡନ କରିବା ସହିତ ପରବର୍ତ୍ତୀ ସମୟରେ ଅନେକ ସାହିତ୍ୟ ପତ୍ରିକାରେ ଆତ୍ମପ୍ରକାଶ କରିଥିଲା । ତରୁଣ ସାହିତ୍ୟ ମନ୍ଦିର ଆନୁକୂଲ୍ୟରେ "ତରଙ୍ଗ" ଶୀର୍ଷକରେ ଏକ ଗଳ୍ପ ସଂକଳନ ପ୍ରକାଶିତ ହୋଇଥିଲା । ଏହାକୁ ପ୍ରକାଶ କରିଥିଲେ କଟକର ପ୍ରସିଦ୍ଧ ପ୍ରକାଶକ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରର ପରିଚାଳକ ଅନନ୍ତ ମିଶ୍ର । ଏ ହେଉଛି ୧୯୪୮ ମସିହାର ଘଟଣା ।

ଏଥିରେ ସଂକଳିତ ଗଳ୍ପ ଗୁଡ଼ିକର ପରିଚୟ ଏହିପରି -

୧. ସମାଧାନ - ପ୍ରହ୍ଲାଦ ମହାନ୍ତି, ୨. ଝରାଫୁଲର ସୌରଭ - ଲକ୍ଷ୍ମୀଧର ମହାନ୍ତି, ୩. ସଂଗ୍ରାମ - ଗୋରାଚାନ୍ଦ ପଟ୍ଟନାୟକ, ୪. ଲୁହ କାନ୍ଦର ଦୁନିଆ - ଭୀମସେନ ସାହୁ, ୫. ଚରମ ଦୃଶ୍ୟ - ରାମଚନ୍ଦ୍ର ରଥ, ୬. ଘୁରିଯାଇଛି - ରାଜକିଶୋର ମହାନ୍ତି, ୭. ଅଭାଗା - ଭୀମସେନ ପଟ୍ଟନାୟକ, ୮. ସ୍ମୃତି ପୂଜା - ପଠାଣି ପଟ୍ଟନାୟକ, ୯. ଅନ୍ତିମ ଶଯ୍ୟାରେ ରାଜକୁମାର - ବଳରାମ ସାହୁ, ୧୦. 'ଧୁ' - ଶ୍ରୀ ଛଦ୍ମବେଶୀ ଓରଫ୍ ଅଖିଳମୋହନ ପଟ୍ଟନାୟକ ।

ଏହି ପୁସ୍ତକରେ କବି କୁଞ୍ଜବିହାରୀଙ୍କ ଆଶୀର୍ବାଦବ୍ୟଞ୍ଜକ କବିତା ପ୍ରଥମରୁ ପ୍ରକାଶିତ ହୋଇଥିଲା । ତାହା ହେଲା -

ମଣିଷ ହୃଦୟେ ଜାଗେ ଯେତେ ଯେତେ ଢେଉ
ଅନ୍ଧାରଭରା ଜୋଛନାଭରା ବା କେହୁ ।
ବଜାଇ ହୃଦୟ ବଂଶୀ କରୁଣ ରାଗେ
ଲୁହ ଧାରେ ଧାରେ କିଏ ସେ ବିଦାୟ ମାଗେ ।
ଫୁଟାଇ କମଳ ମୁଖେ ଯାଏ କିଏ ଚାଲି
ଭାରତୀର ତାଜମହଲ ପଡ଼ଇ ଖାଲି ।
ଜଞ୍ଜାଳ କୂଳେ ଭାଙ୍ଗି ହୁଅଇ ଚୂନା
ଲେଖନୀର ମୁନ କରେ ନାହିଁ ନିଜ ପ୍ରକାଶେ ଝମାଟ ସୁନା ।
ଆଜି ଏକି ଢେଉ ତରୁଣ ହୃଦୟେ ଖେଳେ
ଦେଶ ମାତା ପାଦ ଶିକୁଳି ଫିଟିବାବେଳେ ।
ସୁନାର ପଦୁଅଁ ଫୁଟି ଫୁଟି ଆସେ ତହିଁ
ବାସେ ତାର ଦିନେ ମହକାଇ ଦେବ ମହୀ ।
ରାସେ ରାସେ ତାର ନାଚିବ ନିଖିଳ ରାଣୀ
ହାସେ ଦେବ ବୀଣା ଝଙ୍କାରୀ ବୀଣାପାଣି ।
ଉତ୍କଳ ମନେ କେତେ ଆଶା ଆଜି ଜାଗେ
ଫୁଟିବେ ନିଖିଳ ଏ ଜାତି ତରୁଣ ଅରୁଣ କିରଣ ରାଗେ ।''

କବି କୁଞ୍ଜବିହାରୀଙ୍କର ସେଦିନର ଏହି ଆଶୀର୍ବାଦ ଆଜି ଚରିତାର୍ଥ ହୋଇଛି ବୋଲି ମନେ ହୁଏ । ଅର୍ଦ୍ଧଶତାବ୍ଦୀ ପୂର୍ବରେ 'ତରୁଣ ସାହିତ୍ୟ ମନ୍ଦିର'ର ତରୁଣ କର୍ମୀ ଆଜି ପରିଣତ ବୟସରେ ପଦାର୍ପଣ କରିଛନ୍ତି । ଅନେକ କେଉଁଦିନୁ ମୁହଁ ଛୁପାଇ ସେପାରିକୁ ଚାଲିଗଲେଣି । ମାତ୍ର ସେମାନଙ୍କର ସାଧନାଦୀପ୍ତ ପ୍ରତିଭା ଆଜି ସାରସ୍ୱତ ସିଦ୍ଧିରେ ଉଜ୍ଜ୍ୱଳ । ତରୁଣ ସାହିତ୍ୟ ମନ୍ଦିରର ଏହିପରି ଜଣେ ସ୍ମରଣୀୟ ବ୍ୟକ୍ତିତ୍ୱ ହେଲେ ସ୍ୱର୍ଗତ ଅଖିଳମୋହନ ପଟ୍ଟନାୟକ । ସେ ହେଉଛନ୍ତି ଆଧୁନିକ ଓଡ଼ିଆ ଗଳ୍ପ ସାହିତ୍ୟର ମହାନ ଯାଦୁକର । ସେହିପରି ସ୍ୱର୍ଗତ ଆଇନଜୀବୀ ପ୍ରହ୍ଲାଦ ମହାନ୍ତି । ଗଳ୍ପ ରଚନାରେ ତାଙ୍କର ସିଦ୍ଧିଥିଲା ଅବିସମ୍ବାଦିତ । ପରିଣତ ବୟସରେ ଉପନୀତ ପ୍ରସିଦ୍ଧ ଔପନ୍ୟାସିକ ବଳରାମ ପଟ୍ଟନାୟକ ଓ ଗଳ୍ପ ଲେଖାରେ ସିଦ୍ଧହସ୍ତ ଲକ୍ଷ୍ମୀଧର ମହାନ୍ତି ଆଜି ମଧ୍ୟ ସାଧନାରତ । ସ୍ୱର୍ଗତ ହରିହର ବାହିନୀପତି ଔପନ୍ୟାସିକ, ଅନୁବାଦକ, କବି ଓ ରାଜନୀତିକ ସଂଗ୍ରାମୀ ଭାବରେ ସମଗ୍ର ଓଡ଼ିଶାରେ ସୁପରିଚିତ । ଜୀବନ ଝଞ୍ଜାଳ ମଧ୍ୟରେ ଅନେକ ବନ୍ଧୁ ନୀରବ ରହିଗଲେ । ମହାକାଳ ଯଦି ଆଉ କିଛିକାଳ ଅପେକ୍ଷା କରିଥାଆନ୍ତା, ତେବେ ରାମଚନ୍ଦ୍ର ରଥ ହୋଇଥାଆନ୍ତେ ଓଡ଼ିଆ ଗଳ୍ପ ସାହିତ୍ୟର ଅନ୍ୟତମ ଶକ୍ତିଶାଳୀ ବିଦ୍ଧାଣୀ ।

ସୁସାହିତ୍ୟିକ ଅଧ୍ୟାପକ ରାଜକିଶୋର ରାୟ ''ତରଙ୍ଗ'' ପୁସ୍ତକର ''ଗ୍ରନ୍ଥ ପ୍ରବେଶ'' ଲେଖିବାକୁ ଯାଇ ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ, ତାହା ଅତ୍ୟନ୍ତ ଉଲ୍ଲେଖନୀୟ । ତାଙ୍କରି ଭାଷାରେ ''ପୁରୀ କଲେଜରେ ଅଧ୍ୟାପନା କରୁଥିବା ସମୟରେ ଯେଉଁ କେତେଜଣ ପ୍ରିୟ ଛାତ୍ରଙ୍କର କଥାସାହିତ୍ୟ ପ୍ରତି ଅନୁରଞ୍ଜନ ମୋର ଦୃଷ୍ଟି ଆକର୍ଷଣ କରିଥିଲା, ଆଜି ସେମାନଙ୍କଦ୍ୱାରା ପ୍ରତିଷ୍ଠିତ ତରୁଣ ସାହିତ୍ୟ ମନ୍ଦିରର ପ୍ରଥମ ଅବଦାନ ସ୍ୱରୂପ 'ତରଙ୍ଗ' ଗଳ୍ପ ପୁସ୍ତକରେ ତାଙ୍କରି ଗଳ୍ପ ରଚନା ପାଠ କରି ମୁଁ ମୁଗ୍ଧ ହୋଇଛି ।

ପ୍ରଥମରେ ଏ ଉଦ୍ୟମ ମୂଳରେ ତରୁଣ ପ୍ରାଣର ଭାବବିଳାସ ପ୍ରତି ମୋର ଅନୁରାଗ ଅଛି । ଦ୍ୱିତୀୟରେ ଗଳ୍ପ ଗୁଡ଼ିକରେ ତାରୁଣ୍ୟର କ୍ଷିପ୍ର ଭାବସ୍ରୋତ ଉଚ୍ଛଳ ଭାବରେ ପ୍ରବାହିତ ହେଉଥିଲେ ମଧ ଯେଉଁ ମଧୁର ସଂଯମ, ଜୀବନର ବିଚିତ୍ର ଚିତ୍ର ସମ୍ଭାର ଓ ଶେଷରେ ଆଧୁନିକ ଯୁବମନ ଲୋଭନୀୟ ଉତ୍କଟ ପ୍ରେମ ପ୍ରଣୟର ଅସାତ୍ତ୍ୱିକ ଆଖ୍ୟାନର ବିରଳତା ମୁଁ ଦେଖିପାରିଛି, ତାହା ଅତି ମନୋରମ । ପ୍ରତ୍ୟେକ ଗଳ୍ପରେ ପ୍ରାଣକୁ ସ୍ପର୍ଶ କରିବାଭଳି ଉପାଦାନ ରହିଛି ।''

ସଂପାଦକ ଭାବରେ ଏହି ଗ୍ରନ୍ଥର ''ନିଜକଥା'' ଶୀର୍ଷକରେ ଲେଖିଥିଲି - ''ତରୁଣ ସାହିତ୍ୟ ମନ୍ଦିର'' କଥା ମହଲର ପ୍ରଥମ ଅର୍ଘ୍ୟ ''ତରଙ୍ଗ'' । ନିଜ କଥାରେ ସାହିତ୍ୟ ମନ୍ଦିର ଜୀବନ ସଂଗେ ''ତରଙ୍ଗ''ର ସୃଷ୍ଟି ଅଚ୍ଛେଦ୍ୟ । ଏହି ହିସାବରେ ତରୁଣ ସାହିତ୍ୟ ମନ୍ଦିର ସୃଷ୍ଟି ଆକସ୍ମିକ ନୁହେଁ । ତାର ବର୍ତ୍ତମାନ ଅଛି, ଭବିଷ୍ୟତ ବି ରହିଛି । ଭକ୍ତକବି ମଧୁସୂଦନଙ୍କ ପରିକଳ୍ପିତ ''ଉତ୍କଳ ସାହିତ୍ୟ ସମାଜ'' ପରି ତରୁଣ ସାହିତ୍ୟ ମନ୍ଦିର ମଧ କେତେକ ତରୁଣ ବୟସ୍କମାନଙ୍କର କଳ୍ପିତ ସାଧନାମଞ୍ଜୁଳ ଆଲୋଚନା ସଭାର ରୂପରେଖ ମାତ୍ର । ଆଜିର ତିନିବର୍ଷର ଶିଶୁ ଅନୁଷ୍ଠାନ ଉତ୍କଳର ସାହିତ୍ୟିକ ତଥା ସଜ୍ଜନମାନଙ୍କର ଆଶୀର୍ବାଦରେ ୧୯୪୫ ମସିହା ଅଗଷ୍ଟ ମାସରେ ପ୍ରଥମେ ଆବିର୍ଭାବ ହୁଏ ।

୧୯୪୪ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାର ସଦର ମହକୁମାରେ ଓଡ଼ିଶା ସରକାର ମହାବିଦ୍ୟାଳୟ ପ୍ରତିଷ୍ଠା କରନ୍ତି । ଏହି ଉଦ୍ୟମର ଫଳଶ୍ରୁତି ହେଲା ପୁରୀ କଲେଜ । କଲେଜର ଜନ୍ମ ସହିତ ଆନୁସଙ୍ଗିକ ସାଂସ୍କୃତିକ ସପ୍ତାହ ଏବଂ ମଧ୍ୟେ ମଧ୍ୟେ ଓଡ଼ିଆ ସାହିତ୍ୟ ସମାରୋହ ଦେଖିବାକୁ ମିଳିଲା । ମନେପଡୁଛି ଓଡ଼ିଆ ସାହିତ୍ୟ ପରିଷଦର ପ୍ରଥମ ଅଧିବେଶନ କଥା । ଓଡ଼ିଶାର ପ୍ରାଚୀନତମ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜରେ ପ୍ରବୀଣ ଓ ନବୀନ ସାହିତ୍ୟିକ ଗୋଷ୍ଠୀ ମଧରେ ସଂଘର୍ଷ ହୋଇ ବିଚାରାଳୟ ପର୍ଯ୍ୟନ୍ତ କଥା ଯାଇଥିଲା । ତରୁଣଗୋଷ୍ଠୀ ଏହି ପ୍ରାଚୀନ ଅନୁଷ୍ଠାନରୁ ପୃଥକ ହୋଇ ଆରମ୍ଭ କଲେ ଓଡ଼ିଆ ସାହିତ୍ୟ ପରିଷଦ । ଏହାର ପ୍ରଥମ ଅଧିବେଶନ ପୁରୀର ଜଗନ୍ନାଥବଲ୍ଲଭ ମଠ ପ୍ରାଙ୍ଗଣରେ ଅନୁଷ୍ଠିତ ହେଉଥାଏ । ଏହି ଅଧିବେଶନରେ ସଭାପତି ଆସନ ଅଳଙ୍କୃତ କରିଥିଲେ ସୁଦୂର ନାଗପୁରରେ ଅଧ୍ୟାପନା କରୁଥିବା ସୁସାହିତ୍ୟିକ ଓ ଐତିହାସିକ ଡକ୍ଟର ହରନାରାୟଣ ସିଂହ । ତାଙ୍କର ପୂର୍ବନିବାସ ବାଲେଶ୍ୱରରେ ଏବଂ ସେ

'ସହକାର', 'ଉତ୍କଳ ସାହିତ୍ୟ' ପୃଷ୍ଠାରେ ଲେଖାଲେଖି କରୁଥିଲେ । ଉଦ୍‌ଘାଟକ ଭାବରେ ଆସିଥିଲେ ମେଦିନୀପୁର ଅଧିବାସୀ ଓଡ଼ିଆ ସାହିତ୍ୟିକ ଭାଗବତପ୍ରସାଦ ଦାସ । ସାହିତ୍ୟ ଅଧିବେଶନ ସହିତ ଗୋପାଳ କାନୁନଗୋଙ୍କ ହସ୍ତଚିତ୍ରର ଏକ ମନୋଜ୍ଞ ପ୍ରଦର୍ଶନୀ ଥିଲା ପୁରୀ ସହରରେ ଏକ ଅଭିନବ ବ୍ୟାପାର । ଜଣେ ସ୍କୁଲ ଛାତ୍ର ଭାବରେ ମୋର ହିନ୍ଦୀ ଶିକ୍ଷକ ନରସିଂହ ନନ୍ଦଙ୍କର ସ୍ନେହଭାଜନ ହୋଇଥିଲି । ତାଙ୍କରି ଆଦେଶରେ ଏହି ସମ୍ମେଳନରେ ସ୍ୱେଚ୍ଛାସେବକ ଭାବରେ ପ୍ରତ୍ୟକ୍ଷ ଦାୟିତ୍ୱରେ ଥିଲି, ସଭାପତି ଡଃ ସିଂ ଏବଂ ତାଙ୍କର ବିଦୁଷୀ ପତ୍ନୀଙ୍କର ସେବା କରିବାପାଇଁ । ତେଣୁ ଦୁଇଦିନକାଳ ଏହି ଅଧିବେଶନରେ ରୋମାଞ୍ଚକର ଆଲୋଚନା ଓ ତର୍କ ଶୁଣିବାର ସୌଭାଗ୍ୟ ହୋଇଥାଏ । ଏହି ମଞ୍ଚରେ ଉପବେଶନ କରିଥିବା ସାହିତ୍ୟିକମାନେ ହେଲେ କାଳିନ୍ଦୀ ପାଣିଗ୍ରାହୀ, ବୈକୁଣ୍ଠ ପଟ୍ଟନାୟକ, ନବକିଶୋର ଦାସ, ବାଳକୃଷ୍ଣ କର, ଜଗବନ୍ଧୁ ସିଂହ, ପଦ୍ମଚରଣ ପଟ୍ଟନାୟକ, ସୂର୍ଯ୍ୟ ନାରାୟଣ ଦାଶ, ନରସିଂହ ନନ୍ଦ, ପ୍ରାଣବନ୍ଧୁ କର, ଲୋକନାଥ ପଟ୍ଟନାୟକ ପ୍ରଭୃତି ଅନେକ ସୁଧୀଜନ । ପରମ ସୌଭାଗ୍ୟ ମିଳିଥିଲା ଏମାନଙ୍କ ନିକଟ ପରିବେଶରେ ଉପସ୍ଥିତ ହେବାପାଇଁ । ଜଣେ ସ୍କୁଲ ଛାତ୍ର ହିସାବରେ ସାହିତ୍ୟ ପରୀକ୍ଷାରେ ଯଦିଓ ଖୁବ୍ ଭଲ କରୁଥିଲି, ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକ ମାନଙ୍କ ବିଷୟରେ କିଛି ଧାରଣା ନରହିବା ସ୍ୱାଭାବିକ । ଏହି ଲେଖକମାନେ ସାହିତ୍ୟ ଲେଖୁଛନ୍ତି ଓ ଆମେ ତାକୁ ପାଠ କରୁଚୁ; ଏହି ଭାବନା ମନକୁ କିଛି ସମୟ ପାଇଁ ବିହ୍ୱଳିତ କରି ଦେଉଥାଏ । ବାଳକୃଷ୍ଣ କର ତାଙ୍କର ସହକାର ସାହିତ୍ୟ ମାସିକକୁ ଅର୍ପଣ କରିଦେଲେ ଓଡ଼ିଆ ସାହିତ୍ୟ ପରିଷଦର ମୁଖପତ୍ର କରିବାପାଇଁ । କାଳିନ୍ଦୀ ପାଣିଗ୍ରାହୀ ହେଲେ ତାହାର ମୁଖ୍ୟ ସଂପାଦକ ।

ଓଡ଼ିଆ ସାହିତ୍ୟ ପରିଷଦର ଏହି ବିଦ୍ରୋହ ଅଧିକ କାଳ ରହିଲା ନାହିଁ । ପୁନର୍ବାର ନବୀନ ସାହିତ୍ୟିକ ଗୋଷ୍ଠୀ ପ୍ରବୀଣ ମାନଙ୍କ ସହିତ ଏକାଠି ହୋଇଗଲେ ଉତ୍କଳ ସାହିତ୍ୟ ସମାଜ ଅନୁଷ୍ଠାନରେ । ମାତ୍ର କିଶୋର ଜୀବନର ଏହି ଅପୂର୍ବ ଅନୁଭୂତି ସାହିତ୍ୟସେବୀ ହେବାର ସ୍ୱପ୍ନ ଦେଖିବାପାଇଁ ବୋଧହୁଏ ଅହେତୁକ ପ୍ରେରଣା ଯୋଗାଇ ଦେଇଥିବ । କାରଣ କେହି ଶିକ୍ଷକ ଅଥବା ପରିବାରର ଗୁରୁଜନମାନେ କେବେହେଲେ ଉତ୍ସାହିତ କରିନଥିଲେ ଲେଖାଲେଖି କରିବାପାଇଁ । ବୋଧହୁଏ ତାହା ଛାତ୍ରଜୀବନର ଏକ ଅପଚୟ ବୋଲି ସେମାନେ ମନେକରୁଥିଲେ ।

ତରୁଣ ସାହିତ୍ୟ ମନ୍ଦିର ଆନୁକୁଲ୍ୟରେ ସାପ୍ତାହିକ ଆଲୋଚନା ସଭାର ଆୟୋଜନ ଥାଏ ସଂପାଦକ ହିସାବରେ ମୋ ଉପରେ । ସେତେବେଳେ ଆମର କଲେଜ ସହପାଠୀ ଥିଲେ ମଙ୍ଗୁମଠର ଚେଲା ମହାରାଜ । ତାଙ୍କର ସହଯୋଗ ଲାଭ କରି ଅନେକ ଦିନ ପର୍ଯ୍ୟନ୍ତ ବଡ଼ଦାଣ୍ଡକୁ ସମ୍ମୁଖୀନ ରହିଥିବା ମଠର ଦ୍ୱିତଳ ହର୍ମ୍ୟର ଏକ କୋଠରୀରେ ଆମର ଆଲୋଚନା ସଂଘର ବୈଠକ ବସେ । ସେଇଠି ବନ୍ଧୁମେଳରେ ଅଭ୍ୟାସ କରୁ ଭାଷଣ ଦେବାପାଇଁ । ଏହି ପିଲା ବୟସରେ ମୋର ଅନ୍ତରଙ୍ଗ ବନ୍ଧୁ ହରିହର ବାହିନୀପତି ନିଃସଙ୍କୋଚରେ ଅନର୍ଗଳ ଭାଷଣ ଦେଉଥାଏ । ମୋର ଈର୍ଷା ହେଉଥାଏ । କାରଣ ଆଲୋଚନା କାଳରେ ଅନେକ କଥା ଭୁଲିଯାଏ, ବିଚଳିତ ହୋଇଯାଏ । ଏହି ବାହିନୀପତି ପରବର୍ତ୍ତୀ ଜୀବନରେ ସାଧାରଣ

ସଭାରେ ଅଥବା ବିଧାନ ସଭାରେ ଭାଷଣ ଦେଇ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଥିଲା । ସେ ଥିଲା ପୁରୀ ସହରରେ ଅନ୍ୟତମ ପ୍ରଭାବଶାଳୀ ବକ୍ତା ।

ସାହିତ୍ୟ ଆଲୋଚନା ସଭାରେ ଯୋଗ ଦେଲୁ ସିନା, କି ଯୋଗ୍ୟତା ଆମର ଥିଲା ? କ'ଣ ବା ଥିଲା ଅନୁଭୂତି ଅଥବା ଜ୍ଞାନ ! ମୋର ସେହି ତରୁଣ ବୟସରେ ଏହି ଆହ୍ୱାନର ମୁକାବିଲା କରିବାପାଇଁ ବଦ୍ଧପରିକର ହେଲି । ଅନବରତ ଲାଇବ୍ରେରୀମାନଙ୍କୁ ଗଲି ପଢ଼ିବାପାଇଁ । ପୁରୀ ସହରରେ ଦୁଇଟି ବିଖ୍ୟାତ ଲାଇବ୍ରେରୀ ହେଉଛି ଏମାର ମଠର ରଘୁନନ୍ଦନ ଲାଇବ୍ରେରୀ ଓ ସମୁଦ୍ରକୂଳର ରାମକୃଷ୍ଣ ମିଶନ ଲାଇବ୍ରେରୀ । ଏତଦ୍‌ବ୍ୟତୀତ ମାର୍କଣ୍ଡେଶ୍ୱର ସାହିର ଗଳି ଭିତରେ ଥିଲା ଏକ ପ୍ରାଚୀନ ଲାଇବ୍ରେରୀ 'ସର୍ବ ମଙ୍ଗଳା ଲାଇବ୍ରେରୀ' ।

ରଥ ସାହିରେ ଜଣେ ଆତ୍ମୀୟ ମସୀଜୀବୀ ଥିଲେ । ତାଙ୍କୁ ଡାକୁଥିଲି ଝାଡୁ ଦାଦା । ବହୁତ ପଢ଼ାପଢ଼ି କରିବା ତାଙ୍କର ଅଭ୍ୟାସ । ସେ ନିୟମିତ ଓଡ଼ିଆ ଉପନ୍ୟାସ କିଣୁଥିଲେ । ଝାଡୁ ଦାଦାଙ୍କ ଘରୁ ମାଗି ଆଣି ଏହି ବୟସରେ ଅନେକ ଓଡ଼ିଆ ଉପନ୍ୟାସ ପଢ଼ି ପାରିଥିଲି । ସର୍ବମଙ୍ଗଳା ଲାଇବ୍ରେରୀରେ ଅନେକ ''ସତ୍ୟବାଦୀ'' ପତ୍ରିକା ସାଇତା ହୋଇ ରହିଥିଲା । 'ସତ୍ୟବାଦୀ' ପତ୍ରିକାର ଅଧିକାଂଶ ସଂଖ୍ୟା ପାଠ କରିବାର ସୁଯୋଗ ପାଇଥିଲି । ଆଜି ଗବେଷକମାନଙ୍କ ପାଇଁ ଏହି ପ୍ରାଚୀନ ପତ୍ରିକା 'ସତ୍ୟବାଦୀ' ସୁଲଭ ନୁହେଁ । କଟକ ରହଣୀର ପ୍ରଥମ ଅବସ୍ଥାରେ ଅନେକ ସମୟରେ ନବଭାରତ ପ୍ରେସ୍‌ର ଉପର ମହଲାକୁ ଯାଉଥିଲି ପଣ୍ଡିତ ନୀଳକଣ୍ଠଙ୍କଠାରୁ କିଛି ଶୁଣିବାପାଇଁ । ପୁରୀ କଲେଜରେ ପଢ଼ିଲାବେଳୁ ତାଙ୍କ ସହିତ ପରିଚିତ ହୋଇଥିଲି । ପଣ୍ଡିତ ନୀଳକଂଠ ପୁରୀ କଲେଜକୁ ଭାଷଣ ଦେବାପାଇଁ ନିମନ୍ତ୍ରିତ ହୋଇ ଯାଇଥିଲେ । ତାଙ୍କର ଭାଷଣ ଲିପିବଦ୍ଧ କରିବାପାଇଁ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶଙ୍କ ଦ୍ୱାରା ଆଦିଷ୍ଟ ହୋଇଥିଲି । ପଣ୍ଡିତ ନୀଳକଣ୍ଠଙ୍କ ପାଖରେ ତିନିଦିନ କାଳ ଭାଷଣ ଟିପିବା ପାଇଁ ଉପସ୍ଥିତ ରହୁଥିଲି । ଗୋଟିଏ ସଂଧ୍ୟାରେ ପଣ୍ଡିତ ନୀଳକଣ୍ଠ କହିଲେ, ପ୍ରାଚୀନ ସତ୍ୟବାଦୀ ପତ୍ରିକା ପାଉନାହିଁ । ମୋର କେତେକ ପ୍ରକାଶିତ ପ୍ରବନ୍ଧ ସଂଗ୍ରହ କରିବାକୁ ଇଚ୍ଛା ହେଉଛି । ବୋଧହୁଏ କୌଣସି ପ୍ରବନ୍ଧ ସଂକଳନ ଉଦ୍ଦେଶ୍ୟରେ ପଣ୍ଡିତ ମହାଶୟ ଏହା ଲୋଡୁଥିଲେ । ଅତ୍ୟନ୍ତ ଆଗ୍ରହରେ ସର୍ବମଙ୍ଗଳା ଲାଇବ୍ରେରୀରେ ସଂରକ୍ଷିତ ପତ୍ରିକାଗୁଡ଼ିକ ମାଗି ଆଣିଥିଲି ପଣ୍ଡିତଙ୍କ କାର୍ଯ୍ୟରେ ଲାଗିବ ବୋଲି । ପରେ ତାହା ଆଉ ଫେରାଇ ଆଣି ପାରିଲିନାହିଁ ।

ବଡ଼ଲୋକଙ୍କର ଜୀବନୀ ପଢ଼ିବାପାଇଁ ସ୍କୁଲର ସାହିତ୍ୟ ଶିକ୍ଷକ ଉପଦେଶ ଦେଉଥିଲେ । ତେଣୁ ଆଗ୍ରହରେ ପାଠ କରୁଥିଲି ବଡ଼ଲୋକମାନଙ୍କର ଜୀବନ କାହାଣୀ । ସର୍ବମଙ୍ଗଳା ପୁସ୍ତକାଳୟରେ ବିଶାଳକାୟ ରାଧାନାଥ ଜୀବନୀ ଆଖିରେ ପଡ଼ିଲା । ଏହାର ଲେଖକ ଦୁର୍ଗାଚରଣ ରାୟ । ଏହି ପିଲା ବୟସରେ ଏତେ ବଡ଼ ବହି ପଢ଼ିବାପାଇଁ ଅନେକ ଦିନ ଲାଗିଲା । ଏହା ଏକ ମାମୁଲି ବର୍ଣ୍ଣନାଧର୍ମୀ ଜୀବନଚରିତ ନଥିଲା । ପଢୁପଢୁ ଧାରଣା ହେଉଥାଏ ଓଡ଼ିଶାର ସାହିତ୍ୟ ଓ ଶିକ୍ଷା ବିସ୍ତାରର ପାଣିପାଗ ବିଷୟରେ । ଇଂରେଜ ଅମଳର ଅନେକ ଘଟଣା ସହିତ ରାଧାନାଥଙ୍କ ସାହିତ୍ୟର ବହୁ ଆଲୋଚନା ଏଥିରେ ସ୍ଥାନିତ ହୋଇଥିଲା । ଆଇ.ଏ. ଶ୍ରେଣୀରେ ରାଧାନାଥଙ୍କର 'ଚିଲିକା' କାବ୍ୟ ଆମର ପାଠ୍ୟ ରହିଥାଏ । ରାଧାନାଥ ଜୀବନୀ

ପାଠ କରିଥିବା ଯୋଗ୍ୟ ସାହିତ୍ୟ ଆଲୋଚନା କରିବାର କୌଶଳ ଆହରଣ କରିବାକୁ ଚେଷ୍ଟା କରିଥିଲି ।

ପୂର୍ବରୁ କହିଛି, ଏମାର ମଠର ରଘୁନନ୍ଦନ ଲାଇବ୍ରେରୀ ଓଡ଼ିଶାରେ ବିଖ୍ୟାତ । ବଙ୍ଗଳା, ଓଡ଼ିଆ, ହିନ୍ଦୀ, ସଂସ୍କୃତ ଏବଂ ଇଂରେଜୀ ସାହିତ୍ୟର ଅନେକ ମୂଲ୍ୟବାନ ଗ୍ରନ୍ଥ ଏଠାରେ ସଂଗୃହୀତ ହୋଇ ରଖାଯାଇଥାଏ । ସେତେବେଳେ ଓଡ଼ିଆ ସାହିତ୍ୟର ଇତିହାସ ଜାଣିବା ପାଇଁ ବିଶେଷ ପୁସ୍ତକ ଲେଖାଯାଇ ନଥାଏ । ଆମର ସାହିତ୍ୟ ଆଲୋଚନା ସଭା ଉଦ୍ଦେଶ୍ୟରେ ଏହି ବିଷୟରେ ଜାଣିବାପାଇଁ ଇଚ୍ଛା ହେଉଥାଏ । ସୁଯୋଗକ୍ରମେ ରଘୁନନ୍ଦନ ଲାଇବ୍ରେରୀରେ ପାଠ କରିଥଲି ତାରିଣୀଚରଣଙ୍କ ଓଡ଼ିଆ ସାହିତ୍ୟର ଇତିହାସ, ବିଜୟ ମଜୁମଦାରଙ୍କ ସଂପାଦିତ 'ଓଡ଼ିଆ ସାହିତ୍ୟ ସଂକଳନ' (A typical selections from Oriya Literature Vol I, II, III) ଗ୍ରନ୍ଥର ଇଂରେଜୀ ମୁଖବନ୍ଧ । ଇତିହାସ ଜାଣିବାର ଆଗ୍ରହ ଥିବାରୁ ସୁଯୋଗ ଅନୁକ୍ରମେ ଆଖି ପକାଇଲି କୃପାସିନ୍ଧୁ ମିଶ୍ରଙ୍କ 'ଓଡ଼ିଶା ଇତିହାସ', ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ', ଇଂରେଜ ପ୍ରଶାସକଙ୍କ ସଂକଳିତ 'ପୁରୀ ଗେଜେଟିଅର' ଏତଦ୍‌ବ୍ୟତୀତ ଅନେକ ଓଡ଼ିଆ ନାଟକ ବହି ପଢ଼ିବାର ସୁଯୋଗ ପାଇଥିଲି ।

ନୂତନ ପୁରୀ କଲେଜର ଲାଇବ୍ରେରୀ ବିସ୍ତାର ଲାଭ କରୁଥାଏ । ଅନେକ ମୂଲ୍ୟବାନ ପୁସ୍ତକ ଆମଦାନୀ ହେଉଥାଏ । ଲାଇବ୍ରେରୀ ଦାୟିତ୍ୱରେ ଥାଆନ୍ତି ଛାତ୍ରବତ୍ସଳ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶ । କଲେଜ ଲାଇବ୍ରେରୀଆନ ମୋତେ ଇତିହାସ ପୁସ୍ତକ ଦେବାପାଇଁ ବାରଣ କଲେ, କାରଣ ମୁଁ ଇତିହାସର ଛାତ୍ର ନଥିଲି । ମୋର ତ ପଢ଼ିବାର ଆଗ୍ରହ । ଅଧ୍ୟାପକ ଦାଶଙ୍କୁ ପ୍ରାର୍ଥନା କଲି । ସେ ଆଦେଶ ଦେଲେ ମୋତେ ବହି ଦେବାପାଇଁ । ଏହି ସୁଯୋଗରେ ପାଠ କରିବାର ସୌଭାଗ୍ୟ ମିଳିଥିଲା ଆର.ଡି. ବାନାର୍ଜୀଙ୍କର (History of Orissa) ଓ ସି. ଗାଙ୍ଗୁଲିଙ୍କର (Orissa and her remains), ବିଜୟଚନ୍ଦ୍ର ମଜୁମଦାରଙ୍କର (Orissa in the making) ଗାନ୍ଧିଜୀ, ଜବାହରଲାଲ, ରାଜେନ୍ଦ୍ର ପ୍ରସାଦଙ୍କର ଆତ୍ମଚରିତ, ମୌଲାନା ଆବୁଲକଲମ ଆଜାଦଙ୍କର (India wins freedom) ଇତ୍ୟାଦି କେତେକ ସ୍ୱନାମଧନ୍ୟ ଆତ୍ମଜୀବନୀ । ଛାତ୍ରବନ୍ଧୁମାନଙ୍କ ମେଳରେ ଭାଷଣ ଦେଲାବେଳେ କିମ୍ବା କୌଣସି ରାଜନୀତି ଚର୍ଚ୍ଚା କାଳରେ ଏହି ପୁସ୍ତକଲବ୍ଧ ଜ୍ଞାନ ଯଥେଷ୍ଟ ପ୍ରେରଣା ଯୋଗାଇ ଦେଉଥିଲେ ।

ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶ ଉତ୍ସାହିତ କରୁଥିଲେ ବିଭିନ୍ନ ପତ୍ରିକା ପାଠ କରିବାପାଇଁ । ସେହିକାଳରେ ଭାରତର ତିନିଗୋଟି ବିଖ୍ୟାତ ଇଂରେଜୀ ମାସିକ ପତ୍ରିକା ଥାଏ କଲିକତାର (Modern Review), ପାଟଣାର (Hindustan review) ଏବଂ ମାନ୍ଦ୍ରାଜର (Indian Review) ଏହି ତିନିଗୋଟି ପତ୍ରିକାର ଯଥାକ୍ରମେ ସ୍ୱନାମଧନ୍ୟ ସଂପାଦକ ଥିଲେ ରାମାନନ୍ଦ ଚାଟାର୍ଜୀ, ମି.ସିନ୍‌ହା ଓ ଜି. ନାଟସେନ । କାହିଁକି କେଜାଣି ଏହି ମାନର ପତ୍ରିକା ଆଜିକାଲି ସମ୍ଭବ ହେଉନାହିଁ । ବୋଧହୁଏ ଆଦର୍ଶ ଓ ରୁଚି ବଦଳିଗଲାଣି । ରାମକୃଷ୍ଣ ଲାଇବ୍ରେରୀରେ ଭାରତର ସର୍ବାଞ୍ଚଳରୁ ଅନେକ ପତ୍ରିକା ଆସୁଥାଏ । ତାହା ଥାଏ ଛାତ୍ର ଜୀବନର ଅତ୍ୟନ୍ତ

ଆଦରଣୀୟ । ଓଡ଼ିଆ ସାହିତ୍ୟ ମାସିକ ଚତୁରଙ୍ଗ, ଶଂଖ, ଆସନ୍ତାକାଲି, କୁଙ୍କୁମ, ଜାଗରଣ, ବୀଣା ଇତ୍ୟାଦି ଅନେକ ପତ୍ରିକା ଆଖିରେ ପଡୁଥାଏ ।

ତରୁଣ ସାହିତ୍ୟ ମନ୍ଦିର ବ୍ୟତୀତ ଅନ୍ୟ କୌଣସି ଅନୁଷ୍ଠାନ ପୁରୀରେ ନଥିଲା, ସାହିତ୍ୟ ସଭାର ଆୟୋଜନ କରିବା ପାଇଁ । ତେବେ କଟକର କଳିଙ୍ଗଭାରତୀ ଅନୁଷ୍ଠାନ ଆନୁକୂଲ୍ୟରେ ଭଞ୍ଜଜୟନ୍ତୀ ପୁରୀରେ ପାଳନ କରାଯାଉଥାଏ । ସାହିତ୍ୟ ସଭାରେ ଯୋଗଦେବାପାଇଁ ମୋର ପ୍ରବଳ ଆଗ୍ରହ ରହିଥାଏ । ତେଣୁ ଏହି ସଭାରେ ପ୍ରଥମେ ଦେଖିଲି କଳିଙ୍ଗ ଭାରତୀ ପ୍ରତିଷ୍ଠାତା କବି ବିଚ୍ଛନ୍ଦଚରଣ ପଟ୍ଟନାୟକ, ଜଗବନ୍ଧୁ ସିଂହ, ନରସିଂହ ନନ୍ଦ, ସୂର୍ଯ୍ୟନାରାୟଣ ଦାସ, ଲୋକନାଥ ପଟ୍ଟନାୟକ ପ୍ରଭୃତିଙ୍କୁ ଆଲୋଚନା କରିବାର । ଛାତ୍ର ଅବସ୍ଥାରେ ଥାଇ ହୃଦାନନ୍ଦ ରାୟ, ରଜତ କୁମାର କର ଏବଂ ଅନ୍ୟ କେତେଜଣ ଭଞ୍ଜ ସାହିତ୍ୟ ଆଲୋଚନା କରି ଯେପରି ଜ୍ୱାଳାମୟୀ ଭାଷଣ ଦେଉଥିଲେ, ତାହା ଥିଲା ଅତ୍ୟନ୍ତ ଅସାଧାରଣ । ମୋର ପରମ ସୌଭାଗ୍ୟ ଯେ କର୍ମମୟ ଜୀବନରେ କେବଳ କଟକ ନୁହେଁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଭଞ୍ଜଜୟନ୍ତୀରେ ଭାଷଣ ଦେବାର ସାଦର ନିମନ୍ତ୍ରଣ ପ୍ରାପ୍ତ ହୋଇଥିଲି । ବିଚ୍ଛନ୍ଦଚରଣଙ୍କ କଳିଙ୍ଗ ଭାରତୀ ଭଞ୍ଜଜୟନ୍ତୀର ଆୟୋଜନ କରି ଓଡ଼ିଶାବ୍ୟାପୀ ଏକ ସାଂସ୍କୃତିକ ଆନ୍ଦୋଳନ କରିବାରେ ସକ୍ଷମ ହୋଇପାରିଥିଲେ । ଭଞ୍ଜଜୟନ୍ତୀ ଜରିଆରେ ଜାତୀୟ ସ୍ୱାଭିମାନର ପ୍ରାଣପ୍ରତିଷ୍ଠା କରିବା ଥିଲା ବିଚ୍ଛନ୍ଦଚରଣଙ୍କ ଲକ୍ଷ୍ୟ । ଏହି ସଂଗ୍ରାମରେ ସେ ସାଫଲ୍ୟମଣ୍ଡିତ ହୋଇଛନ୍ତି । ଭଞ୍ଜଜୟନ୍ତୀ ଆଜି ଜନ୍ମ ଦେଇଛି ବହୁ ବିଖ୍ୟାତ ସାହିତ୍ୟ ଆଲୋଚକ, ନୃତ୍ୟଶିଳ୍ପୀ, ସଙ୍ଗୀତ ଶିଳ୍ପୀ ପ୍ରଭୃତି କଳାକାରମାନଙ୍କୁ ।

ପ୍ରତ୍ୟେକ ଲେଖକର ସ୍ୱପ୍ନ ଚରିତାର୍ଥ ହୁଏ କବିତା ରଚନାରେ । ଲେଖକ ବୋଧହୁଏ ପ୍ରଥମେ କବିତା ଲେଖି ଆତ୍ମପ୍ରକାଶ କରିବାକୁ ଚେଷ୍ଟିତ ହୁଅନ୍ତି । ସେତେବେଳେ ସ୍ୱପ୍ନ ଓ କଳ୍ପନାର କାଉଁରୀ କାଠି ମନ ଓ ପ୍ରାଣକୁ ସ୍ପର୍ଶ କରି ଚାଲିଥାଏ । ତେଣୁ ଛାତ୍ରଜୀବନର ଆଦ୍ୟ ଅନୁଭୂତି ରୂପାୟିତ ହୋଇଥିଲା ଅନେକ ଗୁଡ଼ିଏ କବିତା ଲେଖାରେ । ଏଥି ସହିତ ଗଳ୍ପ ମଧ୍ୟ ଲେଖା ଚାଲିଥାଏ । ''ତରଙ୍ଗ' ପୁସ୍ତକର ''ସ୍ମୃତି ପୂଜା'' ଗଳ୍ପଟି ତାର ଏକ ଉଦାହରଣ । ଦ୍ୱିବାଧ୍ୟାୟୀ ଛାତ୍ରମାନଙ୍କର ଗଳ୍ପ ପ୍ରତିଯୋଗିତାରେ ପ୍ରଥମ ହୋଇ ପୁରସ୍କାର ମିଳିବାର ସୌଭାଗ୍ୟ ପାଇଥିଲି କଲେଜ ଇଉନିଅନ ଅଧିବେଶନରେ ତତ୍କାଳୀନ ମନ୍ତ୍ରୀ ରଣଜିତ୍ ସିଂହ ବରିହାଙ୍କଠାରୁ । ଧୀରେଧୀରେ ବମ୍ବେରୁ ପ୍ରକାଶିତ କୁଙ୍କୁମ, ଟିକାଲିର 'ବୀଣା', ବ୍ରହ୍ମପୁରର 'ନବୀନ', ପୁରୀର 'ଜାଗରଣ', 'ରବିବାର ପ୍ରଜାତନ୍ତ୍ର' ପ୍ରଭୃତିରେ ଅନେକ ଗଳ୍ପ ପ୍ରକାଶିତ ହେବାକୁ ଲାଗିଲା । ମଧ୍ୟେମଧ୍ୟେ କବିତା ମଧ୍ୟ ଲେଖା ଚାଲିଥାଏ ।

ପ୍ରଥମେ ଛାପା ଅକ୍ଷରରେ ନିଜର ଲେଖାଟିଏ ପ୍ରକାଶିତ ହେବାର ବିହ୍ୱଳିତ ଅନୁଭୂତି ଲେଖିବାପାଇଁ ଆଗ୍ରହ ହେଉଛି । ପ୍ରତ୍ୟେକ ନୂତନ ଲେଖକର ପ୍ରଥମ ଅଭିଜ୍ଞତା ବୋଧହୁଏ ଏହିପରି ହେଉଥିବ । କବିତା ଲେଖୁଥିଲି ଓ ପ୍ରକାଶ କରିବାପାଇଁ ସାହିତ୍ୟ ପତ୍ରିକାମାନଙ୍କୁ ପଠାଉଥିଲି । ପ୍ରତ୍ୟେକ ଥର ହତାଶ ହେଉଥିଲି । କିନ୍ତୁ ମନ୍କୁ ଊଣା କରୁ ନଥାଏ ।

ପୁନର୍ବାର ନୂତନ କବିତାଟିଏ ପଠାଉଥାଏ । ଦିନକର କଥା । ପୁରୀ କଲେଜରୁ କ୍ଲାସ ସାରି ଆମର ମାର୍କଣ୍ଡେଶ୍ୱର ସାହି ବାସଭବନରେ ବିଶ୍ରାମ କରୁଛି । ମଧ୍ୟାହ୍ନ ସମୟ । ହଠାତ୍ ପୋଷ୍ଟମ୍ୟାନ ଡାକିଲେ, ମନିଅର୍ଡ଼ର ଅଛି । ଆଶ୍ଚର୍ଯ୍ୟ ହେଲି । ମୋତେ କିଏ କାହିଁକି ଟଙ୍କା ପଠାଇବ ? ଦସ୍ତଖତ କରି ପାଞ୍ଚଟଙ୍କା ଓ ଚତୁରଙ୍ଗ ସାହିତ୍ୟ ପତ୍ରିକାଟିଏ ପାଇଲି । କିଏ କାହିଁକି ମୋତେ ପାଞ୍ଚଟଙ୍କା ଦେଇଛନ୍ତି ଆଦୌ ଭାବିପାରିଲି ନାହିଁ । ପତ୍ରିକାଟି ଥିଲା ଦ୍ୱିତୀୟବର୍ଷର ୩ୟ ସଂଖ୍ୟା । ଦେଖିଲି ମୋର କବିତା 'ପଥ ପ୍ରାନ୍ତେ' ସ୍ଥାନିତ ହୋଇଛି ଏବଂ ସେଥିପାଇଁ ଲେଖକୀୟ ଶ୍ରଦ୍ଧାସୁମନ ପାଞ୍ଚଟଙ୍କା । ଲେଖିବାପାଇଁ ଭାଷା ପାଉନାହିଁ । ମୋର ଲେଖା ବାହାରିବ ଏବଂ ସେଥିପାଇଁ ଟଙ୍କା ପାଇବି, ଏହା ମୋର କଳ୍ପନାର ବାହାରେ ରହିଥିଲା । ଚାରିଟା ବାଜିଲାମାତ୍ରକେ ଆଉ କ'ଣ ମନ ଥୟ ଧରେ । ଅନ୍ତରଙ୍ଗ ସହପାଠୀ ବନ୍ଧୁ କେତେଜଣ ପୁରୀ ସମୁଦ୍ରକୂଳ ଦିଗବାରେଣୀ ଖୁଣ୍ଟି ପାଖରେ ସବୁଦିନ ଆମେ ଏକାଠି ହେଉ । ମଉଜିଆ ଗପରେ ବେଳ କଟିଯାଏ । ମୋତେ କି ଆଉ ତର ସହୁଛି । ସାଙ୍ଗମାନଙ୍କୁ ପଢ଼ାଇବି ପତ୍ରିକାଟି । ମୁଁ ଜଣେ କବି ହେଇଗଲି । ସିଂହଦ୍ୱାରରୁ ଦୋଳମଣ୍ଡପ ସାହିବାଟେ ଚାଲିଚାଲି ଯାଉଥାଏ । ଯାହାକୁ ଦେଖୁଥାଏ, ମନେମନେ ଭାବୁଥାଏ, ମୁଁ ଜଣେ କବି ବୋଲି ଏମାନେ ଜାଣି ସାରିଲେଣି । ସେଦିନର ସେ ତୃପ୍ତ ଅନୁଭବ ଅଭୁଲା ଓ ଅଲିଭା ସ୍ମୃତି ହୋଇ ରହିଛି । ଲେଖକୀୟ ସ୍ୱୀକୃତି ପାଇଁ ଏକଲକ୍ଷ ଟଙ୍କା ପାଇଛି । ସାମୟିକ ଲେଖାଲେଖି ପାଇଁ ସାହିତ୍ୟପତ୍ରିକା ମୋଟା ଅଙ୍କର ଅର୍ଥ ଦେଇଛନ୍ତି । ଅର୍ଦ୍ଧଶତାଧିକ ପୁସ୍ତକ ପ୍ରକାଶିତ । କିନ୍ତୁ ସେଦିନ 'ଚତୁରଙ୍ଗ' ପତ୍ରିକାର ଆଶୀର୍ବାଦ ତରୁଣ ମନରେ ଯେପରି ରେଖାପାତ କରିଥିଲା, ତାହା ସହିତ କିଏ ଅବା ତୁଳିତ ହୋଇପାରିବ ?

ଆଗ୍ରହ ବଢ଼ିଲା । ଲେଖନୀ ହେଲା ଚଳଚଞ୍ଚଳ । କବିତା ଓ ଗଳ୍ପ ଲେଖିବାପାଇଁ ମନରେ ଅପୂର୍ବ ପୁଲକ ଓ ଶିହରଣ । ତରୁଣ କବିମାନଙ୍କୁ ଅଧିକ ଉତ୍ସାହିତ କରୁଥାଏ ବ୍ରହ୍ମପୁର ସହରରୁ ପ୍ରକାଶିତ 'ନବୀନ' । ଏହି ପତ୍ରିକାରେ ପ୍ରଥମେ ପ୍ରକାଶିତ ହେବାର ସୁଯୋଗ ଲାଭ କରିଥିଲେ କୁଞ୍ଜବିହାରୀ ଦାଶ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ସଚ୍ଚି ରାଉତରାୟ, ଗୋପାଳ ମିଶ୍ର, ଦୁର୍ଗାମାଧବ ମିଶ୍ର, ମନମୋହନ ମିଶ୍ର ପ୍ରଭୃତି କବିମାନେ । ସେମାନଙ୍କ ପଦାଙ୍କ ଅନୁସରଣ କରି ମୋତେ ମଧ୍ୟ ସୁଯୋଗ ମିଳିଲା । ଗୋଟିଏ ବର୍ଷ ମଧ୍ୟରେ 'ନବୀନ' ପ୍ରକାଶ କରିଥିଲେ - ପଲ୍ଲୀ ସଂଜ, ଅନ୍ଧାର ଯାତ୍ରୀ, କାହିଁ ରହିଛ ପ୍ରିୟ, ସ୍ୱପ୍ନ ଓ ବାସ୍ତବତା, ଅଭିସାର ପଥେ, କବି ପ୍ରକୃତି, ପାଶେପାଶେ ରହ ପ୍ରଭୃତି କବିତାଗୁଡ଼ିକ । କଟକ ଚାନ୍ଦିନୀଚୌକ ଲାଲବାଗ ଥାନା ସଂଲଗ୍ନ ମାପକିଲ୍ ପ୍ରେସରୁ ପ୍ରକାଶ ପାଉଥାଏ 'ସଂଗ୍ରାମ' ନାମରେ ଏକ ସାହିତ୍ୟ ପତ୍ରିକା କେବଳ ନାରୀମାନଙ୍କ ପାଇଁ । ମୋର ମେସ୍ ସାଥୀ ଗୌର ପଟ୍ଟନାୟକ ଥାଆନ୍ତି ଏହାର ପରିଚାଳକ । ତାଙ୍କରି ଅନୁରୋଧରେ ଏହି ପତ୍ରିକାରେ ଛଦ୍ମନାମରେ ଛପାଇଥିଲି ଦୁଇଟି କବିତା 'ପ୍ରଣୟର ଡାକ' ଓ 'ଗୋଲାପ ରାଣୀ' ଶୀର୍ଷକରେ । ଛଦ୍ମ ନାମଟି ଥିଲା 'କୁମାରୀ ପଟ୍ଟନାୟକ' । ଛୋଟ ପିଲାଙ୍କ ଉଦ୍ଦେଶ୍ୟରେ ପ୍ରଜାତନ୍ତ୍ର 'ମୀନାବଜାର' କ୍ରୋଡ଼ପତ୍ର ଆରମ୍ଭ କଲେ । ସେଥିରେ

ପିଲାମାନଙ୍କ ଉଦ୍ଦେଶ୍ୟରେ ଦୁଇଟି କବିତା ଲେଖିଥିଲି - 'ଗାଁ ଦାଣ୍ଡର ଅଳସ ସଞ୍ଜେ', 'ମୋ ପିଲାବେଳ' । ପ୍ରଜାତନ୍ତ୍ର ଅନୁଷ୍ଠାନ ଦୈନିକ କାଗଜର ମୀନାବଜାର କ୍ରୋଡ଼ପତ୍ର ବ୍ୟତୀତ ପ୍ରକାଶ କଲେ ମାସିକ ଶିଶୁ ପତ୍ରିକା 'ମୀନାବଜାର' । ଏହାର ସ୍ୱତନ୍ତ୍ର ସଂଖ୍ୟାରେ କବିତାଟିଏ ଲେଖିଥିଲି - 'ମେଘ ଉଠିଆସେ କଳା ହାଣ୍ଡିଆ' । ଆଗ୍ରହ ହେଉଛି ତରୁଣ ବୟସର ସେହି କବିତାଟି ପାଠକଙ୍କ ଆଗରେ ପରିବେଷଣ କରିବାପାଇଁ-

'ମେଘ ଉଠିଆସେ କଳା ହାଣ୍ଡିଆଲୋ, ପବନ ପିଟଇ ଖରେ,
ଝର ଝର ଝର ବରଷା ପଡ଼େଲୋ, ନଈ, ନାଳ, ବଣ ତଳେ ।
କଟର କଟର ଭେକ ଗରଜିଲା ସାରୁଗଛ ତଳ ରାଜା
ଡବ ଡବ କରି ପିଲାଏ ଖେଳିଲେ, ଡେଲିଙ୍ଗି ବାଇଦ ବଜା ।
ମେଘ ଉଠିଆସେ କଳା ହାଣ୍ଡିଆଲୋ ବିଜୁଳି ଉଠିଲା ଖେଳି
ଗାଁ ବିଲମାଳ ବେଉଷଣ ସାରି, ହଳୁଆ ଆସଇ ଚଳି ।
ଅବଧାନଙ୍କର ଚାହାଳି ସଇଲା, ପିଲା ହେଲେ ଘରମୁହାଁ
ମେଘ ବରଷୁଛି ଖରା ପଡୁଅଛି, ବିଲୁଆ ନନାର ବାହା ।
ଚାଳିର ମଥାନେ କାଉ କାଆ କଲା ଗାଈ ଗୋଠ ଗାଁ ତଳେ
ଟିକି ନୂଆବୋହୂ ସଞ୍ଜ ବଳିତାଟି, ଥୁଅଇ ଚଉରା ମୂଳେ ।
ବୁଢ଼ୀ ମାଆ କୋଳେ ଟିକି କୁନି ପୁଅ, ଡବ ଡବ ଚାହିଁ ରହେ
ଅସୁର ଅସୁରୀ ରଜା ପୁଅ କଥା, ଆଈ ନାତି ଆଗେ କହେ ।
ଅଣ୍ଟିରେ ଅଣ୍ଟିଏ ମୁଢ଼ି ଧରି କାହିଁ ପିଲାଏ, ଧରନ୍ତି ଗୀତ,
ଟିକି ଚଢ଼େଇରେ ଟିକି ଚଢ଼େଇ ତୁ, ପଡ଼ିବୁ କି ମୋର ହାତ ।
କେତେ ନଈ ନାଳ ଉଛାଣି ଉଠିଲା, ଗାଁ ନଈ ଉଠେ ବଢ଼ି
ମେଘ ଉଠାଇଲା କଳାହାଣ୍ଡିଆଲୋ, ବରଷା ଅଇଲା ମାଡ଼ି ।'

ପ୍ରଜାତନ୍ତ୍ର 'ମୀନାବଜାର'ରେ ପ୍ରକାଶିତ 'ଗାଁ ଦାଣ୍ଡର ଅଳସସଞ୍ଜ' କବିତାଟି ମଧ୍ୟ ଏଠାରେ ଉଦ୍ଧାର କରୁଛି । ପିଲାଙ୍କ ଉଦ୍ଦେଶ୍ୟରେ ଲେଖିବାପାଇଁ ମୀନାବଜାରର ସଂପାଦକ ଲେଖକମାନଙ୍କୁ ଉତ୍ସାହିତ କରୁଥିଲେ । ଓଡ଼ିଶାର ପୁରପଲ୍ଲୀରେ ମୀନାମଣ୍ଡଳି ଗଠନ କରାଯାଇ ଛୋଟ ପିଲାଙ୍କ ସାହିତ୍ୟ ସୃଷ୍ଟିର ଏକ ଅଭିନବ ବାତାବରଣ ସୃଷ୍ଟି ହୋଇଥାଏ । ସେହି ହାଓ୍ୱାରେ ମୁଁ ମଧ୍ୟ ପିଲାଙ୍କ ପାଇଁ ଲେଖିବାକୁ ଆରମ୍ଭ କଲି । ପରବର୍ତ୍ତୀ କାଳରେ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଅନେକ ମାସିକ ପତ୍ରିକା ଆତ୍ମପ୍ରକାଶ କଲା । ସେମାନଙ୍କ ମଧ୍ୟରୁ କେତେକ ଉଲ୍ଲେଖନୀୟ ପତ୍ରିକାକୁ ସ୍ମରଣ କରାଯାଇପାରେ । ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟରେ 'ପ୍ରଭାତ', 'ପଞ୍ଚାମୃତ' ଓ 'ଜହ୍ନମାମୁଁ' ଶୀର୍ଷକ ଶିଶୁ ସାହିତ୍ୟ ପତ୍ରିକାର ଭୂମିକା ଥିଲା ଉଲ୍ଲେଖନୀୟ । ମାତ୍ର ସ୍ୱାଧୀନତା ଆସିଲାବେଳକୁ ଏମାନେ ମୃତ୍ୟୁବରଣ କରିଥିଲେ । ତେବେ ସ୍ୱାଧୀନତା ପରବର୍ତ୍ତୀକାଳରେ ମୀନାବଜାର, ସଂସାର, ଶିଶୁ ସଂପଦ, ଟୁଆଟୁଇଁ, ମନପବନ, ଶିଶୁଲେଖା, ଅପରାଜିତା, ଆ

ଜହ୍ନମାମୁଁ ସରଗଶଶୀ ପ୍ରଭୃତି ଶତାଧିକ ପତ୍ରିକା ଶିଶୁ ସାହିତ୍ୟର ବିକାଶ ପାଇଁ ପ୍ରକାଶିତ ହୋଇଛି ଓଡ଼ିଶାର ସର୍ବାଞ୍ଚଳରୁ । 'ମନପବନ'ର ସଂପାଦକ ମହେଶ୍ୱର ମହାନ୍ତିଙ୍କ ସାଗ୍ରହ ଅନୁରୋଧରେ ଅନେକଗୁଡ଼ିଏ କାହାଣୀ ପ୍ରକାଶ କରିଥିଲି ମନପବନ ପୃଷ୍ଠାରେ । ଅନେକ ଜୀବଜନ୍ତୁଙ୍କ କାହାଣୀ ମଧ୍ୟ ଲେଖିଥିଲି । ପରବର୍ତ୍ତୀକାଳରେ ''ଦେଶବିଦେଶର କାହାଣୀ'' ନାମରେ ଅନେକଗୁଡ଼ିଏ ବହି ପ୍ରକାଶିତ ହୋଇଅଛି । କହିବାର କଥା, ସଂପାଦକୀୟ ପ୍ରେରଣା ଓ ଆଶୀର୍ବାଦ ମିଳିଲେ ଲେଖକର ସୃଷ୍ଟିଧର୍ମ ସ୍ୱତଃ ଉନ୍ମେଷିତ ହୋଇଯାଏ ।

କହିଥିଲି - 'ଗାଁ ଦାଣ୍ଡର ଅଳସ ସଞ୍ଜେ' ଉଲ୍ଲେଖ କରିବି ବୋଲି ।

''ଧାରା ଶିରାବଣ ବରଷଇ ମେଘ ଗାଁ ଦାଣ୍ଡେ ଚାଲେ ସୁଅ,
ଚବର ଚବର ଖେଳନ୍ତି ପିଲାଏ ଓଦା ସରସର ଦିହ ।
କେଉଁ ଚାଳିତଳେ ଝିଙ୍କାରି ଡାକଇ କୂଏ ବାହ୍ମଣିଆ ବେଙ୍ଗ,
ମେଘ ଗରଜଇ ବିଜୁଳି ମାରଇ କେ ଦେଖେ ପିଲାଙ୍କ ରଙ୍ଗ ।
ଅବଧାନଙ୍କର ଚାଟଶାଳୀ ଏଇ ଆଗରେ ଦିଶୁଛି ଭାଇ,
ବେତ ଧରି ହାତେ ଗାଁ ଅବଧାନ ପଡ଼ିଥିବେଟି ଘୁମାଇ ।
ପଖାଳ-କରିଆ ଖଦି ଥିବ କାନ୍ଧେ ମୁଣ୍ଡେ ଚୁଟି, ଚଇତନ
ବସ୍ତାନି ଉପରେ ଢୁଳାଉଥିବେଟି ଆମ ଗାଁ ଅବଧାନ ।
ପାହି ପଣକିଆ କଡ଼ା ଗଣ୍ଡା ବୋଲି ଉମରଢୁମର ଘୋଷ,
ଅଙ୍କ ମାନସାଙ୍କ ଗୀତ ଚଉପଦୀ ଚାହାଳିରେ ପାଠ ଶେଷ ।
କିଏ ରାହା ଧରେ 'କମଳଲୋଚନ' କେ ବୋଲେ'ବନ୍ଦଇ ହରି'
'ଦୁଇକେ ଦୁଇପଣ' ଗଣ୍ଡା ପାହିପଣ ଧ୍ୱନି ଉଠଇ ସବୁରି ।
ସୁରୁଯ ଦେବତା ବୁଡ଼ିଲେ ପଶ୍ଚିମେ ଚାହାଳି ହୋଇଲା ଛୁଟୀ
ଗାଁ ଦାଣ୍ଡେ ଖେଳି ପିଲାଏ ଅଇଲେ ମଉଜେ ମାରି କୁହାଟି ।
କାହିଁ ଚଷାଭାଇ ହଳ କାନ୍ଧେ ବହି ବେଉଷଣ ସାରି ଫେରେ,
ମୁଣ୍ଡେ ଘାସ ଗୋଛା ହାତରେ ପାଞ୍ଚଣ ପିକାଟି ମୁହଁରେ ଧରେ ।
ଗାଁ ସାଉକାର ଦୋକାନ ଦିଶଇ ତହିଁ ମେଳ ପାଞ୍ଚ ସାତ,
ଭାଗବତ ଘରୁ ପୁରାଣ ଶୁଭଇ 'କହେ ଦାଶ ଜଗନ୍ନାଥ' ।
କାହା ଦାଣ୍ଡଘରେ ତିରିନାଥ ମେଳା କାହିଁ ବସେ ପଞ୍ଚାୟତ
କଲିକତା ପାଇଁ ବିଚାର କରନ୍ତି ମାଟିକାମ - ମୋଟା ଭାତ ।
ଚଷାଘର ପୁଅ ଜମିମାଣେ ନାହିଁ ପରବିଲେ ଧାଇଁ ମରେ
ବିଲ ଧାନ ତାର ସାଉକାର ନିଏ ଭୋକ ଉପାସରେ ସରେ ।
ଝାଳ ଦେଇ ଯେହୁ ଧାନ ଉପୁଜିଲା ପେଟ ତା' ପୂରଇ ନାହିଁ
କେଉଁ ଅଧିକାରେ ଛାଇ ଅଳସରେ ମହାଜନ ସୁଖେ ଥାଇ ?

କାହା ଅଗଣାରେ ଚଉରାମୂଳରେ ସଞ୍ଜ ଜାଳି ନୂଆବୋହୂ
ଦୂର ପରବାସୀ ସ୍ୱାମୀରେ ମନାସେ 'ଦିହ ମନ ସୁଖେ ଥାଉ ।'
ଅସରା ଅସରା ବରଷା ପଛକୁ ଅନ୍ଧାର ଆସଇ ମାଡ଼ି
ରାତି ହେଉ ଘରେ ପଶିଲେ ସଭିଏ ଦୂରେ ଶୁଭେ ଘଡ଼ଘଡ଼ି ।''

କବିତା ସାଥେସାଥେ ଏହି ସମୟରେ ଅନେକ ଗଳ୍ପ ମଧ୍ୟ ଲେଖିଥିଲି ଏବଂ ସେଗୁଡ଼ିକ ସମକାଳୀନ ପତ୍ରିକାରେ ପ୍ରକାଶ ପାଇଥିଲା । ବେଳେବେଳେ କିଛି ପ୍ରବନ୍ଧ ମଧ୍ୟ ଲେଖି ଛାପିବାକୁ ଦେଉଥିଲି । ଗୋଟିଏ ଦିନର ଅପୂର୍ବ ଅନୁଭୂତି ସ୍ମରଣ ହେଉଛି ।

•••

# ତରୁଣ ସାହିତ୍ୟ ସେବକର ଅନୁଭୂତି

ପୁରୀ କଲେଜ ଜୀବନ ଥିଲା ଅତ୍ୟନ୍ତ ଚଳଚଞ୍ଚଳ । ପାଠପଢ଼ା ସହିତ ନାନା ସାଂସ୍କୃତିକ ଅନୁଷ୍ଠାନରେ ପ୍ରଭାବଶାଳୀ ଭୂମିକା ଲାଗି ରହିଥାଏ । ପୁରୀ ଜିଲ୍ଲା ଛାତ୍ର କଂଗ୍ରେସ, ପୁରୀ ଜିଲ୍ଲା ଉତ୍କଳ ବାହିନୀ, ପୁରୀ ତରୁଣ ସାହିତ୍ୟ ମନ୍ଦିର, ସର୍ବମଙ୍ଗଳା ପାଠାଗାର ଆଲୋଚନା ସଭା ପ୍ରଭୃତି ବିଭିନ୍ନ ଅନୁଷ୍ଠାନରେ କର୍ମରତ ହେବା ସହିତ ଲେଖନୀ ମଧ୍ୟ ଜାଗ୍ରତ ରହିଥିଲା । ପତ୍ରପତ୍ରିକାରେ ଧାରାବାହିକ ଲେଖା ପ୍ରକାଶ ପାଉଥିବାରୁ ସାଙ୍ଗସାଥୀ, ଗୁରୁଜନ, ଶିକ୍ଷକକୁଳ ସମସ୍ତେ ସ୍ନେହ ଓ ଆଦରର ହସ୍ତ ପ୍ରସାରଣ କରୁଥାଆନ୍ତି । ଯେଉଁ ମୁଷ୍ଟିମେୟ ସାହିତ୍ୟିକ ପୁରୀରେ ଥିଲେ, ସେମାନଙ୍କଠାରୁ ଆଶୀର୍ବାଦ ସ୍ୱତଃ ଝରି ଆସୁଥାଏ । ନୂଆ ଲେଖକଟିଏ ଆଦର ପାଇଲେ ଉତ୍ସାହିତ ହୁଏ, ସାଧନା ପଥରେ ଅଗ୍ରସର ହେବା ପାଇଁ ଅଶେଷ ପ୍ରେରଣା ଲାଭ କରେ ।

ମାସର ପ୍ରଥମ ସପ୍ତାହବେଳକୁ ଓଡ଼ିଶାର ନାନା ଅଞ୍ଚଳରେ ପ୍ରକାଶିତ ପତ୍ରପତ୍ରିକା ପୁରୀ ସହରକୁ ଆସିଥାଏ । ଛପା ଅକ୍ଷରରେ ନାଁ ଦେଖିବା ପାଇଁ ତ ମନ ବ୍ୟାକୁଳ । ତା' ବ୍ୟତୀତ ନିଜର ମନର ଭାବକୁ ରୂପାୟିତ କରିବାରେ ଏକ ସାତ୍ତ୍ୱିକ ଆନନ୍ଦ ଛପି ରହିଥାଏ । ଗୋଟିଏ ସପ୍ତାହର କଥା ମନେପଡୁଛି । ବ୍ରହ୍ମପୁରର 'ନବୀନ', ଟିକାଲିର 'ବୀଣା', ବମ୍ବେର 'କୁଙ୍କୁମ', କଟକର 'ରବିବାର ପ୍ରଜାତନ୍ତ୍ର' ଆଦିରେ ବିଭିନ୍ନ କିସମର ଲେଖା ମୋର ପ୍ରକାଶିତ ହୋଇଥାଏ । ସେଗୁଡ଼ିକ ଥିଲା ଗଳ୍ପ, କବିତା ଓ ପ୍ରବନ୍ଧ ।

'ପଦ୍ମପାଖୁଡ଼ା' ଓ 'ସୂର୍ଯ୍ୟମୁଖୀ'ର କବି ପ୍ରଖ୍ୟାତ ଆଇନଜୀବୀ ପଦ୍ମଚରଣଙ୍କର ଘର ପୁରୀ ବଡ଼ଦାଣ୍ଡରେ । ମୋର ଲେଖାଗୁଡ଼ିକ ତାଙ୍କର ଶ୍ରଦ୍ଧାପୂର୍ଣ୍ଣ ଦୃଷ୍ଟି ଆକର୍ଷଣ କରୁଥାଏ । ସାକ୍ଷାତ ପରିଚୟ ହେବାର ଅବକାଶ ନଥାଏ । କଲେଜର ଜଣେ ସହପାଠୀ ତାଙ୍କ ଘରେ ଟିଉସନ କରୁଥାଆନ୍ତି । ତାଙ୍କ ସହିତ କଥା ହେଉ ହେଉ କବି ପଦ୍ମଚରଣ କହିଲେ-''ମୁଁ ବଡ଼ ଆଶ୍ଚର୍ଯ୍ୟ ହେଉଛି । ବୁଢ଼ାକାଳରେ ଏ ପଠାଣି ପଟ୍ଟନାୟକ ଲେଖିଲେ କିପରି ?'' ସେହି ସମୟରେ ଏହି ନାମର ଜଣେ ଭଦ୍ରଲୋକ ପୁରୀର ବିଖ୍ୟାତ ଜଗନ୍ନାଥ ବଲ୍ଲଭ ମଠର ମ୍ୟାନେଜର ଥାଆନ୍ତି । ପଞ୍ଚସଖା ଯୁଗର ପରମ ବୈଷ୍ଣବ ସାଧକ ରାୟ ରାମାନନ୍ଦ ପଟ୍ଟନାୟକଙ୍କ ପାଇଁ ଏହି ମଠ ପ୍ରସିଦ୍ଧ । ଆଲୋଚ୍ୟ ପଠାଣି ପଟ୍ଟନାୟକଙ୍କ ଘର ପୁରୀ ନିକଟ ବେଣ୍ଟପୁର ଗ୍ରାମ ଏବଂ ସେ ରାୟ ରାମାନନ୍ଦଙ୍କର ବଂଶଧର । ପୁରୀ ସହରରେ ସେ ଜଣେ ଖ୍ୟାତନାମା ନାଗରିକ ।

ସେ ସେତେବେଳକୁ ପରିଣତ ବୟସରେ ଉପସ୍ଥିତ । ତାଙ୍କରି ନାମରେ ତ ଗଳ୍ପ କବିତା ପ୍ରକାଶିତ ହେଉଛି । ମାତ୍ର ବୃଦ୍ଧ କବି ପଦ୍ମଚରଣ ବିଶ୍ୱାସ କରିପାରୁ ନଥାନ୍ତି ।

କବିଙ୍କର ମନୋଭାବ ଲକ୍ଷ୍ୟ କରି ମୋର ସହପାଠୀ କହିଲା, ''ନାହିଁ ଏ ପଠାଣି ପଟ୍ଟନାୟକ ବୃଦ୍ଧ କି ଜଗନ୍ନାଥ ବଲ୍ଲଭ ମଠର ମ୍ୟାନେଜର ନୁହନ୍ତି । ଏ ପିଲାଟି ପୁରୀର । ଆମରି ସାଙ୍ଗରେ କଲେଜରେ ପାଠପଢୁଛି ।''

କବି ଆଶ୍ଚର୍ଯ୍ୟ ହେଲେ । ସହପାଠୀକୁ କହିଲେ, ''ତାକୁ କହିବ, ମୋତେ ଦେଖା କରିବ ।''

ପରଦିନ କଲେଜରେ ସହପାଠୀ ବନ୍ଧୁ ମୋତେ ଏହି ଖବର ଦେଲେ ଏବଂ କହିଲେ କବି ପଦ୍ମଚରଣ ତୁମକୁ ଭେଟିବାକୁ ଆଗ୍ରହୀ । ମାଟ୍ରିକ୍ ପଢ଼ିଲାବେଳେ କବିଙ୍କର କବିତାଗ୍ରନ୍ଥ ପାଠ୍ୟ ରହିଥିଲା । ମୁଁ ଖୋର୍ଦ୍ଧା ଅଞ୍ଚଳର ପିଲା, କବିଙ୍କର 'ଖୋରଧା ପ୍ରଥମ ଦର୍ଶନେ' କବିତାକୁ ଆଗ୍ରହରେ ମୁଖସ୍ଥ କରି ପକାଇଥିଲି । ''କି ଭୂମିରେ ଆଜି ଦେଲି ମୋର ପାଦ, କି କଲି କି କଲି କେଡ଼େ ଅପରାଧ ।'' ସେହିପରି ''ଧଉଳି ପାହାଡ଼'' ଗୀତଟି ଆଜି ମଧ୍ୟ କର୍ଣ୍ଣ କୁହରରେ ଝଙ୍କୃତ ହେଉଛି । ''ଧଉଳି ପାହାଡ଼, ଧଉଳି ପାହାଡ଼ କି କଥା କହିଲ ରାଜାଙ୍କ କାନେ ।'' କବିମାନଙ୍କର କବିତା ସିନା ପାଠ କରୁଥିଲୁ, ମୁଗ୍ଧ ହେଉଥିଲୁ, କବି କିପରି ମଣିଷ, ପରିଚୟ ହେବାର ତ ସୁଯୋଗ ନଥିଲା । ସେତେବେଳେ ସାହିତ୍ୟ ସଭା ସ୍ୱପ୍ନପ୍ରାୟ ଥିଲା । ପୁରୀରେ ''ଉତ୍କଳ ସାହିତ୍ୟ ପରିଷଦ'' ର ଅଧିବେଶନରେ ଭଲେଣ୍ଟିଅର ହେବାର ସୌଭାଗ୍ୟ ଲାଭ କରିଥିବାରୁ ସେହି ପେଣ୍ଡାଲ ଉପରେ କବିମାନଙ୍କ ଗହଣରେ କବି ପଦ୍ମଚରଣଙ୍କୁ ଦୂରରୁ ଦେଖିଥିଲି, ଆଜି ତାଙ୍କର ସାକ୍ଷାତ ପାଇଁ ଡାକରା ପାଇ ମନ ଖାଲି ଆକାଶରେ ଉଡୁଥାଏ ।

ସହପାଠୀ ବନ୍ଧୁ ସହିତ ଅପରାହ୍ଣରେ କବିଙ୍କୁ ସାକ୍ଷାତ କଲି ତାଙ୍କର ବାସଭବନରେ । ତାଙ୍କର ସୁରମ୍ୟ କୋଠାଘରଟି ବଡ଼ଦାଣ୍ଡରେ ଠିକ୍ ପତିଆରାଣୀ ଦେଉଳର ବିପରୀତ ପାର୍ଶ୍ୱରେ । କବିଙ୍କୁ ପ୍ରଣାମ ଜଣାଇ ତାଙ୍କ ପାଖରେ ଅତ୍ୟନ୍ତ ସନ୍ତର୍ପଣରେ ବସି ରହିଲି । ଏ ସେହି କବି ଯେ ଲେଖିଛନ୍ତି ଗୋଲାପଗୁଚ୍ଛ, ଆଶାମଞ୍ଜରୀ, ସୂର୍ଯ୍ୟମୁଖୀ, ପଦ୍ମପାଖୁଡ଼ା, ସ୍ୱର୍ଣ୍ଣରେଣୁ ଓ ସୁନାର ଦେଶ । ଏହି କବି ମଗଧ ସମ୍ରାଟ ପ୍ରବଳ ପରାକ୍ରମୀ ଚଣ୍ଡାଶୋକ ଅଶୋକଙ୍କୁ ଅନୁତପ୍ତ କଣ୍ଠରେ ଶୁଣାଇଥିଲେ- ''ଲୋକ ଅଶ୍ରୁ, ରକ୍ତସ୍ରୋତେ ଭାସିଭାସି ଏ ଗିରି ଚରଣେ ଆସିଛି ଆଜି ।'' ଆଜି ତରୁଣ ଛାତ୍ରଟିର କେତୋଟି ପ୍ରକାଶିତ ଲେଖା କବିଙ୍କର ଆଦର କୋଳକୁ ଟାଣି ଆଣିଛି । ପରିଚୟ ପଚାରି ଜାଣିଲେ ପୁରୀ ସହର ଅଧିବାସୀ । କବି ମୋର ପିତାଙ୍କୁ ବହୁଦିନରୁ ଜାଣିଥିଲେ । କାରଣ ସେ ଥିଲେ ଏକାଧିକ ଜମିଦାରୀର ଲ-ଏଜେଣ୍ଟ୍ । ସବୁବେଳେ କଚେରୀରେ କାମ । ତେଣୁ ଓକିଲ ପଦ୍ମଚରଣ ନ ଜାଣିବେ କାହିଁକି ? ଅତ୍ୟନ୍ତ ସ୍ନେହରେ କହିଲେ, ''ହଇରେ ବାପା ! ତୁ ଆମ ସୋମନାଥର ପୁଅ । ସେ ତ କାହିଁକି କେବେହେଲେ ତୋ କଥା କହି ନଥିଲା ।'' କବି ମୋର ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ ବର୍ଷି ଚାଲିଲେ । ଯୌବନ କାଳରେ ଅନେକ ଲେଖକୀୟ ଅନୁଭୂତିର କଥା କହୁଥାଆନ୍ତି । ଛାତ୍ର ଜୀବନରେ

କଟକରେ ଯେଉଁ ମୁଷ୍ଟିମେୟ ସାହିତ୍ୟସେବୀ ରହିଥିଲେ. ସେମାନଙ୍କ ମଧ୍ୟରେ ବାରମ୍ବାର ମିଳାମିଶା ଓ ଆଲୋଚନା ହେଉଥିଲା । ସର୍ବଦା କୁଟୁମ୍ବିତା ରାଜପଣ କରୁଥାଏ । କି ଅନାବିଳ ସ୍ନେହ ଓ ସହୃଦୟତାର ଘେନାଘେନି ଭାବ । କହୁଥାଆନ୍ତି ଦୁଃଖ ପ୍ରକାଶ କରି-ବୟସର ଭାରା ଅଚଳ କରିଦେଲାଣି । ଆଉ କାହା ସହିତ ମିଶିବାର ସୁଯୋଗ ନାହିଁ । ଆମ ସମୟ ପରି ଏବକାଳରେ ସେହି ପ୍ରକାର ମାନସିକତା ଆଉ ଦେଖିବାକୁ ପାଉନାହିଁ । ଆଜି ଯେଝା ହାତରେ ଯେ ଚଉଦ ପାଆ । କହିଲେ ବାବା- ଲେଖିଯା' । କାହାରି ନିନ୍ଦା ପ୍ରଶଂସାକୁ ଅପେକ୍ଷା କରିବୁ ନାହିଁ । ମହାକାଳ ହେଉଛି ଏକମାତ୍ର ବିଚାରକ । ତେବେ ଆମ ବେଳର କଥା ମନରେ ହେଉଛି । ''ଉତ୍କଳ-ସାହିତ୍ୟ'' ମାସିକ ସାହିତ୍ୟପତ୍ରର ସଂପାଦକ ଥିଲେ ଜଣେ ଟାଣୁଆ ଲୋକ । ନୂଆ ଲେଖକମାନଙ୍କୁ ଡକାଇ ପଠାଉଥିଲେ । ଦୋଷ ଦୁର୍ବଳତା ପ୍ରତି ଦୃଷ୍ଟି ଆକର୍ଷଣ କରୁଥିଲେ । ଉତ୍ସାହିତ କରୁଥିଲେ ଅଧିକ ଲେଖା ପଠାଇବା ପାଇଁ । ସଂପାଦକର ଆଶୀର୍ବାଦ ମିଳିଲେ ନୂତନ ଲେଖକର ଜୀବନର ଗତି ବଦଳିଯାଏ ।

କବି ପଦ୍ମଚରଣ ସେହି ପ୍ରଥମ ସାକ୍ଷାତ ବେଳାରେ ତାଙ୍କ ଜୀବନର ଅନେକ ଦୁଃଖସୁଖ ହୋଇଥିଲେ । ମାନସିକ ସ୍ତରରେ ସେ ଭାଙ୍ଗି ପଡ଼ିଥିଲେ, କାରଣ ଏକାଧିକ କନ୍ୟା ଥାଇ ଏକମାତ୍ର ପୁତ୍ର ଅକାଳରେ ସେପୁରକୁ ବାହୁଡ଼ିଗଲା ! ବୃଦ୍ଧ ବୟସରେ କବି ଏ ଦୈବୀଚଡ଼କ ସହ୍ୟ କରିପାରିଲେ ନାହିଁ । କୌଣସି କାର୍ଯ୍ୟ କରିବାକୁ ଆଗ୍ରହ ରହିଲା ନାହିଁ । ଓକିଲାତି ବ୍ୟବସାୟରୁ ଓହରି ଆସିଲେ । ଧୀରେଧୀରେ ଦୁଃଖାନଳରେ ଦଗ୍ଧ ହୋଇ ଶଯ୍ୟାଶାୟୀ ହେଲେ । ଏକସ୍ତରୀ ବର୍ଷ ବୟସରେ ୧୯୫୬ ସାଲରେ ଶେଷନିଃଶ୍ୱାସ ଉଡ଼ିଗଲା ମହାଶୂନ୍ୟରେ ।

ମୋର ପରମ ସୌଭାଗ୍ୟ, ଅନେକ ପ୍ରସିଦ୍ଧ ଅଧ୍ୟାପକଙ୍କ ପାଖରେ ପୁରୀ କଲେଜରେ ପାଠ ପଢ଼ିଥିଲି । ଓଡ଼ିଆ ସାହିତ୍ୟ ପରୀକ୍ଷାରେ ସର୍ବଦା ପ୍ରଥମ ଶ୍ରେଣୀ ହାସଲ କରିପାରୁଥିଲି । ମୋର ସାହିତ୍ୟ ଅଧ୍ୟାପକଗଣ ଥିଲେ ମହାନ ସଂସ୍କୃତ ବିଦ୍ୱାନ ସଦାଶିବ ଦାଶ, ପ୍ରସିଦ୍ଧ ଗଳ୍ପ ଲେଖକ ରାଜକିଶୋର ରାୟ, ପ୍ରାବନ୍ଧିକ ସିଦ୍ଧେଶ୍ୱର ହୋତା, ସୁସାହିତ୍ୟିକ ଗୋଲକ ବିହାରୀ ଧଳ ଓ ସମାଲୋଚକ ଉପେନ୍ଦ୍ର ମିଶ୍ର । ଏମାନେ ସମସ୍ତେ ଥିଲେ ସୁପରିଚିତ ଲେଖକ । ତେଣୁ ଏହି ସାହିତ୍ୟସେବୀ ଅଧ୍ୟାପକମାନେ ହିଁ ପାଠପଢ଼ା ସହିତ ସାହିତ୍ୟ ସେବା କରୁଥିବା ପିଲାମାନଙ୍କୁ ଅଧିକ ଆଦର କରୁଥିଲେ । ଅର୍ଥନୀତିର ଅଧ୍ୟାପକ ହେଲେ ହେଁ ପ୍ରଫେସର ଶ୍ରୀରାମ ଦାଶ ତରୁଣ ସାହିତ୍ୟସେବୀ ଛାତ୍ରମାନଙ୍କୁ ଉତ୍ସାହିତ କରିବାରେ ଥିଲେ ଆଗଧାଡ଼ିର ।

ଆଗରୁ ଲେଖିଛି, ବଲାଙ୍ଗିରରୁ ପ୍ରକାଶିତ 'ଚତୁରଙ୍ଗ' ମାସିକ ସାହିତ୍ୟ ପତ୍ରିକାରେ (୨ୟବର୍ଷ ତୃତୀୟ ସଂଖ୍ୟା) 'ପଥପ୍ରାନ୍ତେ' ଶୀର୍ଷକରେ କବିତାଟି ପ୍ରକାଶିତ ହୁଏ ଏବଂ ଏହି ପ୍ରଥମ ପ୍ରକାଶିତ କବିତାଟି ପାଇଁ ସଂପାଦକ ପାଞ୍ଚଟଙ୍କା ପୁରସ୍କାର ପଠାଇଥିଲେ ଏବଂ ସାରାବର୍ଷ ତମାମ ପତ୍ରିକାର ଗ୍ରାହକ କରିଦେଇଥିଲେ । କି ଥିଲା ଏ ରାଜ୍ୟ, କି ହୋଇଛି ଆଜ । ଆଜିକାଲି ଅନେକ ପତ୍ରିକା ଲେଖାଟିଏ ପ୍ରକାଶ କରି ଲେଖକଙ୍କୁ ପ୍ରକାଶିତ କପିଟି ଉପହାର ଦିଅନ୍ତି ନାହିଁ । ଲେଖକ ବିଚରା ବଜାରରୁ ପତ୍ରିକାଟିଏ କିଣି ନିଜ ଲେଖାଟି ପାଠ କରେ ।

ପ୍ରଥମ ଅବସ୍ଥାରେ ଗଳ୍ପ ଲେଖିବାର ଝୁଙ୍କ ବହୁତ ରହିଥିଲା । ମନରେ ଖେଳିବୁଲୁଥିଲା ଅନେକ କଳ୍ପନାର ଢେଉ । ସ୍ୱପ୍ନର ଲହରୀରେ ଭାସିବାକୁ ମନ ହେଉଥିଲା ଭୟଙ୍କର ଉଚ୍ଚାଟ । ୧୯୪୮ ମସିହାର କଥା । ଡଗର, ଜାଗରଣ, ତରଙ୍ଗ, ବୀଣା ପ୍ରଭୃତି ପତ୍ରିକା ଗୋଟିଏ ଲେଖା ଗଳ୍ପ ପ୍ରକାଶ କରିଥିଲେ । ତାରୁଣ୍ୟର ଭାବ ବିହ୍ୱଳତା ବ୍ୟାକୁଳ ହୋଇଉଠିଲା ଗଳ୍ପ ମାଧ୍ୟମରେ ପ୍ରକାଶିତ ହେବାପାଇଁ । ୧୯୪୯ ମସିହାରେ ବ୍ରହ୍ମପୁରର 'ନବୀନ' ଚାରିଟି ଗଳ୍ପ ସ୍ଥାନିତ କରିଥିଲେ । ରବିବାର ପ୍ରଜାତନ୍ତ୍ର ଓ ସଂଗ୍ରାମରେ ଗୋଟିଏ ଲେଖାଏ ଗଳ୍ପ ପ୍ରକାଶ ପାଇଲା । ତହିଁ ପରବର୍ଷ ଅର୍ଥାତ୍ ୧୯୫୦ ସାଲରେ ''ନବୀନ'' ଚାରିଟି ଗଳ୍ପ ପ୍ରକାଶ କଲେ । ତରୁଣ ବନ୍ଧୁ ସମାଜରେ ମୁଁ ଜଣେ ଗାଳ୍ପିକ ଏବଂ କବି ବୋଲି ପରିଚିତ ହୋଇଥାଏ । ସେହିପରି ୧୯୪୯-୫୧ ତିନୋଟି ବର୍ଷ ମଧ୍ୟରେ ସମୁଦାୟ ସତରଟି କବିତା ଆତ୍ମପ୍ରକାଶ କରିଥିଲା । ସେହି ପତ୍ରିକାଗୁଡ଼ିକ ହେଲା 'ପ୍ରଜାତନ୍ତ୍ର', 'ମୀନାବଜାର' , 'ନବୀନ', 'ଚତୁରଙ୍ଗ', 'ସଂଗ୍ରାମ' ଓ 'ଉତ୍କଳକେଶରୀ' ।

କେବଳ ଏତିକିରେ ତରୁଣ ପ୍ରାଣ ସନ୍ତୁଷ୍ଟ ହୁଏ ନାହିଁ । ପ୍ରବନ୍ଧ ଲେଖାରେ ମଧ୍ୟ ମନ ବଳାଇଲି । ଅତୀତର ପୃଷ୍ଠାକୁ ଉଦ୍‌ଘାଟନ କଲେ ମୋତେ ଆଜି ଆଚମ୍ବିତ ଲାଗେ । କିପରି ଓ କାହିଁକି ଏ ପ୍ରକାର ପ୍ରବନ୍ଧ ଲେଖିବା ପାଇଁ ମନ ବଳାଇଲି । ସାହିତ୍ୟ ଶ୍ରେଣୀରେ କେତେଖଣ୍ଡି ପାଠ୍ୟପୁସ୍ତକ ଥିଲା ଆମର ସାହିତ୍ୟଜ୍ଞାନର ପରିମାପକ । ସେହି ସମୟରେ ଓଡ଼ିଆ ସାହିତ୍ୟର ଇତିହାସ କହିଲେ କେବଳ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କର 'ଓଡ଼ିଆ ସାହିତ୍ୟର ପରିଚୟ' ୧ମ ଭାଗ ଓ ୨ୟ ଭାଗ । ଓଡ଼ିଆରେ ଅନର୍ସ କ୍ଲାସ୍ ଖୋଲି ନଥାଏ । ତେଣୁ ସାହିତ୍ୟର ଇତିହାସ କିଏ ଅବା କାହିଁକି ଚର୍ଚ୍ଚା କରିବ ?

ସେ କାଳର ତରୁଣ ଲେଖକଗୋଷ୍ଠୀ ଅଧିକ ଆଗ୍ରହୀ ଥାଆନ୍ତି ଗଳ୍ପ ଆଉ କବିତା ଲେଖିବାରେ । ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନାର ପ୍ରଶ୍ନ ହିଁ ନଥାଏ । କ୍ୱଚିତ୍ ପ୍ରବୀଣ ଓ ବୟସ୍କ ଲୋକମାନଙ୍କର ପ୍ରବନ୍ଧ ପତ୍ରିକା ମାନଙ୍କରେ ପ୍ରକାଶିତ ହେଉଥାଏ । ଉଚ୍ଚ ଡିଗ୍ରୀ ମୋର ନଥିଲେ ସାହିତ୍ୟ ପତ୍ରିକାରେ ସ୍ୱୀକୃତି ଲାଭ କରିବା ଥିଲା ଆୟାସସାଧ୍ୟ । ଏପରି ଅବସ୍ଥାରେ ତରୁଣଗୋଷ୍ଠୀର ଏକମାତ୍ର ଆଶ୍ରୟସ୍ଥଳ ଥିଲା କଟକର ରବିବାର ପ୍ରଜାତନ୍ତ୍ର ଓ ବ୍ରହ୍ମପୁରର ''ନବୀନ''ପତ୍ରିକା ।

ପୂର୍ବରୁ କହିଛି, ଆମର ସାପ୍ତାହିକ ସାହିତ୍ୟ ଆଲୋଚନା ସଭାରେ ଭାଷଣ ଦେବାପାଇଁ ମୋତେ ଅନେକ ପ୍ରାଚୀନ ପତ୍ରପତ୍ରିକା ଓ ଅନ୍ୟାନ୍ୟ ଆଲୋଚନା ପ୍ରବନ୍ଧ ଆଖି ପକାଇବାକୁ ହେଉଥିଲା ।

କାହିଁକି କିପରି ମନହେଲା ''କୋଇଲି ସାହିତ୍ୟ'' ବିଷୟରେ ଆଲୋଚନା ପ୍ରବନ୍ଧଟିଏ ଲେଖିବାପାଇଁ । ଅଧ୍ୟାପକ ଜୀବନରେ ଯେତେବେଳେ ପ୍ରାଚୀନ ଉତ୍କଳ ସାହିତ୍ୟ, ସହକାର, ସତ୍ୟବାଦୀ, ଯୁଗବୀଣା, ନବଭାରତ, ଆଧୁନିକ ପ୍ରଭୃତି ପତ୍ରିକା ଦେଖିଲି ଏହି ଶିରୋନାମାରେ ଆଦୌ ଆଲୋଚନା ହୋଇ ନଥିଲା । ମୋ ଲେଖାର ମାନ ଯାହାହେଉ, ଏହି ପ୍ରବନ୍ଧଟି

୧୯୪୮ ମସିହା ସେପ୍ଟେମ୍ବର ମାସ ରବିବାର ପ୍ରଜାତନ୍ତ୍ରରେ ପ୍ରକାଶିତ ହେବାପରେ ବନ୍ଧୁ ସୁଧୀଜନଙ୍କର ମନରେ ପ୍ରଶ୍ନବାଚୀ ଚିହ୍ନ ହୋଇଥିଲା । ସେହିବର୍ଷ ଜୁନ୍ ମାସର ରବିବାର ପ୍ରଜାତନ୍ତ୍ର ପ୍ରକାଶ କଲେ ''ଓଡ଼ିଆ ସାହିତ୍ୟ ଓ ଉପେନ୍ଦ୍ର ଭଞ୍ଜ'' । ଜୁଲାଇ ମାସରେ ରବିବାର ପ୍ରଜାତନ୍ତ୍ର ପ୍ରକାଶ କଲେ ତିନିଗୋଟି ଆଲୋଚନା ପ୍ରବନ୍ଧ । (କ) ଉତ୍କଳ ସାହିତ୍ୟ ଓ ପଣ୍ଡିତ ଗୋପବନ୍ଧୁ (ଖ) ସାହିତ୍ୟର ଆଦର୍ଶ (ଗ) ପ୍ରାଚୀନ ଉତ୍କଳରେ ନୌବାଣିଜ୍ୟ । ୧୯୪୯ ମସିହାରେ ଆକସ୍ମିକ ଭାବରେ ଅପୂର୍ବ ସଂପାଦକୀୟ ଆଶୀର୍ବାଦ ଲାଭ କରି ନିଜକୁ ଭାଗ୍ୟବାନ ମନେକଲି ।

ଘଟଣାଟି ଏହିପରି । ପାଠକମାନେ ମୋତେ ଜଣେ କବି ଓ ଗାଳ୍ପିକ ରୂପେ ଚିହ୍ନି ସାରିଥାଆନ୍ତି । ଅଳ୍ପ କେତୋଟି ପ୍ରବନ୍ଧ ପ୍ରକାଶିତ ହେଲା ପରେ ତାହା ପ୍ରବୀଣମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ତତ୍‌କାଳୀନ ଅବସ୍ଥାରେ କେବଳ ବୟସ୍କ ଓ ଜ୍ଞାନୀ ପଣ୍ଡିତ ଲୋକମାନେ ପ୍ରବନ୍ଧ ଲେଖୁଥିଲେ । ସେମାନଙ୍କୁ ସମସ୍ତେ ସମ୍ମାନ ପ୍ରଦର୍ଶନ କରୁଥିଲେ । ସାହିତ୍ୟିକ ଭାବରେ ସେମାନେ ବାରି ହୋଇ ପଡୁଥିଲେ । କିଏ କାହିଁକି କଳ୍ପନା କରିବ ଯେ ମୋ ପରି ଜଣେ ତରୁଣ ଛାତ୍ର ପ୍ରବନ୍ଧ ଲେଖିବା ପାଇଁ ଦୁଃସାହସ କରିବ । ତେଣୁ କଟକରେ ସଂପାଦକୀୟ ଟେବୁଲରେ ଆଲୋଚନା ହେଉଥାଏ-ଏହି ବୁଢ଼ା ଲୋକଟି ଆଜିଯାଏଁ କେଉଁଠି ଥିଲେ । ସେତେବେଳେ କଲେଜ ଜୀବନର ମୋର ଅଗ୍ରଜ ଓ ଛାତ୍ରନେତା ଶ୍ରୀ ଶଶୀଭୂଷଣ ମିଶ୍ର ଦୈନିକ ପ୍ରଜାତନ୍ତ୍ରରେ ସହକାରୀ ସଂପାଦକ ଭାବରେ କାର୍ଯ୍ୟରତ । ସେ ମୋତେ ଭଲରୂପେ ଜାଣିଥିବାରୁ ଆଲୋଚକମାନଙ୍କର ଭ୍ରମ ଦୂର କରିଦେଲେ । ସେ ଥରେ ପୁରୀ ଆସିଥିଲେ । ସିଂହଦ୍ୱାରରେ ତାଙ୍କ ସହିତ ଦେଖା ହୋଇଗଲା । ସେ ମୋତେ ଖୁସି ହୋଇ କହିଲେ, ''ପଠାଣି, ଜାଣିଚୁ, ତୋତେ କଟକର ପାଠକଗୋଷ୍ଠୀ ବୁଢ଼ାଟିଏ ବୋଲି ଭାବୁଛନ୍ତି । ତୁ ସିନା ତରୁଣ, ତୋର ପ୍ରବନ୍ଧ ଲେଖା ଯୋଗୁ ସେମାନେ ତୋତେ ଜଣେ ବୟୋଜ୍ୟେଷ୍ଠ ପଣ୍ଡିତ ଲୋକ ବୋଲି ଅନୁମାନ କରୁଛନ୍ତି । ତୁ ଏଣିକି ନିୟମିତ ପ୍ରବନ୍ଧ ପଠାଇବୁ । ଛପାଇବା ଦାୟିତ୍ୱ ଆମର ।''

ନୂତନ ଲେଖକ ପାଇଁ ଏହା ଥିଲା ଏକ ଅମୃତ ଅନୁଭବ । ଧୀରେ ଧୀରେ ପ୍ରବନ୍ଧ ଲେଖାରେ ମନ ଦେଇଥିଲି । ମୁଁ କେବଳ ସାହିତ୍ୟ ଆଲୋଚନା ଲେଖିଲି ନାହିଁ । ସାହିତ୍ୟ, ସଂସ୍କୃତି, ରାଜନୀତି ପ୍ରଭୃତି ବିଭିନ୍ନ ବିଷୟରେ ଲେଖି ବସିଲି ଏବଂ ସଂପାଦକମାନେ ଆଦରରେ ଗ୍ରହଣ କରି ନେଉଥିଲେ । ସେହି ସମୟର ଅଳ୍ପ କେତୋଟି ଉଦାହରଣ ଏହିପରି ।

୧୯୪୯ ମସିହାର କଥା । ବିଖ୍ୟାତ ସାହିତ୍ୟ ମାସିକ ''ସହକାର'' ପ୍ରକାଶ କଲେ ''ଚଉତିଶା ସାହିତ୍ୟ'' । ମୁଁ ବୋଧହୁଏ ପ୍ରଥମେ ଏହି ଶୀର୍ଷକରେ ପ୍ରବନ୍ଧ ଲେଖିବାକୁ ଉଦ୍ୟମ କରିଥିଲି । 'ଡଗର'ରେ ଆତ୍ମପ୍ରକାଶ କଲା 'ଗଳ୍ପ ସାହିତ୍ୟ ଓ ଫକୀରମୋହନ' । ସହକାରରେ ସ୍ଥାନିତ ହେଲା ''ଓଡ଼ିଆ ଗଳ୍ପ ସାହିତ୍ୟର କ୍ରମବିକାଶ ।'' ''କୁଙ୍କୁମ'' ଆଲୋକକୁ ଆଣିଲେ ''ଓଡ଼ିଆ ଭାଷା ଓ ସାହିତ୍ୟ ସହିତ ବଙ୍ଗ ସାହିତ୍ୟର ସଂପର୍କ'' ଓ ''ସାହିତ୍ୟର ରୀତି ଓ ଧର୍ମ ।'' ଅନ୍ୟଗୁଡ଼ିକ ହେଲା- ''ରୂପକାର ରାଧାନାଥ ଓ ଚିଲିକା-''ମୟୂରଭଞ୍ଜ ଜାଗରଣ''; ସାହିତ୍ୟରେ ପ୍ରେମାନୁଭୂତି''- ''ଝଙ୍କାର'' ।

ଆଉ ପଛକୁ ଫେରି ଚାହିଁବାର ଅବକାଶ ପାଇଲି ନାହିଁ । ସଂପାଦକମାନଙ୍କର ଆଦର ମିଳୁଛି । ଗୋଟିକ ପରେ ଗୋଟିଏ ପ୍ରବନ୍ଧ ପ୍ରକାଶ ପାଇଯାଉଛି ।

ମନେପଡୁଛି ଆଉ ଜଣେ ସ୍ୱନାମଧନ୍ୟ ସଂପାଦକ ଶ୍ରୀ ବାଳକୃଷ୍ଣ କରଙ୍କ ସହିତ ପ୍ରଥମ ସାକ୍ଷାତର ଅନୁଭୂତି । ୧୯୪୯ ମସିହାରେ ବି.ଏ. ପାସ୍ କରି ଆସିଲି କଟକରେ ଏମ୍.ଏ. ପଢ଼ିବା ପାଇଁ । କଟକ ଜୀବନର କଥା ପରେ ଆସିବ । 'ସହକାର'ରେ ମୋର ''ଚଉତିଶା ସାହିତ୍ୟ'' ପ୍ରବନ୍ଧ ପ୍ରକାଶ ପାଇଥାଏ । ଶୁଣିଲାପରେ ମୋର ସହପାଠୀ ଶ୍ରୀନିବାସ ମିଶ୍ରଙ୍କ ସହିତ ବାହାରିଲି ଜେଲ୍‌ରୋଡ୍ ପାଖରେ ଥିବା ସାରସ୍ୱତ ପ୍ରେସ୍ ଓ ମାତୃଭୂମି ଅଫିସକୁ । ପରବର୍ତ୍ତୀ ଜୀବନର ପରମ ଆତ୍ମୀୟ ଓ ଅନ୍ତରଙ୍ଗ ବନ୍ଧୁ ବିଚିତ୍ରାନନ୍ଦ କରଙ୍କ ସହିତ ପ୍ରଥମେ ପରିଚିତ ହେଲି । ସେ ଆମର ସହପାଠୀ ହେଲେ । ମାତୃଭୂମି ବିଲ୍ଡିଂର ତଳ ମହଲାରେ ପ୍ରେସ୍‌ର ଅଫିସ ଗୃହ । ଅତ୍ୟନ୍ତ ସନ୍ତର୍ପଣରେ ବନ୍ଧୁମାନଙ୍କ ସହିତ ସେହି କୋଠରୀରେ ପ୍ରବେଶ କଲି । ମଧ୍ୟସ୍ଥଳରେ ଗୋଟିଏ ଚୌକୀରେ ଆସୀନ ଜଣେ ବୟୋବୃଦ୍ଧ ଖର୍ବକାୟ ବ୍ୟକ୍ତି । ସେ ହେଲେ ସହକାରର ମୁଖ୍ୟ ସଂପାଦକ ବାଳକୃଷ୍ଣ କର । ତାଙ୍କ ପାଖରେ ପ୍ରମୁଖ ସହକର୍ମୀ ଦୁଇଜଣ ଉପବେସନ କରିଥିଲେ ଶ୍ରୀ ଭଗବାନ ପତି ଓ ଗୌରଚନ୍ଦ୍ର ରାଉତ । ପରବର୍ତ୍ତୀ ଜୀବନରେ ମାତୃଭୂମିର ସହସଂପାଦକ ଭାବରେ ଏହି ଦୁଇଜଣ କୁଳବୃଦ୍ଧ ସାମ୍ବାଦିକଙ୍କ ସହିତ କାର୍ଯ୍ୟ କରିବାର ସୌଭାଗ୍ୟ ମିଳିଥିଲା ।

କବି ଭଗବାନ ପତି ପ୍ରକୃତପକ୍ଷେ ସହକାରର ସଂପାଦନା କରୁଥିଲେ ହେଁ ବାଳକୃଷ୍ଣ ବାବୁ ପ୍ରତ୍ୟେକଟି ଲେଖା ଦେଖୁଥିଲେ ।

ମୋର ପରିଚୟ ପାଇବାମାତ୍ରକେ ହାସ୍ୟରସିକ ଭଗବାନ ବାବୁ କହିଲେ-''ଆରେ, ତୁମେ ଆମ ବିଚିର ସହପାଠୀ । ଭାବିଥିଲି, ତୁମେ ଜଣେ ବୁଢ଼ାଲୋକ ହୋଇଥିବ ।'' ସେହି ମର୍ମରେ ଗୌରବାବୁ ମନ୍ତବ୍ୟ ଦେଇ ଉତ୍ସାହିତ କଲେ । ବାଳକୃଷ୍ଣ ଗମ୍ଭୀର ପ୍ରକୃତିର । ଖୁବ୍ ଧୀରେ ଏବଂ ଅଳ୍ପ କଥା କହନ୍ତି । କହିଲେ-''ବାବୁ, ତୁମ ଲେଖାଟିରେ କେତେକ ଅଭାବ ରହିଯାଇଛି । ତଥାପି ତୁମେ ଅନେକ ପରିଶ୍ରମ କରି ପ୍ରଥମେ ଏପରି ଆଲୋଚନା କରିଛ । ସେଥିପାଇଁ ଆମେ ପ୍ରକାଶ କଲୁ । ଏଣିକି ଲେଖା ପଠାଉଥିବ ।''

ଏହି କଲେଜ ଜୀବନରେ ଯେଉଁ କେତୋଟି ପ୍ରବନ୍ଧ ଲେଖି ପ୍ରକାଶ କରିଥିଲି ସେଗୁଡ଼ିକ ହେଲା-'ପଲ୍ଲୀକବି ନନ୍ଦକିଶୋର', 'ଓଡ଼ିଆ ଗଦ୍ୟ ସାହିତ୍ୟର କ୍ରମବିକାଶ' ସାହିତ୍ୟରେ ପ୍ରକୃତିବାଦ, ଓଡ଼ିଆ ଗଳ୍ପ ସାହିତ୍ୟର କ୍ରମବିକାଶ, ପ୍ରବନ୍ଧ ସାହିତ୍ୟ, ଆଧୁନିକ ଓଡ଼ିଆ ସାହିତ୍ୟର ଅଭିବ୍ୟକ୍ତି, ମହାତ୍ମା ଭୀମଭୋଇ, କାନ୍ତକବିଙ୍କ ଜୀବନ ଦର୍ଶନ, ବର୍ତ୍ତମାନ ଓଡ଼ିଆ ସାହିତ୍ୟ, ଜାତୀୟ ଜୀବନରେ ପତ୍ରପତ୍ରିକାର ସ୍ଥାନ, ରୂପକାର ରବୀନ୍ଦ୍ରନାଥ, ଭାରତର ସଂସ୍କୃତି ଓ ପରଂପରା, ପ୍ରାଚୀନ ଓ ଆଧୁନିକ ସାହିତ୍ୟ, ଓଡ଼ିଆ ରଙ୍ଗମଞ୍ଚର ଭୂମିକା, ଓଡ଼ିଆ ଉପନ୍ୟାସ ସାହିତ୍ୟର କ୍ରମବିକାଶ, ସ୍ୱାଧୀନତା ପରେ ଓଡ଼ିଆ ସାହିତ୍ୟ, ଯଦି ଇଂରେଜମାନେ ଏ ଦେଶକୁ ଆସି ନଥାନ୍ତେ, ଆସନ୍ତାକାଲିର ଓଡ଼ିଆ ସାହିତ୍ୟ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସାହିତ୍ୟରେ ଯୁଗରୁଚି, ଓଡ଼ିଆ ଏକାଙ୍କିକା ଓ ପ୍ରାଣବନ୍ଧୁ କର, ଓଡ଼ିଆ ପତ୍ରପତ୍ରିକାର ଇତିହାସ । କେତେକ

ସଂବାଦଧର୍ମୀ ପ୍ରବନ୍ଧ ମଧ୍ୟ ଲେଖା ଚାଲିଲା । କେତେକ ଲେଖାର ପରିଚୟ ଏହିପରି- ଗାନ୍ଧିବାଦ ଓ ଚରଖା- 'ପୂର୍ଣ୍ଣିମା'; ଗାଁ ଗଣ୍ଡାର ଅତୀତ ଓ ବର୍ତ୍ତମାନ-'ଉତ୍କଳକେଶରୀ' ହରିଜନ ଆନ୍ଦୋଳନ-'ସେବକ', କଳା ଓ ତାର ପ୍ରୟୋଜନ 'ଡଗର'; ସାହିତ୍ୟର ଆଦର୍ଶ-'ପ୍ରଜାତନ୍ତ୍ର'; ପ୍ରାଚ୍ୟ ଭାରତର ସାଂସ୍କୃତିକ ଇତିହାସର ଧାରା-'ସହକାର'; ଗୋପବନ୍ଧୁ ଓ ଲୋକଶାସନ- 'ଦୈନିକ ଆଶା'; କୋରିଆ ସଂଘର୍ଷ ଓ ତୃତୀୟ ମହାଯୁଦ୍ଧ-'ଦୈନିକ ଆଶା'; 'ବର୍ଣ୍ଣବୈଷମ୍ୟ ନୀତି ଓ ଦକ୍ଷିଣ ଆଫ୍ରିକା ଭାରତୀୟ ସମସ୍ୟା-'ଦୈନିକ ଆଶା', ୟୁ.ଏନ୍. ଓ ଜାତୀୟବାଦୀ ଚୀନ ପ୍ରତିନିଧି-'ଦୈନିକ ଆଶା; ଗାନ୍ଧିଜୀଙ୍କ ରାଷ୍ଟ୍ରନୀତି ଓ ଗଣତନ୍ତ୍ର ଶାସନ-'ଡଗର'; ବାପୁଜୀ ଓ ଅହିଂସା-'ପ୍ରଜାତନ୍ତ୍ର'; ସ୍ୱାଧୀନତା ପରେ ପୁନର୍ଗଠନ ପରିକଳ୍ପନା-'ପ୍ରଜାତନ୍ତ୍ର'; ଶାନ୍ତି ନା ଅଶାନ୍ତି-'ଆସନ୍ତା କାଲି'; 'ଝଙ୍କାର' ମାସିକରେ ଦୁଇଟି ଅନୁବାଦ ଲେଖା ମଧ୍ୟ ପ୍ରକାଶିତ ହୋଇଥିଲା-''ଉପନ୍ୟାସ, ନାଟକ ଓ ଗଳ୍ପ ସାହିତ୍ୟର ଉଦ୍ଦେଶ୍ୟ ।''

୧୯୪୮-୧୯୫୨ ମଧ୍ୟରେ ସର୍ବମୋଟ ୩୨ଟି ପ୍ରବନ୍ଧ ୧୭ଟି ଗଳ୍ପ ଓ ୧୭ଟି କବିତା ପ୍ରକାଶିତ ହୁଏ । ଆରମ୍ଭ ହେଲା ଲେଖକୀୟ ଜୀବନର ଆଉ ଏକ ପର୍ବ । ଓହରି ଆସିଲି କବିତା ଓ ଗଳ୍ପ ଲେଖାରୁ । ଈଶ୍ୱରଙ୍କର କ'ଣ ଇଚ୍ଛା ଥିଲା କେଜାଣି ଆଜୀବନ ବନ୍ଧା ହୋଇ ରହିଲି ପ୍ରବନ୍ଧ ଲେଖାରେ । ବିଗତ ଏହି ତିନିବର୍ଷର ଅନେକ ଲେଖାର କପି ଆଉ ମୋ ପାଖରେ ନାହିଁ । ଅଧିକାଂଶ କୀଟଦ୍ରଂଷ୍ଟ ନିଜର ଅନାଗ୍ରହ ହେତୁ । କିଏ କ'ଣ ଆଶା କରୁଥିଲା, ଭବିଷ୍ୟତରେ ପ୍ରକାଶନର ସ୍ୱୀକୃତି ମିଳିବ ବୋଲି । ମନର ଓରମାନ ମେଣ୍ଟାଇବା ପାଇଁ ଲେଖନୀ ତା ବାଟରେ ଟାଣି ନେଉଥିଲା ।

ପୁରୀ କଲେଜ ଜୀବନରେ ଗୋଟିଏ ଉପନ୍ୟାସ ଲେଖାରେ ମନ ଦେଇଥିଲି । ପ୍ରାୟ ହାତ ଲେଖାରେ ଦେଢ଼ଶହ ପୃଷ୍ଠା ଲେଖା ସରିଥିଲା । ସଂପୂର୍ଣ୍ଣ ହୋଇ ନଥିଲା । ଦିନେ ଗୁରୁଜନଙ୍କଠାରୁ ଗାଳି ଖାଇ ସେହି ପାଣ୍ଡୁଲିପିକୁ ଅଭିମାନରେ ଚୁଲି ଜାଳ କରିଦେଲି । ଆଜି ପରିଣତ ବୟସରେ ପଛକଥା ଭାବି ବସିଲେ ଅବଶୋଷ ଆସେ । ପ୍ରବନ୍ଧ- ଆଲୋଚନାରେ ହୁଏତ ବହୁପାଠିତାର ଝଲକ ଥାଇପାରେ, ଅନୁବୀକ୍ଷଣ ଅନୁଶୀଳନରେ ଆଭା ହୁଏତ ପ୍ରତିଭାତ ହେଉଥିବ, ବୌଦ୍ଧିକ ବିଳାସରେ ହୁଏତ ତାହା ପ୍ରତିବିମ୍ବିତ ହେଇଥାଇପାରେ, ମାତ୍ର ମନର କଥା କ'ଣ ସେ କହିପାରିଲା ! ଜୀବନର ଚଲାପଥରେ ଅନେକ ଅନୁଭୂତି, ବିପୁଳ ଚଳଚଞ୍ଚଳ ସ୍ୱପ୍ନର ବିଳାସ । ମାତ୍ର ଗଳ୍ପ ଓ ଉପନ୍ୟାସ ଲେଖାର ଅଭାବରେ ସେମାନେ ତ ଅଶରୀରୀ ହୋଇ ରହିଗଲେ । ଆଜି ମଧ୍ୟ ସେମାନେ କାନେକାନେ ନିଃଶବ୍ଦରେ ଶୁଣାଇ ଯାଆନ୍ତି- ''କାହିଁକି ଆମକୁ ରୂପଦାନରୁ କ୍ଷାନ୍ତ ହୋଇପଡ଼ିଲ ?''

ସେମାନେ କ'ଣ ବୁଝିବେ ? ତରୁଣ ବୟସରେ ପ୍ରବନ୍ଧ-ଆଲୋଚନାର କାଳିସୀ ଆଜି ମଧ୍ୟ ଆବୋରି ବସିଛି । କିଛି ପାଇବା, କିଛି ନପାଇବାର ବିକଳ ବ୍ୟାକୁଳତା ଫାସରେ ସେଦିନର ତରୁଣଟି ଆଜିଯାଏଁ ବନ୍ଦୀ ହୋଇରହିଛି ।

# ପୁରୀ ରହଣୀର ସ୍ମରଣୀୟ ଅନୁଭୂତି

**ଖ**ବରକାଗଜରୁ ପଢ଼ିଲି, ପୁରୀ ସମୁଦ୍ରକୂଳରେ କେଉଁ ଅତୀତ କାଳରୁ ଦଣ୍ଡାୟମାନ ଦିଗ୍‌ବାରେଣି ଖୁଣ୍ଟି ଆଉ ନାହିଁ । ଭାଙ୍ଗି ଦିଆଯାଇଛି । ସମୁଦ୍ରଗାମୀ ଜାହାଜକୁ ସଂକେତ ଦେଉଥିଲା ଏହି ସୁଉଚ୍ଚ ଖୁଣ୍ଟି ଇଂରେଜ ରାଜତ୍ୱ କାଳରେ । ତରୁଣ ବୟସରେ ଅସୁମାରୀ ସଂଧ୍ୟା ବିତିଯାଇଛି ଏହି ଖୁଣ୍ଟିମୂଳରେ । ଏହି ବୟସରେ ଅସରନ୍ତି ସ୍ୱପ୍ନର ଢେଉ ଲହଡ଼ି ଭାଙ୍ଗୁଥାଏ । ନୀଳସାଗରର ଲହରୀକୁ ନିରୀକ୍ଷଣ କରି ତାହା ଅଧିକ ଉତ୍ତାଳ ହୋଇଉଠେ । ଏକୁଟିଆ ବସିବାକୁ ଭଲପାଏ ଏବଂ ଦିଗ୍‌ବଳୟକୁ ଚାହିଁଥାଏ ଅପଲକ ନେତ୍ରରେ । ମନେମନେ ଗାଉଥାଏ କବି ରବୀନ୍ଦ୍ରନାଥଙ୍କର ଗୀତଟିଏ–

"ବାହିରେ କିଛୁ ଦେଖିତେ ନାଇ ପାଇ
ତୋମାର ପଥ କୋଥାୟ ଭାବି ତାଇ ।
ସୁଦୂର କୋନ୍ ନଦୀର ପାରେ, / ଗହନ କୋନ୍ ବନେର ଧାରେ,
ଗଭୀର କୋନ୍ ଅନ୍ଧକାରେ / ହତେଛୁ ତୁମି ପାର ।
ପରାନସଖା ବନ୍ଧୁ ହେ ଆମାର ।"

ଆଖି ପାଉ ନଥିବା ଦିଗ୍‌ବଳୟକୁ ନିର୍ନିମେଶ ନୟନରେ ଚାହିଁରହେ ବହୁ ସମୟଧରି । ବେଳେବେଳେ ମେଘ ଉଠିଆସେ । ଝିରିଝରି ବର୍ଷାର ଟୋପା । ମନ ହୁଏ ନାହିଁ ଉଠି ଆସିବାକୁ । ମନେମନେ ଗୁମୁରି ଉଠୁଥାଏ ରବୀନ୍ଦ୍ରନାଥଙ୍କର ଆଉ ଗୋଟିଏ ଗୀତର ପଦଟିଏ ।

"ହୃଦୟେ ଆଜ ଢେଉ ଦିୟେଛେ / ଖୁଁଜେ ନା ପାଇ କୂଳ,
ସୌରଭେ ପ୍ରାଣ କାଁଦିୟେ ତୁଲେ / ଭିଜେ ବନେର ଫୁଲ ।
ଆଁଧାର ରାତେ ପ୍ରହର ଗୁଲି / କୋନ୍ ସୁରେ ଆଜ ଭରିୟେ ତୁଲି,
କୋନ୍ ଭୁଲେ ଆଜ ସକଳ ଭୁଲି / ଆଛି ଆକୁଳ ହୟେ
ବାଁଧନ ହାରା ବୃଷ୍ଟିଧାରା /ଝରେଛେ ରୟେ ରୟେ ।"

ହଠାତ୍ ମନରେ ଚେତା ପଶେ । ଘରକୁ ଫେରିବାକୁ ହେବ । ଉଠିଆସେ କର୍ତ୍ତବ୍ୟର ତାଡ଼ନାରେ ।

ଅନେକ ସଂଧ୍ୟା ପୁରୀ ସମୁଦ୍ରର ନିର୍ଜନ ବେଳାଭୂମିରେ ବୁଲିବୁଲି ବିତିଯାଏ । ଏକାଏକା ବସିଥାଏ । ନୀଳ ଆକାଶକୁ ଚାହିଁ ରହି ସ୍ୱପ୍ନ ଦେଖିବାକୁ ଭଲପାଏ । ମନରେ ଉଠେ ଅସରନ୍ତି ପ୍ରଶ୍ନ । ନୀଳଆକାଶରେ ତାରକାଳିର ମେଳା । ସେହିମାନଙ୍କ ଗହଣରେ ଚାନ୍ଦ କାହିଁକି ହସିହସି

ଲୋଟିଯାଏ ? ଚାନ୍ଦିନୀଧୂଆ ଆକାଶରେ ଇନ୍ଦ୍ରଜାଲର କୁହୁକ ସୃଷ୍ଟିହୁଏ । ପ୍ରକୃତି ସଂସାରରେ କେତେ ବର୍ଣ୍ଣର ରୂପଛଟା; ଅସରନ୍ତି ସୌନ୍ଦର୍ଯ୍ୟର ଲହଡ଼ି ଖେଳି ବୁଲୁଥାଏ । ବନ ଉପବନରୁ ପୁଷ୍ପର ସୁରଭି ଭାସିଆସେ । ଚତୁର୍ଦ୍ଦିଗକୁ ସୁଗନ୍ଧି ପ୍ରସାରିତ ହୋଇ ମତୁଆଲା କରିଦିଏ । ପ୍ରିୟଲୋକର ସାନ୍ନିଧ କାହିଁକି ଏତେ ସୁଖକର ହୁଏ ? ସୀମିତ ଜୀବନକାଳରେ ଯୌବନ ସମୟ ଏପରି ଉନ୍ମାଦକର ହୁଏ କିପରି ? କାହିଁକି କବିତା ଲେଖିବାକୁ ମନହୁଏ ? କିଏ ଦିଏ ଏପରି ପ୍ରେରଣା ? ବିଶ୍ୱଶିଳ୍ପୀର ଏ ହେଲା ଅଦ୍ଭୁତ ଖିଆଲ ।

କଳାମେଘରେ ବିଦ୍ୟୁତ୍ ନୀରବରେ ରହିପାରେ ନାହିଁ । ବିଚ୍ଛୁରିତ ହେବା ତାହାର ଧର୍ମ । ସେ ଦିଗେଦିଗେ ପ୍ରକମ୍ପିତ ହୁଏ । ଅନ୍ଧକାର ମଧ୍ୟରେ ଆଲୋକର କଣା ବୁଣିବୁଣି ଯାଏ । ଅମୋଘ ଶକ୍ତିର ଅଧିକାରୀ ହୋଇ ବିଜୁଳିର ଲହରୀ ଖେଳିବୁଲେ । ତାହାରି ମଧ୍ୟରେ ଗର୍ଜନ କରିଉଠେ ଏକ ଅମାପ ବ୍ୟକ୍ତିତ୍ୱ । ସେଇମିତି କବିର କବିତା । ସେ ପ୍ରକାଶିତ ହେବାକୁ ଚାହେଁ । ରୂପାୟିତ ହେବାକୁ ବ୍ୟାକୁଳ ହେଉଥାଏ । ଶିବ ଓ ସୌନ୍ଦର୍ଯ୍ୟର ବାର୍ତ୍ତାବହ ହୋଇ ବିସ୍ତାରିତ ହୋଇଯାଏ । ଠିକ୍ ଗିରି ଗହ୍ୱରରୁ ଝରଣାର ପ୍ରବାହ ପରି । କବି ଲେଖେ, କାରଣ ତାକୁ ଲେଖିବାକୁ ହେବ । ସୃଷ୍ଟିର ସୌନ୍ଦର୍ଯ୍ୟକୁ ଉକୁଟାଇବାକୁ ପଡ଼ିବ । ଏହି ବୟସରେ ଲେଖାହେଲା ଅନେକ କବିତା । ପ୍ରକାଶିତ ମଧ୍ୟ ହେଲା । ଜୀବନର ଚଲାପଥରେ ସେମାନେ ଆଜି ସ୍ମୃତି ହୋଇ ରହିଗଲେ । ସେଦିନର ସେଇ ଅଲିଅଳ କବି ପୁରୁଷଟି ସବୁଦିନ ପାଇଁ ପର ହୋଇଗଲା ।

ଅନେକ କଥା ଜାଣିବା ପାଇଁ ଆଗ୍ରହ । କେବଳ ପାଠ୍ୟପୁସ୍ତକରେ ମନ ବାନ୍ଧି ହୋଇ ରହେନାହିଁ । ସାଧାରଣ ଲାଇବ୍ରେରୀ କକ୍ଷରେ ନାନା ବିଷୟର ପୁସ୍ତକ ଓଲଟାଇବାକୁ ସୁଖ ଲାଗେ । ନୂଆ ତଥ୍ୟଟିଏ ଜଣା ହୋଇଗଲେ ମନ ଖାଲି ଖୁଜ୍‌ବୁଜ୍ ହେଉଥାଏ ବନ୍ଧୁମେଳରେ ଆଲୋଚନା କରିବା ପାଇଁ । ପୁରୀ ସହରରେ ସାହିତ୍ୟ ସଭା ବିଶେଷ ହେଉ ନଥାଏ । କଲେଜର ସାଂସ୍କୃତିକ ଉତ୍ସବକୁ ଅନେକ ବିଶିଷ୍ଟ ବିଦ୍ୱାନ ଓ ରାଜନୈତିକ ନେତା ନିମନ୍ତ୍ରିତ ହୋଇ ଆସୁଥିଲେ । ସର୍ବଭାରତୀୟ ସ୍ତରର ଛାତ୍ରନେତାମାନେ ମଧ୍ୟ ପୁରୀକୁ ଆସି ଛାତ୍ରମାନଙ୍କ ସଭାରେ ଭାଷଣ ଦେଉଥିଲେ । ମନେପଡୁଛି ସର୍ବଭାରତୀୟ ଛାତ୍ରକଂଗ୍ରେସର ସଭାପତି ରବି ବର୍ମା ଓ ସର୍ବଭାରତୀୟ ଛାତ୍ର ଫେଡ଼େରେସନର ନେତ୍ରୀ ଗୀତା ମୁଖାର୍ଜୀଙ୍କ ଭାଷଣ । ପରବର୍ତ୍ତୀ କାଳରେ ଏହି ଦୁଇଜଣ ଛାତ୍ରନେତା ଲୋକସଭାର ବରେଣ୍ୟ ସଭ୍ୟ ହୋଇ ରାଜନୀତିକ କ୍ଷେତ୍ରରେ ସ୍ୱନାମଧନ୍ୟ ହୋଇଥିଲେ । ଏହି ସମୟରେ ଶୁଣିବାର ସୌଭାଗ୍ୟ ମିଳିଥିଲା ପଣ୍ଡିତ ନୀଳକଂଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ୟାମାପ୍ରସାଦ ମୁଖାର୍ଜୀ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ପ୍ରଭୃତି ନେତୃବର୍ଗଙ୍କୁ । ପୁରୀ ସହରର ଲୋକନାଥ ମିଶ୍ର (ପଙ୍କବାବୁ), ଗଙ୍ଗାଧର ମହାପାତ୍ର, ବିବୁଧେନ୍ଦ୍ର ମିଶ୍ର ପ୍ରଭୃତି ଶକ୍ତିଶାଳୀ ବକ୍ତା ଥିଲେ । ଅନେକ ସମୟରେ ଘରେ ମିଛ କହି ରାଜନୀତିକ ସଭାକୁ ଧାଇଁ ଯାଉଥିଲି ଭାଷଣ ଶୁଣିବା ପାଇଁ । ସେମାନେ କ'ଣ କହୁଥିଲେ ମନେ ରଖି ନାହିଁ, କିପରି କହୁଥିଲେ ମନ ଧ୍ୟାନ ଦେଇ ଲକ୍ଷ୍ୟ କରୁଥିଲି । ସେହିଦିନୁ ସ୍ୱପ୍ନ ଦେଖୁଥିଲି ସାଧାରଣ ସଭାରେ କିପରି ଭାଷଣ ଦିଅନ୍ତି କି ?

କଟକର କଳିଙ୍ଗଭାରତୀ ପୁରୀରେ ପ୍ରତ୍ୟେକ ବର୍ଷ ଭଞ୍ଜଜୟନ୍ତୀର ଆୟୋଜନ କରୁଥିଲେ । ଏହି ସଭାରେ କବି ବିଚ୍ଛନ୍ଦଚରଣ ପଟ୍ଟନାୟକ, ଛାତ୍ର ହୃଦାନନ୍ଦ ରାୟ ଓ ରଜତ କୁମାର କରଙ୍କର ଭାଷଣ ଅତ୍ୟନ୍ତ ପ୍ରଭାବଶାଳୀ ମନେହେଉଥିଲା । ପ୍ରତ୍ୟେକ ସଭାରେ ପ୍ରବୀଣ ସାହିତ୍ୟିକ ଜଗବନ୍ଧୁ ସିଂହ ଉପସ୍ଥିତ ରହୁଥିଲେ । ଧୀରେ ଧୀରେ ପ୍ରତ୍ୟେକଥର ବ୍ୟାକୁଳ ଚିତ୍ତରେ କହନ୍ତି-ସାହିତ୍ୟସେବୀ ଗଭୀର ଅଧ୍ୟୟନ କରିବା ଆବଶ୍ୟକ । ବୌଦ୍ଧିକ ବିକାଶ ଓ ବୈଜ୍ଞାନିକ ଅନୁଶୀଳନ ବ୍ୟତିରେକ ସାହିତ୍ୟର ମାନ ବୃଦ୍ଧି ହେବ ନାହିଁ । ଏହି ସାହିତ୍ୟ ସଭାରେ ଉପସ୍ଥିତ ରହୁଥିଲେ ବିଶିଷ୍ଟ ଆଡ଼ଭୋକେଟ ଲୋକନାଥ ପଟ୍ଟନାୟକ ଓ ସାମ୍ବାଦିକ ସୂର୍ଯ୍ୟନାରାୟଣ ଦାଶ । ପରବର୍ତ୍ତୀ କାଳରେ ଗୀତିକବି ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ ଲୋକନାଥ ପଟ୍ଟନାୟକ ଏବଂ ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ ଐତିହାସିକ ଓ ଗବେଷକ ଭାବରେ ପରିଚିତ ହେଲେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ । ପୁରୀରେ ସାହିତ୍ୟିକ ବାତାବରଣ ପ୍ରାୟତଃ ନଥିଲା । ସାହିତ୍ୟ ପତ୍ରିକାଟିଏ ମଧ୍ୟ ପ୍ରକାଶ ପାଇ ନଥିଲା । ଯେଉଁ ମୁଷ୍ଟିମେୟ ସାହିତ୍ୟସେବୀ ଥିଲେ, ସେମାନଙ୍କୁ ଏକାଠି କରିବା ପାଇଁ କୌଣସି ସାରସ୍ୱତ ମଞ୍ଚର ସ୍ୱପ୍ନ କେହି ଦେଖି ନଥିଲେ । କବି ପଦ୍ମଚରଣ ପଟ୍ଟନାୟକ ପୁରୀର ଅଧିବାସୀ । ପରିଣତ ବୟସରେ ତାଙ୍କର ଲେଖନୀ ଚଳଚଞ୍ଚଳ ହେଉ ନଥିଲା । ତାଙ୍କର କନିଷ୍ଠ ଭ୍ରାତା ମଦନମୋହନ ପଟ୍ଟନାୟକ ପୁରୀରେ ଥିଲେ ଉଚ୍ଚ ସରକାରୀ ପ୍ରଶାସକ । ଯୌବନ କାଳରେ ସେ ଥିଲେ ପ୍ରସିଦ୍ଧ ପ୍ରାବନ୍ଧିକ ଓ କବି । ମାତ୍ର ସେ ମଧ୍ୟ ନୀରବ ହୋଇଯାଇଥିଲେ । ପ୍ରସିଦ୍ଧ ଆଇନଜୀବୀ ଜଗବନ୍ଧୁ ସିଂହଙ୍କର ସହକାରୀ ଥିଲେ ଓକିଲ ମାଧବଚନ୍ଦ୍ର ଚୌଧୁରୀ । ଯୌବନକାଳରେ କବି ମାଧବଚନ୍ଦ୍ର କବିତା ରାଜ୍ୟରୁ ବିଦାୟ ନେଇଥିଲେ କର୍ମଜଞ୍ଜାଳର ଅନୁରୋଧରେ । ଜଗବନ୍ଧୁ ସିଂହଙ୍କ ମୃତ୍ୟୁପରେ ମାଧବ ଚୌଧୁରୀ ପୁରୀ ସହରରୁ ଡେରା ଉଠାଇ ନୟାଗଡ଼ ସହରରେ ଓକିଲାତି କରି ପ୍ରସିଦ୍ଧି ଅର୍ଜନ କରିଥିଲେ । କବିତା କଳ୍ପଲତା ଅପର୍ଣ୍ଣାଦେବୀ ପୁରୀ ସହରର ବୋହୂ । ବାର୍ଦ୍ଧକ୍ୟରେ ଉପନୀତ ହୋଇଥିଲେ । ତାଙ୍କର ଲେଖା ''ଦଶକୁମାରୀ ଚରିତ'' ଘରେ ଘରେ ଆଦର ଲାଭ କରିଥିଲା । ସେ ଲେଖିଥିଲେ ''ଇନ୍ଦୁମତୀ'' କାବ୍ୟ । ପାଲାକାରମାନେ ସେହି କାବ୍ୟରୁ ଉଦ୍ଧାର କରୁଥିଲେ ଅନେକ ସମୟରେ । ରକ୍ଷଣଶୀଳ ବ୍ରାହ୍ମଣଘରର ବୋହୂ ହୋଇଥିବାରୁ ତାଙ୍କୁ କୌଣସି ସାରସ୍ୱତ ମଞ୍ଚରେ ଦର୍ଶନ କରିବାର ସୁଯୋଗ ନଥିଲା । ତେବେ ତାଙ୍କର କନିଷ୍ଠ ସନ୍ତାନ ବ୍ରଜ ମିଶ୍ର ଥିଲେ ମୋର ସହପାଠୀ । ଜଣେ ବାମପନ୍ଥୀ ନେତା ଭାବରେ ସେ ସୁନାମ ଅର୍ଜନ କରିଥିଲେ । ପୁରୀ ଜିଲ୍ଲା ସ୍କୁଲର ଶିକ୍ଷକ ପ୍ରାଣବନ୍ଧୁ କର ପୁରୀର ହେରାଗୋହରୀ ସାହିରେ ଅବସ୍ଥାନ କରୁଥିଲେ । ସଭାସମିତିରେ ବେଳେବେଳେ ତାଙ୍କ ସହିତ ସାକ୍ଷାତ ପରିଚୟ ହୋଇଛି । ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ସେ ଥିଲେ ବହୁ ଚର୍ଚ୍ଚିତ କ୍ଷୁଦ୍ରଗଳ୍ପ ଓ ଏକାଙ୍କିକାର ଲେଖକ । କାହିଁକି କେଜାଣି ସେ ନୀରବି ଯାଇଥିଲେ ।

ପ୍ରଜାତନ୍ତ୍ର ରବିବାର ସାହିତ୍ୟ ପୃଷ୍ଠାରେ ତାଙ୍କର ଏକାଙ୍କିକା ପାଠ କରି ପ୍ରବନ୍ଧଟିଏ ପ୍ରକାଶ କରିଥିଲି-''ଓଡ଼ିଆ ଏକାଙ୍କିକା ଓ ପ୍ରାଣବନ୍ଧୁ କର ।'' ସେ ଲେଖୁଥିଲେ ବୋଲି ସତେ

ଯେପରି ବିସ୍ମୃତ ହୋଇଯାଇଥିଲେ । ସେ କେତେ ଗଦ୍‌ଗଦ୍ ହୋଇ ମୋତେ ଆଦରରେ କହୁଥିଲେ-''ପଠାଣି ! ଶୋଇଯାଇଥିଲି । ତୁ ମୋତେ ଉଠାଇ ଦେଲୁ ।'' ପରେ ପ୍ରାଣବନ୍ଧୁ କର ଏମ୍.ଏ. ପାସ୍ କରି ଓଡ଼ିଆ ସାହିତ୍ୟର ଅଧ୍ୟାପକ ହୋଇଥିଲେ । ଲେଖିଚାଲିଲେ କେତୋଟି କାଳଜୟୀ ନାଟକ । ଏକଦା ତାଙ୍କର ନାଟକ ''ଅଶାନ୍ତ'' ସର୍ବଭାରତୀୟ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ପୁରୀ କଲେଜରେ ଓଡ଼ିଆ ସାହିତ୍ୟର ଜଣେ ଅଧ୍ୟାପିକା ଥିଲେ ଶାନ୍ତି ମିଶ୍ର । ସେ କାଳରେ କ୍ୱଚିତ୍ ଝିଅ ଉଚ୍ଚଶିକ୍ଷା ଲାଭ କରୁଥିଲେ ଏବଂ ସରକାରୀ ଚାକିରୀ କରୁଥିଲେ । କଲେଜରେ ଆମ ସମୟରେ ସେ ଥିଲେ ଏକମାତ୍ର ମହିଳା ଅଧ୍ୟାପିକା । ତାଙ୍କରି ଉଦ୍ୟମରେ ''ଜାଗରଣ'' ସାହିତ୍ୟ ମାସିକର ପୁନଃପ୍ରକାଶ ହୋଇଥିଲା ପୁରୀ ସହରରୁ । ଏହି ପତ୍ରିକାରେ ମୋର ଅନ୍ତରଙ୍ଗ ସହପାଠୀ କୁଳମଣିକୁ କୌତୁକ କରି ଏକ କାଳ୍ପନିକ ପ୍ରେମକାହାଣୀ ପ୍ରକାଶ କରିଥିଲି । ଦୁଇବନ୍ଧୁ ଉପଭୋଗ କରିଥିଲୁ । ଏହି ଜାଗରଣ ପତ୍ରିକାରେ ଆମର ଓଡ଼ିଆ ସାହିତ୍ୟର ଅଧ୍ୟାପକ ସିଦ୍ଧେଶ୍ୱର ହୋତା ବେଳେବେଳେ ପ୍ରବନ୍ଧ ଲେଖୁଥିଲେ । ସେ ଥିଲେ ଅତ୍ୟନ୍ତ ସରଳ ବିଶ୍ୱାସୀ ଏବଂ ପ୍ରଶଂସାପ୍ରିୟ । ଚଗଲା ଛାତ୍ରମାନେ ତାଙ୍କଠାରୁ କିଛି କାର୍ଯ୍ୟ ହାସଲ କରିବାକୁ ଥିଲେ ଆଦୌ ପାଠ ନକରି ମଧ୍ୟ ତାଙ୍କ ଲେଖାର ପ୍ରଶଂସା କରି ଦୁଇପଦ କହି କାମ ହାସଲ କରିପାରୁଥିଲେ । ପୁରୀରେ ଆଉ ଜଣେ କବି କର୍ମଜୀବୀ ଭାବରେ ଅବସ୍ଥାନ କରୁଥିଲେ । ସେ ହେଲେ କୁଞ୍ଜବିହାରୀ ଦାଶ । ସେ କେବଳ କବିଟିଏ ନଥିଲେ । ଥିଲେ ଅତ୍ୟନ୍ତ କବିପ୍ରାଣ । ସଂସ୍କୃତ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ୍ ଭାବରେ ତାଙ୍କର ଅଫିସ୍ ଥିଲା ପୁରୀ କଲେଜ ହଷ୍ଟେଲର ଗୋଟିଏ କକ୍ଷରେ । ଛାତ୍ରମାନଙ୍କୁ ସାହିତ୍ୟ ସେବା କରିବା ପାଇଁ ତାଙ୍କର ପ୍ରେରଣା ଓ ଉତ୍ସାହ ଭୁଲି ହେବ ନାହିଁ । କବି କୁଞ୍ଜବିହାରୀ ପରେ ଓଡ଼ିଆ ସାହିତ୍ୟ ବିଭାଗରେ ଅଧ୍ୟାପକ ଥାଇ ଶାନ୍ତିନିକେତନରେ ଅନେକ ବର୍ଷ କାର୍ଯ୍ୟ କରିଥିଲେ ଏବଂ ''ଓଡ଼ିଆ ଲୋକ ସାହିତ୍ୟ'' ବିଷୟରେ ତାଙ୍କର ଗବେଷଣା ଓ ସଂକଳନ ଅତ୍ୟନ୍ତ ଉଲ୍ଲେଖନୀୟ । ବହୁବର୍ଷ ପରେ କବି କୁଞ୍ଜବିହାରୀ ଯେତେବେଳେ ପ୍ରାଚୀନତମ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ସଭାପତି ହେଲେ, ସେତେବେଳେ ତାଙ୍କର କାର୍ଯ୍ୟକାରୀ ସମିତିରେ ଜଣେ ସକ୍ରିୟ ସଭ୍ୟ ହେବାର ସୌଭାଗ୍ୟ ଲାଭ କରିଥିଲି । ରେଭେନ୍ସା କଲେଜର ଓଡ଼ିଆ ସାହିତ୍ୟ ପ୍ରଫେସର ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟ 'ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍'ର ସେ ଥିଲେ ଚେଆରମ୍ୟାନ । ତାଙ୍କ ସହିତ ମଧ୍ୟ ଏହି ବୋର୍ଡ଼ରେ କେତୋଟି ବର୍ଷ କାର୍ଯ୍ୟ କରିବାର ସୁଯୋଗ ଲାଭ କରିଥିଲି ।

ପୂର୍ବରୁ କହିଛି-ପୁରୀ ଜିଲା ଛାତ୍ର କଂଗ୍ରେସର ସଂସ୍କୃତି ବିଭାଗ ସଂପାଦକ ଥିଲାବେଳେ ବୋଲି ଥରେ ଜିଲ୍ଲାର ଛାତ୍ରସମ୍ମିଳନୀର ଆୟୋଜନ ହେଲା । ଆମେ ଚାରିଜଣ ବନ୍ଧୁ ଚାନ୍ଦା ଆଦାୟ କରିବା ପାଇଁ ବାହାରି ଅନେକ ମଠମହନ୍ତ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସାକ୍ଷାତ କରିଥିଲୁ । ଛାତ୍ର ସମ୍ମିଳନୀ ପାଇଁ ସମସ୍ତେ ଆଗ୍ରହର ସହିତ ସାହାଯ୍ୟ ଦେଉଥିଲେ । ଦିନେ ଜଗନ୍ନାଥ ବଲ୍ଲଭ ମଠର ଉପର ମହଲାରେ ପ୍ରସିଦ୍ଧ ହୋମିଓପ୍ୟାଥି ଡାକ୍ତର ଜେ. ଚୌଧୁରୀଙ୍କୁ ସାକ୍ଷାତ

କଲୁ । ତାଙ୍କ ପାଖରେ ଉପବେଶନ କରିଥିଲେ ନାଟ୍ୟକାର ଅଦ୍ୱୈତ ମହାନ୍ତି । ସୁଦର୍ଶନ ଚେହେରା, ମୁହଁରେ ସର୍ବଦା ହସ ଲାଗି ରହିଥାଏ । ଡାକ୍ତର ଚୌଧୁରୀ ନାଟ୍ୟକାରଙ୍କ ସହିତ ଆମ୍ଭମାନଙ୍କୁ ପରିଚୟ କରାଇଦେଲେ । ଚାନ୍ଦା ମାଗି ବୁଲୁଛୁ ଶୁଣି ତାଙ୍କର ହସହସ ମୁହଁ ହଠାତ୍ କଠୋର ହୋଇଗଲା । ସେ ଆମ ଚାରିଜଣଙ୍କର ଗାଲକୁ ଟୋଡ଼ିଦେଇ କହିଲେ- ଲାଜ ଲାଗୁନାହିଁ । କାଉଁରିଆ କାଠି ପରି ଚେହେରା । ତୁମେ ସବୁ ଚାଲିଗଲେ ବଡ଼ଦାଣ୍ଡ ହସିଉଠୁନାହିଁ । କି ନେତା ହେଇଚ !! ଆଗ ନିଜକୁ ତିଆରି କର । ସୁସ୍ଥ ସବଳ ହୁଅ । ପରେ ଅନ୍ୟକଥା ଚିନ୍ତା କରିବ । ପୁରୀ ଜେଗା ଘର ପିଲାଏ କୁସ୍ତି କସରତ କରି କିପରି ବାହୁବଳି ହୋଇଛନ୍ତି !! ଏ ମଡ଼ିଆ ଦେହରେ କ'ଣ ପୃଥିବୀକୁ ଟେକି ଧରିବ ? ନାଟ୍ୟକାରଙ୍କ ଏହି ମଧୁର ଗାଳି ଆମ୍ଭମାନଙ୍କୁ ବିଚଳିତ କରିଦେଲା । ''ମନଦୁଃଖ କଲକି ?'' କହି ହସିଦେଲେ । ଡାକ୍ତର ଚୌଧୁରୀ ଓ ଡାକ୍ତର ମହାନ୍ତିଙ୍କଠାରୁ ମୋଟା ଅଙ୍କର ଚାନ୍ଦା ଧରି ଖୁସି ମନରେ ଫେରିଆସିଲୁ ।

ବି.ଏ. ପରୀକ୍ଷା ସରିଥାଏ । ପରୀକ୍ଷା ଫଳ ବାହାରିବା ପାଇଁ ମାସଟିଏ ଡେରିଥାଏ । ଛାତ୍ରଜୀବନର ଚଳଚଞ୍ଚଳତା କମି ଆସିଲା । ଅବଶ୍ୟ ପରୀକ୍ଷାଫଳ ପାଇଁ ମନରେ କୌଣସି ପ୍ରକାର ଉତ୍କଣ୍ଠା ନଥାଏ । ବନ୍ଧୁ କୁଳମଣି କହିଲା, କାହିଁକି ଖାଲିଟାରେ ବସିବା । ଢେଙ୍କାନାଳର କପିଳାସ ପାହାଡ଼ରେ ବୁଲାବୁଲି କରି ଆସିବା । ଘରୁ ଅନୁମତି ନେଇ ଦୁଇବନ୍ଧୁ ତାଳଚେର ଗାଡ଼ିରେ ବାହାରିଲୁ ଢେଙ୍କାନାଳ । ବାଟରେ କଟକ ଷ୍ଟେସନରେ ଜଣେ ବଙ୍ଗାଳୀ ବୃଦ୍ଧ ଗାଡ଼ି ଚଢ଼ିଲେ । ଆମ ସହିତ ସେହି ଡବାରେ ଆଉ ଏକ ବଙ୍ଗୀୟ ପରିବାର ପୁରୀରୁ ବସିଥାଆନ୍ତି । ତାଙ୍କର ତିନୋଟି କିଶୋର ସନ୍ତାନ । ଗାଡ଼ି ଛାଡ଼ିଲା । ବଙ୍ଗୀୟ ବୃଦ୍ଧ ଏହି ପିଲା ତିନୋଟିଙ୍କୁ ପାଖକୁ ଡାକିଲେ । ନିଜ ବ୍ୟାଗରୁ ବାହାର କଲେ ରବୀନ୍ଦ୍ରନାଥଙ୍କର ଗୋଟିଏ କବିତା ବହି, କହିଲେ, ପିଲାମାନେ, ଆଜି ହେଉଛି କବିଗୁରୁ ରବୀନ୍ଦ୍ରନାଥଙ୍କର ଜନ୍ମଦିନ । ସେ କେଡ଼େ ବଡ଼ କବି । ତାଙ୍କୁ ବିଶ୍ୱକବିର ସମ୍ମାନ ଦିଆଯାଇଛି । ମାତ୍ର ସେ ତୁମରି ବୟସର ପିଲାମାନଙ୍କ ପାଇଁ କେତେ ସୁନ୍ଦର କବିତା ଲେଖିଯାଇଛନ୍ତି । ଆସ ଶୁଣିବା ।

ବୃଦ୍ଧ ମଧୁର କଣ୍ଠରେ କବିତା ଆବୃତ୍ତି କରିଚାଲିଲେ । ଆମେ ସମସ୍ତେ ସ୍ତବ୍ଧ ହୋଇ ବୃଦ୍ଧଙ୍କର ଭାବପ୍ରବଣତା ଲକ୍ଷ୍ୟ କରୁଥାଉ । କାହାରି ସହିତ ପରିଚୟ ନାହିଁ । ମାତ୍ର କେତେଘଣ୍ଟା ପାଇଁ ରେଳଗାଡ଼ି ଡବାରେ ସାକ୍ଷାତ । କିଛି ସମୟ ପରେ କିଏ କେଉଁଠି ଓହ୍ଲାଇଯିବେ । ଆଉ ହୁଏତ ଜୀବନରେ ଦେଖାସାକ୍ଷାତ ହେବ ନାହିଁ । କିନ୍ତୁ ସେହି ଅଳ୍ପ ସମୟ ପାଇଁ ରବୀନ୍ଦ୍ରନାଥଙ୍କର କବିତା ସମସ୍ତଙ୍କୁ ଏକାଠି ଜଡ଼ିଦେଲା । ବଙ୍ଗାଳୀ ବୃଦ୍ଧଙ୍କର ଏହି ସାହିତ୍ୟ ପ୍ରୀତି ଅନ୍ତରାଳରେ ବଙ୍ଗୀୟ ସ୍ୱାଭିମାନର ଝଲକ ଅନୁଭୂତ ହେଉଥିଲା । ଆମ ଓଡ଼ିଆ ସାହିତ୍ୟର କୌଣସି କବିଙ୍କର ଲେଖା ନେଇ ଏହି ପ୍ରକାର ଆତ୍ମୀୟତାବୋଧ ଆମେ ଜାଗ୍ରତ କରିପାରୁଛେ କି ?

ଏକଦା କଲିକତାରେ ଅବସ୍ଥାନ କାଳରେ କତିପୟ ବଙ୍ଗାଳୀ ସହକର୍ମୀଙ୍କ ସହିତ ପଦବ୍ରଜରେ ଭ୍ରମଣ କରୁଥାଏ । ହଠାତ୍ ପଥ ପାର୍ଶ୍ୱରେ କୌଣସି ବଙ୍ଗାଳୀ ସାହିତ୍ୟିକ ଅଥବା ସ୍ମରଣୀୟ ବ୍ୟକ୍ତିତ୍ୱଙ୍କର ଘର ପାଖେଇ ଗଲେ ସେମାନେ ଅତ୍ୟନ୍ତ ସ୍ୱାଭିମାନରେ ମୋତେ

କହୁଥିଲେ-''ଦାଦା ! ଏଟା ହଚ୍ଛେ ଶରତ ଦାଦାର ବାଡ଼ି ! ଦାଦା ! ଏଇଖାନେ ବିବେକାନନ୍ଦ ଛିଲେନ୍ । ପରମପୁରୁଷ ରାମକୃଷ୍ଣର ଜନ୍ୟ ଏଇ ଜାଗା ଧନ୍ୟ ହଇୟାଛେ ।''

ମୁଗ୍ଧ ହୋଇ ସିନା ଶୁଣୁଥାଏ ଏବଂ ଘରର ଦୃଶ୍ୟ ଦେଖୁଥାଏ, ମନେମନେ ଦୁଃଖ ପାଉଥାଏ । କାହିଁକି ଆମ ମଧ୍ୟରେ ଏପରି ଭାବନା ଆସୁନାହିଁ ? କଟକ ସହରରେ ସାହି ବସ୍ତିରେ ଅନେକ ଲେଖକ ଓ ସ୍ୱାଧୀନତା ସଂଗ୍ରାମୀଙ୍କର ବାସଗୃହ । ସେହି ବାଟରେ ପଦଚାରଣ କଲାବେଳେ ସହଯାତ୍ରୀ ବନ୍ଧୁଙ୍କର ଆମେ ଦୃଷ୍ଟିଆକର୍ଷଣ କରିପାରୁଛେ କି ? ଆମ ମଧ୍ୟରେ ସେହିପ୍ରକାର ଆତ୍ମୀୟଭାବନା ଆସୁନାହିଁ କାହିଁକି ?

ଏ ହେଲା ୧୯୪୯ ମସିହାର କଥା । ଅଳ୍ପଦିନ ପୂର୍ବରୁ ପୂର୍ବତନ ଗଡ଼ଜାତ ଓଡ଼ିଶା ସହିତ ମିଶ୍ରଣ ହୋଇଥାଏ । ରାଜାଙ୍କ ପରିବର୍ତ୍ତେ ଢେଙ୍କାନାଳର ସର୍ବୋଚ୍ଚ ଶାସକ କଲେକ୍ଟର । ଢେଙ୍କାନାଳ ଷ୍ଟେସନରୁ ଛୋଟ ବସ୍‌ଟିଏ କପିଳାସ ପର୍ବତ ପାଖ ଦେଇ ଦିନରେ ଥରଟିଏ ଯାତାୟାତ କରୁଥାଏ । ବସ୍‌ଟି ପ୍ରାୟ ସଂଧ୍ୟାବେଳକୁ ପର୍ବତ ତଳ ଦେଶର ''ଦେଓ ଗାଁ''ରେ ଓହ୍ଲାଇ ଦେଲା । ସେଠାରେ ଯାତ୍ରୀମାନଙ୍କର ବିଶ୍ରାମ ପାଇଁ ରାଜାଶାସନ ଅମଳରୁ କୋଠାଘରଟିଏ ରହିଥାଏ । ଆମ ଦୁଇବନ୍ଧୁଙ୍କ ସହିତ ତାଳଚେରର ଗୋଟିଏ ପରିବାର ବସ୍‌ରୁ ଓହ୍ଲାଇ ସେଇଠି ଆଶ୍ରୟ ନେଲେ । ସେମାନେ ଆସିଥିଲେ ସନ୍ତାନପ୍ରାପ୍ତିର କାମନା କରି କପିଳାସର ଅଧିଷ୍ଠାତା ଚନ୍ଦ୍ରଶେଖରଙ୍କୁ ଆରାଧନା କରିବା ପାଇଁ । ଚାରିଆଡ଼େ ଭୟଙ୍କର ଜଙ୍ଗଲ । ସର୍ବଦା ଭାଲୁର ଭୟ ଥାଏ । କୌଣସି ପ୍ରକାରେ ରାତି କଟିଗଲା ।

ସେକାଳରେ କପିଳାସ ପର୍ବତ ଉପରକୁ ପାହାଚ ତିଆରି ହୋଇ ନଥିଲା । ଉପରକୁ ଯିବା ରାସ୍ତା ଥିଲା ଅତ୍ୟନ୍ତ କଙ୍କରିଳ ଓ ବିଷମ । ପାହାଡ଼ ଚଲା ରାସ୍ତାରେ ଧୀରେ ଧୀରେ ପାଦ ପକାଇବାକୁ ହୁଏ । ସାମାନ୍ୟ ଅସାବଧାନ ହେଲେ ଗିରି ଗହ୍ୱରରେ ପତନ ଅବଶ୍ୟମ୍ଭାବୀ । ପର୍ବତର ମଧ୍ୟ ଭାଗରେ ଚନ୍ଦ୍ରଶେଖରଙ୍କର ମନ୍ଦିର । ଗଜପତି ପ୍ରତାପରୁଦ୍ର ଏହି ମନ୍ଦିର ନିର୍ମାଣ କରିଥିଲେ ବୋଲି ଅନୁମିତ ହୁଏ । ଚିରସ୍ରୋତା ଝରଣାଟିଏ ମହାଦେବଙ୍କ ପାଦସ୍ପର୍ଶ କରି କଳକଳ ନାଦରେ ପ୍ରବାହିତ ହେଉଛି ତଳଦେଶକୁ କେଉଁ ଅନାଦିକାଳରୁ । ଚନ୍ଦ୍ରଶେଖର ଅତ୍ୟନ୍ତ ବିଖ୍ୟାତ ଠାକୁର । ଏହି ଝରଣାର ପାଣିରେ ଅସୁମାରୀ ଭେଷଜ ବୃକ୍ଷର ଚେର ସ୍ପର୍ଶ କରୁଥିବାରୁ ଏହାର ଔଷଧୀୟ ଗୁଣ ଅପରିସୀମ । ଅନେକ ରୋଗୀ ଏଠାରେ ଦୀର୍ଘଦିନ ଅବସ୍ଥାନ କରନ୍ତି ଏହି ଝରଣାର ଜଳକୁ ପାନ କରି ଆରୋଗ୍ୟ ହେବା ପାଇଁ । ବର୍ଷରେ ଏକାଧିକ ବାର ଏଠାରେ ଭକ୍ତମାନଙ୍କର ମେଳା ହୁଏ । ହଜାର ହଜାର ଯାତ୍ରୀ ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ଧାଇଁ ଆସନ୍ତି ଚନ୍ଦ୍ରଶେଖରଙ୍କୁ ଆରାଧନା କରିବା ପାଇଁ । ଭକ୍ତମାନଙ୍କ ଉଦ୍ଦେଶ୍ୟରେ ରାଜାଙ୍କ ଅମଳରେ କେତୋଟି ଯାତ୍ରୀନିବାସ ଏଠାରେ ତିଆରି ହୋଇଥିଲା । ସୁଉଚ୍ଚ ପର୍ବତର ପ୍ରାକୃତିକ ଐଶ୍ୱର୍ଯ୍ୟ ଓ ଭୀମକାନ୍ତ ଶୋଭା ବାସ୍ତବିକ ଅବର୍ଣ୍ଣନୀୟ । ଋଷିଜନ ସେବିତ ପବିତ୍ର ଏହି ଭୂମି । ପର୍ବତର ସ୍ଥାନେସ୍ଥାନେ କୁଡ଼ିଆ ନିର୍ମାଣ କରି ଅନେକ ସାଧୁ ତପସ୍ୟାରତ ଥିଲେ । ମହିମାଧର୍ମର ପ୍ରତିଷ୍ଠାତା ତପସ୍ୱୀ ମହିମା ଗୋସାଇଁ ଏହି ପର୍ବତରେ ବହୁକାଳ ମୌନ ଆଚରଣ

କରି ତପସ୍ୟା କରୁଥିଲେ । ସେ କେବଳ କ୍ଷୀର ଆହାର କରୁଥିବାରୁ ତତ୍କାଳୀନ ଢେଙ୍କାନାଳ ରାଜା ଏହି ମହାତ୍ମାଙ୍କ ପାଇଁ କ୍ଷୀରର ବ୍ୟବସ୍ଥା କରି ଦେଇଥିଲେ । ପର୍ବତର ସର୍ବୋଚ୍ଚ ଶିଖର ପ୍ରଦେଶରେ ଏକ ବିସ୍ତୃତ ସମତଳ ଭୂମି । ଏହାକୁ ଦେବସ୍ଥଳୀ କୁହାଯାଏ । ସମସ୍ତ କଷ୍ଟ ସ୍ୱୀକାର କରି ଏଠାରେ ପହଞ୍ଚିଲେ ଭକ୍ତମାନେ କେତୋଟି ଛୋଟଛୋଟ ପଥର ମନ୍ଦିର ପରି ସଜାଉଥିଲେ । ଏହା ଥିଲା ଏକ ବିଧି । ଏଥିରେ କୁଆଡ଼େ ଦେବତାମାନେ ସନ୍ତୋଷ ପ୍ରକାଶ କରନ୍ତି । ଚନ୍ଦ୍ରଶେଖରଙ୍କ ମନ୍ଦିରଠାରୁ ଦେବସ୍ଥଳୀକୁ ଯିବା ବାଟରେ ଏକ ବିଶାଳ ଗୁମ୍ଫା ଦୃଷ୍ଟିଗୋଚର ହୁଏ । ଏହାକୁ ଲୋକମାନେ କହନ୍ତି ସୀତା ଏନ୍ତୁଡ଼ିଶାଳ । ଲୋକବିଶ୍ୱାସର ଏହା ଏକ ଅପୂର୍ବ ନମୁନା ।

କପିଳାସ ପର୍ବତ ହେଉଛି ଏକପ୍ରକାର ଶୀତଳ ନିବାସ । ଏଠାରେ ଗୋଟିଏ ସପ୍ତାହ ରହିବା ପାଇଁ ଦୁଇବନ୍ଧୁ କଳ୍ପନା କରି ଯାଇଥିଲୁ । ମନ୍ଦିର ମେନେଜରଙ୍କୁ ଯାତ୍ରୀନିବାସର ବଖରାଟିଏ ଦେବା ପାଇଁ ଅନୁରୋଧ କଲୁ । ସେ କହିଲେ, ‘‘ଆପଣମାନେ ଢେଙ୍କାନାଳ କଲେକ୍ଟରଙ୍କର ଅନୁମତି ଆଣିଛନ୍ତି କି ?’’ ପୂର୍ବେ ବୋଧହୁଏ ରାଜାଙ୍କର ଅନୁମତି ଲୋଡ଼ା ହେଉଥିଲା । ଏ କଥାତ ଆମକୁ ଜଣା ନଥାଏ । ମୋର ବନ୍ଧୁ କୁଳମଣି ଅତ୍ୟନ୍ତ ଚତୁର । ମୁଁ ହତାଶ ହୋଇପଡ଼ିଥାଏ । ସେ କିନ୍ତୁ ମନରୁ ଫାନ୍ଦି କହିଲା, ‘‘କ’ଣ ! ମାମୁ କିଛି ଖବର ପଠାଇ ନାହାନ୍ତି ?’’ ମେନେଜର ପଚାରିଲେ, ‘‘ମାମୁ କିଏ ?’’ ସେ ତୁରନ୍ତ ଉତ୍ତର ଦେଲା- ‘‘ଢେଙ୍କାନାଳ କଲେକ୍ଟର ମୋର ମାମୁ । ମୋତେ ଦେଖାଇ କହିଲା, ଏ ତାଙ୍କର ଜାମାତା ।’’ ମେନେଜର ବଡ଼ ଅପ୍ରସ୍ତୁତ । ସ୍ୱୟଂ କଲେକ୍ଟରଙ୍କ ଭଣଜା ଓ ଜାମାତା । ସଙ୍ଗେ ସଙ୍ଗେ ଘର ବଖରାଟିଏ ମିଳିଗଲା । ଆମ ପାଇଁ ସ୍ୱତନ୍ତ୍ର ଭୋଗର ମଧ ବରାଦ କରିଦିଆଗଲା ।

ଆମର ଭାଗ୍ୟ ଟାଣ । ସେତେବେଳେ ପର୍ବତ ଉପରକୁ ଟେଲିଫୋନ କିମ୍ବା ବିଜୁଳି ଆଲୁଅ ନଥିଲା । ମନ୍ଦିରର ପୂଜକମାନେ ହେଲେ ଚିନ୍ତାପତ୍ରୀ । କଲେକ୍ଟରଙ୍କ ସଂପର୍କୀୟ ଜାଣି ଆମ ଦୁଇଜଣଙ୍କୁ ଆଦର କରୁଥାଆନ୍ତି । ଏକାନ୍ତରେ ମୋର ବନ୍ଧୁଙ୍କୁ କହିଲି, ‘ତୁ ଏତେବଡ଼ ମିଥ୍ୟା କଥା କହିଲୁ । କଲେକ୍ଟର ବ୍ରାହ୍ମଣ । ତୋର ପଇତା ଅଛି । ତୁ ଭଣଜା ବୋଲି କାହାରି ସନ୍ଦେହ ରହିବ ନାହିଁ । ମାତ୍ର ମୋର ତ ପଇତା ନାହିଁ । ମେନେଜର ଓ ପୂଜକମାନେ ସନ୍ଦେହ କରିବେ ନାହିଁ ?’’ ସେ ମୋତେ ବୁଦ୍ଧି ବତାଇ ଦେଲା- ଏଠାରେ ଥିବା ପର୍ଯ୍ୟନ୍ତ ଦେହରୁ ସାର୍ଟ କାଢ଼ିବୁ ନାହିଁ । ତାହାହିଁ ହେଲା । ସକାଳ ସଂଜରେ ବଣ ଭିତରେ ମାଇଲ ମାଇଲ ବୁଲୁଥାଉ । ବାଟଯାକ ନାନାପ୍ରକାର ପାଚିଲା କୋଳି ଖାଇ ପେଟ ପୂରିଯାଏ । ଝରଣା ଜଳରେ ଦୁଇଓଳି ମନଭରି ଗାଧୁଆ ଚାଲିଥାଏ ।

ଛାତ୍ରଜୀବନର ଏହି ବାହାପଆପଣ କଥା ଚିନ୍ତାକଲେ ଆଜି କୌତୁକ ଲାଗେ । କପିଳାସ ତୃତୀୟ ଦିନର ଅନ୍ତିମ ଅପରାହ୍ନ । କଟକର ଜଣେ ମାରୁଆଡ଼ି ଓ ତାଙ୍କର ଯୁବତୀ ପତ୍ନୀ ଆସି ଉପସ୍ଥିତ ହେଲେ । ଯେଉଁ ଘରଟିରେ ଆମେ ଆଶ୍ରୟ ନେଇଛୁ, ସେହି ଘର ପାଇଁ ସେମାନେ କଲେକ୍ଟରଙ୍କ ଅନୁମତି ଆଣିଥାଆନ୍ତି । ମେନେଜର ବଡ଼ ଜଞ୍ଜାଳରେ ପଡ଼ିଲେ । କଲେକ୍ଟରଙ୍କ

ଭଣଜା ଓ ଜାମାତା ସେ ଘରେ ତିନିଦିନ ହେଲା ଅଛନ୍ତି । ସଂଧ୍ୟା ମାଡ଼ି ଆସୁଛି । ମାରୁଆଡ଼ି ଯୁବକ ବଡ଼ଚିନ୍ତାରେ ପଡ଼ିଗଲେ । କେଉଁଠାରେ ଆଶ୍ରୟ ନେବେ । ସେମାନେ ଏକମାସ ପାଇଁ ଆସିଥାଆନ୍ତି ସ୍ୱାସ୍ଥ୍ୟ ପରିବର୍ତ୍ତନ ଉଦ୍ଦେଶ୍ୟରେ । ସେ ଅତିଶୟ ବିବ୍ରତ ହୋଇ ଠାକୁରଙ୍କ ମୁଖଶାଳାରେ ବିଶ୍ରାମ କଲେ । ତାଙ୍କର ପତ୍ନୀ ଆମ କୋଠରୀର ବିସ୍ତୃତ ବାରଣ୍ଡାରେ ବସି ଆମ ସହିତ ଦୁଃଖସୁଖ ହେଉଥାଆନ୍ତି । ପଚାରି ଜାଣିଲେ, ଆମେ ପୁରୀ କଲେଜର ଛାତ୍ର । ସେ ହେଉଛନ୍ତି ପୁରୀ ସହରର ଝିଅ । ତାଙ୍କର ତଳ ଭାଇ ଆମ ସହିତ ପଢୁଥିଲା । ପରିଚୟ ହୋଇଗଲା । ମାରୁଆଡ଼ି ଯୁବକ ଯେତେବେଳେ ବିବ୍ରତ ମନରେ ତାଙ୍କ ପାଖକୁ ଆସିଲେ, ସେ କହିଲେ-''ହଇଏ, ଏତେ ବ୍ୟସ୍ତ କାହିଁକି ? ଏ ଦୁଇଜଣ ମୋର ଭାଇର ସହପାଠୀ । ତେଣୁ ମୋର ଭାଇ । ଭାଇ ଘରେ ଭଉଣୀ ରହିବ । କାଲିକି ଅନ୍ୟ ଚିନ୍ତା କରିବା ।''

ଆମେ ତ ଏକପ୍ରକାର ଛାନିଆ ହୋଇଯାଇଥିଲୁ । ଧର୍ମ ଭଉଣୀଙ୍କର ଏ ପ୍ରସ୍ତାବରେ ଆମେ ଦୁହେଁ ଖୁସି ହୋଇଗଲୁ । ମେନେଜରଙ୍କର ମଧ୍ୟ ରାତିକ ପାଇଁ ଚିନ୍ତା କଟିଗଲା । ସକାଳ ହେଲେ ଲୋକ ପଠାଇ କଲେକ୍ଟରଙ୍କର ଅନୁମତି ବିଷୟରେ ବୁଝିପାରିବେ ।

ରାତ୍ରିଭୋଜନ ଜମି ଉଠିଲା । ଧର୍ମ ଭଉଣୀ ଆମକୁ ନାନାପ୍ରକାର ମିଷ୍ଟାନ୍ନରେ ଆପ୍ୟାୟିତ କଲେ । କୋଠରୀର ବାହାରକୁ ଆସି ଦୁଇବନ୍ଧୁ ମନ୍ତ୍ରଣା କଲୁ-''ଆଉ ଏଠାରେ ରହିଲେ ବିପଦ । ଆମ ଚଗଲାମି ଧରାପଡ଼ିଯିବ ।'' ତେଣୁ ପାହାନ୍ତାପହରରେ ଧରମ ଭଉଣୀ ଭିଣେଇ ଶଯ୍ୟାତ୍ୟାଗ କରିବା ପୂର୍ବରୁ କାହାକୁ କିଛି ନକହି ଓହ୍ଲାଇ ଆସିଲୁ ପର୍ବତ ତଳକୁ । ତା'ପରେ ବସ୍‌ରେ ଢେଙ୍କାନାଳ ଷ୍ଟେସନ ଓ ତାଳଚେର ଗାଡ଼ିରେ ପୁରୀ ସହରରେ ହାଜର ।

ଏଇ ବନ୍ଧୁ କୁଳମଣି ସର୍ବଭାରତୀୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଇନ୍‌କମ୍‌ଟାକ୍ସ ଅଫିସର ହେଲା ଏବଂ ଶେଷରେ ବମ୍ବେ ସହରରେ ଇନ୍‌କମ୍‌ଟାକ୍ସ କମିଶନର ହୋଇ ଅବସର ଗ୍ରହଣ କଲା । ଛାତ୍ରଜୀବନର ଅନେକ କାର୍ଯ୍ୟରେ ସେ ଥିଲା ମୋର ଅନ୍ତରଙ୍ଗ ସାଥୀ ।

ବି.ଏ. ପରୀକ୍ଷା ଫଳ ବାହାରିବା ପାଇଁ ତଥାପି ବିଳମ୍ବ ଥାଏ । ମୋର ଜଣେ ବନ୍ଧୁ ମାଧବଚନ୍ଦ୍ର ନନ୍ଦ ପ୍ରସ୍ତାବ କଲା ବାଣପୁର ବୁଲି ଯିବା ପାଇଁ । ତାକୁ ମୁଁ ଡାକୁଥିଲି ସ୍ନେହରେ ମାଧିଆ ଭାଇନା । ସେ ପୁରୀ ସଂସ୍କୃତ କଲେଜରେ ଆୟୁର୍ବେଦ ଆଚାର୍ଯ୍ୟ ଶ୍ରେଣୀର ଛାତ୍ର ଥିଲା । ସେ ଥିଲା ଛାତ୍ରନେତା । ନିଖିଳ ଓଡ଼ିଶା ସଂସ୍କୃତ ଛାତ୍ର ସମ୍ମେଳନର ସେ ଥିଲା ସଭାପତି । ମୁଁ ଖୋର୍ଦ୍ଧାର ଲୋକ ହେଲେ ମଧ୍ୟ ବାଣପୁର ଦେଖି ନଥିଲି । ବାଣପୁର ଭଗବତୀ ଓଡ଼ିଶା ବିଖ୍ୟାତ । ଦେବୀଙ୍କ ଦର୍ଶନ ସହିତ ବାଲୁଗାଁରେ ଚିଲିକା ଭ୍ରମଣ ହେବ । ଏ ସୁଯୋଗ କିଏ ଛାଡ଼େ । ଆମ ସହିତ ଆଉ ଦୁଇଜଣ ବନ୍ଧୁ ମଧ୍ୟ ସାଥୀ ହେଲେ ।

ବାଣପୁରରେ ସେତେବେଳେ ଜଣେ ମୁସଲମାନ ଆଖି ଡାକ୍ତର ଥିଲେ । ନାଁ ଆଉ ମନେନାହିଁ । ସେ ଥିଲେ ଅତ୍ୟନ୍ତ ଛାତ୍ରବତ୍ସଳ । କଲେଜ ପିଲା ବାଣପୁର ଯିବେ ଅଥଚ ତାଙ୍କ ଘରେ ଅତିଥି ହେବେ ନାହିଁ, ଏ କିପରି କଥା । ସେ ଆମକୁ ଆଦରରେ ଘରକୁ ଡାକିନେଲେ । ଭଗବତୀଙ୍କ ମନ୍ଦିରରୁ ଭୋଗ ମଗାଇଲେ । ଘରେ ତାଙ୍କର କେତେ ପ୍ରକାର ପିଠାପଣା କେତେ

ସ୍ନେହରେ ଆପ୍ୟାୟିତ କରି ସୁଖ ଅନୁଭବ କରୁଥାଆନ୍ତି । ମାର୍ଗଶିର ମାସରେ ପ୍ରତ୍ୟେକ ହିନ୍ଦୁ ଘରେ ଚିତା ପଡ଼ିଥାଏ । ଆଶ୍ଚର୍ଯ୍ୟ ହେଲି ତାଙ୍କ କାନ୍ଥରେ ଚିତା ପଡ଼ିବା ଦେଖି । ପଚାରିଲି, ଆପଣଙ୍କ ଘରେ ଏ ଚିତାପକା କିପରି ? ସେ ହସିହସି କହିଲେ, କ୍ଷତି କ'ଣ ? ମାଟି କାନ୍ଥ କେଡ଼େ ସୁନ୍ଦର ଦିଶୁଛି । ଆପଣଙ୍କ ଘରେ ଗୁରୁବାର ପିଠାପଣାର ମଉଜ ହେବ । ଆମର ହେବ ନାହିଁ କାହିଁକି ? ପର୍ବପର୍ବାଣୀ ହେଲା ଆନନ୍ଦ ଉତ୍ସବ କରିବା ପାଇଁ । କେତେବଡ଼ ଉଦାର ଭାବନା । କୌଣସି ସଂକୀର୍ଣ୍ଣ ମତାନ୍ଧତା ତାଙ୍କୁ ଆଚ୍ଛନ୍ନ କରି ନଥିଲା । ମାନବ ସେବା ହିଁ ମାଧବ ସେବା । ଏହା ଥିଲା ତାଙ୍କ ଜୀବନର ବ୍ରତ । ଏହିପରି ପ୍ରେମାପ୍ଲୁତ ଉଦାର ହୃଦୟ ଲୋକଙ୍କର ଆଜି ଅଭାବ । ଚତୁର୍ଦ୍ଦିଗରେ ସାଂପ୍ରଦାୟିକ ମତାନ୍ଧତା ଓ ଅବିଶ୍ୱାସର ହୋରି ଖେଳ । ମଣିଷକୁ ଆପଣେଇବାର ଭାବନା ଜାଗ୍ରତ ରହିଲେ ଏହି ସଂସାର ମଧୁମୟ ହୋଇଉଠନ୍ତା ।

ସଂଧ୍ୟାରେ ଭଗବତୀଙ୍କ ଆଳତି ଦର୍ଶନ କଲୁ । ବାଣପୁର ଭଗବତୀ ତନ୍ତ୍ର ସାଧନାର ଆରାଧ୍ୟା ଦେବୀ । ଏକଦା ଏଠାରେ ବୌଦ୍ଧଧର୍ମର ପ୍ରଭାବ ବିଶେଷ ଅନୁଭୂତ ହେଉଥିଲା । ଏଠାରେ ମାଟିତଳୁ ବୌଦ୍ଧଧର୍ମ ଯୁଗର ଅନେକ ପ୍ରସ୍ତରମୂର୍ତ୍ତି ଅନେକ ସମୟରେ ଆବିଷ୍କୃତ ହୋଇଥାଏ । ପ୍ରତ୍ୟେକ ବର୍ଷ ଦଶହରାରେ ଠାକୁରାଣୀଙ୍କ ପାଖରେ ପ୍ରଚୁର ପଶୁ ବଳି ପଡ଼ିଥାଏ । ଦୂର ଅତୀତରେ ଏଠାରେ ମନୁଷ୍ୟ ବଳି ଦିଆଯାଉଥିଲା । କାଳକ୍ରମେ ସେହି ପ୍ରଥା ଲୋପ ହୋଇଥିଲେ ହେଁ ବିଧିରକ୍ଷା କରାଯାଉଛି । ବଳି ହେବାପାଇଁ ଗୋଟିଏ ପରିବାର ପ୍ରଚୁର ଜମି ଭୋଗ କରୁଅଛନ୍ତି । ଏମାନେ ହେଲେ ବଳିଯେନା ପରିବାର । ଏହି ପରିବାରର ମୁରବୀ ଦଶହରା ତିନିପୂଜା ସମୟରେ ଠାକୁରାଣୀଙ୍କ ମନ୍ଦିରରେ ଗୋଟିଏ ରାତି ଆବଦ୍ଧ ହୋଇ ରହନ୍ତି । ଲୋକବିଶ୍ୱାସ ଯେ ଠାକୁରାଣୀ ତାଙ୍କର ରକ୍ତପାନ କରନ୍ତି । ପାହାନ୍ତାବେଳକୁ ବଳି ଯେନା କାହାକୁ ଦେଖା ନଦେଇ ମନ୍ଦିରରୁ ବାହାରି ପଳାନ୍ତି । ତାଙ୍କ ସହିତ ଭେଟଣା ହେଲେ ଅମଙ୍ଗଳ ହେବ ବୋଲି ବିଶ୍ୱାସ କରାଯାଏ ।

ବାଣପୁର ବକ୍ଷ ଦେଇ ଚିରସ୍ରୋତା ସାଳିଆ ନଦୀ ପ୍ରବାହିତ ହୋଇ ଚିଲିକା ହ୍ରଦରେ ମଶିଯାଇଛି । କବି ରାଧାନାଥ ଚିଲିକାର ଦୃଶ୍ୟରେ ମୁଗ୍ଧ ହେବା ସହିତ ସାଳିଆ ନଦୀର ବର୍ଣ୍ଣନା କରିଛନ୍ତି ଏହିପରି-

''ବହଇ ସାଳିଆ ପ୍ରସନ୍ନ ସଲିଳା
ତଟଦେଶେ ଯାର ଶୈଳ ଘଣ୍ଟଶିଳା ।

ବାଣପୁରର ଅନତିଦୂରରେ ଘୋର ଜଙ୍ଗଲ ମଧ୍ୟରେ ବଙ୍କାଡ଼ ଗଡ଼ । ଏକଦା ଏହା ଏକ ସ୍ୱାଧୀନ ରାଜବଂଶର ରାଜଧାନୀ ଥିଲା । ଇଂରେଜମାନେ ୧୮୦୩ ସାଲରେ ଓଡ଼ିଶା ଡିଭିଜନକୁ ଦଖଲ କରିଥିଲେ ମରହଟ୍ଟା ଶାସକ ମାନଙ୍କ ହାତରୁ । ମାତ୍ର ୧୮୧୭ ସାଲରେ ଖୋର୍ଦ୍ଧା ରାଜାଙ୍କ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କ ନେତୃତ୍ୱରେ ପାଇକମାନେ ବିଦ୍ରୋହ କରିଥିଲେ ଇଂରେଜମାନଙ୍କ ବିରୁଦ୍ଧରେ । ବାଣପୁରର ଖଣ୍ଡାୟତ ବାହିନୀ ଏହି ସଂଗ୍ରାମରେ

ପ୍ରବଳ ପରାକ୍ରାନ୍ତ ହୋଇ ଇଂରେଜମାନଙ୍କର ଅଶେଷ କ୍ଷତି ସାଧନ କରିଥିଲେ । ଅବଶ୍ୟ ନିର୍ମମ ଭାବରେ ପାଇକ ବିଦ୍ରୋହକୁ ଦମନ କରାଯାଇଥିଲା ।

ଆଧୁନିକ ଯୁଗରେ ନାନା କାରଣରୁ ବାଣପୁର ସ୍ମରଣୀୟ । ୧୯୦୯ ସାଲରେ ଉତ୍କଳମଣି ଗୋପବନ୍ଧୁ ପୁରୀ ଜିଲ୍ଲାର ସତ୍ୟବାଦୀରେ ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ବାଣପୁରର ପଣ୍ଡିତ ଗୋଦାବରୀଶ ସମସ୍ତ ତ୍ୟାଗ ସ୍ୱୀକାର କରି ଏହି ବିଦ୍ୟାଳୟରେ ଶିକ୍ଷକତା କରିଥିବାର ଜଣାଯାଏ । ମାତ୍ର ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନ ଯୋଗୁ ସତ୍ୟବାଦୀ ସ୍କୁଲ ବନ୍ଦ ହୋଇଗଲା । ପଣ୍ଡିତ ଗୋଦାବରୀଶ ମିଶ୍ର କିଛିକାଳ ସିଂହଭୂମିରେ ଓଡ଼ିଆ ଭାଷା ପ୍ରଚାର କରିସାରି ଫେରି ଆସିଲେ ବାଣପୁରକୁ । ସତ୍ୟବାଦୀ ସ୍କୁଲ ଆଦର୍ଶରେ ଶିକ୍ଷାର ପ୍ରସାର ପାଇଁ ପ୍ରତିଷ୍ଠା କଲେ ବାଣପୁର ହାଇସ୍କୁଲ ।

ବାଣପୁର କେବଳ କବି ଗୋଦାବରୀଶଙ୍କୁ କୋଳରେ ଧରି ଧନ୍ୟ ହୋଇ ନାହିଁ, କବି ଗୋଦାବରୀଶ ମହାପାତ୍ର ଓ କବି ମାୟାଧର ମାନସିଂହ ଏହି ବାଣପୁର ଅଞ୍ଚଳର ସନ୍ତାନ । କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ଲୀଳାକ୍ଷେତ୍ର ମଧ୍ୟ ଏହି ବାଣପୁର ।

କବି କଳ୍ପନାରେ ଚିଲିକା ହେଉଛି ଉତ୍କଳ ଲକ୍ଷ୍ମୀଙ୍କର କ୍ରୀଡ଼ା ସରୋବର । ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିହ୍ୱଳିତ କବି କହିପାରନ୍ତି, ''ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ ।'' ମାତ୍ର କେହି ଆଜି ସ୍ମରଣ କରୁନାହାନ୍ତି ହଜାର ହଜାର ବର୍ଷ ପୂର୍ବର ଚିଲିକାର ଐତିହ୍ୟ ଓ ଗୌରବମୟ ପରଂପରା । ପ୍ରାକୃତିକ ବିପ୍ଳାତରେ ବିଶାଳ ଚିଲିକା କ୍ରମେ କ୍ରମେ ସଂକୁଚିତ ହୋଇଯାଉଛି । ସେହି ଐତିହାସିକ ଯୁଗରେ ଚିଲିକା ଥିଲା ପୃଥିବୀର ପ୍ରସିଦ୍ଧ ନୌବନ୍ଦର । ସମଗ୍ର ପୃଥିବୀର ବିଭିନ୍ନ ପୋତାଶ୍ରୟର ନୌବହର ଚିଲିକା ବକ୍ଷରେ ଭାସି ବୁଲୁଥିଲେ ବାଣିଜ୍ୟ କରିବା ପାଇଁ । ଦକ୍ଷିଣ ଭାରତରୁ ଉତ୍ତର ଭାରତକୁ ଅଥବା ଉତ୍ତର ଭାରତରୁ ଦକ୍ଷିଣ ଭାରତକୁ ଗମନାଗମନ କରିବାର ଏହା ଥିଲା ସୁଗମ ପଥ । ଯୁଗେଯୁଗେ କେତେ ଯୁଦ୍ଧଯାତ୍ରୀ, ତୀର୍ଥଯାତ୍ରୀ ଓ ଭ୍ରମଣକାରୀ ଚିଲିକାର ସୁନୀଳ ବକ୍ଷଦେଶକୁ ଅତିକ୍ରମ କରିଆସିଅଛନ୍ତି ।

ଶରତକାଳରେ ହିମାଳୟ ପର୍ବତମାଳା ଅତିକ୍ରମ କରି ସୁଦୂର ମଧ୍ୟ ଏସିଆରୁ ଉଡ଼ି ଆସନ୍ତି ଲକ୍ଷଲକ୍ଷ ପକ୍ଷୀ ଚିଲିକାବକ୍ଷରେ ଆଶ୍ରୟ ଗ୍ରହଣ କରିବା ପାଇଁ । ସେମାନଙ୍କର କଳରବରେ ଚିଲିକା ସଂଗୀତ ମୁଖର ହୋଇଉଠେ । କବିଙ୍କ ଭାଷାରେ 'ନୀଳବକ୍ଷ ତୋର ସଂଗୀତେ ମୁଖର ।'' ସ୍ୱାଧୀନ ଓଡ଼ିଶାର ଐତିହାସିକ କ୍ରମବିବର୍ତ୍ତନର ମୂକ ସାକ୍ଷୀ ହେଉଛି ଚିଲିକା ।

'ଚିଲିକା' ସହିତ ଶ୍ରୀଜଗନ୍ନାଥଙ୍କର ନିବିଡ଼ ସମ୍ପର୍କ । ମୁସଲମାନ ରାଜତ୍ୱକାଳରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ବାରମ୍ବାର ଲୁଣ୍ଠିତ ହୋଇଛି । ସେମାନଙ୍କ ଅତ୍ୟାଚାର ଓ ଉତ୍ପୀଡ଼ନରୁ ରକ୍ଷା କରିବା ପାଇଁ ଶ୍ରୀମନ୍ଦିରର ପଣ୍ଡାମାନେ ଜଗନ୍ନାଥଙ୍କୁ ଗୋପନରେ ନେଇ ଚିଲିକା ବକ୍ଷରେ ଥିବା ପର୍ବତ ଉପରେ କିମ୍ବା ଚିଲିକା କୂଳରେ ଥିବା ଗ୍ରାମରେ ବାରମ୍ବାର ଲୁଚାଇ ରଖିଛନ୍ତି । ନଚେତ୍ କୂଳବର୍ତ୍ତୀ ମାଳ ଅଞ୍ଚଳର ଘୋର ଅରଣ୍ୟ ମଧ୍ୟରେ ତିନିମୂର୍ତ୍ତି ଗୋପ୍ୟ ହୋଇଛନ୍ତି କିଛିକାଳ ପାଇଁ ।

ପୁରୀ ସହରର ପ୍ରଧାନ ଅଧିବାସୀ ହେଲେ ଶ୍ରୀମନ୍ଦିରର ପୂଜକ ଓ ଶୁଆର ସମ୍ପ୍ରଦାୟ । ଅପୂର୍ବ ଏମାନଙ୍କର ଜୀବନଦର୍ଶନ ଓ ଦୈନନ୍ଦିନ ଚଳଣି । ଏମାନଙ୍କ ଦୈନିକ ଲିପିରେ "ଆସନ୍ତାକାଲି" ଶବ୍ଦ ନାହିଁ । ଏମାନେ ଜାଣନ୍ତି, ଶ୍ରୀମନ୍ଦିରରେ କାଳିଆ ପ୍ରଭୁ ଥିଲା ପର୍ଯ୍ୟନ୍ତ ସେମାନଙ୍କର କୌଣସି ଅଭାବ ରହିବ ନାହିଁ । ତେଣୁ ବର୍ଷତମାମ୍ ଭୋଜିଭାତ, ମଉଜମଜଲିସ୍ ଲାଗି ରହିଥାଏ । ଠାକୁରମାନଙ୍କର ଯାତ୍ରା ପର୍ବକୁ ଉପଲକ୍ଷ୍ୟ କରି ସେମାନେ କହିବୁଲନ୍ତି, "ମରିଗଲେ ପାଣି ପତରେ ପାଇବୁ ମଉଜ ପାଇବୁ କାହିଁ ?" ଭବିଷ୍ୟତ ପାଇଁ ମନରେ ସାମାନ୍ୟ ଦକ ନାହିଁ । ସବୁଥି ପାଇଁ କାଳିଆଠାକୁର ଅଛି । କାଳିଆଠାକୁର କ'ଣ ସାମାନ୍ୟ ଭୋଗୀ ? ତାଙ୍କୁ ଆଶ୍ରା କରି ପଡ଼ି ରହିଥିବା ସେବକମାନେ ମଉଜିଆ ହେବେ ନାହିଁ କାହିଁକି ? ଦୁନିଆର ହାଲହକିକତ୍ ସେମାନଙ୍କ ମନରେ ବିଶେଷ ପ୍ରଭାବ ବିସ୍ତାର କରିପାରେ ନାହିଁ ।

ପୁରୀର ବଡ଼ଦାଣ୍ଡ ଏକ କ୍ଷୁଦ୍ର ଭାରତବର୍ଷ । କେବଳ ଶ୍ରୀମନ୍ଦିରର ସିଂହଦ୍ୱାରରେ ଠିଆ ହେଲେ ଜଣେ ଭେଟିପାରିବ ଭାରତର ସର୍ବାଞ୍ଚଳର ମୁକ୍ତିକାମୀ ତୀର୍ଥଯାତ୍ରୀମାନଙ୍କୁ ସେମାନଙ୍କର ସ୍ୱତନ୍ତ୍ର ଜାତୀୟ ପୋଷାକରେ । ଯିଏ ଯେଉଁ ଭାଷାରେ କଥା ହୁଅନ୍ତୁ ନା କାହିଁକି, ସେମାନଙ୍କର ଏଠାରେ କୌଣସି ଅସୁବିଧା ହୁଏ ନାହିଁ । ପୁରୀର ପଣ୍ଡାମାନେ ଭାରତର ବିଭିନ୍ନ ଅଂଚଳର ଦାୟିତ୍ୱରେ ଥାଆନ୍ତି । ସେମାନଙ୍କର ଭାଷାରେ ପଣ୍ଡାମାନଙ୍କର ଅଧିକାର । ପଣ୍ଡାମାନେ ପୁରୁଷାନୁକ୍ରମେ ଯାତ୍ରୀମାନଙ୍କର ବଂଶାନୁଚରିତ ଲିପିବଦ୍ଧ କରି ରଖିଛନ୍ତି । ତେଣୁ ବିଦେଶାଗତ ଯାତ୍ରୀମାନେ ସେମାନଙ୍କର ବଂଶ ପରିଚୟ ଲାଭ କରି ମୁଗ୍ଧ ହୋଇଉଠନ୍ତି ।

ପୁରୀ ପଣ୍ଡାମାନଙ୍କର ମୈତ୍ରୀଭାବନା ଉଲ୍ଲେଖନୀୟ । ଯେତେ ଯାତ୍ରୀ ଆସନ୍ତୁ, ସମସ୍ତେ ନିର୍ଦ୍ଦିଷ୍ଟ ପଣ୍ଡାମାନଙ୍କର ଅତିଥି । ସେମାନଙ୍କର ରହିବା ଓ ଖାଇବାର ବନ୍ଦୋବସ୍ତ ପଣ୍ଡାମାନେ କରିଥାଆନ୍ତି । ଏବେ କେତେ ବର୍ଷ ହେଲା ହୋଟେଲ ଶିଳ୍ପର ବିସ୍ତାର ଘଟିଛି । ତେବେ ସୁଦ୍ଧା ଲକ୍ଷଲକ୍ଷ ଯାତ୍ରୀ ହୋଟେଲରେ ସ୍ଥାନ ଖୋଜନ୍ତି ନାହିଁ । ସେମାନଙ୍କ ପାଇଁ ଅସଂଖ୍ୟ ଯାତ୍ରୀନିବାସ ରହିଚି । ପୁରୀ ରହଣି କାଳରେ ଯାତ୍ରୀମାନଙ୍କର ସମସ୍ତ ପ୍ରକାର ରହିବା, ଖାଇବା ଓ ବିଭିନ୍ନ ତୀର୍ଥ ଦର୍ଶନ କରାଇବାର ବ୍ୟବସ୍ଥା ପଣ୍ଡାମାନଙ୍କ ତରଫରୁ ହୋଇଥାଏ । ଯଦି କୌଣସି କାରଣରୁ ଯାତ୍ରୀ ଅର୍ଥଶୂନ୍ୟ ହୋଇଯାଏ, ତାର ଦେଶକୁ ଫେରିଯିବାର ବ୍ୟବସ୍ଥା ମଧ ପଣ୍ଡାମାନେ କରିଦିଅନ୍ତି । ଅବଶ୍ୟ ଯାତ୍ରୀ ଫେରିଯାଇ ପଣ୍ଡାଙ୍କର ଦେୟ ଫେରାଇଦେବେ । ସବୁ କେବଳ ବିଶ୍ୱାସର ଖେଳ ।

ଭାରତର କୌଣସି ତୀର୍ଥସ୍ଥାନରେ ଏ ପ୍ରକାର ବ୍ୟବସ୍ଥା ସ୍ୱପ୍ନପ୍ରାୟ । ଏପରି ଆପଣେଇବାର ସଂସ୍କୃତି ଅନ୍ୟତ୍ର ଦୁର୍ଲ୍ଲଭ । ସେହି କାରଣରୁ ପୁରୀର ଗୌରବ ହେଲା- ସମତାର ଆହ୍ୱାନ । ପ୍ରେମର ମନ୍ତ୍ର । ଏଠାରେ ଜାତିର ବାଛବିଚାର ନାହିଁ ଶ୍ରୀଜଗନ୍ନାଥଙ୍କ ପାଖରେ ।

# ତରୁଣର ସଂପାଦନା-ମର୍ଯ୍ୟାଦା

୧୯୪୬ ସାଲର କଥା । ବିଲାତର ମନ୍ତ୍ରୀପରିଷଦ ଘୋଷଣା କରିଥାଆନ୍ତି ବର୍ଷକ ମଧ୍ୟରେ ଭାରତକୁ ସ୍ୱାଧୀନତା ପ୍ରଦାନ କରାଯିବ । ଉଣେଇଶ ବୟାଳିଶ ମସିହା ଅଗଷ୍ଟ ନଅ ତାରିଖ ଦିନ ଭାରତ ଛାଡ଼ ଆନ୍ଦୋଳନର ଅବ୍ୟବହିତ ପୂର୍ବରୁ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟବୃନ୍ଦଙ୍କୁ ରାଜବନ୍ଦୀ କରି ଅହମ୍ମଦାବାଦ ଦୁର୍ଗରେ ଆବଦ୍ଧ କରାଯାଇଥାଏ । ପଣ୍ଡିତ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ରାଜେନ୍ଦ୍ର ପ୍ରସାଦ ଆଚାର୍ଯ୍ୟ, କୃପାଳିଣୀ, ମୌଲାନା ଆବୁଲକଲମ ଆଜାଦ ପ୍ରଭୃତିଙ୍କ ସହିତ ଓଡ଼ିଶାର ନେତା ହରେକୃଷ୍ଣ ମହତାବ ମଧ୍ୟ ବନ୍ଦୀ ହୋଇଥାଆନ୍ତି । ଆଗା ଖାଁଙ୍କ ରାଜପ୍ରାସାଦରେ ମହାତ୍ମାଗାନ୍ଧୀଙ୍କୁ ବନ୍ଦୀ କରାଯାଇଥାଏ ।

ଦୀର୍ଘକାଳର ସଂଗ୍ରାମ ଓ ଆଲୋଚନା ପରେ ଦ୍ୱିତୀୟ ମହାଯୁଦ୍ଧ ଶେଷରେ ବିଲାତର ଶ୍ରମିକ ସରକାର କଂଗ୍ରେସ ନେତାମାନଙ୍କୁ ଖଲାସ କରିଦେଲେ । କେନ୍ଦ୍ରରେ ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଢ଼ାଯାଇଥାଏ । ଓଡ଼ିଶାରେ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥାନ୍ତି ହରେକୃଷ୍ଣ ମହତାବ । ସେ ଡୁଡୁମା ଜଳପ୍ରପାତରୁ ବିଦ୍ୟୁତଶକ୍ତି ବଣ୍ଟନ ସଂପର୍କରେ ପଡ଼ୋଶୀ ପ୍ରାଦେଶିକ ସରକାରଙ୍କ ସହିତ ଏକ ଚୁକ୍ତି କରିଥାଆନ୍ତି । ଏଥିପାଇଁ ଉତ୍କଳ ସମ୍ମିଳନୀ ନେତୃତ୍ୱରେ ଐତିହାସିକ ଡୁଡୁମା ଆନ୍ଦୋଳନ ଓଡ଼ିଶାରେ ଚହଳ ପକାଇଥାଏ । ଏହି ସମୟରେ ପ୍ରଧାନମନ୍ତ୍ରୀ ମହତାବ ପୁରୀର ସିଂହଦ୍ୱାରଠାରେ ଏକ ସଭାର ଆୟୋଜନ କରି ବକ୍ତୃତା ଦେଉଥାଆନ୍ତି । ଏହି ଲେଖକ ପୁରୀ କଲେଜର ପ୍ରଥମ ବର୍ଷର ଛାତ୍ର ଥାଇ ଡୁଡୁମା ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥାଏ । ସେହି ସଭାରେ ସେ ଏକମାତ୍ର ଛାତ୍ର ଯେକି ମହତାବଙ୍କୁ ପ୍ରଶ୍ନ ପଚାରିଥିଲା: ''ଡୁଡୁମା ବିଜୁଳିଶକ୍ତିର ହସ୍ତାନ୍ତର କିପରି ଓଡ଼ିଶାର ସ୍ୱାର୍ଥର ବିରୋଧୀ ।'' ସେହି ତରୁଣ ଛାତ୍ରର ଦୁଃସାହସ ହୁଏତ ଶ୍ରୀ ମହତାବଙ୍କର ଦୃଷ୍ଟି ଆକର୍ଷଣ କରିଥିବ ।

ସ୍ୱାଧୀନତା ପଦାର୍ପଣ କଲା ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ ଏବଂ ଶ୍ରୀ ମହତାବ ହେଲେ ସ୍ୱାଧୀନ ଓଡ଼ିଶା ପ୍ରଦେଶର ପ୍ରଥମ ମୁଖ୍ୟମନ୍ତ୍ରୀ ।

ପରାଧୀନତାର ଗ୍ଳାନି ଓ ଦ୍ୱିତୀୟ ମହାଯୁଦ୍ଧର ଅବସାଦ ଭାରତର ଯୁବଶକ୍ତିକୁ ମ୍ରିୟମାଣ କରିଦେଇଥିଲା । ସେମାନେ ଥିଲେ ଏକପ୍ରକାର ନେତୃତ୍ୱହୀନ । ଶ୍ରୀ ମହତାବଙ୍କର ଯୁବଶକ୍ତି ଉପରେ ଥିଲା ଅମାପ ଆସ୍ଥା ଓ ବିଶ୍ୱାସ । ସେ ଅନୁଭବ କଲେ ଯେ ଦେଶର ତରୁଣମାନଙ୍କର

ପ୍ରତିଭାକୁ ବିନିଯୋଗ କଲେ ଅନେକ ଅସାଧ୍ୟ କାର୍ଯ୍ୟ ସାଧନ ହୋଇପାରିବ । ତେଣୁ ଦେଶର ତରୁଣ ବ୍ୟକ୍ତିତ୍ୱର ଉପଯୋଗ ପାଇଁ ପ୍ରତିଷ୍ଠା କଲେ ପ୍ରଜାତନ୍ତ୍ର ଦୈନିକ ସଂବାଦପତ୍ର ଓ ଇଂରାଜୀ ଦୈନିକ ଇଷ୍ଟର୍ଣ୍ଣ ଟାଇମସ୍ । ଏହି ଦୁଇଟି ସମ୍ବାଦପତ୍ରରେ ମୁଖ୍ୟ ସଂପାଦକ ଏବଂ ସହକାରୀ ସଂପାଦକ ଭାବରେ ଯେଉଁମାନଙ୍କୁ ଦାୟିତ୍ୱ ପ୍ରଦାନ କଲେ, ସେମାନେ ସମସ୍ତେ ଥିଲେ ବୟସରେ ତରୁଣ ଏବଂ ଅନଭିଜ୍ଞ । ସେ କାଳରେ ଯେଉଁ କେତୋଟି ସଂବାଦପତ୍ର ଥିଲା, ତାହାର ସଂପାଦକ ମଣ୍ଡଳୀରେ ରହିଥିଲେ ପ୍ରତିଷ୍ଠିତ ଓ ଅଭିଜ୍ଞ ସାମ୍ବାଦିକଗଣ । ଯେଉଁ ମୁଷ୍ଟିମେୟ ମାସିକ ସାହିତ୍ୟ ପତ୍ରିକା ପ୍ରକାଶିତ ହେଉଥିଲା, ତହିଁରେ କେବଳ ଡିଗ୍ରୀଧାରୀ ପ୍ରବୀଣମାନେ ହିଁ ଲେଖାପ୍ରକାଶ କରିବାର ଅଧିକାରୀ ଥିଲେ ।

ଏହି କ୍ଷେତ୍ରରେ ପ୍ରଜାତନ୍ତ୍ର ଅନୁଷ୍ଠାନ ଥିଲା ଏକ ବ୍ୟତିକ୍ରମ । ତରୁଣ ପ୍ରତିଭାର ସାରସ୍ୱତ ସାଧନା ପାଇଁ ଦୈନିକ ପ୍ରଜାତନ୍ତ୍ରର ରବିବାର ସାହିତ୍ୟ ବିଭାଗ, ଶିଶୁ ସାହିତ୍ୟ ପାଇଁ ମୀନାବଜାର, ନାରୀ ସମସ୍ୟା ପାଇଁ ନାରୀ ମହଲ, କ୍ରୀଡ଼ା ଓ ଆମୋଦପ୍ରମୋଦ ପାଇଁ ଚଳଚ୍ଚିତ୍ର ତଥା ନାଟକ ପୃଷ୍ଠା, ହାସ୍ୟ ଓ ବ୍ୟଙ୍ଗ ପାଇଁ ଫାର୍ସିଚାନ୍ଦ କଲମର ଆୟୋଜନ କରାଗଲା । ପୁରୀ କଲେଜର ଛାତ୍ର ଥିବା ସମୟରେ ଏହି ତରୁଣ ଲେଖକର କେତୋଟି ସାହିତ୍ୟ ସମାଲୋଚନା ରବିବାର ପ୍ରଜାତନ୍ତ୍ରରେ ପ୍ରକାଶିତ ହୋଇ ଶ୍ରୀ ମହତାବଙ୍କର ଆଶୀର୍ବାଦ ଲାଭ କରିଥିଲା । ବଳିଷ୍ଠ ସାହିତ୍ୟର ପ୍ରସାର ପାଇଁ ପ୍ରଜାତନ୍ତ୍ର ଅନୁଷ୍ଠାନ ଆନୁକୂଲ୍ୟରେ ପ୍ରକାଶିତ ହେଲା ମାସିକ ସାହିତ୍ୟପତ୍ରିକା ‘‘ଝଙ୍କାର’’ ।

ଏହି ଲେଖକର ପରମ ସୌଭାଗ୍ୟ ଯେ ୧୯୫୦ ମସିହାରେ ରେଭେନ୍ସା କଲେଜରେ ଓଡ଼ିଆ ଏମ୍.ଏ କ୍ଲାସର ଛାତ୍ର ଥିଲାବେଳେ ଶ୍ରୀ ମହତାବଙ୍କର ସସ୍ନେହ ଆଦେଶରେ ଝଙ୍କାର ଓ ରବିବାର ପ୍ରଜାତନ୍ତ୍ରର ସଂପାଦନାରେ ଯୋଗ ଦେଇଥିଲା । ରବିବାର ପ୍ରଜାତନ୍ତ୍ର ସାହିତ୍ୟ ବିଭାଗର ସମ୍ପୂର୍ଣ୍ଣ ଦାୟିତ୍ୱ ରହିଥିଲା ଏହି ଲେଖକ ଉପରେ । ଝଙ୍କାର ସଂପାଦନାରେ ସେ ସହଯୋଗ କରୁଥିଲା ସହପାଠୀ ବନ୍ଧୁ ଚକ୍ରଧର ସାମଲଙ୍କୁ । ସଂପାଦନାରେ ସଂପୂର୍ଣ୍ଣ ସ୍ୱାଧୀନତା ମିଳୁଥିଲା । ଏପରିକି ମୁଖ୍ୟ ସଂପାଦକ ମଧ୍ୟ ହସ୍ତକ୍ଷେପ କରୁନଥିଲେ । ବାସ୍ତବିକ ଏହା ଥିଲା ଏକ ଅମୃତ ଅନୁଭବ । ବହୁ ବରେଣ୍ୟ ଅଧ୍ୟାପକ ଓ ଲେଖକଙ୍କର ଲେଖାକୁ ସଂପାଦନା କରିବାର ସୁଯୋଗ ଆନୟନ କରିଥିଲା ଗଭୀର ଆତ୍ମବିଶ୍ୱାସ ଓ ମର୍ଯ୍ୟାଦାବୋଧ ।

ଓଡ଼ିଶାର ସାମ୍ବାଦିକତା ଓ ରାଜନୀତି କ୍ଷେତ୍ରରେ ପ୍ରଜାତନ୍ତ୍ର ପରିବାରର ଅନେକ ସଭ୍ୟ ପରବର୍ତ୍ତୀକାଳରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ଏମାନେ ହେଲେ ଚିନ୍ତାମଣି ପାଣିଗ୍ରାହୀ, ଜାନକୀ ବଲ୍ଲଭ ପଟ୍ଟନାୟକ, ସତ୍ୟାନନ୍ଦ ଚମ୍ପତିରାୟ, ଚନ୍ଦ୍ରଶେଖର ମହାପାତ୍ର, ଶଶିଭୂଷଣ ମିଶ୍ର, ରାମପ୍ରସାଦ ମହାନ୍ତି, ରମେଶ ଚନ୍ଦ୍ର ମହାନ୍ତି, ଦେବେନ୍ଦ୍ର ମହାନ୍ତି, ଭୈରବ ଚନ୍ଦ୍ର ମହାନ୍ତି, ନୀଳମଣି ରାଉତରାୟ, ଚକ୍ରଧର ସାମଲ ପ୍ରଭୃତି ଅନେକ ।

ରବିବାର ପ୍ରଜାତନ୍ତ୍ର ଓ ‘ଝଙ୍କାର’ର ସଂପାଦନା ସମୟସୀମା ସ୍ୱଳ୍ପକାଳ ହେଲେ ହେଁ ଓଡ଼ିଶାର ବହୁ ପ୍ରବୀଣ ଓ ନବୀନ ସାହିତ୍ୟସେବୀମାନଙ୍କର ନିକଟ ସଂପର୍କରେ ଆସିବାର ସୌଭାଗ୍ୟ ମିଳିଥିଲା ।

ଶ୍ରୀ ମହତାବଙ୍କ ଉପସ୍ଥିତିରେ ପ୍ରତିଦିନ ସଂଧ୍ୟାରେ 'ଝଙ୍କାର' ଅଫିସ୍‌ରେ ଏକ ସାହିତ୍ୟିକ ଆସର ବସୁଥିଲା । ଏଥିରେ ମହତାବଙ୍କ ବ୍ୟତୀତ ଯୋଗ ଦେଉଥିଲେ ଅଧ୍ୟାପକ ରାଜକିଶୋର ରାୟ, ସୁନନ୍ଦ କର, ମହାପାତ୍ର ନୀଳମଣି ସାହୁ, ସତ୍ୟାନନ୍ଦ ଚମ୍ପତିରାୟ, ରାଜକିଶୋର ମହାନ୍ତି, ବୈକୁଣ୍ଠନାଥ ରଥ, ଚକ୍ରଧର ସାମଲ ଓ ଲେଖକ ନିଜେ ।

ଏଠାରେ ପ୍ରାୟତଃ ଆଲୋଚନା ହେଉଥିଲା ଓଡ଼ିଆ ସାହିତ୍ୟର ତତ୍‌କାଳିକ ସ୍ଥିତି ଏବଂ ତୁଳନାତ୍ମକ ଭାବରେ ଅନ୍ୟ ପ୍ରାଦେଶିକ ସାହିତ୍ୟର ପରିବେଶ ।

ଝଙ୍କାର ମାସିକ ସାହିତ୍ୟ ପତ୍ର ଏବଂ ରବିବାର ପ୍ରଜାତନ୍ତ୍ର ସାହିତ୍ୟ ବିଭାଗ ପାଇଁ ଓଡ଼ିଶାରେ ଏକ ନୂତନ ସାରସ୍ୱତ ଯୁଗର ଅଭ୍ୟୁଦୟ ହେଲା । ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ଓଡ଼ିଶାର ସର୍ବାଞ୍ଚଳର ତରୁଣ ସାହିତ୍ୟସେବୀ ଲେଖନୀ ଧରିବା ପାଇଁ ଆଗ୍ରହ ପ୍ରକାଶ କଲେ । ଅତ୍ୟନ୍ତ ବ୍ୟାକୁଳତା ପ୍ରକାଶିତ ହେଲା ରବିବାର ସାହିତ୍ୟ ପୃଷ୍ଠା ଓ ଝଙ୍କାର ପତ୍ରିକାରେ ଆତ୍ମପ୍ରକାଶ କରିବା ପାଇଁ । ଆରମ୍ଭ ହେଲା ଏକ ସାଂସ୍କୃତିକ ଆନ୍ଦୋଳନ । କେବଳ ସେତିକି ନୁହେଁ, ଓଡ଼ିଆ ସାହିତ୍ୟରେ ଆରମ୍ଭ ହେଲା ଏକ ଗବେଷଣାର ଯୁଗ । ଅନେକ ତରୁଣ ଅଧ୍ୟାପକ ଉତ୍ସାହିତ ହେଲେ ଝଙ୍କାର ପୃଷ୍ଠାରେ ଧାରାବାହିକ ଗବେଷଣା ନିବନ୍ଧ ପ୍ରକାଶ କରିବା ପାଇଁ । ସାରଳା ମହାଭାରତ ବିଷୟରେ କେତୋଟି ଉଚ୍ଚାଙ୍ଗ ଆଲୋଚନାକୁ ''ସାରଳା-ସ୍ମରଣିକା'' ନାମରେ ପ୍ରକାଶ କଲେ ପ୍ରଜାତନ୍ତ୍ର ପ୍ରଚାର ସମିତି । ବହୁ ପୂର୍ବରୁ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଓ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କର ଏକକଧର୍ମୀ ଆଲୋଚନା ପୁସ୍ତକ ପ୍ରକାଶ ପାଇଥିଲା, ମାତ୍ର ଏପରି ସାମୂହିକ ସଂକଳନ ଥିଲା ସଂପୂର୍ଣ୍ଣ ଅଭିନବ । ସେହିପରି ଝଙ୍କାର ପୃଷ୍ଠାରେ ପ୍ରକାଶିତ କେତୋଟି ସାର୍ଥକ ଗଳ୍ପର ଏକ ସଂକଳନ ମଧ୍ୟ ପ୍ରକାଶିତ ହେଲା । ତତ୍‌କାଳୀନ ପାଠକ ସମାଜ ପାଇଁ ଏହା ଥିଲା ଅତ୍ୟନ୍ତ ପ୍ରେରଣା ଦାୟକ ।

ମନେପଡୁଛି ପ୍ରଥମ ବିଷୁବ ମିଳନର ଅନୁଭୂତି । ବିଷୁବମିଳନ ଉତ୍ସବ ପ୍ରଜାତନ୍ତ୍ର ପରିସରରେ ଜନ୍ମଗ୍ରହଣ କରିଥିଲେ ହେଁ ତାହା ଆଜି ସମଗ୍ର ଓଡ଼ିଶାରେ ଏକ ସାଂସ୍କୃତିକ ଆନ୍ଦୋଳନରେ ରୂପାନ୍ତରିତ ହୋଇଯାଇଅଛି । ଦୀର୍ଘ ଅର୍ଦ୍ଧଶତାବ୍ଦୀ ପରେ ସୁଦ୍ଧା ବିଷୁବ ମିଳନ ଉତ୍ସବରେ ଯୋଗଦେବା ପାଇଁ ସର୍ବାଞ୍ଚଳର ସାହିତ୍ୟସେବୀମାନଙ୍କର ବ୍ୟାକୁଳତା ଆଜି ମଧ୍ୟ ମ୍ଳାନ ହୋଇନାହିଁ ।

ଏ ହେଉଛି ୧୯୫୦ ମସିହାର କଥା । 'ଝଙ୍କାର' କକ୍ଷର ସଂଧ୍ୟା ଆସରରେ ପ୍ରସ୍ତାବ ହେଲା ପ୍ରଜାତନ୍ତ୍ର ଓ ଝଙ୍କାରର ପତାକାତଳେ ଏକ ସାହିତ୍ୟ ସମ୍ମିଳନୀର ଆୟୋଜନ ହେବ । ରବିବାର ପ୍ରଜାତନ୍ତ୍ରର ସାହିତ୍ୟ ବିଭାଗ ଓ ଝଙ୍କାରର ଲେଖକ ଲେଖିକାମାନେ ଏଥିରେ ନିମନ୍ତ୍ରିତ ହୋଇ ଯୋଗଦାନ କରିବେ । ସାହିତ୍ୟର ବିଭିନ୍ନ ସମସ୍ୟା ବିଷୟରେ ଆଲୋଚନା ହେବ ଏବଂ ଅନୁଷ୍ଠାନ ତରଫରୁ କିଛି କୃତୀ ଲେଖକଲେଖିକାଙ୍କୁ ଏହି ପବିତ୍ର ସମାରୋହରେ ପାରିତୋଷିକ ପ୍ରଦାନ ସହିତ ସମ୍ବର୍ଦ୍ଧନା କରାଯିବ ।

ତେବେ ଏହି ଉତ୍ସବରେ ଏକ ନାଟକ ଅଭିନୟ କରିବା ପାଇଁ ପ୍ରସ୍ତାବ ହେଲା । ନାଟକ ଲେଖିବାର ଦାୟିତ୍ୱ ରହିଲା ଶ୍ରୀ ମହତାବଙ୍କ ଉପରେ । ଦୁଇଦିନ ପରେ ସଂଧ୍ୟା ଆସରରେ

ଏକାଙ୍କିକା ନାଟକ 'ବାସ୍ତବିକା' ପାଠ କରାଗଲା । ଦରଦୀ ମହତାବ ମୁକ୍ତ ହୃଦୟରେ ସାମାନ୍ୟ ସଂଶୋଧନ ପାଇଁ ସୂଚନା ଗ୍ରହଣ କରିଥିଲେ । ପ୍ରଶ୍ନ ହେଲା, କେଉଁମାନେ ଅଭିନୟ କରିବେ ? ଅନେକ କହିଲେ, ପେଶାଦାରୀ ଅଭିନେତା ଅଭିନେତ୍ରୀମାନଙ୍କର ସାହାଯ୍ୟ ଗ୍ରହଣ କରାଯାଉ । ଅତ୍ୟନ୍ତ ସନ୍ତର୍ପଣରେ ପ୍ରସ୍ତାବ କଲି ଏହା ଉଚିତ ହେବ ନାହିଁ । ବିଷୁବମିଳନ ଏକ ସାହିତ୍ୟ ସମ୍ମିଳନୀ ହେବ । ତେଣୁ ସାହିତ୍ୟସେବୀମାନେ ହିଁ ଏହି ନାଟକକୁ ପରିବେଷଣ କରିବେ । ଶ୍ରୀ ମହତାବ ସମ୍ମତି ପ୍ରକାଶ କଲେ । ଏହି ନାଟକରେ ଅଂଶଗ୍ରହଣ କରିଥିଲେ ଶ୍ରୀ ହରେକୃଷ୍ଣ ମହତାବ, ଅଧ୍ୟାପକ ରାଜକିଶୋର ରାୟ, ମହାପାତ୍ର ନୀଳମଣି ସାହୁ, ଶ୍ରୀ କୃଷ୍ଣପ୍ରସାଦ ବସୁ ଓ ଅନ୍ୟ କେତେଜଣ । ଏଥିରେ ଗୋଟିଏ ମାତ୍ର ନାରୀ ଚରିତ୍ର ଥିଲା । ଅଧିକାଂଶ ପ୍ରସ୍ତାବ କଲେ, ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ଅଥବା କୌଣସି ପେଶାଦାରୀ ଅଭିନେତ୍ରୀଙ୍କୁ ସୁଯୋଗ ଦେବାପାଇଁ । ମୋ ମନ ମାନୁ ନଥାଏ । ଚୁପ୍‌ଚାପ୍ ବସିଥାଏ । ମହତାବଜୀ ମୋ ଆଡ଼କୁ ଲକ୍ଷ୍ୟ କରି ପଚାରିଲେ, ତୁମେ କିଛି କହୁନା କାହିଁକି ? ନମ୍ରତାର ସହିତ କହିଲି, ଯେଉଁ ନାଟକରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ରେଭେନ୍ସା କଲେଜର ଅଧ୍ୟାପକ ଏବଂ ବରେଣ୍ୟ ସାହିତ୍ୟସେବୀମାନେ ଅଭିନୟ କରିବେ, ସେଠାରେ ପେଶାଦାରୀ ଅଭିନେତ୍ରୀଙ୍କୁ ସଂଯୋଗ କରିବା ସମୀଚୀନ ହେବ ନାହିଁ । କେହି ଅଧ୍ୟାପିକା କିମ୍ବା ମହିଳା ଡାକ୍ତର ଅଭିନୟରେ ଅଂଶଗ୍ରହଣ କଲେ ଭଲ ହୁଅନ୍ତା । ଶ୍ରୀ ମହତାବ ଏହି ତରୁଣ ସାହିତ୍ୟସେବୀର ଅଭିମତ ଗ୍ରହଣ କଲେ ଏବଂ ସଂଗେସଂଗେ ଟେଲିଫୋନ କଲେ ଓଡ଼ିଶାର ମୁଖ୍ୟ ବିଚାରପତି ବୀରକିଶୋର ରାୟଙ୍କର ସମାଜସେବୀ ସହଧର୍ମିଣୀ ଲତିକା ରାୟଙ୍କୁ । ତାଙ୍କର କନ୍ୟା ଦେବବାଳା ରାୟ ଥାଆନ୍ତି ରେଭେନ୍ସା ମହାବିଦ୍ୟାଳୟରେ ଅର୍ଥନୀତିର ଅଧ୍ୟାପିକା । ଲତିକା ରାୟ ଆନନ୍ଦରେ ସମ୍ମତି ଦେଲେ ତାଙ୍କର କନ୍ୟା ଏହି ସାହିତ୍ୟସେବୀମାନଙ୍କ ନାଟକରେ ଅଂଶଗ୍ରହଣ କରିବା ପାଇଁ ।

ପ୍ରଜାତନ୍ତ୍ର ପରିବାରର ମୁଖ୍ୟ ହିସାବରେ ଶ୍ରୀ ମହତାବ ସହକାରୀ ସଂପାଦକମାନଙ୍କୁ ମଧ୍ୟେମଧ୍ୟେ ଉଚିତ ପରାମର୍ଶ ଦେଉଥିଲେ ଏବଂ ପ୍ରେରଣା ପ୍ରଦାନ କରୁଥିଲେ । ପଣ୍ଡିତ ଜବାହାରଲାଲଙ୍କ ମନ୍ତ୍ରୀମଣ୍ଡଳରେ କ୍ୟାବିନେଟ୍ ମନ୍ତ୍ରୀ ଭାବରେ ଯୋଗଦେବାରୁ ଆଉ ସାହିତ୍ୟିକ ସାଂଧ୍ୟ ଆସରରେ ସଂପର୍କ ସ୍ଥାପନ ସମ୍ଭବ ହେଉ ନଥିଲା । ମାତ୍ର ବାରମ୍ବାର ଚିଠି ମାଧ୍ୟମରେ ତାଙ୍କର ପରାମର୍ଶ ଥିଲା ଅତ୍ୟନ୍ତ ମୂଲ୍ୟବାନ । ଏଠାରେ ଗୋଟିଏ ଚିଠିର ଅବିକଳ ସ୍ୱରୂପ ଏହିପରି–

୧୯, ଆକବର ରୋଡ୍

୨୨.୦୬.୧୯୫୦

ପଠାଣି,

ତୁମର ୧୮.୦୬.୫୦ ର ପତ୍ର ପାଇଲି । ଆଜି ଝଙ୍କାର ମଧ୍ୟ ପାଇଲି । ବେଶ୍ ଭଲ ହୋଇଛି, ମାତ୍ର ଅନେକ ଛାପା ଭୁଲ୍ । ପ୍ରୁଫ୍ ଦେଖିବା ଆହୁରି ଟାଣ କଲେ ହେବ । ଚକ୍ରଧର ଓ ତୁମେ ନିଜେ ଅଭ୍ୟାସ କରି ଲେଖ । ସେଥିପାଇଁ ପଢ଼ିବା ଅଭ୍ୟାସ ନିତାନ୍ତ ଦରକାର ।

ଏଠାରେ ଲେଖାଲେଖି ବା ପଢ଼ାପଢ଼ି ପାଇଁ ଦରକାରୀ ବାୟୁମଣ୍ଡଳ ସୃଷ୍ଟି ହୋଇନାହିଁ । ହୋଇଯିବ ଧୀରେଧୀରେ । ନୂଆ ଜାଗାରେ ଯେତେ ଚେଷ୍ଟା କଲେ ମଧ ଅଡୁଆ ଲାଗୁଛି ।

ମଝିରେ ମଝିରେ ପତ୍ର ଦେଉଥିବ । ତୁମର ହସ୍ତାକ୍ଷର ଭଲ । ମୋର ଅକ୍ଷର ପଢ଼ିପାରିବ ତ ? ମୋର ହସ୍ତାକ୍ଷର ପାଇଁ ମୁଁ ବଡ଼ ଲଜ୍ଜିତ ।

ତୁମର ମହତାବ

ରାଧାମୋହନ ଗଡ଼ନାୟକ ଏକ ମାସିକ ପତ୍ରିକା ବାହାର କରିବେ ବୋଲି ବିଜ୍ଞାପନ ଦେଇଥିଲେ । କଅଣ ହେଲା ? ବାହାରିଲାଣି କି ? ବାହାରିଥିଲେ କିପରି ହୋଇଛି ? ସତ୍ୟବାଦୀ ଯେପରି ଥିଲା ସେହିପରି ଅଛି ନା କିଛି ଉନ୍ନତି ହୋଇଛି ? ସୁନନ୍ଦ ''ଉତ୍କଳସାହିତ୍ୟ'' ପୁଣି ବାହାର କରିବ ବୋଲି ଲେଖିଛି । ସେ ବିଷୟ କ'ଣ ? ଏଥିରେ ଆମ ମତ ସେଠାରେ କ'ଣ ? ଚିନ୍ତାମଣି, ଚକ୍ରଧରଠାରୁ ବୁଝି ଲେଖିବ ।

ମହତାବ

ଏହି ପତ୍ରରେ କବି ରାଧାମୋହନ ଗଡ଼ନାୟକଙ୍କ ସଂପାଦିତ ''ଏକଚକ୍ର'' ସାହିତ୍ୟପତ୍ର ବିଷୟରେ ଶ୍ରୀ ମହତାବ ପଚାରିଛନ୍ତି । ମାତ୍ର ଦୁଇଟି ସଂଖ୍ୟା ପରେ ଏହି ପତ୍ରିକାର ଅକାଳ ମୃତ୍ୟୁ ହୋଇଥିଲା । ''ସମାଜ'' ଅନୁଷ୍ଠାନ ୧୯୧୫ ସାଲରେ ଗୋପବନ୍ଧୁଙ୍କ ସଂପାଦିତ ''ସତ୍ୟବାଦୀ'' ମାସିକ ସାହିତ୍ୟପତ୍ରକୁ ବହୁକାଳର ନୀରବତା ପରେ ଆଉଥରେ ପ୍ରକାଶ କରିଥିଲେ କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଅନନ୍ତପଟ୍ଟନାୟକଙ୍କ ଯୁଗ୍ମ ସଂପାଦନାରେ । ତାହା ମଧ ଅଧିକ କାଳ ବଞ୍ଚି ରହି ପାରିଲା ନାହିଁ । ସ୍ୱନାମଧନ୍ୟ ବିଶ୍ୱନାଥ କର ୧୮୯୭ ସାଲରେ ସଂପାଦନା କଲେ ପ୍ରସିଦ୍ଧ ସାହିତ୍ୟ ମାସିକ ''ଉତ୍କଳ ସାହିତ୍ୟ'' । ଏହି ପତ୍ରିକା ଥିଲା ଆଧୁନିକ ଓଡ଼ିଆ ସାହିତ୍ୟର ଏକପ୍ରକାର ଜନ୍ମଦାତା ଓ ପ୍ରତିପାଳକ । ଶ୍ରୀ କର ଆମରଣ ଅର୍ଥାତ୍ ୧୯୩୪ ସାଲ ପର୍ଯ୍ୟନ୍ତ ଏହି ସାହିତ୍ୟପତ୍ର ପ୍ରକାଶ କରିଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ର ମହାନନ୍ଦ କର ଅଳ୍ପକେତୋଟି ସଂଖ୍ୟା ବାହାର କରିଥିଲେ ହେଁ ତାଙ୍କର ଅକାଳ ମୃତ୍ୟୁ ହେବାରୁ ପତ୍ରିକାଟି ବନ୍ଦ ହୋଇଗଲା । ଅନେକ ଦିନର ବ୍ୟବଧାନ ପରେ ଶ୍ରୀ କରଙ୍କ ନାତି ସୁନନ୍ଦ କର ଉଦ୍ୟମ କରିଥିଲେ ଉତ୍କଳ ସାହିତ୍ୟ ପ୍ରକାଶନ ପାଇଁ । ମାତ୍ର ସେ ଉଦ୍ୟମ ଅଧିକକାଳ ସାର୍ଥକ ହୋଇପାରି ନଥିଲା । ତତ୍‌କାଳୀନ ସାହିତ୍ୟିକ ପାଣିପାଗ ବିଷୟରେ ଝଙ୍କାରର ମୁଖ୍ୟ ପରିଚାଳକ ଚକ୍ରଧର ସାମଲ ଏବଂ ଦୈନିକ ପ୍ରଜାତନ୍ତ୍ରର ମୁଖ୍ୟ ସଂପାଦକ ଚିନ୍ତାମଣି ପାଣିଗ୍ରାହୀଙ୍କ ସହିତ ଆଲୋଚନା କରି ଜଣାଇବା ପାଇଁ ଶ୍ରୀ ମହତାବ ଏହି ପତ୍ରରେ ଅନୁରୋଧ କରିଥିଲେ । ଶ୍ରୀ ମହତାବ୍‌ଙ୍କର ଲେଖାପଢ଼ାରେ ବ୍ୟାକୁଳତା ଥିଲା ଅତ୍ୟନ୍ତ ଅନନ୍ୟ । ସେ ନିଜେ ଲେଖିବା ପାଇଁ ଆଗ୍ରହୀ ହେବା ସହିତ ତରୁଣ ସହକର୍ମୀମାନଙ୍କୁ ମଧ ଉତ୍ସାହ

ପ୍ରଦାନ କରୁଥିଲେ । ସେହି ତରୁଣ ଛାତ୍ରଜୀବନରେ ଶ୍ରୀ ମହତାବଙ୍କ ପରି ବିଶାଳ ବ୍ୟକ୍ତିତ୍ୱଙ୍କଠାରୁ ଅନ୍ତରଙ୍ଗ ଆଶୀର୍ବାଦ ଏହି ଲେଖକ ପାଇଁ ଥିଲା ଅପୂର୍ବ ପ୍ରେରଣାର ଉତ୍ସ ।

ପ୍ରଜାତନ୍ତ୍ରର ମୁଖ୍ୟ ସଂପାଦକ ଚିନ୍ତାମଣି ପାଣିଗ୍ରାହୀଙ୍କ ସହିତ ଭାବଗତ ସଂପର୍କ ଥିଲା ପୁରୀ କଲେଜରୁ । ସେତେବେଳେ ମୁଁ ଥିଲି ପୁରୀଜିଲ୍ଲା ଉତ୍କଳବାହିନୀର ସଂପାଦକ ଏବଂ ଚିନ୍ତାମଣି ବାବୁ ଥିଲେ ନିଖିଳ ଉତ୍କଳ ବାହିନୀର ସଭାପତି । ପରବର୍ତ୍ତୀକାଳରେ ଏହି ଚିନ୍ତାମଣି ବାବୁ କେନ୍ଦ୍ରମନ୍ତ୍ରୀ ଓ ଗଭର୍ଣ୍ଣର ଭାବରେ ଅନେକବର୍ଷ କାର୍ଯ୍ୟ କରିଥିଲେ ।

ପ୍ରଜାତନ୍ତ୍ର ପରିବାରରେ ଅତ୍ୟନ୍ତ ନିକଟ ସଂପର୍କରେ ଆସିଥିଲି ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହିତ । ଅନେକଦିନ ପର୍ଯ୍ୟନ୍ତ ତାଙ୍କର ବସାଘରେ ସାହିତ୍ୟ ଆସର ଆୟୋଜନ ହୁଏ । ଏକାଠି ହୁଅନ୍ତି ଅନ୍ତରଙ୍ଗ ଅନେକ ଲେଖକ ସାଥୀ । ନାନା ବିଷୟରେ ଆଲୋଚନା ସରଗରମ ହୁଏ । ନେତୃତ୍ୱ ନିଅନ୍ତି ଜାନକୀ ବାବୁ । ଅତ୍ୟନ୍ତ ସ୍ନେହୀ ଓ ସମଧର୍ମୀ । ଦେଶର ଚଳନ୍ତି ରାଜନୀତି ଓ ନାନା ସମସ୍ୟା ଆଲୋଚନା କରି ସେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ଚିନ୍ତାମଣି ବାବୁ ଓ ଭୈରବ ବାବୁଙ୍କ ପରେ ଦୀର୍ଘକାଳ ସେ ଦୈନିକ ପ୍ରଜାତନ୍ତ୍ର ଓ ଇଷ୍ଟର୍ଣ୍ଣ ଟାଇମ୍ସର ମୁଖ୍ୟ ସଂପାଦକ ରହିଥିଲେ । ବୟସରେ ତରୁଣ ହେଲେ ହେଁ ସେ ଥିଲେ ଜ୍ଞାନଯୋଗୀ ଓ ତାଙ୍କ ସଂପାଦକୀୟ ଲେଖା ଅତ୍ୟନ୍ତ ପ୍ରଭାବଶାଳୀ ହେଉଥିଲା ।

ରବିବାର ପ୍ରଜାତନ୍ତ୍ର ସଂପାଦନା କାଳରେ କେବେ ସ୍ମରଣ ହେଉନାହିଁ, ମୋର ଲେଖା ନିର୍ବାଚନରେ ଶ୍ରୀ ମହତାବ ହସ୍ତକ୍ଷେପ କରିବା । ମୋର ନିରପେକ୍ଷ ବିଚାର ଉପରେ ତାଙ୍କର ଗଭୀର ଆସ୍ଥା ରହିଥିଲା । ତେଣୁ ମୋ ବିରୁଦ୍ଧରେ କୌଣସି ବିଶିଷ୍ଟ ଲେଖକ କିମ୍ବା ଅଧ୍ୟାପକ ଅଭିଯୋଗ ପତ୍ର ପ୍ରେରଣ କଲେ ସେ କୌଣସି ଗୁରୁତ୍ୱ ଦେଉନଥିଲେ । ତେଣୁ ମୁଁ ନିର୍ଭୟରେ କାର୍ଯ୍ୟ କରିଯାଉଥିଲି । ଏହି ସମୟରେ ମୋର କେତେକ ପ୍ରବନ୍ଧ ଓ ଗଳ୍ପ ଓଡ଼ିଶାର ଅନ୍ୟ ପତ୍ରିକାରେ ପ୍ରକାଶିତ ହୋଇ ଶ୍ରୀ ମହତାବଙ୍କ ନଜରରେ ପଡ଼ିଲା । ସେ ମୋତେ ଚିଠି ଲେଖିଲେ–''ତୁମର ଏକପତ୍ନୀ ବ୍ରତରେ ବିଶ୍ୱାସ ନାହିଁକି ?'' ଉଦ୍ଦେଶ୍ୟ ହେଲା, ମୋ ଲେଖା ପ୍ରଜାତନ୍ତ୍ରରେ ପ୍ରକାଶ ନକରି ଅନ୍ୟଆଡ଼େ ଦେଲି କାହିଁକି ? ସେ ବିଚାରୁଥିଲେ ତାଙ୍କର ପରିବାରର ଲେଖକମାନେ ପ୍ରଥମେ ପ୍ରଜାତନ୍ତ୍ର ପୃଷ୍ଠାରେ ପ୍ରକାଶିତ ହୁଅନ୍ତୁ । ଚିଠି ଲେଖିଲି, ଯେହେତୁ ମୋ ଲେଖାକୁ ଅନ୍ୟପତ୍ରିକା ସ୍ଥାନିତ କରୁଛନ୍ତି, ରବିବାର ସାହିତ୍ୟ ପୃଷ୍ଠାରେ ସେହି ସ୍ଥାନଟି ଆଉଜଣେ ନବୀନ ଲେଖକ ଅଧିକାର କଲେ ଉତ୍ସାହିତ ହେବେ । ଏଥିରେ ଶ୍ରୀ ମହତାବ ସନ୍ତୋଷ ପ୍ରକାଶ କରିଥିଲେ ।

ନିଜର ପ୍ରକାଶିତ ଲେଖାର ପାଠକୀୟ ପ୍ରତିକ୍ରିୟା ଜାଣିବା ପାଇଁ ଶ୍ରୀ ମହତାବ ସର୍ବଦା ଅତ୍ୟନ୍ତ ଆଗ୍ରହର ସହିତ ଅପେକ୍ଷା କରୁଥିଲେ । ଏଥିପାଇଁ ସେ ନିଜର ତରୁଣ ସହକର୍ମୀମାନଙ୍କ ସହିତ ଆଲୋଚନା କରିବାକୁ ସୁଖ ପାଉଥିଲେ । ବେଳେବେଳେ ଅନାବିଳ ଅଟ୍ଟୁଳିଭାଷାରେ ଅଭିମତ ଦେବା ଥିଲା ତାଙ୍କର ଅଭ୍ୟାସ ।

ଏଠାରେ ଆଉ ଗୋଟିଏ ଚିଠିରୁ ସେକାଳର ସାହିତ୍ୟିକ ପରିବେଶ ଓ ଲେଖକୀୟ

ସଂପର୍କ ବିଷୟରେ ଅବଧାରଣା କରାଯାଇପାରିବ । ଚିଠିଟି ଦିଲ୍ଲୀରୁ ପ୍ରେରିତ ହୋଇଥିଲା ।

୧୦.୦୭.୧୯୫୦

ପଠାଣି,

ତୁମର ୫.୭.୫୦ର ପତ୍ର ପାଇଲି । ଇତିମଧ୍ୟରେ 'ଝଙ୍କାର' ପାଇଁ ଯାହା ମୋର ଲେଖିବାର କଥା ପଠାଇ ଦେଇଛି । 'ସ୍ମୃତି' କ୍ଷୁଦ୍ର ନାଟିକା ଓ ସଂପାଦକୀୟ (ଦୁଇ ଦଫାରେ) । 'ସ୍ମୃତି' ଏକ ନୂତନ ପ୍ରକାରର ଚେଷ୍ଟା । କିପରି ହୋଇଛି । କିଛିଦିନ ପରେ ନିଜେ ପଢ଼ିଥିଲେ ଜାଣିପାରିଥାନ୍ତି । ମାତ୍ର ହଠାତ୍ ସେଠାକୁ ପଠାଇବାକୁ ହେବାରୁ ମନରେ ଟିକିଏ 'କିନ୍ତୁ' ଜାତ ହୋଇଛି । Psychological Conflict କୁ ନାଟକାକାର ଦେବା ପ୍ରଥମେ ଚେଷ୍ଟା କରିଥିଲି 'ବାସ୍ତବିକା'ରେ । ତା'ପରେ 'ସ୍ମୃତି' ଟି ଦ୍ୱିତୀୟ, ମାତ୍ର ଟିକିଏ ଜଟିଳ । କିପରି ହୋଇଛି, ଲେଖିବ । ରବିବାର ପ୍ରଜାତନ୍ତ୍ର ଯେଉଁ ପ୍ରକାରର ଲେଖା ବାହାରିବା ଉଚିତ୍ ମନେକରୁଛ ସେଥିପାଇଁ ଚେଷ୍ଟା କର । ସାହିତ୍ୟିକ ସମାଲୋଚନା ମଝିରେ ମଝିରେ ବାହାରିବା ଉଚିତ୍ । ସେ ପ୍ରକାର ଲେଖା ଯୋଗାଡ଼ କର । ମୁଁ ନିଜେ ସେ ପ୍ରକାର ଲେଖା ଲେଖିପାରିବି ନାହିଁ । ଯେଉଁମାନେ ପାରିବେ, ସେମାନଙ୍କୁ ଦେଖା କରି ବା ଚିଠିପତ୍ର ଲେଖାକରି ଚେଷ୍ଟା କର ।

ଚକ୍ରଧର ବାମହସ୍ତ ଆଘାତପ୍ରାପ୍ତ ହୋଇଛି ଶୁଣି ଆନନ୍ଦିତ ହେଲି । କାରଣ ତଦ୍ୱାରା ତାଙ୍କର Leftist deviation ର ଆଶଙ୍କା ନାହିଁ ଅପରନ୍ତୁ Rightiest deviation ଆଡ଼କୁ ବେଶି ସେ ଯିବେ । ସେ କ'ଣ ଶଯ୍ୟାଶାୟୀ ? ବୋଧହୁଏ ନୁହେଁ । କୋରିଆ ଯୁଦ୍ଧରେ ଭାରତର ଏହା ପ୍ରଥମ ବଳିଦାନ ବୋଲି ମନେକରି ଉତ୍ସାହିତ ହେବା ଉଚିତ୍ ।

ତୁମର ମହତାବ

ଟିକଟ ଗୁଡ଼ିଏ କାହିଁକି ପଠାଇଛ ? ଭୁଲ୍‌ରେ ଆସିଯାଇଛି କି ? ବ୍ୟାପାର କ'ଣ । ଏଥିସହ ଟିକଟ ବାପସ ଗଲା । ମୋଟ ୯ପଇସାର ଟିକଟ ଏଥିସହ ଫେରସ୍ତ ଗଲା ।

ତାଙ୍କର ପ୍ରକାଶିତ ଲେଖା ସଂପର୍କରେ ମୋର ସମୀକ୍ଷାମୂଳକ ମନ୍ତବ୍ୟକୁ ଶ୍ରୀ ମହତାବ ଅତ୍ୟନ୍ତ ଆଗ୍ରହର ସହିତ ଗ୍ରହଣ କରୁଥିଲେ ବୋଲି ଏହି ଚିଠିରୁ ଜଣାଯାଏ ।

ଭବିଷ୍ୟତ ସମାଜରେ ନେତୃତ୍ୱ ନେବାପାଇଁ ନିଷ୍ଠାପର ପ୍ରସ୍ତୁତି ଓ ସାଧନା ଆବଶ୍ୟକ । ପିତୃକଳ୍ପ ଶ୍ରୀ ମହତାବ ନିଜର ଅନ୍ତରଙ୍ଗ ସହକର୍ମୀମାନଙ୍କୁ ଅଗ୍ରସର ହେବାପାଇଁ ଅନେକ ସମୟରେ ଉପଯୁକ୍ତ ପରାମର୍ଶ ଦେଉଥିଲେ । ତାଙ୍କର ଗଠନମୂଳକ ପରାମର୍ଶର ନମୁନା ଏଇ ନିମ୍ନ ଚିଠିରୁ ଜଣାପଡ଼େ ।

୨.୧.୧୯୫୧

ପଠାଣି

ତୁମର ୩୧ ତାରିଖର ପତ୍ର ପାଇଲି । ଓଡ଼ିଶାର ସଂଗଠନ ଯୁଗ ବର୍ତ୍ତମାନ ଆରମ୍ଭ ହୋଇଛି ମାତ୍ର । ଏଣୁ କୌଣସି ବିଷୟରେ ନିରାଶ ହେବାର ନୁହେଁ । ଆଗରୁ ସାହାଯ୍ୟ ମିଳିଥିଲେ ପରେ ଆମ୍ଭମାନଙ୍କୁ ସମସ୍ତଙ୍କୁ ସୁଯୋଗ ଆହୁରି ବେଶି ମିଳିଥାନ୍ତା । ଠିକ୍ ଏହି କଥା ଆମେ ଯେପରି କହୁଛୁ, ଆମ ପର ବଂଶଧରମାନେ ସେପରି ଯେପରି ନ କହନ୍ତୁ, ସେହି ମୋର ଭୟ । ସେଥିପାଇଁ ମୁଁ ଦୌଡୁଛି । ପରେ ଯେପରି ମୁଣ୍ଡ ତଳକୁ କରି କେହି ନ କହନ୍ତି, ଆମର ଏହା ହୋଇନାହିଁ ଇତ୍ୟାଦି । ସବୁଦିଗରେ ବର୍ତ୍ତମାନ ସମୟରେ ଅତି ଶୀଘ୍ର ଗତିରେ ଯିବାକୁ ହେବ । ନ ହେଲେ ଭବିଷ୍ୟତ ବଂଶଧରମାନେ ଆମ ବିରୋଧରେ ଅଭିଯୋଗ କରିବେ । ତେଣୁ ତୁମେ ସମସ୍ତେ ନିଜ ଦେହ ଓ ମନକୁ ଶାଣ ଦେଇ ଏପରି ତିଆରି କର ଯେ ତୁମଦ୍ୱାରା ଅଦ୍ଭୁତ କାର୍ଯ୍ୟମାନ ସାଧିତ ହେବ । ତୁମରିମାନଙ୍କ ଦ୍ୱାରା ହେବ ଯଦି ଦେହ ଓ ମନକୁ ତିଆରି କର । ବୁଦ୍ଧି ଯଥେଷ୍ଟ ଅଛି ।

ନିୟମିତ ଜୀବନ ହେଉଛି ଦେହ ଓ ମନକୁ ତିଆରି କରିବାର ଏକମାତ୍ର ଉପାୟ । ରୁଟିନ୍ ଅନୁସାରେ ଚଳିବା ହେଉଛି ନିୟମିତ ଜୀବନର ସାଧାରଣ ଅର୍ଥ । ସେଥିରେ ଦେହ ଓ ମନ ତିଆରି ହୁଏ । ତୁମେ ଯେକୌଣସି ରୁଟିନ୍ କରି ତଦନୁସାରେ ଚଳ, ଦେଖିବ ବହୁ ସମୟ ଗଡ଼ାଗଡ଼ି ଦେଇଛି । ତାର ବ୍ୟବହାର ହୋଇପାରୁ ନାହିଁ । ଏପରି ରୁଟିନ୍ ଜୀବନ ହେତୁ ମୁଁ ସମୟର ଅଭାବ ଲକ୍ଷ୍ୟ କରେ ନାହିଁ । ରୁଟିନ୍‌ଟିଏ କରି ତୁମେ ଓ ତୁମର ବନ୍ଧୁମାନେ ଚଳ । ଦେଖିବ କେତେ ସମୟ ବାହାରିପଡ଼ିବ । ଏହି ବଳକା ସମୟରେ କ'ଣ କରିବ ସ୍ଥିର କର । ମୁଁ ସାହିତ୍ୟ ଚର୍ଚ୍ଚା କରେ, ଆଉ ଜଣେ ଆଉ କିଛି କରିପାରେ, ପଢ଼ାପଢ଼ି । ନିର୍ଦ୍ଦିଷ୍ଟ ବିଷୟମାନଙ୍କର ନିୟମିତ ଅଧ୍ୟୟନ ହେଉଛି ପଢ଼ାପଢ଼ି, ଲେଖାଲେଖି, ହାତକାମ ପ୍ରଭୃତି କେତେ ଜିନିଷ ଜଣେ କରିପାରେ । ତୁମେ ରୁଟିନ୍ ତୁମର କରି ମୋତେ ପଠାଅ । ମୁଁ ତୁମକୁ କିଛି ସୂଚନା ଦେଇପାରିବି ।

ଆସନ୍ତା ୭ ତାରିଖରେ ମାନ୍ଦ୍ରାଜ ଗସ୍ତରେ ଯାଉଛି । ୧୫ ତାରିଖଦିନ ଫେରିବି । ମୁଁ ଭାରି ଖୁସି ଯେ ମାନ୍ଦ୍ରାଜର ବିଭିନ୍ନ କଲେଜରୁ କିଛି କହିବା ପାଇଁ ସନିର୍ବନ୍ଧ ଅନୁରୋଧମାନ ଆସିଛି । ସବୁ ମୁଁ ଗ୍ରହଣ କରିଛି । ଛାତ୍ରସମାଜ ଓ ଶିକ୍ଷକ ସମାଜ ସାଙ୍ଗରେ ମୁଁ ସଂପର୍କ ରଖିଥିବାରୁ ମୋର ନିଜର ମଙ୍ଗଳ ହେଉଛି ।

ଆଶାକରେ ଭଲ ଥିବ ।

ତୁମର ମହତାବ

ମନେପଡୁଛି ଗୋଟିଏ ଦିନର ସଂଧ୍ୟା । କେନ୍ଦ୍ରମନ୍ତ୍ରୀ ଶ୍ରୀ ମହତାବ ଓଡ଼ିଶା ଗସ୍ତରେ ଆସି ସଂଧ୍ୟାକାଳରେ ଝଙ୍କାର ଅଫିସରେ ଏକ ସାହିତ୍ୟସେବୀ ବନ୍ଧୁମିଳନରେ ଯୋଗ ଦେଲେ । ଅନେକ ତରୁଣ ଲେଖକଙ୍କ ସହିତ ଏଠାରେ ଉପସ୍ଥିତ ଥାଆନ୍ତି ଅଧ୍ୟାପକ ରାଜକିଶୋର ରାୟ, ଗୋପୀନାଥ ମହାନ୍ତି, ପ୍ରଫେସର ସଦାଶିବ ମିଶ୍ର ଓ ପରମାନନ୍ଦ ଆଚାର୍ଯ୍ୟଙ୍କ ସହିତ କେତେଜଣ ବିଶିଷ୍ଟ ଲେଖକ ।

କଥା ପ୍ରସଙ୍ଗରେ ଶ୍ରୀ ମହତାବ ପଚାରିଲେ–''ଝଙ୍କାର'' ପତ୍ରିକା ବିଷୟରେ ଆପଣମାନଙ୍କର ମତ କ'ଣ ? ସମସ୍ତେ ଏକ ସ୍ୱରରେ କହିବାକୁ ଲାଗିଲେ, ଏହା ହେଉଛି ଓଡ଼ିଶାର ସର୍ବଶ୍ରେଷ୍ଠ ସାହିତ୍ୟ ମାସିକ । ଚମତ୍କାର ହେଉଛି । ଏତେ ବିଶିଷ୍ଟ ଲୋକଙ୍କ ଗହଣରେ ନୀରବରେ ବସିଥାଏ ।

ମନକଥା ଜାଣିଲା ପରି ଶ୍ରୀ ମହତାବ ପଚାରିଲେ–''ପଠାଣି, ତୁମ ମତ କ'ଣ ? ଭରସା ପାଇ କହିଲି, 'ସାର୍, 'ଝଙ୍କାର' ଭଲ ସାହିତ୍ୟ ମାସିକ ନିଶ୍ଚୟ, ମାତ୍ର ଷ୍ଟାଣ୍ଡାର୍ଡ଼ ପତ୍ରିକା ନୁହେଁ ।'' ସେ କହିଲେ, ''ଏ କିପରି କଥା ହୋ । ଭଲ ତ ହେଲା, ପୁଣି ଷ୍ଟାଣ୍ଡାର୍ଡ଼ କ'ଣ ?''

କହିଲି, ''ସାର୍, ଓଡ଼ିଶା କଥା ବାଦ ଦିଅନ୍ତୁ । ବର୍ତ୍ତମାନ କଲିକତାରୁ ଇଂରେଜୀ ମାସିକ Modern Review ପ୍ରକାଶିତ ହେଉଛି । ପ୍ରକାଶ ପାଉଛି ବଙ୍ଗଳା ଭାଷାରେ 'ବସୁମତୀ', 'ଭାରତବର୍ଷ' ଇତ୍ୟାଦି ମାସିକ ସାହିତ୍ୟ ପତ୍ର । ଏଥିରେ ଦେଶର ନାନା ସମସ୍ୟା ସଂପର୍କରେ ଦୀର୍ଘ ସଂପାଦକୀୟ ପ୍ରକାଶ ପାଇଥାଏ । ତେଣୁ ପାଠକ ଅତି ସହଜରେ ଦେଶର ନାନାକଥା ଜାଣିବାକୁ ପାଏ । ପୁନଶ୍ଚ ଏଥିରେ ଥାଏ ଧାରାବାହିକ ଉପନ୍ୟାସ, ଭ୍ରମଣ କାହାଣୀ, ଏକାଙ୍କିକା, ଅର୍ଥନୀତି, ସମାଜନୀତି, ରାଜନୀତି, ବାଣିଜ୍ୟନୀତି ବିଷୟରେ ଚିନ୍ତାମୂଳକ ପ୍ରବନ୍ଧ । ଏତଦ୍‌ବ୍ୟତୀତ ଗଳ୍ପ, କବିତା ଓ କିଛି ସାହିତ୍ୟ ସମୀକ୍ଷା ମଧ୍ୟ ସ୍ଥାନିତ ହୋଇଥାଏ । ବିଭିନ୍ନ ରୁଚିର ପାଠକମାନଙ୍କ ପାଇଁ ଏହି ପତ୍ରିକାଗୁଡ଼ିକ ଉପଯୋଗୀ ହୁଅନ୍ତି । ମାତ୍ର ଆମ ପତ୍ରିକା ହେଉଛି କେତୋଟି ଉତ୍କୃଷ୍ଟଗଳ୍ପ, କବିତା ଓ ସାହିତ୍ୟ ସମାଲୋଚନାଧର୍ମୀ ଅଳ୍ପ କେତୋଟି ପ୍ରବନ୍ଧର ସଂକଳନ । ସଂପାଦକୀୟ ମଧ୍ୟ ନାନାବିଧ ସମସ୍ୟାର ପ୍ରତିଧ୍ୱନି ନୁହେଁ ।''

ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ଏହି ତରୁଣର ଅଭିମତକୁ ଶ୍ରୀ ମହତାବ ସାଦରେ ଗ୍ରହଣ କଲେ । ସେ କହିଲେ: ଆମେ କେବଳ ଓଡ଼ିଆ ପତ୍ରିକାମାନଙ୍କ ମଧ୍ୟରେ ଭଲ ହେବା ନାହିଁ, ଉଦ୍ୟମ ଅବ୍ୟାହତ ରଖିବା ଭାରତୀୟ ଷ୍ଟାଣ୍ଡାର୍ଡ଼ ପତ୍ରିକାମାନଙ୍କର ସମକକ୍ଷ ହେବାପାଇଁ । ଏହି ଦିଗରେ ଉଦ୍ୟମ ଜାରି ରଖିବାକୁ ସେ ତାଙ୍କର ସହକାରୀମାନଙ୍କୁ ପରାମର୍ଶ ଦେଲେ ।

କେନ୍ଦ୍ରମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରି ଦିଲ୍ଲୀରେ ଅବସ୍ଥାନ କରିବାରୁ ପ୍ରଜାତନ୍ତ୍ର ସାହିତ୍ୟ ଆସରରେ ଯୋଗ ଦେବା ସମ୍ଭବ ହେଉ ନଥିଲେ ହେଁ ଶ୍ରୀ ମହତାବ ପତ୍ର ମାଧ୍ୟମରେ ଉତ୍ସାହିତ କରୁଥିଲେ କର୍ମକ୍ଷେତ୍ରରେ ଆଗେଇଯିବା ପାଇଁ ।

ନିମ୍ନଲିଖିତ ଆଉ ଏକ ଚିଠି ତାଙ୍କର ସନ୍ଦେଶ ବହନ କରିଥିବା ଜଣାଯାଏ ।

20, Queens Way, New Delhi
12.06.52

ପଠାଣି ବାବୁ,

ତୁମର ୩୧.୦୫.୫୨ର ପତ୍ର ପାଇଛି ଏବଂ ସେଥିପାଇଁ ଧନ୍ୟବାଦ ଦେଉଛି । କର୍ତ୍ତବ୍ୟ ନିର୍ଣ୍ଣୟ କରିବା କଠିନ ଓ କର୍ତ୍ତବ୍ୟ ସମ୍ପାଦନ କରିବା ମଧ୍ୟ କଠିନ । କିନ୍ତୁ ପଦ ନିର୍ଣ୍ଣୟ କରିବା ସହଜ ଓ ପଦରେ ଆସୀନ ହେବାର ପ୍ରୟାସ ମଧ୍ୟ ସହଜ । ମୋର ଜୀବନ ଏପରି ଭାବରେ ଗଢ଼ା ଯେ ଏହା ଏକ ନୀରସ ବନ୍ଧୁର କର୍ତ୍ତବ୍ୟ ପଥରେ ଚାଲିଛି । ଏଣୁ ପଦ ବା ସମ୍ମାନ ଇତ୍ୟାଦି ଦିଗରେ ମନ ଦେବାପାଇଁ ବେଳ ନାହିଁ । ତା' ବୋଧହୁଏ ମୋର ଭାଗ୍ୟଦୋଷ । ଯା' ହେଉ, ସେୟା ମୁଁ । ପରେ ନାମ ରହିବ କି ନାହିଁ ତା' ନିର୍ଭର କରେ ତପସ୍ୟା ଉପରେ । ଯାହାର ଯେତିକି ତପସ୍ୟା, ସେତିକି ସେ ଜନସ୍ମୃତିରେ ଜୀବିତ । ତପସ୍ୟାର ଅର୍ଥ ହେଉଛି କର୍ତ୍ତବ୍ୟାନୁଷ୍ଠାନରେ ସମସ୍ତ ପ୍ରକାର ତ୍ୟାଗ । ମୁଁ କିଛି ତପସ୍ୟା କରେ, ଏ ପ୍ରାର୍ଥନା କଲେଜ ଜୀବନରୁ କରି ଆସୁଛି । କିଛି ହେଉଛି କି ନା ସେ ପୁଣି ଭବିଷ୍ୟତ ଉପରେ ମତ ଦେବାପାଇଁ । ଉପସ୍ଥିତ–ନୀରସ ବନ୍ଧୁର କର୍ତ୍ତବ୍ୟ ପଥ ।

ରାଜକୀୟ କାର୍ଯ୍ୟରେ ନଥିଲେ ମଧ୍ୟ ମୋତେ ବିଶ୍ରାମ ନାହିଁ । କର୍ମ ଦୋଷ ନୁହେଁ ତ ଆଉ କ'ଣ ?

ତୁମର ମହତାବ

ରବିବାର ପ୍ରଜାତନ୍ତ୍ର ସଂପାଦନାରେ ଥାଇ ମନେମନେ ଚିନ୍ତା କଲି କିଛି ଭ୍ରମଣ କାହାଣୀ ଧାରାବାହିକ ପ୍ରକାଶ କରିବା ପାଇଁ । ସେତେବେଳେ ମୋର ଅଧ୍ୟାପକ ଶ୍ରୀ ଗୋଲକବିହାରୀ ଧଳ ଲଣ୍ଡନରେ ଉଚ୍ଚଶିକ୍ଷା ପାଇଁ ଅବସ୍ଥାନ କରୁଥାଆନ୍ତି । ତାଙ୍କୁ ପତ୍ର ଲେଖିଲି ବିଦେଶ ଅନୁଭୂତି ଲେଖି ପଠାଇବା ପାଇଁ । ସାର୍ ଆଗ୍ରହର ସହିତ ଅନୁରୋଧ ରକ୍ଷା କଲେ ଏବଂ ଧାରାବାହିକ ଭାବରେ 'ଲଣ୍ଡନ ଚିଠି' ପ୍ରକାଶ ପାଇଲା । ଏହାର ଲୋକପ୍ରିୟତା ଏପରି ବୃଦ୍ଧି ପାଇଲା ଯେ ରବିବାର ପ୍ରଜାତନ୍ତ୍ରର ପାଠକୀୟ ଚାହିଦା ବୃଦ୍ଧିଲାଭ କଲା । ଲେଖକ ଭାବରେ ମଧ୍ୟ ସାର୍‌ଙ୍କର ପାଠକୀୟ ସ୍ୱୀକୃତି ହେଲା ଉଲ୍ଲେଖନୀୟ । ଲଣ୍ଡନ ରହଣି ଓ ଆମେରିକା ପ୍ରବାସ ସଂପର୍କରେ ଦୁଇଟି ଭ୍ରମଣ କାହାଣୀ ପୁସ୍ତକ ଓଡ଼ିଆ ସାହିତ୍ୟ ପ୍ରାପ୍ତ ହୋଇ ଲାଭବାନ ହେଲା । ଏହି ଛାତ୍ରର ଅନୁରୋଧ ପତ୍ରଟିଏ ପାଇ ସାର୍ ଯେଉଁ ଉତ୍ତର ଦେଇଥିଲେ, ତାହା ଆଜି ମଧ୍ୟ ଅମୂଲ୍ୟ ସମ୍ପତ୍ତି ହୋଇ ମୋ ପାଖରେ ରହିଅଛି । ଚିଠିଟି ହେଲା–

ତା ୩୦.୦୩.୫୧
ଲଣ୍ଡନ

ପ୍ରିୟ ପଠାଣି

ତମ ଚିଠି ଖଣ୍ଡି ପାଇ ବହୁ ଆନନ୍ଦିତ ହେଲି । ଅତୀତର ଦିନଗୁଡ଼ିକ ଆଖି ଆଗରେ ଭାସି ଆସିଲା । ତୁମେ ଛାତ୍ର ମୁଁ ସାର୍ । ପୁଣି ସବୁ ବଦଳି ଗଲାଣି ମୁଁ ଛାତ୍ର ଓ ତମେ ସହକାରୀ ସଂପାଦକ । ଅଭିନନ୍ଦନ ଜଣାଉଛି । ତମେ ଯଦି ଜୀବନରେ କେବେ ଶିକ୍ଷକ ହେବ ତେବେ ଅନୁଭବ କରିବ ଯେ ନିଜର ଛାତ୍ରର ଉନ୍ନତ ଜୀବନ ଦେଖିଲେ ଶିକ୍ଷକ ମନରେ କି ଆନନ୍ଦ ଓ କି ଗୌରବ ସୃଷ୍ଟି ହୁଏ । ରମାକାନ୍ତ ଆଇ.ଏ.ଏସ୍ ହେଉଛନ୍ତି ବୋଲି ଶୁଣୁଛି । ତା' ଯଦି ସତ ହୋଇଥାଏ ମୁଁ କେତେ ସୁଖୀ ହେବି । ମଣିଷ ନିଜେ ଯା' କରିପାରେନା ତାରି ହାତଗଢ଼ା ମଣିଷ ଯଦି ତା' ହାସଲ କରେ ତେବେ ସେ କୃତ୍ୟକୃତ୍ୟ ହୁଏ । ସେଥିପାଇଁ ବାପ ସବୁବେଳେ ପୁଅଠାରୁ ପରାଜୟ ଚାହେଁ । x x x ଛାତ୍ରାତ୍ ପରାଜୟଂ । ପରୀକ୍ଷା ଜଞ୍ଜାଳରେ ଏମିତି ହାଡ଼ଫଟା କାମରେ ବ୍ୟସ୍ତ ଯେ ମରିବାକୁ ବେଳ ନାହିଁ । ତେଣୁ ଲେଖାଲେଖି ପ୍ରାୟ ବନ୍ଦ । ସାମଲ ବାବୁଙ୍କୁ ବହୁତ କରି କହିଦେବ ଓ ମୋର ଶ୍ରଦ୍ଧା ଦେବ । ତମେ କାଗଜ ସମ୍ପାଦକ ଭଳି ସାଧୁକାର୍ଯ୍ୟରେ ରତ ଅଛ ଦେଖି ଖୁବ୍ ଖୁସୀ । ମାତ୍ର ମନେରଖ ଜାତିର ଜୀବନରେ ତମର ଦାୟିତ୍ୱ ଭାରି ବେଶି । ଆଶା ରଖିଛି ତମେ ତା' ଠିକ୍ ତୁଲାଇବ । ଫେରିବି ସେପ୍ଟେମ୍ବର ବା ଡିସେମ୍ବରରେ ।

ତୁମର
ପୁରୁଣା ସାର୍

ସେଦିନର ପ୍ରଜାତନ୍ତ୍ର ଓ ଝଙ୍କାର ପୃଷ୍ଠାରେ ଯେଉଁମାନେ ଲେଖା ଅଭ୍ୟାସ କରୁଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଆଜିର ଓଡ଼ିଆ ସାହିତ୍ୟରେ ଅତ୍ୟନ୍ତ ପ୍ରତିଷ୍ଠିତ ଓ ସ୍ୱନାମଧନ୍ୟ ।

ଗୋଟିଏ ଆକସ୍ମିକ ଘଟଣା ଉଲ୍ଲେଖ କରି ଏହି ପ୍ରସଙ୍ଗର ଉପସଂହାର କରିବି । ପ୍ରଜାତନ୍ତ୍ର ସଂପାଦନା କାଳରେ ଓଡ଼ିଶାର ସର୍ବାଞ୍ଚଳର ଲେଖକଲେଖିକାମାନଙ୍କୁ ଚିଠି ଲେଖି ଲେଖା ପାଇଁ ଅନୁରୋଧ କରୁଥିଲି ଏବଂ କୌଣସି ଲେଖା ମନୋନୀତ ନହେଲେ ଉତ୍ସାହିତ କରି ପତ୍ର ଲେଖୁଥିଲି ଆଉ ଲେଖା ପଠାଇବା ପାଇଁ । ମୁଁ ଯେ ଜଣେ ତରୁଣ ଲେଖକ, ଏ କଥା ଅନେକେ କାହିଁକି ଜାଣିବେ ? ଯେ ସଂପାଦକ ଆସନରେ ବସିଛି, ସେ ନିଶ୍ଚୟ ଜଣେ ବର୍ଷିୟାନ ଏବଂ ପଣ୍ଡିତ ବ୍ୟକ୍ତି ହୋଇଥିବ । ସଂପାଦକଠାରୁ ପତ୍ରଟିଏ ପାଇଲେ ଲେଖକ କେତେ ଉତ୍ସାହିତ ହୋଇଥାଏ, ତାହା କେବଳ ଅନୁଭବର କଥା । ମୋର ଚିଠି ପାଇ ଅନେକ ଲେଖକଲେଖିକା ଅତ୍ୟନ୍ତ ଉତ୍ସାହିତ ହୋଇ ଲେଖା ପଠାଉଥିଲେ ଏବଂ ସେମାନଙ୍କର ସାଧନାରେ ଅବ୍ୟାହତ ରହୁଥିଲେ ।

ଏହି ପ୍ରସଙ୍ଗରେ ଏକ ରୋମାଞ୍ଚକର ଅନୁଭୂତି ଲେଖିବାକୁ ଯାଉଛି । ମୋର ଜଣେ ପୁତ୍ର ପାଇଁ ବିବାହ ପ୍ରସଙ୍ଗ ନେଇ ଜଣେ ପରିଣତ ବୟସ୍କା ସୁନ୍ଦରୀ ମହିଳା ଆମ ଘରେ ଆସି ତାଙ୍କର କନ୍ୟା ପାଇଁ ପ୍ରସ୍ତାବ ରଖିଲେ । ବୈଠକଖାନାରେ ସେ, ମୁଁ ଆଉ ମୋର ପତ୍ନୀ । ପ୍ରଥମ ପରିଚୟ ଦେବାକୁ ଯାଇ ସେ କହିଲେ, ଆପଣଙ୍କର ଗୋଟିଏ ଚିଠି ଆଜି ପର୍ଯ୍ୟନ୍ତ ସାଇତି ରଖିଛି । ମୋ ସ୍ତ୍ରୀଙ୍କ ଆଗରେ ଜଣେ ଅପରିଚିତା ଏପରି କହିବାରୁ ମୁଁ ଚମକି ପଡ଼ିଲି । ମୋ ସ୍ତ୍ରୀ କ'ଣ ଭାବୁଥିବେ । ମୁଁ କହିଲି, ଆପଣ ଏପରି କ'ଣ କହୁଛନ୍ତି ? ମୋ ଜୀବନରେ କୌଣସି ଅପରିଚିତାଙ୍କ ନିକଟକୁ କେବେହେଲେ ଚିଠି ଲେଖିନାହିଁ । ମୋର ଅପ୍ରସ୍ତୁତ ପଣିଆ ଦେଖି ସେ ହସି ଉଠିଲେ । କହିଲେ, ଡରିଗଲେ କି ? ମିଥ୍ୟା କହୁନାହିଁ । ଏହା କୌଣସି ପ୍ରେମ ଚିଠି ନୁହେଁ । ଅଭିଆଡ଼ି ବୟସରେ ପ୍ରଜାତନ୍ତ୍ରକୁ କବିତା ପଠାଉଥିଲି । ପ୍ରଥମେ ତାହା ପ୍ରକାଶଯୋଗ୍ୟ ହେଉ ନଥାଏ । ଆପଣ ସଂପାଦକ ଭାବରେ ଉତ୍ସାହିତ କରି ଯେଉଁ ପତ୍ର ଲେଖୁଥିଲେ ତାରି ଫଳରେ ମୁଁ ଆଜୀବନ କବିତା ଲେଖିଚାଲିଲି ।

ସନ୍ଦେହର କୁହେଳି ଅପସରି ଗଲା । ହସରେ ଆମେ ତିନିହେଁ ଫାଟି ପଡ଼ିଲୁ ।

• • •

# ହଜିଲା ଦିନର ଅଭୁଲା କଥା

୧୯୪୯ ମସିହାର କଥା । ପୁରୀ କଲେଜରୁ ବି.ଏ. ପାସ୍ କରି ଘରେ ବସିଥାଏ । ଏଣିକି ଚିନ୍ତା, କଣ କରିବି । ଉଚ୍ଚଶିକ୍ଷା ପାଇବାକୁ ହେଲେ କଟକ ସହରରେ ରହି ପଢ଼ିବାକୁ ହେବ । ବାପାଙ୍କର ଇଚ୍ଛା ନଥାଏ । ସଂଧ୍ୟାବେଳେ ପୁରୀର ସମୁଦ୍ରକୂଳରେ ବନ୍ଧୁମେଳରେ ଖୁସୀଗପ ଜମି ରହେ । ସମସ୍ତଙ୍କର କଥା ମନଦେଇ ଶୁଣେ । କେତେ ସ୍ୱପ୍ନ, କେତେ ପରିକଳ୍ପନା ଉଚ୍ଚଶିକ୍ଷା ପାଇଁ ଚିନ୍ତା କରୁଥାଆନ୍ତି ପ୍ରାୟ ଅଧିକାଂଶ କଟକ ଯିବେ ବୋଲି । ମୋର ଅନ୍ତରଙ୍ଗ ବନ୍ଧୁ କୁଳମଣି ସ୍ଥିର କରିଥାଏ, ଆଲାହାବାଦ ବିଶ୍ୱବିଦ୍ୟାଳୟରେ ଯାଇ ରାଜନୀତି ବିଜ୍ଞାନ ପଢ଼ିବ ବୋଲି । ଆଉ ଜଣେ ଅନ୍ତରଙ୍ଗ ସାଥୀ ହରିହର ବାହିନୀପତି ଇଚ୍ଛା କରୁଥାଏ କଟକ ଆଇନ କଲେଜରେ ନାଁ ଲେଖାଇବ ବୋଲି । ଏହି ସବୁ ଆଲୋଚନା ଶୁଣି ମୋର ମନରେ ଶାନ୍ତି ନଥାଏ । ସବୁ ସାଙ୍ଗଯାକ ଉଚ୍ଚଶିକ୍ଷା ପାଇଁ ପୁରୀ ଛାଡ଼ିବେ, ମୋର କପାଳରେ କ'ଣ ଲେଖା ଅଛି କେଜାଣି ।

ଏହିପରି ସମସ୍ୟା ମୋ ପାଇଁ ଥିଲା ମାଟ୍ରିକ ପାସ୍ କଲା ପରେ । ସେତେବେଳକୁ ପୁରୀରେ ନୂଆ ହୋଇ କଲେଜ କ୍ଲାସ୍ ଆରମ୍ଭ ହୋଇଥାଏ ଜିଲ୍ଲା ସ୍କୁଲରେ । ମୋର ପଢ଼ିବା ବିଷୟରେ ଘରେ କାହାରି ପ୍ରସ୍ତାବ ନଥାଏ । ଏଣିକି ଚାକିରୀ ପାଇଁ ସମସ୍ତଙ୍କର ଆଗ୍ରହ । ଅନ୍ତତଃ ଟାଇପ୍ ଶିଖିଗଲେ କିରାନୀ ଚାକିରିଟିଏ ସହଜରେ ମିଳିଯିବ । ଗ୍ରୀଷ୍ମ ଅବକାଶରେ ଯେପରି ହେଲେ ଟାଇପ୍ ଶିକ୍ଷା କରିବାକୁ ହେବ । ମୋର ବଡ଼ ଦାଦା ଗୋପୀନାଥ ପଟ୍ଟନାୟକଙ୍କ ସାଙ୍ଗରେ ଗଲି ପୁରୀ କଲେକ୍ଟରୀଏଟ୍ ଅଫିସ୍‌କୁ । ସେଠାରେ ଜିଲ୍ଲାପାଳଙ୍କ ଟାଇପିଷ୍ଟ ପାଖରେ ମୋତେ ସାକ୍ଷାତ କରିବାକୁ ପଡ଼ିଲା ଟାଇପ୍ ଶିକ୍ଷାର ଫର୍ମୁଲା ଜାଣିବା ପାଇଁ । ତାକୁ ଆଣି ଅନ୍ୟ କେଉଁ ଘରୋଇ ସଂସ୍ଥାରେ ଅଭ୍ୟାସ କରିବାକୁ ହେବ । ସେ ମୋତେ ପ୍ରଥମ ଫର୍ମୁଲା ଲେଖିଦେଲେ ଟାଇପ୍ କରି-ଏ, ଏସ୍, ଡ଼ି, ଏଫ୍, ସେମିକୋଲନ୍, ଏଲ୍, କେ, ଜେ, ଏଚ୍ ।

ଆମର ମିଶ୍ର ସାହିରେ ଜମିଦାର ରଘୁନାଥ ମିଶ୍ରଙ୍କର ଏକ ଗୋଦାମ ଥାଏ । ସେହି ଗୋଦାମରେ ବ୍ରଜମୋହନ ମହାନ୍ତି ଥାଆନ୍ତି କିରାନୀ । ଦାଦା ତାଙ୍କ ସହିତ ପରିଚୟ କରାଇଦେଇ କହିଲେ ତାଙ୍କ ଅଫିସ୍ ଟାଇପ୍ ମେସିନରେ ଅଭ୍ୟାସ କରିବା ପାଇଁ । ଏଣିକି ମୋର କାମ ହେଲା ପ୍ରତ୍ୟେକଦିନ ବ୍ରଜବାବୁଙ୍କ ପାଖରେ ଗୋଦାମ ଘରେ ବସି ଟାଇପ୍ ଅଭ୍ୟାସ କରିବା । ଗ୍ରୀଷ୍ମ ଅବକାଶ ଶେଷ ହୋଇ ଆସିଲା । ବାପା କ'ଣ ଭାବିଲେ କେଜାଣି, କଲେଜରେ ମୋ ନାଁ ଲେଖାଇଦେଲେ । ଏହି ବ୍ରଜବାବୁ ମୋଠାରୁ ବୟସରେ ବଡ଼ । ଖଦଡ଼ ପିନ୍ଧନ୍ତି ।

କଂଗ୍ରେସକର୍ମୀ । ସେ ମଧ ମୋ ସହିତ କଲେଜରେ ନାମ ଲେଖାଇଲେ । ଆମେ ହେଲୁ ସହପାଠୀ ଚାରିବର୍ଷକାଳ । ସେ ଥିଲେ ଛାତ୍ର କଂଗ୍ରେସର ଅନ୍ୟତମ ନେତା । ସେମାନଙ୍କ ସହିତ ମୁଁ ମଧ ମିଶୁଥିଲି । ତେଣୁ କ୍ରମେ ଅନ୍ତରଙ୍ଗ ହୋଇଗଲୁ ଆଜୀବନ । ବ୍ରଜବାବୁ ଛାତ୍ରଜୀବନ ପରେ ପୁରୀର ହେଲେ ବିଖ୍ୟାତ ଓକିଲ । ପରବର୍ତ୍ତୀ କାଳରେ ସେ ହେଲେ ଓଡ଼ିଶା ପ୍ରଦେଶ କଂଗ୍ରେସର ବରେଣ୍ୟ ନେତା, ଓଡ଼ିଶା ରାଜ୍ୟ ମନ୍ତ୍ରୀପରିଷଦର ପ୍ରଭାବଶାଳୀ ମନ୍ତ୍ରୀ ଓ ଓଡ଼ିଶା ବିଧାନ ସଭାର ବାଚସ୍ପତି । ସେ କିଛିକାଳ କେନ୍ଦ୍ର ସରକାରଙ୍କ ମନ୍ତ୍ରୀମଣ୍ଡଳରେ ମଧ ସାମିଲ ହୋଇଥିଲେ । କ୍ଷମତାର ବଳୟ ମଧରେ ସର୍ବଦା ଆତଯାତ ହେଉଥିଲେ ମଧ ଅତୀତର ବନ୍ଧୁମାନଙ୍କୁ ଓ ଅତୀତ ଜୀବନର ସଂଘର୍ଷପୂର୍ଣ୍ଣ ପରିବେଶକୁ ସର୍ବଦା ହେଜୁଥିଲେ ।

କହୁଥିଲି ବି.ଏ. ପାସ୍ କରିବାର କଥା । ସେହି ସମୟରେ ଗ୍ରାଜୁଏଟ୍ ହେବା ଖୁବ୍ ଗୌରବର କଥା ଥିଲା । କାରଣ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇ କଲେଜ ଜୀବନ ଆରମ୍ଭ ହେଉଥାଏ । ଆମର ଏତେ ବଡ଼ ଗାଁରେ ମୁଁ ଥିଲି ତୃତୀୟ ଗ୍ରାଜୁଏଟ୍ ଓ ପ୍ରଥମ ଏମ୍.ଏ. ଉପାଧିଧାରୀ । ଅବଶ୍ୟ ଦେଶରେ ଆଜି ଆଉ ସେ ଅବସ୍ଥା ନାହିଁ ।

ଆଉ ଅଧିକ ପଢ଼ାଇବେ ନାହିଁ ବୋଲି ବାପା ନିଷ୍ପତ୍ତି କରିଦେଲେ । ଆଉ ଦୁଇଟି ପୁଅଙ୍କର ଉଚ୍ଚଶିକ୍ଷା ପାଇଁ ସେ ଯତ୍ନ କରିବେ । ମନଟା ବଡ଼ ହନ୍ତସନ୍ତ ହେଉଥାଏ । ସେତେବେଳେ କେବଳ କରଣ ସମାଜରେ ଯୌତୁକ ପ୍ରଥାର ଖୁବ୍ ପ୍ରଚଳନ ଥାଏ । ଆଜି ତାହା ସାର୍ବଜନୀନ ହୋଇଗଲାଣି । ଶୁଣିଥାଏ, ଶ୍ୱଶୁର ଘର ଲୋକେ ଘଣ୍ଟା, ସାଇକେଲ, ସୁନାଗହଣା, କୁଣିଆ ମର୍ଯ୍ୟାଦା ଓ ବାଟଖର୍ଚ୍ଚ ବ୍ୟତୀତ ଅନେକ ସମୟରେ ଜାମାତାକୁ ଅଧିକ ଯୋଗ୍ୟ କରିବା ପାଇଁ ପାଠପଢ଼ାର ଖର୍ଚ୍ଚ ବହନ କରୁଥିଲେ । ମୁଁ ଗ୍ରାଜୁଏଟ୍ ହୋଇଯାଇଥିବାରୁ ଜ୍ୱାଇଁ ବଜାରରେ କିଞ୍ଚିତ ଭାଉ ବଢ଼ିଯାଇଥାଏ । ଅନେକ ପ୍ରସ୍ତାବ ଆସୁଥାଏ ଘରକୁ ମଧ୍ୟସ୍ଥିମାନଙ୍କ ଜରିଆରେ । ବାପାଙ୍କୁ ତ କହିବାକୁ ସାହସ କୁଳଉ ନଥାଏ, ବୋଉକୁ କୌତୁକରେ କହିଲି- ''ଏପରି ଏକ ଶ୍ୱଶୁର ଘର ବୁଝ, ଯେ କି ମୋତେ ଏମ୍.ଏ. ପଢ଼ାଇବେ । ତା' ପରେ ଯାଇ ବାହାଘର । ଏମ୍.ଏ. ପାସ୍ ନକଲା ପର୍ଯ୍ୟନ୍ତ ମୋର ବାହାଘର ନାଁ ଧରିବୁ ନାହିଁ ।'' ବୋଉ ଆମର ଅତ୍ୟନ୍ତ ସରଳ ବିଶ୍ୱାସୀ । ସେ କଥା ପ୍ରସଙ୍ଗରେ ବାପାଙ୍କୁ ଏହି କଥାଟି ଶୁଣାଇଦେଲେ । ବାପା ଗମ୍ଭୀର ହୋଇଗଲେ । ବୋଉ ଆଗରେ ମୋତେ ଶୁଣାଇ କହିଲେ- ଶ୍ୱଶୁର ଘର ସାହାଯ୍ୟରେ ପାଠ ପଢ଼ିଲେ ପୁଅ ବିଚାରିବ, ସେ ଶ୍ୱଶୁର ଘର ଯୋଗୁ ମଣିଷ ହେଲା । ଯେଉଁ ବୋହୂ ଆସିବ, ସେ ସେହିପରି ଅଧିକାର ଜାରି କରିବ । ଏପରି ଅସମ୍ମାନିତ ପ୍ରସ୍ତାବରେ ମୁଁ କିପରି ରାଜି ହେବି ?

ନିଷ୍ପତ୍ତି କଲି, ଯେମିତି ହେଉ, କଟକରେ ଏମ୍.ଏ. ପଢ଼ିବି । ନିଜ ଗୋଡ଼ରେ ଠିଆ ହେବି । କିଛି ଟଙ୍କା ଧରି କଟକ ଚାଲି ଆସିଲି । କଟକର ଜଗନ୍ନାଥ ବଲ୍ଲଭ ଲକ୍ଷ୍ମୀନାରାୟଣ ପ୍ରେସ୍ ପାଖରେ ଗୋଟିଏ ମେସ୍‌ର ନାଁ ବାହିନୀ ମେସ୍ । ଚାଳଘର, ସେଠାରେ କେବଳ ଖୋର୍ଦ୍ଧା ଅଞ୍ଚଳର ଚାକିରିଜୀବୀମାନେ ରହୁଥିଲେ । ସମସ୍ତେ ଓଡ଼ିଶା ସେକ୍ରେଟେରିଏଟ୍‌ର

କର୍ମଚାରୀ । ମୁଁ ହେଲି ଏକମାତ୍ର ଛାତ୍ର । ଓଡ଼ିଆ ଏମ୍.ଏ. କ୍ଲାସ୍‌ରେ ରେଭେନ୍ସା କଲେଜରେ ନାଁ ଲେଖାଇଦେଲି । ସେ ଦିନର ଅନୁଭୂତି ଅବିସ୍ମରଣୀୟ । ଅଫିସ୍ କାଉଣ୍ଟରରେ ଫର୍ମ ଏବଂ ଟଙ୍କା ବଢ଼ାଇ ଦେଲି । ଯେଉଁ କିରାନୀ ଗ୍ରହଣ କଲେ, ସେ ମୋ ନାଁଟି ପାଠ କରି କହିଲେ- ତୁମେ ଆଇ.ଏସ୍.ସିରେ ନାମ ଲେଖାଇବା ପାଇଁ ଦରଖାସ୍ତ ପକାଇଥିଲ ନା ? ମୁଁ ହଁ କଲି ଏବଂ ଆଶ୍ଚର୍ଯ୍ୟ ହେଲି । ଚାରିବର୍ଷ ପୂର୍ବେ ବିଜ୍ଞାନ ପଢ଼ିବି ବୋଲି ରେଭେନ୍ସା କଲେଜରେ ଦରଖାସ୍ତ ପକାଇଥିଲି, କିନ୍ତୁ ଆସିବା ସମ୍ଭବ ହୋଇନଥିଲା । ବିଚାରିଲି, ଚାରିବର୍ଷ ପୂର୍ବର କଥା, ହଜାର ହଜାର ଛାତ୍ର ଦରଖାସ୍ତ କରି ସାରିଛନ୍ତି । ଆଶ୍ଚର୍ଯ୍ୟ ହୋଇ ପଚାରିଲି, ସାର୍, ମୋ ନାଁଟି କିପରି ମନେ ରଖିଛନ୍ତି ? ସେ କେବଳ ମୁରୁକେଇ ହସିଦେଲେ ।

ବାହିନୀ ମେସ୍ ସିନା ଆଶ୍ରୟ ଦେଇଦେଲା । ମାତ୍ର ଚଳିବି କିପରି ? ମୋର ସାନ ଭାଇ ତ୍ରିଲୋଚନ ଏହି ମେସ୍‌ରେ ରହିଥାଏ ଏବଂ ସେକ୍ରେଟେରିଏଟ୍‌ରେ ଥାଏ ଗ୍ରେଡ୍ ଟୁ ସହକାରୀ । ଭାବୁଥାଏ ସେ ମୋର ମେସ୍ ଖର୍ଚ୍ଚ ଚଳାଇଦେବ । ବାକି ଟିଉସନ୍ କରି ପଢ଼ାଖର୍ଚ୍ଚ ତୁଲାଇବି । ମୋର ଆସିବାର ମାତ୍ର ଆଠଦିନ ମଧ୍ୟରେ ସାନଭାଇ ଭାରତୀୟ ନୌସେନାରେ ଯୋଗଦେଇ କୋଚିନ୍ ବନ୍ଦର ଅଭିମୁଖେ ଚାଲିଗଲା । ଯେଉଁ ତାଳକୁ ଆଶ୍ରା କରି କଟକ ଆସିଥିଲି, ତାହା ଛିଡ଼ିପଡ଼ିଲା । ପୁରୀ ଗଲି ଖବର ଦେବାପାଇଁ । ପୁଅ ଯୁଦ୍ଧକୁ ଗଲା ପରି ଘରେ ସମସ୍ତେ ବିଚଳିତ ହୋଇପଡ଼ିଲେ । ପୁରୀ ସହରରେ ଆମର ବହୁତ ଆତ୍ମୀୟସ୍ୱଜନ । ଆମ ଘରକୁ ସମସ୍ତେ ଧାଡ଼ିଦେଲେ ସହାନୁଭୂତି ପ୍ରକାଶ କରିବା ପାଇଁ । ସାନଭାଇ ତ୍ରିଲୋଚନ ଥିଲା ଅତ୍ୟନ୍ତ ଉଚ୍ଚାଭିଳାଷୀ । ଭାରତୀୟ ନୌବାହିନୀର କର୍ମଚାରୀ ଭାବରେ ସେ ଇଉରୋପର ଅନେକ ବନ୍ଦର ପରିଭ୍ରମଣ କରିଥିଲା ଏବଂ ତାଙ୍କର କର୍ମକ୍ଷେତ୍ର ବମ୍ବେ ବନ୍ଦରରେ ଅବସ୍ଥାପିତ ହୋଇ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଅବସର ଗ୍ରହଣ କଲା । ଅବସର ପରେ ଦୀର୍ଘକାଳ ଚଉଦୁଆର କଳିଙ୍ଗ ଟିଉବସ୍ କାରଖାନାର ସିକ୍ୟୁରିଟି ଅଫିସର ଭାବରେ କାର୍ଯ୍ୟ କରି ଗୌରବାନ୍ୱିତ ହୋଇଥିଲା । ସେହିଠାରେ ଘରଦ୍ୱାର କରି ଅବସ୍ଥାନ କଲା ସପରିବାରରେ । ତା' ପରି କର୍ତ୍ତବ୍ୟନିଷ୍ଠ, ସ୍ନେହୀ ଓ ସ୍ୱାର୍ଥତ୍ୟାଗୀ ଭାଇ ସମାଜରେ ବିରଳ କହିଲେ ଚଳେ । ସେ କିନ୍ତୁ ମୋରି ଆଗରେ ହସିହସି ଆରପୁରକୁ ଚାଲିଗଲା ୨୦୦୬ ମସିହା ଜାନୁଆରୀ ପହିଲା ତାରିଖରେ, ଘର ନିକଟରେ ଠାକୁର ମନ୍ଦିରରେ ପ୍ରାର୍ଥନା କରୁଥିଲାବେଳେ । କି ଅମୃତ ମରଣ । ମନେପଡୁଛି ଜୀବନବ୍ୟାପୀ କେତେ ହସକାନ୍ଦର ଲୀଳାଖେଳା । ପିଲାଦିନୁ ସେ ଥିଲା ସୁଦର୍ଶନ, ସମସ୍ତଙ୍କର ଗେହ୍ଲା । ପାଠପଢ଼ା ଓ ଖେଳାଖେଳିରେ ସେ ଥିଲା ଅନେକ ସହପାଠୀଙ୍କ ଆଗରେ । ସବୁ ଭାଇ ଭଉଣୀଙ୍କର ସେ ଥିଲା ଅତ୍ୟନ୍ତ ଆପଣାର । କନିଷ୍ଠ ହୋଇ ଚାକିରି କରି ଘରର ଦାୟିତ୍ୱ ସମ୍ଭାଳିବାରେ ଥିଲା ଆଗଭର । ଆଜୀବନ ମୋର ଉଠପଡ଼ ଜୀବନରେ ସେ ଥିଲା ବର୍ମ ପରି । ସାନ ହୋଇ ସେ ହେଲା ପ୍ରଥମେ ପିତୃଲୋକର ଅଧିକାରୀ । ଏହାହିଁ ତ ଜୀବନର ଲୀଳାଖେଳା ।

କଟକରେ ମୁଁ ନୂଆ । ଥଇଥାନର କୌଣସି ବ୍ୟବସ୍ଥା ହୋଇପାରିନାହିଁ । ଘରୁ ତ ସାହାଯ୍ୟ ମିଳିବ ନାହିଁ । ଟିଉସନ୍ ଖୋଜୁଥାଏ । ସେଦିନ ରେଭେନ୍ସା କଲେଜରୁ ବାହାରି

ରାସ୍ତାରେ ଚାଲିଥାଏ । ମୋ ସହିତ ଏମ୍.ଏ. କ୍ଲାସ୍‌ରେ ନାମ ଲେଖାଇଥାଆନ୍ତି ଶ୍ରୀନିବାସ ମିଶ୍ର । ରାସ୍ତାରେ ପରିଚୟ ହେଲା । ଧୀରେଧୀରେ ଆଳାପ ଜମିଲା । ଅତ୍ୟନ୍ତ ସଙ୍କୁଚିତ ଭାବରେ ତାଙ୍କୁ କହିଲି ଗୋଟିଏ ଟିଉସନ୍ ବୁଝିଦେବା ପାଇଁ । ନଚେତ୍ ପଢ଼ିପାରିବି ନାହିଁ । ସେତେବେଳକାର ଅନେକ ପତ୍ରପତ୍ରିକାରେ ମୋର ଲେଖା ପ୍ରକାଶିତ ହେଉଥିବାରୁ ସେ ମୋର ନାଁ ସହିତ ପୂର୍ବରୁ ପରିଚିତ ଥିଲେ । ସେ ଅତ୍ୟନ୍ତ ସନ୍ତର୍ପଣରେ କହିଲେ, ଟିଉସନ୍ କାହିଁକି କରିବେ ? ଆସନ୍ତୁ, ବିଶ୍ୱବିଦ୍ୟାଳୟରେ ପୋଥିବିଭାଗରେ ଦୁଇଟି ପାର୍ଟଟାଇମ୍ ଚାକିରି ଖାଲି ଅଛି । ସେଠାରେ କାମ କରିବା । ତାଙ୍କର ପରାମର୍ଶରେ ପରଦିନ ତଳତେଲେଙ୍ଗା ବଜାରରେ କୁଳପତି ଚିନ୍ତାମଣି ଆଚାର୍ଯ୍ୟଙ୍କୁ ସାକ୍ଷାତ କଲି । ସେ ମୋର ହସ୍ତାକ୍ଷର ପରୀକ୍ଷା କଲେ ଏବଂ କିଛି ସାଧାରଣ ଜ୍ଞାନ ବିଷୟରେ ପଚାରି ବୁଝିଲେ । ମୋରି ହାତରେ ଚିଠି ଲେଖିଲେ ବିଶ୍ୱବିଦ୍ୟାଳୟ ରେଜିଷ୍ଟ୍ରରଙ୍କୁ ମୋତେ ନିଯୁକ୍ତି ପତ୍ର ଦେବାପାଇଁ । ସେହିଦିନ ଆମେ ଦୁଇ ସହପାଠୀ ପାର୍ଟଟାଇମ୍ ରିସର୍ଚ୍ଚ ଆସିଷ୍ଟାଣ୍ଟ୍ ଭାବରେ ନିଯୁକ୍ତି ପାଇଲୁ । ଦରମା ସତତିରିଶ ଟଙ୍କା ଆଠଅଣା । କାରଣ ସେହି ପଦରେ ନିଯୁକ୍ତ ଅଧିକାରୀଙ୍କର ଦରମା ଥିଲା ପଞ୍ଚସ୍ତରୀ ଟଙ୍କା । ପ୍ରତିଦିନ ସକାଳେ କୁଳପତିଙ୍କ ଘର ବାରଣ୍ଡାରେ ପାଞ୍ଚ ଛଅଟି ସାରଳା ଦାସଙ୍କ ଲିଖିତ ଚଣ୍ଡୀପୁରାଣ ଥୁଆ ହୋଇଥାଏ । ଗୋଟିଏ ବଡ଼ ମୋଟା ବନ୍ଧେଇ ଖାତାରେ ଶ୍ରୀନିବାସ ବାବୁ ଲେଖନ୍ତି ଏବଂ ମୁଁ ପ୍ରତ୍ୟେକ ପୋଥିର ପାଠ ତୁଳନା କରି ଡାକୁଥାଏ । ଆଜି ହୁଏତ କେହି କଳ୍ପନା କରିପାରିବେ ନାହିଁ ଯେ ମୋର କଟକ ରହଣି ଓ ପାଠପଢ଼ା ପାଇଁ ପ୍ରାରମ୍ଭରେ ଏହାହିଁ ଥିଲା ନିର୍ଭରଶୀଳ ରୋଜଗାର । ଏଥିପାଇଁ ଆଜୀବନ ଅନ୍ତରଙ୍ଗ ବନ୍ଧୁ ଶ୍ରୀନିବାସ ବାବୁଙ୍କ ନିକଟରେ ମୁଁ କୃତଜ୍ଞ ହୋଇ ରହିଲି ।

ଆରମ୍ଭ ହେଲା ଚଳାଚଳର ହିସାବ ନି◌ାଶ । ପ୍ରତିଦିନ ସକାଳେ ଜଗନ୍ନାଥବଲ୍ଲଭରୁ ତଳ ତେଲେଙ୍ଗାବଜାର ଚାଲିଚାଲି ଯିବା ଆ◌ ◌ବା କରେ । ତେଣୁ ଫେରି ମେସ୍‌ରେ ଖାଦ୍ୟ ଗ୍ରହଣ କରି ଚାଲିବା ଆରମ୍ଭ ହୁଏ ରେଭେନ୍ସା କଲେଜକୁ । ପୁନର୍ବାର କ୍ଲାସ୍ ସରିଲା ପରେ ଚାଲିଚାଲି ଫେରି ଆସେ ଏହି ଦୀର୍ଘପଥ ଜଗନ୍ନାଥବଲ୍ଲଭକୁ । ସାଇକେଲ ବ୍ୟବହାର ଜାଣିନଥାଏ । ଟାଉନ୍‌ବସ୍‌ରେ ଯିବା ଆସିବା କରିବା ପାଇଁ ଆର୍ଥିକ କ୍ଷମତା ନଥାଏ । ସକାଳ ଜଳଖିଆ ପାଇଁ ବଜେଟ ଏକ ଅଣା । ଚାରୋଟି ମୁଢ଼ିମୁଆଁ ଖାଇଦେଇ ପାର୍ଟଟାଇମ୍ ଚାକିରି କରିବାକୁ ଯାଏ । ସଂଧ୍ୟାରେ ଚାନ୍ଦିନୀଚୌକରେ କାମିନୀ ନନା ଦୋକାନକୁ ଯାଏ ଜଳଖିଆ ଖାଇବା ପାଇଁ । ବଜେଟ ଦୁଇଅଣା । ଥାଳି ଭଳି ପଟେ ରୁଟି ଏବଂ ମନଇଚ୍ଛା ଆଳୁଝୋଳ । ମନ ହେଲେ ଆଉ ଦୁଇଅଣା ଦେଇ ରସଗୋଲା ଖାଇଥାଏ ।

ବାହିନୀ ମେସ୍‌ର ସମସ୍ତେ ରୋଜଗାରିଆ । ହୋଟେଲ ଓ ସିନେମା ଦେଖାରେ ସେମାନେ ମୁକ୍ତହସ୍ତ । ସେହି କାରଣରୁ ଏକତ୍ର ଥାଇ ମଧ ସେମାନଙ୍କ ସଖ୍ୟ ଲାଭରୁ ଅନେକ ଦୂରରେ ଥାଏ । ସେମାନେ ଅଫିସ୍‌ରୁ ଫେରିବା ପୂର୍ବରୁ ମୁଁ ମେସ୍ ଛାଡ଼ି ବୁଲି ବାହାରିଯାଏ । ଗୌରୀଶଙ୍କର ପାର୍କ ଅଥବା କାଠଯୋଡ଼ି କୂଳରେ ଏକୁଟିଆ ବସି ରହେ ସଂଧ୍ୟା ପର୍ଯ୍ୟନ୍ତ ।

ବେଳେବେଳେ ଟାଉନହଲ ଅଥବା ରାମଚନ୍ଦ୍ର ଭବନ ସଭାରେ ଆଲୋଚନା ଶୁଣିବା ପାଇଁ ପଛ ଧାଡ଼ିରେ ଅପେକ୍ଷା କରିଥାଏ । ଏମ.ଏ. ଦୁଇବର୍ଷ ଆଦୌ ସିନେମା ଦେଖିବାକୁ ଯାଇନାହିଁ । ସେତେବେଳେ ପ୍ରତି ସପ୍ତାହରେ ନୂଆନୂଆ ଫିଲମ୍ ପ୍ରଦର୍ଶିତ ହେଉଥାଏ । ସାଙ୍ଗସାଥୀ ସିନେମା ବିଷୟରେ ଖୁସୀ ଗପ କଲାବେଳେ ମନ ଖାଲି ଛଟପଟ ହୁଏ । କିନ୍ତୁ ସେ ପ୍ରଲୋଭନରୁ ଦୂରେଇ ରହିଥାଏ ।

ସେ ସମୟରେ ରେଭେନ୍ସା କଲେଜରେ ବିଭିନ୍ନ ବିଭାଗରେ ବହୁ ସ୍ୱନାମଧନ୍ୟ ଅଧ୍ୟାପକ କାର୍ଯ୍ୟ କରୁଥିଲେ । ଇଂରାଜୀ ବିଭାଗରେ ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫୁଲ୍ଲ କୁମାର ପତି, ଅଙ୍କ ବିଭାଗରେ ପ୍ରଫେସର ବାମାଚରଣ ଦାସ, ରମାନାଥ ମହାନ୍ତି, ଇତିହାସରେ ପ୍ରଫେସର ଘନଶ୍ୟାମ ଦାସ, ଅର୍ଥନୀତିରେ ପ୍ରଫେସର ସଦାଶିବ ମିଶ୍ର, ବିଜ୍ଞାନ ବିଭାଗରେ ଡଃ ବଳଭଦ୍ର ପ୍ରସାଦ, ବଂଶୀଧର ସାମନ୍ତରାୟ, ଡଃ ବସନ୍ତକୁମାର ବେଉରା, ଡଃ ଗୋକୁଳାନନ୍ଦ ମହାପାତ୍ର, ଅର୍ଥନୀତିରେ ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶ ପ୍ରଭୃତି ସ୍ମରଣୀୟ । ଆମ ଓଡ଼ିଆ ବିଭାଗରେ ଥିଲେ ଡଃ କରୁଣାକର କର, କୁଞ୍ଜବିହାରୀ ତ୍ରିପାଠୀ, ଜୟକୃଷ୍ଣ ମିଶ୍ର, ରାଜକିଶୋର ରାୟ, ଗୌରୀକୁମାର ବ୍ରହ୍ମା, ଜାନକୀବଲ୍ଲଭ ମହାନ୍ତି (କ), ଗୋପାଳଚନ୍ଦ୍ର ମିଶ୍ର, ଭୋଳାନାଥ ମିଶ୍ର, ବଂଶୀଧର ମହାନ୍ତି ଇତ୍ୟାଦି । ବିଭାଗୀୟ ମୁଖ୍ୟ କରୁଣାକର କର ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଡି.ଲିଟ୍ ଉପାଧିଧାରୀ । ରେଭେନ୍ସା କଲେଜର କତିପୟ ଡକ୍ଟରେଟ୍ ଉପାଧିପ୍ରାପ୍ତ ଅଧ୍ୟାପକମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ତାଙ୍କ ପାଇଁ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ଗୌରବମଣ୍ଡିତ ହୋଇଥାଏ । ଅଧ୍ୟାପକ ଜୟକୃଷ୍ଣ, ଅଧ୍ୟାପକ ରାଜକିଶୋର ଏବଂ ଅଧ୍ୟାପକ ଗୌରୀକୁମାରଙ୍କ ପରି ଅଧ୍ୟାପକ ଏ ଯୁଗରେ ବିରଳ । ସେମାନେ କେବଳ ବିଦ୍ୱାନ ଅଧ୍ୟାପକ ଥାଇ ଶିକ୍ଷାଦାନରେ ମହିମାମଣ୍ଡିତ ନଥିଲେ, ସାହିତ୍ୟ ଶ୍ରେଣୀର ଛାତ୍ରମାନଙ୍କ ମଧ୍ୟରେ ସାହିତ୍ୟ ସୃଷ୍ଟି ପାଇଁ ଭାବାବେଗ ସୃଷ୍ଟି କରୁଥିଲେ । ଶ୍ରେଣୀକକ୍ଷର ବାହାରେ ମଧ୍ୟ ଆଗ୍ରହୀ ଛାତ୍ରମାନଙ୍କୁ ଶିକ୍ଷାଦାନ କରିବା ପାଇଁ ଆଦୌ କୁଣ୍ଠିତ ହେଉ ନଥିଲେ । ବର୍ତ୍ତମାନର ସ୍ୱାର୍ଥସର୍ବସ୍ୱ ଟିଉସନ ଯୁଗରେ ଏଇ କଥାଟି ଛାତ୍ର ଓ ଅଧ୍ୟାପକମାନେ ବିଶ୍ୱାସ କରିପାରିବେ ନାହିଁ । ଏହି ଅଧ୍ୟାପକମାନେ କେବଳ ରେଭେନ୍ସା କଲେଜର ପରିସୀମା ମଧ୍ୟରେ ନୁହେଁ, ସମଗ୍ର ଓଡ଼ିଶାର ଶିକ୍ଷାବିଭାଗର ଥିଲେ ଅତ୍ୟନ୍ତ ସୁପରିଚିତ ବ୍ୟକ୍ତିତ୍ୱ । ସେହି ସୁବର୍ଣ୍ଣଯୁଗରେ ମଧ୍ୟ ପରଶ୍ରୀକାତରତା ଓ ବ୍ୟକ୍ତିଗତ ଈର୍ଷାର ଅଭାବ ନଥିଲା । ଘରୋଇ କଲେଜର ଅଧ୍ୟାପକମାନଙ୍କୁ ସରକାରୀ କଲେଜର ଅଧ୍ୟାପକମାନେ ପ୍ରାୟତଃ ନାକ ଟେକୁଥିଲେ । ସାମାନ୍ୟ ଅଧିକା ଦରମା ପାଉଥିବାରୁ ସେମାନେ ବୃଥା ଅହମିକାରେ ଘାରି ହେଉଥିଲେ । ଅଧ୍ୟାପକ ଗୌରୀକୁମାର ଘରୋଇ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପନାଜୀବନ ଆରମ୍ଭ କରିଥିଲେ । ତାଙ୍କର ହାତଗଢ଼ା ଖ୍ରୀଷ୍ଟ କଲେଜର ଛାତ୍ରମାନେ ଓଡ଼ିଆ ଅନର୍ସ ପରୀକ୍ଷାରେ ବର୍ଷ ପରେ ବର୍ଷ ପ୍ରଥମ ପାଞ୍ଚଜଣଙ୍କ ମଧ୍ୟରେ ରହିବାର ଗୌରବ ହାସଲ କରିଥିଲେ । ଅନେକ ବର୍ଷ ପ୍ରଥମ ସ୍ଥାନ ସେମାନଙ୍କର କେହି ଛଡ଼ାଇ ପାରୁନଥିଲେ । ଏହିପରି ଗୌରବର ଅଧିକାରୀ ଅଧ୍ୟାପକ ବ୍ରହ୍ମା ରେଭେନ୍ସାରେ ଯୋଗଦେବାରୁ

ବିଭାଗୀୟ ମୁଖ୍ୟ ତାଙ୍କୁ ଏମ୍.ଏ. କ୍ଲାସ୍‌ରୁ ବଂଚିତ କଲେ । ଶେଷରେ ଛାତ୍ରମାନେ ଦାବୀ କରିଥିବାରୁ ତାଙ୍କୁ ଅତ୍ୟନ୍ତ କୁଣ୍ଠିତ ମନରେ ଏମ୍.ଏ. କ୍ଲାସ୍ ଅର୍ପଣ କରାଯାଇଥିଲା । ଅଧ୍ୟାପକ ବ୍ରହ୍ମାଙ୍କର ଅଧ୍ୟାପନା ଏପରି ଆକର୍ଷଣୀୟ ଏବଂ ପ୍ରଭାବଶାଳୀ ଥିଲା ଯେ ଅନ୍ୟ ଶ୍ରେଣୀକକ୍ଷ ଛାତ୍ରମାନେ ଉପସ୍ଥାନ ପରେ କ୍ଲାସ୍ ପରିତ୍ୟାଗ କରି ତାଙ୍କର ଅଧ୍ୟାପନା କୌଶଳକୁ ମନ୍ତ୍ରମୁଗ୍ଧ ହୋଇ ଉପଭୋଗ କରୁଥିଲେ । ସେହିପରି ଅଧ୍ୟାପକ ରାଜକିଶୋର ରାୟଙ୍କର ଦୁର୍ଦ୍ଦଶାର ମଧ୍ୟ ସୀମା ନଥିଲା । ତାଙ୍କ ପରି ଛାତ୍ରପ୍ରିୟ ଅଧ୍ୟାପକଙ୍କୁ ରଖାଇ ନ ଦେବାପାଇଁ ତାଙ୍କ ବିରୁଦ୍ଧରେ ପିଲାଙ୍କୁ ମତାଇ ଅଧ୍ୟକ୍ଷଙ୍କ ନିକଟକୁ ଦରଖାସ୍ତ ପ୍ରେରଣ କରାଗଲା ଏବଂ ସେ ଅଳ୍ପ ସମୟ ମଧ୍ୟରେ ଅନ୍ୟତ୍ର ବଦଳି ହୋଇଗଲେ ।

ଏମ୍.ଏ. ଶ୍ରେଣୀରେ ସହପାଠୀମାନଙ୍କ ମଧ୍ୟରୁ ଅନେକ ପତ୍ରପତ୍ରିକାରେ ଲେଖାଲେଖି କରୁଥିଲେ । ସାହିତ୍ୟ ସାଧନା ପାଇଁ ନିଷ୍ଠାପର ଉଦ୍ୟମ ସେମାନଙ୍କର ଆଜୀବନ ଅବ୍ୟାହତ ରହିଥିବାର ଦେଖାଯାଏ । ଏହି ସହପାଠୀମାନଙ୍କ ମଧ୍ୟରେ ଆମ ସମୟର ପ୍ରସିଦ୍ଧ ଗଳ୍ପଲେଖକ ଓ ଔପନ୍ୟାସିକ ମହାପାତ୍ର ନୀଳମଣି ସାହୁ, କବି ସତ୍ୟାନନ୍ଦ ଚମ୍ପତିରାୟ, ଗଳ୍ପଲେଖକ ଚକ୍ରଧର ସାମଲ, ପ୍ରାବନ୍ଧିକ ଶ୍ରୀନିବାସ ମିଶ୍ର, ପ୍ରାବନ୍ଧିକ ଗଙ୍ଗାଧର ବଳ, ଗବେଷକ ଦୀନବନ୍ଧୁ ରଥ, ସୁଲେଖକ ଓ ସାମ୍ବାଦିକ ବିଚିତ୍ରାନନ୍ଦ କର, ଔପନ୍ୟାସିକ ଶଶିଭୂଷଣ ମହାନ୍ତି, ନାଟ୍ୟକାର ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ ପ୍ରଭୃତି ସ୍ୱନାମଧନ୍ୟ ।

ଗୋଟିଏ ଅପ୍ରୀତିକର ଘଟଣା ଆଜିଯାଏ ଭୁଲି ପାରିନାହିଁ । ଜଣେ ଅଧ୍ୟାପକ ଆମକୁ ଗୋପୀନାଥ ମହାନ୍ତିଙ୍କର ପରଜା ଉପନ୍ୟାସ ପଢାଉଥିଲେ । ଗୋଟିଏ ବିଷୟରେ ମୋର ସନ୍ଦେହ ଦୂର କରିବା ପାଇଁ ସାର୍‌ଙ୍କୁ ପ୍ରଶ୍ନଟିଏ ପଚାରିଲି । ସେ ମୋତେ ବୁଝାଇଦେଇ କହିଲେ, ମୋତେ ଘରକୁ ଯିବାପୂର୍ବରୁ ସାକ୍ଷାତ କରିବ । କ୍ଲାସ୍ ଶେଷ ହେବା ପରେ ଘରମୁହାଁ ହେବା ପୂର୍ବରୁ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ୍ କ୍ୱାର୍ଟରରେ ସାର୍‌ଙ୍କୁ ସାକ୍ଷାତ କଲି । ରେଭେନ୍ସାରେ ମୁଁ ନବାଗତ ଛାତ୍ର । ପୁରୀ କଲେଜରେ ମୁଁ ଅର୍ଥନୀତି ଅନର୍ସ ଶ୍ରେଣୀର ଛାତ୍ର ଥିଲି । ଓଡ଼ିଆ ଅନର୍ସ ପାଠ୍ୟ ସହିତ ପରିଚିତ ହେବାର ସୌଭାଗ୍ୟ ମୋର ନଥିଲା । ଅର୍ଥନୈତିକ ଦୁର୍ଗତି ମଧ୍ୟରେ ବାଧହୋଇ ଓଡ଼ିଆ ଏମ୍.ଏ.ରେ ନାମ ଲେଖାଇଥାଏ । ତେଣୁ ନିଜର ସନ୍ଦେହ ଦୂର କରିବା ପାଇଁ ସର୍ବଦା ବ୍ୟାକୁଳ ହେଉଥାଏ । କାହିଁକି କେଜାଣି ସେଦିନ ସାର୍ ମୋତେ ଚେତେଇ ଦେଇ କହିଲେ- ଏମ୍.ଏ. କ୍ଲାସ୍‌ରେ ସାବଧାନରେ ଚଳିବ । ଜଣେ ଅଧ୍ୟାପକ ଇଚ୍ଛା କଲେ ତୁମର ଶେଷ ପରୀକ୍ଷାରେ ଅଶେଷ କ୍ଷତିସାଧନ କରିଦେଇପାରେ । ମୋ ପାଇଁ ଏ ପରାମର୍ଶ ଅବୋଧ ହୋଇ ରହିଲା । ବଂଧୁ ମହାପାତ୍ର ନୀଳମଣିଙ୍କୁ ପଚାରିଲି । ସେ କହିଲେ, 'ବୋକାଟା କିରେ' ଜାଣିପାରିଲୁ ନାହିଁ । ଏହି ଅଧ୍ୟାପକମାନଙ୍କର ପ୍ରଶ୍ନକୁ ବଡ଼ ଡର । ମନରେ ଅବସୋସ ରଖି ତେଣିକି ଚୁପ୍ ରହିଲି । ସନ୍ଦେହ ରହିଲେ ମଧ୍ୟ ଦୁଇବର୍ଷ ମଧ୍ୟରେ ଆଉ କାହାକୁ ପ୍ରଶ୍ନ ପଚାରି ନାହିଁ । ପ୍ରଶ୍ନ ପାଇଁ ଅନୁମତି ଦେଇଥିଲେ କେତେ କଥା ଜାଣି ପାରିଥାଆନ୍ତି । ସାର୍‌ଙ୍କର ଏହି କାର୍ପଣ୍ୟକୁ ମୁଁ ମନ ମଧ୍ୟରେ ଆଦୌ ସମର୍ଥନ କରିପାରି·

ନଥିଲି । ତେଣୁ ସୌଭାଗ୍ୟକ୍ରମେ ଦୀର୍ଘ ଅଠତିରିଶ ବର୍ଷର ଅଧ୍ୟାପକ ଜୀବନରେ ମୋର ଛାତ୍ରମାନଙ୍କୁ ସ୍ୱାଧୀନତା ଦେଇଥିଲି ଯେ କୌଣସି ପ୍ରକାର ପ୍ରଶ୍ନ ପଚାରିବା ପାଇଁ । ମୋର ଧାରଣା, ଜଣେ ଆଗ୍ରହୀ ଛାତ୍ରର ପ୍ରଶ୍ନ ଦ୍ୱାରା ଅଧ୍ୟାପକ ନିଜେ ବହୁଭାବରେ ଉପକୃତ ହୋଇଥାଏ ।

ପୂର୍ବରୁ ଲେଖିଛି, ପାର୍ଟଟାଇମ୍ ଚାକିରି କରିଥାଏ ଗୋଟିଏ ଓଳି ଉତ୍କଳ ବିଶ୍ୱବିଦ୍ୟାଳୟର ଗବେଷକ ସହକାରୀ ହିସାବରେ ସହପାଠୀ ବନ୍ଧୁ ଶ୍ରୀନିବାସ ମିଶ୍ରଙ୍କ ସହିତ । ଏହି ଶ୍ରୀନିବାସ ବାବୁ କର୍ମମୟ ଜୀବନରେ ଜଣେ ବିଶିଷ୍ଟ ଗବେଷକ, ବରିଷ୍ଠ ଅଧ୍ୟାପକ ତଥା ବ୍ରହ୍ମପୁର ଓ ଶାନ୍ତିନିକେତନ ବିଶ୍ୱବିଦ୍ୟାଳୟର ଓଡ଼ିଆ ସାହିତ୍ୟ ବିଭାଗରେ ବିଭାଗୀୟ ମୁଖ୍ୟ ଏବଂ ପ୍ରଫେସର ଭାବରେ କାର୍ଯ୍ୟ କରି ଅବସର ଗ୍ରହଣ କରିଅଛନ୍ତି । ଆମ ଦୁହିଁଙ୍କୁ ଆଦେଶ ଥାଏ, ପ୍ରତ୍ୟେକ ରବିବାର ଦିନ କ'ଣ ପୋଥିକାମ ହେଲା, ତା'ର ଏକ ରିପୋର୍ଟ ଅବସରପ୍ରାପ୍ତ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ଜଣାଇବା ପାଇଁ ।

ପ୍ରତି ସପ୍ତାହରେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କୁ ସାକ୍ଷାତ୍ କରିବା ଥିଲା ଏକ ଅମୃତ ଅନୁଭବ । କେତେବଡ଼ ସାରସ୍ୱତ ବ୍ୟକ୍ତିତ୍ୱ । କତିପୟ ସମଧର୍ମା ସହକର୍ମୀମାନଙ୍କ ସହଯୋଗରେ ବିଂଶ ଶତାବ୍ଦୀର ତୃତୀୟ ଦଶକରେ ସେ ପ୍ରତିଷ୍ଠା କରିଥିଲେ ପ୍ରାଚୀ ସମିତି । ପ୍ରାଚୀନ ଓଡ଼ିଆ ସାହିତ୍ୟ ଭଣ୍ଡାରର ରାଶିରାଶି ପୋଥି ସଂଗ୍ରହ କରିବା ସହିତ ତୁଳନାତ୍ମକ ବିଚାରରେ ବୈଜ୍ଞାନିକ ରୀତିରେ ସଂପାଦନା କରିଥିଲେ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ସହ ଅନେକ ପ୍ରାଚୀନ ସାହିତ୍ୟ । ରାଧାନାଥ ଯୁଗର ସମକାଳୀନ ମହାନ୍ ସାଧକ କବି ଭୀମ ଭୋଇ ପଶ୍ଚିମ ଓଡ଼ିଶାର ଅରଣ୍ୟ ପ୍ରଦେଶରେ ବିସ୍ମୃତ ହୋଇ ରହିଥିଲେ । ତାଙ୍କର ସାହିତ୍ୟକୃତିକୁ ଉଦ୍ଧାର କରି ଲୋକଲୋଚନକୁ ଆଣିବାରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ ଆର୍ତ୍ତବଲ୍ଲଭ । ଅନେକ ଶିଳାଲିପି, ମାଦଳା ପାଞ୍ଜି ପ୍ରଭୃତି ଉଦ୍ଧାର କରି ପ୍ରାଚୀନ ସାହିତ୍ୟରେ ଗଦ୍ୟଲେଖାର ବିଭବ ଆବିଷ୍କାର କରିଥିଲେ । ଅଧ୍ୟୟନ ଏବଂ ଆଲୋଚନା ଥିଲା ତାଙ୍କର ଜୀବନବ୍ୟାପୀ ତପସ୍ୟା । ଜୀବନର ଅନ୍ତିମ ସମୟରେ ବିଶାଳ ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ କରି ଚିର ବିଦାୟ ନେଇଥିଲେ । ସେଭଳି ସତସଙ୍ଗ ଭାଗ୍ୟରେ ଥିଲେ ମିଳିଥାଏ ।

ଆର୍ତ୍ତବଲ୍ଲଭ ଥିଲେ ଉତ୍କଳ ସାହିତ୍ୟ ସମାଜର ବରେଣ୍ୟ ସଭାପତି । ସେ ସମୟରେ ସାହିତ୍ୟ ସମାଜରେ ତରୁଣମାନଙ୍କର ପ୍ରବେଶ ଅଧିକାର ନଥିଲା । କୁଳବୃଦ୍ଧ ସାହିତ୍ୟସେବୀମାନଙ୍କ ଗହଣରେ ଆର୍ତ୍ତବଲ୍ଲଭଙ୍କ ସହିତ ଏହି ସଂପର୍କରୁ ବସଉଠ କରିବାର ଗୌରବ ଲାଭ କରିଥିଲି । ବେଳେବେଳେ ଆଲୋଚନା ସଭାରେ ପ୍ରବନ୍ଧ ପାଠ କରିବାର ଅଧିକାର ମଧ୍ୟ ମୋ ଭାଗ୍ୟରେ ଜୁଟିଥିଲା । ବୋଧହୁଏ ତରୁଣ ଜୀବନର ଏହି ସଂପର୍କ ହିଁ ମୋତେ ଆଜୀବନ ଉତ୍କଳ ସାହିତ୍ୟ ସମାଜର ପରିବାର ମଧ୍ୟରେ ଆବଦ୍ଧ କରି ରଖିଆସିଛି ନାନା ଭୂମିକାରେ ।

ସେତେବେଳେ ଉତ୍କଳ ସାହିତ୍ୟ ସମାଜର ସଭାପତି ଥିଲେ ଅଧ୍ୟାପକ ଆର୍ତ୍ତବଲ୍ଲଭ ଓ ଉପସଭାପତି ଥିଲେ କାଳିନ୍ଦୀଚରଣ ପାଣିଗ୍ରାହୀ । ଯୁଗ୍ମ ସଂପାଦକ ଥିଲେ ଆମ ସାର୍ ଅଧ୍ୟାପକ

ରାଜକିଶୋର ରାୟ ଓ ବିଶିଷ୍ଟ ଐତିହାସିକ ସୁଧାକର ପଟ୍ଟନାୟକ । ଛାତ୍ର ହିସାବରେ ପ୍ରତ୍ୟେକ ସାହିତ୍ୟ ସଭାରେ ଯୋଗ ଦେଉଥିଲି । କ୍ରମେ ବହୁ ସାହିତ୍ୟସେବୀଙ୍କ ନିକଟ ସଂପର୍କରେ ଆସିବାର ସୌଭାଗ୍ୟ ଲାଭ କଲି । ପରବର୍ତ୍ତୀ ଅଧ୍ୟାପକ ଜୀବନରେ କାଳିନ୍ଦୀଚରଣ ପାଣିଗ୍ରାହୀ ଯେତେବେଳେ ସଭାପତି ହେଲେ, ତାଙ୍କର ଅନ୍ୟତମ ସଂପାଦକ ଭାବରେ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା । ମୋର ସହପାଠୀ ଅନ୍ତରଙ୍ଗ ବନ୍ଧୁ ବିଚିତ୍ରାନନ୍ଦ କର ଥିଲେ ଆଉ ଜଣେ ସଂପାଦକ ।

ଏମ୍.ଏ. ପରୀକ୍ଷା ଦେଇଥାଏ । ପରୀକ୍ଷାଫଳ ପ୍ରକାଶିତ ହୋଇନଥାଏ । ଭବିଷ୍ୟତ ଚାକିରୀ ଉଦ୍ଦେଶ୍ୟରେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କୁ ଅନୁରୋଧ କଲି ପ୍ରଶଂସାପତ୍ରଟିଏ ଦେବା ପାଇଁ । ଏ ହେଉଛି ୧୯୫୧ ମସିହା ଘଟଣା । ଆଜିଯାଏ ସେହି ସାର୍ଟିଫିକେଟକୁ ଆଶୀର୍ବାଦ ମନେ କରି ସାଇତି ରଖିଛି ।

ଏଠାରେ ତାହାର କିଛି ଅଂଶ ଉଲ୍ଲେଖ କରୁଛି ।

"I have great pleasure in certifying that Sri Pathani Patnaik, B.A. is well known to me. On many occasions I had the opportunity of testing his knowledge in Oriya literature. He joined in the deliberations of the Sahitya Samaja of which I am the president and also of other literature societies. I am well impressed with his manner of handling the literary subjects and passing his independent opinion on those topics. He came to my place many a time while studying M.A. in the Ravenshaw College to have his doubts cleared in many subjects and I have come to know that he is intelligent, sober and dutiful.

Artaballabha Mohanty
Rai Bahadur
Retd. Prof. of Sans. and Oriya Literature

ଅଧ୍ୟାପକ ଆର୍ତ୍ତବଲ୍ଲଭ ଥିଲେ ତତ୍କାଳୀନ ସାରସ୍ୱତ ପରିବେଶରେ ଅତ୍ୟନ୍ତ ସମ୍ମାନୀତ ଭୀଷ୍ମ ପିତାମହ । ଓଡ଼ିଶାର ସବୁଶ୍ରେଣୀର ଶିକ୍ଷାବିତ୍, ସାହିତ୍ୟସେବୀ ଓ ସମାଜସେବୀଙ୍କର ସେ ଥିଲେ ସମ୍ମାନୀତ ଓ ଶ୍ରଦ୍ଧାଭାଜନ ବ୍ୟକ୍ତିତ୍ୱ । ଯେ କୌଣସି ସାଂସ୍କୃତିକ ମଣ୍ଡପରେ ତାଙ୍କର ଉପସ୍ଥିତି ଏକ ପ୍ରକାର ଗୁରୁଗମ୍ଭୀର ବାତାବରଣ ସୃଷ୍ଟି କରୁଥିଲା । ସେ କାଳରେ ରାଜ୍ୟର ଏକମାତ୍ର ପ୍ରମୁଖ ଶିକ୍ଷାନୁଷ୍ଠାନ ରେଭେନ୍ସା କଲେଜରେ ଅନେକ ବିଦ୍ୱାନ ଅଧ୍ୟାପକ ଥିଲେ ହେଁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଗବେଷଣା ଓ ସାରସ୍ୱତ ସାଧନାକୁ ସ୍ୱୀକୃତି ଜଣାଇ ଇଂରେଜ ସରକାର ୧୯୩୨ ମସିହାରେ ତାଙ୍କୁ ରାୟସାହେବ ଉପାଧିରେ ସମ୍ମାନିତ କରିଥିଲେ । ସମଗ୍ର ଓଡ଼ିଆଭାଷୀ ଅଞ୍ଚଳର ସର୍ବମାନ୍ୟ ନେତା କୁଳବୃଦ୍ଧ ମଧୁସୂଦନ ଦାସ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କୁ ଏହି ଅଭିନନ୍ଦନ ଜଣାଇ ଯେଉଁ ଆଶୀର୍ବାଦ ବ୍ୟଞ୍ଜକ ପତ୍ର ଲେଖିଥିଲେ ତାହାର ନମୁନା ଏହିପରି–

D. 9.6.1932

My dear Raisaheba,

The Utkal luminary which illuminated the Indian firmanent has set, and has gone down the horizon. But an observor can see the rich colours reflected in the western sky.

We all wish to see the great luminary rise once more and gives us the dawn of a new national life.

You have devoted a good deal of your valuable time to direct the attention of the present generation to the ancient literature of the nation. The beautiful colours in the western sky must be fully appreciated, loved and admired before the youthful mind is aglow with a desire to see the dawn of a new national life.

The honour confered on you should have come earlier. But you are young and I am sure you will receive higher honours not only from government but from your nation, who will crown you with ever green laurels while you live and when you leave this world, you will receive a crown of life from your creator for your services to your nation and country.

With best wishes for health, happiness and prosperity.

Yours very sincerely,

M.S. Das

ମଧୁସୂଦନ ଦାସଙ୍କର ଏହି ଭବିଷ୍ୟତବାଣୀ ସଫଳ ହୋଇଥିଲା । ଅଧାପକ ଆର୍ତ୍ତବଲ୍ଲଭଙ୍କୁ ପରବର୍ତ୍ତୀ ପର୍ଯ୍ୟାୟରେ ରାୟବାହାଦୁର, ବିଶ୍ୱବିଦ୍ୟାଳୟର ଡିନ୍ ଓ ଡି.ଲିଟ୍. ଉପାଧିରେ ସମ୍ମାନିତ କରାଯାଇଥିଲା ।

ଆର୍ତ୍ତବଲ୍ଲଭଙ୍କ ସଂପର୍କରେ ନିଜର ଏକ ତିକ୍ତ ଅନୁଭବ ନ ଲେଖି ରହିପାରୁନାହିଁ । ଅଧାପକ ଚାକିରୀରେ ପ୍ରବେଶ କଲାପରେ ତାଙ୍କ ନିକଟକୁ ଅନେକଥର ଯାଇଛି ତାଙ୍କ ଅଧୀନରେ ଗବେଷଣା କରିବା ପାଇଁ । ସେ ପରାମର୍ଶ ଦେଲେ, ଅଚ୍ୟୁତାନନ୍ଦଙ୍କ ହରିବଂଶ ପୁରାଣ ଓ ପୋଥି ସଂଗ୍ରହ କରିବା ପାଇଁ । ପ୍ରକାଶିତ ପୁରାଣ ସିନା କିଣି ଆଣିଲି, ପୋଥି କେଉଁଠୁ ପାଇବି ? ଜାଣିବାକୁ ପାଇଲି, ହରିବଂଶ ପୋଥି ହସ୍ତାନ୍ତର ହୁଏ ନାହିଁ । କେବଳ ବ୍ରାହ୍ମଣ ପୁରାଣ ପଣ୍ଡା ତାହା ପାଠ କରି ଶୁଣାଇଥାଆନ୍ତି । ଅସୁବିଧାରେ ଥାଏ । ମୋର ଶ୍ୱଶୁରଙ୍କ ଘରର ପୁରୋହିତ ଖଲି କକେଇଙ୍କୁ ମନର ଦୁଃଖ ଶୁଣାଇଲି । ସେ ଦୟାକରି କିଛି ମାସ ପାଇଁ ତାଙ୍କ ଘରର ପୋଥି ମୋତେ ଦେଲେ । ଆର୍ତ୍ତବାବୁଙ୍କ ନିର୍ଦ୍ଦେଶରେ ଛପା ବହି ଓ ତାଳପତ୍ର ପୋଥିକୁ ମିଳାଇ ପାଠାନ୍ତର ପ୍ରସ୍ତୁତ କରୁଥାଏ । ବାରମ୍ବାର ତାଙ୍କ ପାଖକୁ ଯାଉଥାଏ ଗବେଷଣାର ଦିଗ୍‌ଦର୍ଶନ ପାଇଁ । ସେ ମୋତେ ପ୍ରତିଥର ଗୋଟିଏ କଥା କହୁଥିଲେ–‘‘କାହିଁକି ବ୍ୟସ୍ତ ହେଉଛୁ । ମୁଁ ତୋତେ ଡାକିଦେବି । ତୁ ଲେଖିନେଇ ବିଶ୍ୱବିଦ୍ୟାଳୟରେ ଉପସ୍ଥାପନ କରିବୁ ଏବଂ ଡିଗ୍ରୀ ପାଇବୁ । ଖାଲି ପୋଥି ମିଳାଇ ଲେଖୁଥାଅ । ମୋର ଆତ୍ମସମ୍ମାନରେ ବାଧା

ଉପୁଜିଲା । ଧୈର୍ଯ୍ୟଚ୍ୟୁତି ହେଲା । ଛାତ୍ରଜୀବନରୁ ପ୍ରବନ୍ଧ ଓ ସମାଲୋଚନା ଲେଖି ସୁଧୀଜନଙ୍କର ସ୍ନେହଶ୍ରଦ୍ଧା ଓ ଆଶୀର୍ବାଦ ଲାଭ କରୁଥାଏ । ମୋତେ ନିଜ ଗୋଡ଼ରେ ଠିଆ ହେବା ପାଇଁ ସୁଯୋଗ ନମିଳିବାରୁ ମନଦୁଃଖରେ ଓହରି ଆସିଲି । କିଛି କାଳ ପରେ ପ୍ରଫେସର କୁଞ୍ଜବିହାରୀ ଦାଶଙ୍କ ଅଧୀନରେ ଗବେଷଣା କରିବି ବୋଲି ବିଶ୍ୱବିଦ୍ୟାଳୟରେ ନାମ ରେଜିଷ୍ଟ୍ରୀ କରିଥିଲି । ଅନେକ ପଢ଼ାପଢ଼ି କରି ପ୍ରସ୍ତୁତ ହେଉଥାଏ । ହଠାତ୍ ମୋର ପତ୍ନୀ ଏକ ଭୟଙ୍କର ରୋଗରେ ପୀଡ଼ିତା ହୋଇ ମରଣମୁଖୀ ଶଯ୍ୟାରେ ଶୋଇ ରହିଲେ ବର୍ଷବର୍ଷକାଳ । ମୋର ଚାରିଟି ସନ୍ତାନ ସେତେବେଳକୁ ନାବାଳକ । ଶ୍ରୀମତୀଙ୍କର ଏହି ରୋଗ ପାଇଁ ଓଡ଼ିଶାରେ କୌଣସି ପ୍ରକାର ଚିକିତ୍ସାର ବ୍ୟବସ୍ଥା ନଥାଏ । ଭାରତରେ କେବଳ ଭେଲୋର ହସ୍‌ପିଟାଲ ଥାଏ ଏକମାତ୍ର ଚିକିତ୍ସାସ୍ଥଳ । ଏଠାରେ ବରିଷ୍ଠ ଡାକ୍ତରମାନେ କହିଲେ, ଭେଲୋର ନେଇପାର । ମାତ୍ର ହୃଦସ୍ଥଳରେ ଅସ୍ତ୍ରଚିକିତ୍ସା କରିବାକୁ ହେବ । ବଂଚିବାର ଆଶା ଶତକଡ଼ା ପାଞ୍ଚ । ଭେଲୋର ନେଇ ଅସ୍ତ୍ରଚିକିତ୍ସା ଟେବୁଲରେ ସବୁଦିନ ପାଇଁ ଚିରବିଦାୟ ଦେବାକୁ ମନହେଲା ନାହିଁ । ଭାଗ୍ୟକୁ ଆଶ୍ରା କରି ରହିଲି ।

ଗବେଷଣାର ସମସ୍ତ ସ୍ୱପ୍ନ ଭାଙ୍ଗିଗଲା । ବିଗତ ପଚିଶ ବର୍ଷ ହେଲା ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଉପସ୍ଥାପିତ ଗବେଷଣା ନିବନ୍ଧର ପରୀକ୍ଷକ ହେବାର ସ୍ୱୀକୃତି ସିନା ଲାଭ କରିଛି, କିନ୍ତୁ ଜୀବନରେ ନିଜେ ଡକ୍ଟର ହୋଇ ପାରିଲି ନାହିଁ । ଭାଗ୍ୟର ବିଡ଼ମ୍ବନା ବ୍ୟତୀତ ଏହାକୁ ଆଉ କ'ଣ କୁହାଯାଇପାରେ ।

ଏମ୍.ଏ. ପାଠପଢ଼ା ବେଳର କଥା ଲେଖୁଲେଖୁ ଅନ୍ୟ କୁଆଡ଼େ ଭାସି ଗଲିଣି । କଟକକୁ ଆସିଥାଏ ଅଳ୍ପଦିନ ହେଲା । ବିଖ୍ୟାତ ସାହିତ୍ୟ ମାସିକ 'ସହକାର' ପତ୍ରିକାରେ ''ଓଡ଼ିଆ ଚଉତିଶା ସାହିତ୍ୟ'' ଶୀର୍ଷକରେ ଏକ ଆଲୋଚନା ପ୍ରବନ୍ଧ ପ୍ରକାଶ ପାଇଲା । ଲେଖିଥିଲି ପୁରୀ କଲେଜ ଛାତ୍ରଜୀବନରେ । ଆଉ ଗୋଟିଏ ପ୍ରବନ୍ଧ ପ୍ରକାଶିତ ହୋଇଥାଏ 'ଡଗର' ସାହିତ୍ୟ ମାସିକରେ ଓଡ଼ିଆ କ୍ଷୁଦ୍ରଗଳ୍ପ ବିଷୟରେ । ସେଦିନ ବନ୍ଧୁ ଶ୍ରୀନିବାସ ବାବୁଙ୍କୁ ସାଙ୍ଗ କରି ବାହାରିଲି 'ସହକାର' ଅଫିସ୍ ଆଡ଼କୁ ପତ୍ରିକାଟିଏ ସଂଗ୍ରହ କରିବା ପାଇଁ । ଦରଘାବଜାର ପୂର୍ବତନ ଜେଲ ଫାଟକ ପାଖରେ ସାକ୍ଷାତ ହେଲା ସହପାଠୀ ବିଚିତ୍ରାନନ୍ଦ କରଙ୍କ ସହିତ । ଏହି ସାକ୍ଷାତ ଆଜୀବନ ନିବିଡ଼ ବନ୍ଧୁତାରେ ପରିଣତ ହୋଇଗଲା । ତିନି ସହପାଠୀ କଥା ହେଉଛୁ, ସେଠାରେ ସାଇକେଲରେ ପହଞ୍ଚିଲେ ଔପନ୍ୟାସିକ ରାଜକିଶୋର ପଟ୍ଟନାୟକ । ସେମାନେ ନମସ୍କାର କଲେ । ମୋ ପାଇଁ ସେ ଅପରିଚିତ । ଚୁପ୍ ହୋଇ ଠିଆ ହୋଇଥାଏ । ବନ୍ଧୁମାନେ ପରିଚୟ ଦେଇ କହିଲେ- ଏ ହେଉଛନ୍ତି ବିଶିଷ୍ଟ ଗଳ୍ପ ଲେଖକ ଓ ଔପନ୍ୟାସିକ ରାଜକିଶୋର ପଟ୍ଟନାୟକ । ତାଙ୍କର ଅନେକ ଲେଖାର ମୁଁ ଥିଲି ମୁଗ୍ଧ ପାଠକଟିଏ । ଏପରି ଜଣେ ସାହିତ୍ୟିକଙ୍କୁ ସାକ୍ଷାତ କରି ମନରେ କି ଆନନ୍ଦ । କିନ୍ତୁ ମୁହୂର୍ତ୍ତକ ମଧ୍ୟରେ ଏହି ଆନନ୍ଦ ପାଣି ଫାଟିଗଲା । ମୋର ପରିଚୟ ଶୁଣି ସେ ଅତି କଠୋର ଭାବରେ ଡଗରରେ ପ୍ରକାଶିତ ଲେଖା ବିଷୟରେ କଟାକ୍ଷ କଲେ । ତାଙ୍କର କ୍ରୋଧର କାରଣ 'ଡଗର' ପ୍ରକାଶିତ

ପ୍ରବନ୍ଧରେ ଅଧ୍ୟାପକ ରାଜକିଶୋର ରାୟଙ୍କର ଗଳ୍ପକୁ ପ୍ରଶଂସା କରି ଦୁଇପଦ ଲେଖିଥାଏ । ତାଙ୍କର ଅଭିଯୋଗ ହେଲା- ଅଧ୍ୟାପକ ରାୟ ଜଣେ ପ୍ଲାଗାରିଷ୍ଟ । ତାଙ୍କ ଗଳ୍ପ ସବୁ ଅନ୍ୟଠାରୁ ଆହୃତ । ସେତେବେଳେ ଅଧ୍ୟାପକ ରାୟଙ୍କ ଏକ ସମାଲୋଚନା ପୁସ୍ତକକୁ କଠୋର ଭାବରେ ସମାଲୋଚନା କରି କବି ରାଧାମୋହନ ଗଡ଼ନାୟକ ଏକ ଲେଖା ସମାଜରେ ପ୍ରକାଶ କରିଥାଆନ୍ତି । ଦୃଢ଼ତାର ସହିତ ମୋର ପ୍ରବନ୍ଧ ସପକ୍ଷରେ ଯୁକ୍ତି ଉପସ୍ଥାପନ କଲି । ଲେଖକମାନେ ପ୍ରଭାବିତ ହେବା ସ୍ୱାଭାବିକ । କେହି ବଂଗଳାରୁ ଆଣିଥିଲେ ଅନ୍ୟ କେହି ଇଂରେଜୀରୁ ଆଣିଥିବେ । ଯେଉଁମାନେ ମୌଳିକ ବୋଲି ଦାବୀ କରନ୍ତି, ସେମାନଙ୍କର କଥା ସତ୍ୟର ଅପଳାପ ମାତ୍ର । ସେ ସିନା ନାଁଟି ଶୁଣିଥିଲେ, ମୋର ପରିଚୟ ପାଇନଥିଲେ । ସମସ୍ତେ ଫୁଲପ୍ୟାଣ୍ଟ ପିନ୍ଧିଥାନ୍ତି, ମୁଁ କେବଳ ଧୋତି ପିନ୍ଧିଥାଏ । ସେ ଭାବିଲେ, ମୁଁ ବୋଧହୁଏ ଜଣେ କଚେରୀର ଅଧାପାଠୁଆ କିରାଣୀ ହୋଇଥିବି । ଜଣେ ଏମ୍.ଏ. ଛାତ୍ର ଏବଂ ମୋର ଅଭିବ୍ୟକ୍ତିର ଦୃଢ଼ତା ତାଙ୍କୁ ଏପରି ଅନୁପ୍ରାଣିତ କରିଦେଲା ଯେ ସେ ବଞ୍ଚିଥିଲା ପର୍ଯ୍ୟନ୍ତ ବହୁଭାବରେ ତାଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲି । ତାଙ୍କର ନୂତନ ପୁସ୍ତକଟିଏ ପ୍ରକାଶ ପାଇଲେ ସେ ମୋର ବାସସ୍ଥଳରେ ନିଜେ ଆଣି ଉପହାର ଦେଇଯାଉଥିଲେ । କଟକରେ ଜଣେ ସାହିତ୍ୟିକଙ୍କ ସହିତ ଏହି ପ୍ରଥମ ସାକ୍ଷାତକାରର ତିକ୍ତମଧୁର ଅନୁଭୂତି ବିସ୍ମୃତ ହୋଇନାହିଁ । ଏହି ପ୍ରବୀଣ ଲେଖକ ପ୍ରଥମ ସାକ୍ଷାତରେ ଜଣେ ତରୁଣ ଲେଖକକୁ ଆଶୀର୍ବାଦ କିମ୍ବା ଉତ୍ସାହିତ କରିବା ପାଇଁ କୃପଣ ହୋଇଥିଲେ ।

ତା'ପରେ ଦୁଇବନ୍ଧୁଙ୍କ ସହିତ ପ୍ରବେଶ କଲି ସହକାର ଅଫିସ୍ ଗୃହରେ । ସଂପାଦକ ବାଳକୃଷ୍ଣ କରଙ୍କୁ ଘେରି ବସିଥିଲେ ବିଖ୍ୟାତ ସାହିତ୍ୟିକ ଓ କବି ବସନ୍ତ କୋକିଳ ଭଗବାନ ପତି ଓ ବିଖ୍ୟାତ ସାମ୍ବାଦିକ ଗୌରମୋହନ ରାଉତ । ଛାତ୍ରଜୀବନ ପରେ ଏହି ମହାନ ସାମ୍ବାଦିକ ଓ ସଂପାଦକଙ୍କ ସହିତ ମାତୃଭୂମିର ସହକାରୀ ସଂପାଦକ ଭାବରେ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା ।

ମୋର ସହପାଠୀ ବିଚିତ୍ରାନନ୍ଦ ଏମାନଙ୍କ ସହିତ ମୋର ପରିଚୟ କରାଇ କହିଲେ, ଏ ଆମ ସହିତ ଏମ୍.ଏ. କ୍ଲାସ୍‌ରେ ନାମ ଲେଖାଇଛନ୍ତି । ପ୍ରଥମେ ଭଗବାନ ବାବୁ ଅତ୍ୟନ୍ତ ପ୍ରେମାପ୍ଲୁତ ଭାବରେ କହିଲେ- 'ପଠାଣିବାବୁ ! ଆପଣ ଆମ ବିଚିର ସହପାଠୀ । ଅଥଚ ଆମେ ଭାବିଥିଲୁ ଆପଣ ଜଣେ ବୟୋଜ୍ୟେଷ୍ଠ ସାହିତ୍ୟସେବୀ ହୋଇଥିବେ । ଆପଣ ଏଣିକି ବାରମ୍ବାର ଲେଖା ଦିଅନ୍ତୁ 'ସହକାର' ପାଇଁ । ଗୌରବାବୁ ମଧ୍ୟ ପ୍ରଶଂସା କରି ଉତ୍ସାହିତ କଲେ । କାରଣ ସେତେବେଳେ ପ୍ରବନ୍ଧ ଓ ସମାଲୋଚନା ଲେଖକମାନଙ୍କର ସଂଖ୍ୟା ଥିଲା ଅଙ୍ଗୁଳିମେୟ । ବାଳକୃଷ୍ଣ ଗମ୍ଭୀର ଲୋକ । ଖର୍ବକାୟ । ସମ୍ମାନ ଓ ସମ୍ଭ୍ରମତାର ପ୍ରତୀକଟିଏ । ସେ ପିତୃସୁଲଭ ଶ୍ରଦ୍ଧା ଜଣାଇ କହିଲେ-''ଆପଣଙ୍କ ପ୍ରବନ୍ଧର ଅନେକ ଅପୂର୍ଣ୍ଣତା ଥିବା ସତ୍ତ୍ୱେ ଆମେ ସହକାରରେ ସ୍ଥାନିତ କଲୁ । କାରଣ ଅନେକ ପରିଶ୍ରମ କରିଛନ୍ତି ଏବଂ ଦୃଢ଼ଭାବରେ ନିଜର ଯୁକ୍ତି ଉପସ୍ଥାପନ କରିଛନ୍ତି । ପୂର୍ବରୁ ଚଉତିଶା ସଂପର୍କରେ କେହି ଆଲୋଚନା କରିଥିଲା ପରି ସ୍ମରଣ ହେଉନାହିଁ । ଏଣିକି ଆପଣ ଲେଖା ରୀତିମତ ଦିଅନ୍ତୁ ।

ଜଣେ ନବୀନ ଲେଖକ, ସଂପାଦକଙ୍କର ଆଶୀର୍ବାଦ ଓ ଉତ୍ସାହ ଲାଭ କଲେ କିପରି ଅନୁପ୍ରେରିତ ହୋଇଥାଏ, ତାହା କେବଳ ଅନୁଭବର କଥା । ଠିକ୍ ଏହିପରି ଉତ୍ସାହ ଓ ପ୍ରେରଣା ମିଳୁଥିଲା ''ଉତ୍କଳ ସାହିତ୍ୟ''ର ବିଖ୍ୟାତ ସଂପାଦକ ବାଗ୍ମୀ ବିଶ୍ୱନାଥ କରଙ୍କଠାରୁ ବୋଲି ଅନେକଙ୍କଠାରୁ ଶୁଣିଛି । ଯେଉଁ ସହକାର ପତ୍ରିକା ମୋତେ ତରୁଣ ବୟସରେ ଲେଖକ ହେବାର ସ୍ୱୀକୃତି ପ୍ରଦାନ କରିଥିଲା, ଭାଗ୍ୟବଶତଃ ସେହି ସହକାର ପତ୍ରିକାର ମୁଖ୍ୟ ସଂପାଦକ ହେବାର ଗୌରବ ଲାଭ କରିଥିଲି ଅନ୍ତରଙ୍ଗ ବନ୍ଧୁ ବିଚିତ୍ରାନନ୍ଦ କରଙ୍କ ପାଇଁ ଦୀର୍ଘ ଦଶବର୍ଷକାଳ । ମହାସମାରୋହରେ ''ସାରସ୍ୱତ ପ୍ରେସ୍'' କୋଠା ଉପରେ ପ୍ରତ୍ୟେକ ବର୍ଷ ''ସହକାର''ର ମକର ମିଳନ ଉତ୍ସବ ଅନୁଷ୍ଠିତ ହେଉଥିଲା । ପୂର୍ବାହ୍ନରେ ''ମାତୃଭୂମି''ର ସାମ୍ବାଦିକ ସମ୍ମିଳନୀ ହୁଏ ଏବଂ ସଂଧ୍ୟାରେ ସାହିତ୍ୟ ସଭା । ସ୍ନେହଗୁଣରେ ପ୍ରତ୍ୟେକବର୍ଷ ସାମ୍ବାଦିକ ସମ୍ମିଳନୀରେ ମୋତେ ଅତିଥି ବକ୍ତା ଏବଂ ସଂଧ୍ୟାରେ ସାହିତ୍ୟ ସଭାରେ ସଭାପତି ହେବାକୁ ମୋର ବନ୍ଧୁ ବିଚିତ୍ରାନନ୍ଦ ଏକପ୍ରକାର ବାଧ କରୁଥିଲେ । ସେ ମୋ ଆଗରୁ ସେ ପୁରକୁ ଚାଲିଗଲେ । ଏପରି ଅକୃତ୍ରିମ ଭଲପାଇବା ଆଜି ଦୁର୍ଲ୍ଲଭ କହିଲେ ଚଳେ । ''ସହକାର'' ସଂପାଦକ ଭାବରେ ଗୋଟିଏ ଉଲ୍ଲେଖନୀୟ ପ୍ରସଙ୍ଗ ଉପସ୍ଥାପନ କରୁଛି । ଆମ ଅନୁରୋଧରେ ସବୁଜସାଥୀ ନ୍ୟାୟମୂର୍ତ୍ତି ହରିହର ମହାପାତ୍ର ଏବଂ ସ୍ୱନାମଧନ୍ୟ ରାଜନୀତି ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶ ସେମାନଙ୍କର ଆତ୍ମଜୀବନୀ ଧାରାବାହିକ ଭାବରେ ସହକାରରେ ଲେଖିଚାଲିଲେ । ଓଡ଼ିଆ ସାହିତ୍ୟ ଦୁଇଟି ସ୍ମରଣୀୟ ଆତ୍ମଜୀବନୀ ଲାଭ କଲା ''ସହକାର'' ଉଦ୍ୟମରେ । ଭାରତ ସେବକ ସମାଜର ପ୍ରସିଦ୍ଧ ସଭ୍ୟ ଶ୍ୟାମସୁନ୍ଦର ମିଶ୍ରଙ୍କୁ ମଧ୍ୟ ଅନୁରୋଧ କଲୁ ଲେଖିବା ପାଇଁ । ମାତ୍ର ଅଳ୍ପକିଛି ଲେଖି ସେ ନିରବ ହୋଇଗଲେ । ତାଙ୍କର ଆଉ ଲେଖିବାର ଶକ୍ତି ନଥିଲା । ସବୁଜ ଆନ୍ଦୋଳନ କାଳର ବିଶିଷ୍ଟ ସାହିତ୍ୟିକ ହରିଶ୍ଚନ୍ଦ୍ର ବଡ଼ାଲଙ୍କୁ ଚିଠି ଲେଖିଲି 'ସହକାର' ପାଇଁ ଜୀବନସ୍ମୃତି ଲେଖିବା ପାଇଁ । ସେତେବେଳକୁ ସେ ଭୟଙ୍କର ଅସୁସ୍ଥ ଓ ଅକର୍ମଣ୍ୟ ଅବସ୍ଥାରେ ନିଜର କନ୍ୟାଙ୍କ ଘରେ ରହୁଥାଆନ୍ତି ଭୁବନେଶ୍ୱରରେ । ଅତ୍ୟନ୍ତ ଦୁଃଖରେ ଚିଠି ଦେଇଥିଲେ- ''ଅନେକ ବିଳମ୍ବରେ ମୋତେ ସ୍ମରଣ କଲେ । ଆଉ ଲେଖିବାର ଶକ୍ତି ମୋର ନାହିଁ ।'' ଓଡ଼ିଆ ସାହିତ୍ୟରେ ଏହି ଅଭାବ ସବୁଦିନ ପାଇଁ ରହିଗଲା ।

ଛାତ୍ର ଜୀବନର ଆଉ ଏକ ଘଟଣା । ଆମର ଅଧ୍ୟାପକ କବି ଗୋପାଳଚନ୍ଦ୍ର ମିଶ୍ରଙ୍କର 'ଡଗର' ପତ୍ରିକାରେ ଗୋଟିଏ କବିତା ପ୍ରକାଶ ପାଇଥାଏ-''ଦୁଇଟି ବୋମା'' । ସେହି କବିତାର ପ୍ରଥମ ଦୁଇଧାଡ଼ି ଥିଲା-

''ଦେଇଗଲି ସଖୀ ଦୁଇଗୋଟି ବୋମା ତୁମରି କରେ
ଆଦରେ ଏହାକୁ ସାଇତି ରଖିବ ଛାତି ଭିତରେ ।

ଏହି କବିତାରେ କିଛି ଅଶ୍ଳୀଳତାର ଇଙ୍ଗିତ ରହିଥିଲା । ଶିକ୍ଷିତ ମହଲରେ ଚାଞ୍ଚଲ୍ୟ ସୃଷ୍ଟି ହେଲା । ଜଣେ ଅଧ୍ୟାପକଙ୍କ ଲେଖନୀରୁ ଏପରି ଅଶାଳୀନ ଲେଖା କେହି ଆଶା କରୁନଥିଲେ । ଦିନେ କୁଳପତି ଚିନ୍ତାମଣି ଆଚାର୍ଯ୍ୟ ବିଚଳିତ ହୋଇ କହିଲେ, ଏପରି ଲୋକର

ଡିଗ୍ରୀ ଫେରାଇନେବା ଉଚିତ । ବାହାରେ ଏପରି ଆଲୋଚନା ଶୁଣି ମନଟା ଘର ଧରୁ ନଥାଏ । ସୁସାହିତ୍ୟିକ ନିତ୍ୟାନନ୍ଦ ମହାପାତ୍ରଙ୍କ ସଂପାଦନରେ ଏପରି ଲେଖା ''ଡଗର'' ପତ୍ରିକାରେ ସ୍ଥାନ ପାଇଲା କିପରି ? ସେ ମୋର ଲେଖା ପାଇଁ ଶ୍ରଦ୍ଧା କରୁଥିଲେ । ସେହି ଭରସାରେ ତାଙ୍କୁ ଚିଠିଟିଏ ଲେଖିଲି । ଚିଠିଟି ପାଇ ଶ୍ରୀଯୁକ୍ତ ମହାପାତ୍ର ମୋର ଅବସ୍ଥାନ ବାହିନୀ ମେସ୍‌ରେ ହାଜର । ମୁଁ ବୁଲି ବାହାରିଯାଇଥାଏ । ସେ ଖଣ୍ଡିଏ ଚିଠି ଲେଖିଦେଇ ଆସିଲେ ମୋରି ଉଦ୍ଦେଶ୍ୟରେ । ତାହା ଥିଲା ଏହିପରି-ଭାଇ ପଠାଣି, ଏକ ସମ୍ମିଳନୀରେ ଯୋଗ ଦେବା ପାଇଁ ଅନୁଗୁଳ ଚାଲିଯାଇଥିଲି । ମୋର ଅନୁପସ୍ଥିତିରେ ସହକାରୀ ଜଣକ କିଛି ନବୁଝି ପତ୍ରିକାରେ ଛପାଇଦେଲେ । ନଚେତ୍ ମୁଁ ତାକୁ ସାମାନ୍ୟ ପରିବର୍ତ୍ତନ କରି ବିଶ୍ୱାସ ଓ ପ୍ରଣୟ ଏହି ଅର୍ଥରେ କବିତାଟି ଛାପିଥାଆନ୍ତି । ଏହା ମଧ୍ୟରେ କବି ଗୋଦାବରୀଶ ମହାପାତ୍ର ଅତି କଠୋର ଭାଷାରେ ତାଙ୍କର ନିଆଁଖୁଣ୍ଟାରେ ଏହି କବିତାକୁ ଉପଲକ୍ଷ୍ୟ କରି ମନ୍ତବ୍ୟ ଦେଲେ-''ଏ ଭାଣ୍ଡ ଗୋପାଳଙ୍କ ଦାଉରୁ ଭଗବାନ ରକ୍ଷା କରନ୍ତୁ ।'' ବହୁଳ ପ୍ରଚାରିତ ନିଆଁଖୁଣ୍ଟାର ମନ୍ତବ୍ୟ ଯୋଗୁ ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ହଇଚଇ ସୃଷ୍ଟି ହେଉଥାଏ । ଏଣେ ନିତ୍ୟାନନ୍ଦ ବାବୁ କବିତାକୁ ସମର୍ଥନ କରି 'ଡଗର' ପର ସଂଖ୍ୟାରେ ନିଆଁଖୁଣ୍ଟାକୁ ସମାଲୋଚନା କଲେ । ସେଦିନ ଏମ୍.ଏ. ଶ୍ରେଣୀରେ ସାଙ୍ଗମେଳରେ କଥା ହେଉଥିବା ଅବସରରେ କହିଲି, ନିତ୍ୟାନନ୍ଦ ବାବୁ ସେହି କବିତା ପାଇଁ ଦୁଃଖ ପ୍ରକାଶ କରି ମୋତେ ଚିଠି · ଲେଖିଛନ୍ତି ଅଥଚ ଏଣେ ଡଗର ସଂପାଦକୀୟରେ ନିଜ ସପକ୍ଷରେ ଯୁକ୍ତି କରିଛନ୍ତି । ତହିଁ ଆରଦିନ ସକାଳେ ସହପାଠୀ ବନ୍ଧୁ ବିଚିତ୍ରାନନ୍ଦ କର ଆମ ମେସ୍‌ରେ ହାଜର । କହିଲେ, ନିତ୍ୟାନନ୍ଦ ବାବୁ ଯେଉଁ ଚିଠିଟି ତୁମକୁ ଲେଖିଛନ୍ତି, ଗୋଦାବରୀଶ ମହାପାତ୍ର ତାକୁ ଦେଖିବାକୁ ଇଚ୍ଛା କରୁଛନ୍ତି । ଏତେ ବଡ଼ କବି ମୋ ପାଖକୁ ଖବର ଦେଇଛନ୍ତି ଜାଣି କୃତ୍ୟକୃତ୍ୟ ହେଉଥାଏ । ପରିଣତି ବିଷୟରେ ଚିନ୍ତା ନକରି ଚିଠିଟି ବଢ଼ାଇଦେଲି । ନିଆଁଖୁଣ୍ଟାରେ ନିତ୍ୟାନନ୍ଦ ବାବୁଙ୍କର ସଂପାଦକୀୟ ସଫେଇ କିପରି ଛଳନାପୂର୍ଣ୍ଣ, ଉଲ୍ଲେଖ କରି ମୋତେ ପ୍ରଦତ୍ତ ଚିଠିଟି ଛାପିଦେଲେ କେବଳ ମୋର ନାମକୁ ଉହ୍ୟ କରି ।

ନିଆଁଖୁଣ୍ଟା ପାଠ କଲାପରେ ମୋର ଅନୁତାପର ସୀମା ରହିଲା ନାହିଁ । ଚିଠିଟିର ଏପରି ଅପବ୍ୟବହାର ହେବ ବୋଲି ଆଦୌ କଳ୍ପନା କରିପାରି ନଥିଲି । କେତେଦିନ ଏଇ କଥା ଭାବି ମାନସିକ ଅସନ୍ତୁଳନରେ ଘାରି ହେଉଥାଏ । ମାନନୀୟ ନିତ୍ୟାନନ୍ଦ ବାବୁ ମୋ ବିଷୟରେ କ'ଣ ଧାରଣା କରୁଥିବେ ?

ଲ' କଲେଜ ଯିବା ବାଟରେ ମୋର ଅନ୍ତରଙ୍ଗ ବନ୍ଧୁ ହରିହର ବାହିନୀପତି ନିତ୍ୟାନନ୍ଦ ବାବୁଙ୍କୁ ମୋର ମାନସିକ ଅବସ୍ଥା ବିଷୟରେ ଜଣାଇଲା । ସେହିଦିନ ''ପ୍ରଜାତନ୍ତ୍ର'' ଗେଟ ପାଖରେ ଅଚାନକ ତାଙ୍କ ସହିତ ସାକ୍ଷାତ ହେଲା । ନମସ୍କାର କଲି ସିନା, ଲାଜ ଓ ଅପମାନରେ ମୁହଁ ଟେକି ଚାହିଁ ପାରୁନଥାଏ । ସାଇକେଲରୁ ଓହ୍ଲାଇପଡ଼ି ନିତ୍ୟାନନ୍ଦ ବାବୁ ମୋତେ ଆଦରରେ କୁଣ୍ଢାଇ ପକାଇଲେ । କହିଲେ-''ଏଇଥିପାଇଁ ଏତେ ମନଦୁଃଖ କରୁଛ । ମୁଁ ତୁମକୁ ଆଦୌ

ଭୁଲ୍ ବୁଝିନାହିଁ । ଆଜିଠାରୁ ମୋର ଗୋଟିଏ ଉପଦେଶ ମନେରଖିବ । କୌଣସି ସାମ୍ବାଦିକଙ୍କୁ ବିଶ୍ୱାସ କରିବ ନାହିଁ, ସେ ତୁମର ପ୍ରେମିକା, ବନ୍ଧୁ ଅଥବା ପତ୍ନୀ ହେଉ ପଛକେ । ସଂବାଦ ପ୍ରକାଶ କରିବାରେ ସାମ୍ବାଦିକ ଅତ୍ୟନ୍ତ ନିର୍ମମ । ଏ ତ ଆମର ଦେହସୁହା କଥା ।'' ସେହି ତରୁଣ ବୟସରୁ ଏତେବଡ଼ କବି, ଔପନ୍ୟାସିକ, ଗାଳ୍ପିକ ଓ ସାହିତ୍ୟ ସଂପାଦକ ନିତ୍ୟାନନ୍ଦ ମହାପାତ୍ରଙ୍କର ଅନାବିଳ ସ୍ନେହ ଓ ସଦିଚ୍ଛା ଲାଭ କରି ନିଜକୁ ଧନ୍ୟ ମନେ କରିଛି । ପରବର୍ତ୍ତୀ କାଳରେ ସାହିତ୍ୟ ମଞ୍ଚରେ ତାଙ୍କର ସଖ୍ୟଲାଭ କରିବାର ସୁଯୋଗ ପାଇଛି । ସେ ମନ୍ତ୍ରୀ ଥିବାବେଳେ ରାଉରକେଲା ସହରରେ ବୋଇତବନ୍ଦାଣ ଉତ୍ସବର ସେ ଥିଲେ ମୁଖ୍ୟ ଅତିଥି ଏବଂ ମୁଁ ଥିଲି ପ୍ରଧାନ ବକ୍ତା । ୧୯୫୨ ମସିହାରେ ଗଙ୍ଗାଧର ମେହେର କଲେଜ ଆନୁକୂଲ୍ୟରେ ଅଧକ୍ଷ ଡଃ ମାୟାଧର ମାନସିଂହ ଯେଉଁ ନିଖିଳ ଓଡ଼ିଆ ସାହିତ୍ୟ ସମ୍ମିଳନୀର ଆୟୋଜନ କରିଥିଲେ, ସେଠାରେ ମଧ ନିତ୍ୟାନନ୍ଦ ବାବୁଙ୍କ ସହିତ ଯୋଗ ଦେଇଥିଲି ନିମନ୍ତ୍ରିତ ହୋଇ । ତାଙ୍କର ଆଶୀର୍ବାଦରୁ ଡଗର ପତ୍ରିକାରେ ଅନେକ ଥର ମୋର ପ୍ରବନ୍ଧ ଓ ଆଲୋଚ଼ନା ସ୍ଥାନୀତ ହୋଇଛି । ସେଦିନର ପ୍ରବୀଣ ସାହିତ୍ୟିକ ଓ ସାହିତ୍ୟ-ପତ୍ରିକାର ସଂପାଦକ ନବୀନ ଲେଖକମାନଙ୍କୁ ଉତ୍ସାହିତ କରୁଥିଲେ, ପ୍ରେରଣା ଦେଉଥିଲେ । ମନେ ହେଉଥିଲା, ସମସ୍ତେ ଗୋଟିଏ ସାରସ୍ୱତ ପରିବାରର । ସାହିତ୍ୟସାଧନା କ୍ଷେତ୍ରରେ ଆଜିକାଲି ଏପରି ମାର୍ମିକ ମିଳନପର୍ବର ଅଭାବ ଅନୁଭୂତ ହେଉଅଛି ।

ସେତେବେଳେ କବି ରାଧାମୋହନ ଗଡ଼ନାୟକ ଅନେକ ସମୟରେ ରେଭେନ୍ସା କଲେଜକୁ ବୁଲି ଆସନ୍ତି । ଆମ ବିଭାଗର ସାର୍‌ମାନେ ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥାଆନ୍ତି । ସେ ଥିଲେ ଅତ୍ୟନ୍ତ ବନ୍ଧୁବତ୍ସଳ । ଆମେ ଯେଉଁ କେତେଜଣ ସହପାଠୀ ଓଡ଼ିଆରେ ଲେଖାଲେଖି କରୁଥାଉ, ସେ ଖୋଜିଲୋଡ଼ି ସେମାନଙ୍କୁ ଭେଟୁଥିଲେ ଓ ଆଳାପ କରୁଥିଲେ । କେଉଁ ମାହେନ୍ଦ୍ରବେଳାରେ ତାଙ୍କ ସହିତ ପରିଚୟ ହୋଇଥିଲା କେଜାଣି, ଏହି ସଂପର୍କ ଅତ୍ୟନ୍ତ ନିବିଡ଼ ହୋଇଥିଲା ବହୁଦିନ ପର୍ଯ୍ୟନ୍ତ । ମୁଁ ଅଧାପକ ହେବା ପୂର୍ବରୁ ସେ କିଛିକାଳ ଉତ୍କଳ ଖ୍ରୀଷ୍ଟିୟାନ କଲେଜର (ବର୍ତ୍ତମାନ ଖ୍ରୀଷ୍ଟ ମହାବିଦ୍ୟାଳୟ) ଛାତ୍ର ଥିଲେ ଏବଂ ସେହି ସମୟରେ ତାଙ୍କ ଲିଖିତ କବିତା ପୁସ୍ତକ କଲେଜରେ ପାଠ୍ୟ ହୋଇଥାଏ । ସେ କୌଣସି ଡିଗ୍ରୀଧାରୀ ହୋଇପାରି ନଥିଲେ, କିନ୍ତୁ ନିଜର ପାଣ୍ଡିତ୍ୟ ଏବଂ ସୃଜନଶୀଳ ପ୍ରତିଭା ଯୋଗୁ ଅସୁମାରୀ ଡିଗ୍ରୀଧାରୀଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇଥିଲେ । ତାଙ୍କ ପରି ଛନ୍ଦ କବି ଓ ଗାଥା କବିତାର ପ୍ରତିଭାଶାଳୀ କବି ଆଧୁନିକ ଓଡ଼ିଆ ସାହିତ୍ୟରେ ବିରଳ । ସେ ଅତ୍ୟନ୍ତ ପ୍ରେମୀ ମଣିଷ ଥିଲେ ଏବଂ ସବୁ ଶ୍ରେଣୀର ଲେଖକମାନଙ୍କ ସହିତ ସଖ୍ୟ ସ୍ଥାପନ କରିବାକୁ ସୁଖ ପାଉଥିଲେ । ପଣ୍ଡିତ ନୀଳକଣ୍ଠ ଦାସ, ଡଃ ମାୟାଧର ମାନସିଂ, ଡଃ କୁଞ୍ଜବିହାରୀ ଦାଶ, ଅନନ୍ତ ପଟ୍ଟନାୟକଙ୍କ ପରି ବହୁ ସାହିତ୍ୟସେବୀଙ୍କର  ସେ ଥିଲେ ଅନ୍ତରଙ୍ଗ । ଡଃ ମାୟାଧର ମାନସିଂହ ଆଡଲ୍ଟ ଏଡୁକେଶନ୍ ବିଭାଗର ନିର୍ଦ୍ଦେଶକ ଥିଲାବେଳେ ରାଧାମୋହନ ବାବୁ ଥିଲେ ପ୍ରଡ଼କ୍‌ସନ ଅଫିସର । ଏହି ସମୟରେ ଆଲୋଚିତ ବିଭାଗର ଲେଖକ-କର୍ମଶାଳାରେ ଯୋଗ ଦେଇ ଟ୍ରେନିଂ ପ୍ରାପ୍ତ

ହୋଇଥିଲି । ୧୯୬୬ ମସିହାରେ ରାଧାମୋହନ ବାବୁ ହେଲେ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି । ସେତେବେଳେ ତାଙ୍କର କାର୍ଯ୍ୟକାରୀ ସମିତିର ସଭ୍ୟ ଭାବରେ କାର୍ଯ୍ୟ କରିବାର ସୁଯୋଗ ଲାଭ କରିଥିଲି ।

ଘରୁ ତ ଅମାନିଆ ହୋଇ ଚାଲିଆସିଥିଲି । ଏମ୍.ଏ. ରେ ସିନା ନାଁ ଲେଖାଇଦେଲି, ପାଠ ପଢ଼ିଲି କେତେବେଳେ ? ସକାଳୁ ପଦବ୍ରଜରେ ତଳ ତେଲେଙ୍ଗା ବଜାର କୁଳପତିଙ୍କ ଘରେ ବିଶ୍ୱବିଦ୍ୟାଳୟର ପାର୍ଟଟାଇମ ଚାକିରୀ । ପୁନର୍ବାର ଚାଲିଚାଲି ଜଗନ୍ନାଥ ବଲ୍ଲଭ । ମେସ୍‌ରେ ଯାହା ଖାଦ୍ୟ ମିଳୁଥିଲା, ତାହା ନକହିଲେ ଭଲ । ପୁନର୍ବାର ଛତାଟିଏ ଧରି ଖରା, ବର୍ଷାରେ ରେଭେନ୍ସା କଲେଜ ଯିବା ଏବଂ ଫେରିବା ପଦବ୍ରଜରେ । ସେତେବେଳେ ମେସ୍‌ରେ ବିଜୁଳି ଆଲୁଅର ବ୍ୟବସ୍ଥା ନଥାଏ । ରାସ୍ତାରେ ମଧ ସଂଧ୍ୟାରେ ଖୁଣ୍ଟ ଉପରେ ମ୍ୟୁନିସ୍‌ପାଲିଟିର କିରାସିନୀ ବତୀ । କଲେଜରୁ ଫେରି ଆସି କ୍ଲାନ୍ତିରେ ବିଛଣା ଧରେ । ବହି ଧରିଲେ ଆଖି ବନ୍ଦ ହୋଇଆସେ । କାହାରି ସହିତ ମିଶିବା ପାଇଁ ଆବେଗ ନଥାଏ । ବନ୍ଧୁ ଶ୍ରୀନିବାସ ବାବୁଙ୍କଠାରୁ ଅନେକ ସାହାଯ୍ୟ ପାଇଛି । କେବଳ ପାର୍ଟଟାଇମ ଚାକିରୀ କରାଇଦେବାରେ ନୁହେଁ, ଏମ୍.ଏ. ପାଇଁ ଆବଶ୍ୟକ ଅନେକ ରେଫରେନ୍ସ ବହି ଯୋଗାଇ ଦେବାରେ । କହିରଖେ, ଆମେ ଓଡ଼ିଆରେ ଏମ୍.ଏ. ପଢ଼ିଲାବେଳେ ଓଡ଼ିଆ ଭାଷାରେ ବିଶେଷ ସାହିତ୍ୟ ସମାଲୋଚନା ପୁସ୍ତକ ନଥାଏ । ଯାହା ବା ଥାଏ, ଉପଲବ୍ଧ ହେଉ ନଥାଏ । ସମାଲୋଚନା କହିଲେ କେବଳ ଗିରିଜା ଶଙ୍କର ରାୟଙ୍କର କ୍ଷୁଦ୍ରକାୟ ନାଟ୍ୟକଳା ପୁସ୍ତକ, ମାୟାଧର ମାନସିଂହଙ୍କର ପ୍ରବନ୍ଧ ସଂକଳନ 'କବି ଓ କବିତା' ସାହିତ୍ୟର ଇତିହାସ ଭାବରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଲିଖିତ 'ଓଡ଼ିଆ ସାହିତ୍ୟର ପରିଚୟ ୧ମ ଭାଗ, ୨ୟ ଭାଗ', ବିନାୟକ ମିଶ୍ରଙ୍କ ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ' ଓ 'ଓଡ଼ିଆ ଭାଷାର ଇତିହାସ ।' ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ଲିଖିତ 'ଓଡ଼ିଆ ଭାଷାତତ୍ତ୍ୱ' ଓ ସାରଳା ମହାଭାରତର ସମାଲୋଚନା 'ଭାରତ ଦର୍ପଣ' ବଜାରରେ ଉପଲବ୍ଧ ହେଉ ନଥାଏ । ବହୁ ବିଳମ୍ବରେ ବନ୍ଧୁ ଶ୍ରୀନିବାସ ବାବୁଙ୍କ ସହିତ ମୁକୁର ପ୍ରେସ୍‌କୁ ଯାଇ ତାଙ୍କର ଅଳିଆଗଦାରୁ ଖୋଲା ହୋଇ ପଡ଼ିଥିବା ଫର୍ମା ସଂଗ୍ରହ କରି ଭାଷାତତ୍ତ୍ୱ ବହି ଓ ଭାରତ ଦର୍ପଣ ସଂଗ୍ରହ କରିଥିଲୁ । ଘରେ ତାକୁ ସିଲେଇ କରି ପଢ଼ିଲୁ । ଭାଷାତତ୍ତ୍ୱ ବିଷୟରେ ଜାଣିବା ପାଇଁ ଏକମାତ୍ର ଆଶ୍ରୟ ବଙ୍ଗୀୟ ଲେଖକମାନଙ୍କର ପୁସ୍ତକ ଗୁଡ଼ିକ । ସାହିତ୍ୟ ସମାଲୋଚନାର ରୀତି ଜାଣିବା ପାଇଁ ଇଂରେଜୀ ସମାଲୋଚନା ଅଥବା ବଙ୍ଗଳା ସମାଲୋଚନା ପୁସ୍ତକ ଘାଣ୍ଟିବାକୁ ହେଉଥିଲା । ଓଡ଼ିଆ ବିଭାଗର ଅଧ୍ୟାପକମାନେ ଆମ ସମୟରେ ଏମ୍.ଏ. ପରୀକ୍ଷାର ପରୀକ୍ଷକ ହେଉନଥିଲେ ଏକମାତ୍ର ବିଭାଗୀୟ ମୁଖ୍ୟଙ୍କ ବ୍ୟତୀତ । ପରୀକ୍ଷକ ହେଉଥିଲେ ଅବସରପ୍ରାପ୍ତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, କଲିକତା ବିଶ୍ୱବିଦ୍ୟାଳୟ ଅଧ୍ୟାପକ ବିନାୟକ ମିଶ୍ର, ରେଭେନ୍ସା କଲେଜର ଦର୍ଶନ ଅଧ୍ୟାପକ ରତ୍ନାକର ପତି, ପଣ୍ଡିତ ନୀଳକଣ୍ଠ ଦାସ ପ୍ରଭୃତି ।

ମନେପଡ଼ୁଛି ଷଷ୍ଠବାର୍ଷିକ ଶ୍ରେଣୀରେ ଅଧ୍ୟୟନ କାଳର କଥା । ବିଶ୍ୱବିଦ୍ୟାଳୟ ପାର୍ଟଟାଇମ୍ ଚାକିରୀରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ତାହା ଥିଲା ମାତ୍ର ଏକବର୍ଷ ପାଇଁ ବୁଝାମଣା ।

ପୁନର୍ବାର ଦରିଦ୍ରପଞ୍ଚାକ୍ଷର ଜପ କରୁଥାଏ । ହଠାତ୍ ବରେଣ୍ୟ ଜନନେତା, ସୁସାହିତ୍ୟିକ ଓ ଐତିହାସିକ ଶ୍ରୀ ହରେକୃଷ୍ଣ ମହତାବଙ୍କ ଡାକରା ପାଇ ତାଙ୍କୁ ସାକ୍ଷାତ କଲି ପ୍ରଜାତନ୍ତ୍ର ଅଫିସ୍‌ରେ । ସେ ମୋତେ ଅତ୍ୟନ୍ତ ଶ୍ରଦ୍ଧାରେ ଆଦେଶ ଦେଲେ ପ୍ରଜାତନ୍ତ୍ରର ସହକାରୀ ସଂପାଦକ ହିସାବରେ ଯୋଗ ଦେବା ପାଇଁ । ଛାତ୍ର ଥିବାରୁ, ତାହା ମଧ୍ୟ ପାର୍ଟଟାଇମ ଚାକିରିଟିଏ ରୂପେ ଭାଗ୍ୟକୁ ମିଳିଗଲା । ଭାରତୀୟ ନୌବାହିନୀରେ ଯୋଗଦାନ ପରେ ମୋର ସାନଭାଇ ତ୍ରିଲୋଚନ ମଧ୍ୟ ପ୍ରତିମାସରେ କିଛି ଆର୍ଥିକ ସାହାଯ୍ୟ ଯୋଗାଇଦେଲା । ପୂର୍ବବର୍ଷର ଅର୍ଥନୈତିକ ଦୁର୍ଗତି ଆଉ ରହିଲା ନାହିଁ । ମୋର ଏକକ ଦାୟିତ୍ୱ ରହିଲା ରବିବାର ପ୍ରଜାତନ୍ତ୍ରର ସାହିତ୍ୟ ବିଭାଗକୁ ସଂପାଦନା କରିବା । ଅତ୍ୟନ୍ତ ନିଷ୍ଠାର ସହିତ ଏହି ଦାୟିତ୍ୱ ତୁଲାଇଲି । ଝଙ୍କାର ମାସିକ ସାହିତ୍ୟ ପତ୍ରର ସଂପାଦନାରେ ସହଯୋଗ କରୁଥାଏ ସହପାଠୀ ବନ୍ଧୁ ଚକ୍ରଧର ସାମଲଙ୍କ ସହିତ । ଆମ ଦୁହିଁଙ୍କର ନାମ କେଉଁଠାରେ ପ୍ରକାଶିତ ହେଉନଥିଲା । ପ୍ରଥମ ବର୍ଷର ବିଷୁବ ସଂଖ୍ୟା ସଂପାଦକୀୟରେ ସଂପାଦକ ମହତାବ ଲେଖିଥିଲେ- ''ସଂପାଦନା କାର୍ଯ୍ୟରେ ମୋତେ ସାହାଯ୍ୟ କରୁଥିଲେ ପଠାଣି ପଟ୍ଟନାୟକ, ବି.ଏ. ଓ ଚକ୍ରଧର ସାମଲ, ବି.ଏ. ।''

ଝଙ୍କାର ପତ୍ରିକାର ଏକ ସଂପାଦନାମଣ୍ଡଳୀ ଥାଏ । ଏଥିରେ ମୁଖ୍ୟ ସଂପାଦକ ଶ୍ରୀ ମହତାବଙ୍କ ବ୍ୟତୀତ ଥାଆନ୍ତି ଗୋପୀନାଥ ମହାନ୍ତି, ସଦାଶିବ ମିଶ୍ର, ମାୟାଧର ମାନସିଂହ ପ୍ରଭୃତି ବରେଣ୍ୟ ଲେଖକଗଣ । ଝଙ୍କାର ପାଇଁ କ୍ଷୁଦ୍ରଗଳ୍ପ ଗୁଡ଼ିକ ଅନେକଦିନ ଯାଏ ଗୋପୀନାଥ ମହାନ୍ତି ନିର୍ବାଚନ କରିଦେଉଥିଲେ । କବିତା ଗୁଡ଼ିକରେ ଆଖି ପକାଉଥାନ୍ତି କବି ମାୟାଧର ମାନସିଂହ । ଏହି ପ୍ରସଙ୍ଗରେ ଏକ ସ୍ମରଣୀୟ ଘଟଣା ଉଲ୍ଲେଖ କରୁଛି ।

କବି ସଚ୍ଚି ରାଉତରାୟ ଗଦ୍ୟ କବିତାର ପରୀକ୍ଷା କରୁଥାଆନ୍ତି । ପାଠକ ମହଲରେ ଏହି ପ୍ରକାର କବିତା ପ୍ରଶ୍ନବାଚୀ ସୃଷ୍ଟି କରିଥାଏ । ସଂପାଦକ ମାନସିଂ ସଚ୍ଚିବାବୁଙ୍କର କୌଣସି କବିତାକୁ ପ୍ରକାଶିତ ହେବା ପାଇଁ ସମ୍ମତି ପ୍ରଦାନ କଲେ ନାହିଁ । ଆମେ ଦୁହେଁ ବଡ଼ ସଂକଟରେ ପଡ଼ିଗଲୁ । ସଚ୍ଚି ବାବୁଙ୍କ ପରି ଜଣେ ମାନ୍ୟଗଣ୍ୟ କବିଙ୍କୁ ଆମେ କି ପ୍ରକାର ସଫେଇ ଦେବୁ ? ସେ ଥିଲେ ଧାରାବାହିକ ଲେଖକ, ପ୍ରଜାତନ୍ତ୍ର-ଝଙ୍କାରର ସାରସ୍ୱତ ପରିବାରର । ବାଧହୋଇ ମହତାବଙ୍କର ପରାମର୍ଶ ଲୋଡ଼ିଲୁ । ସେ ନିର୍ଦ୍ଦେଶ ଦେଲେ-ଏଣିକି ସଚ୍ଚି ବାବୁଙ୍କ କବିତା ସଂପାଦକଙ୍କ ପାଖକୁ ନପଠାଇ ତୁମେ ଛପାଇବାର ବ୍ୟବସ୍ଥା କର । ସମ୍ଭ୍ରମ ଦୃଷ୍ଟିରୁ ମାନସିଂହଙ୍କ ପାଖରୁ ମଧ୍ୟ ଏପରି ଅନୁମତି ଭିକ୍ଷା କଲୁ । ସେ କହିଲେ,' ତୁମର ପତ୍ରିକା, ତୁମର ଲେଖା ଛାପିବାର ଅଧିକାର ଅଛି । ମାତ୍ର ଯେଉଁ କବିତା ମୁଁ ନିଜେ ବୁଝିପାରୁ ନାହିଁ ତାକୁ କିପରି ନିର୍ବାଚନ କରିବି ? ଡଃ ମାନସିଂ ଯେତେବେଳେ ସମ୍ବଲପୁର ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଥିଲେ, ତାଙ୍କର ସଂପାଦନାରେ କଲେଜ ପ୍ରକାଶ କଲା ଏକ ସାହିତ୍ୟ ପତ୍ରିକା । ଏକଦା ଏହି ପତ୍ରିକାର ସଂପାଦକୀୟରେ ସେ ବଙ୍ଗଳାର ଖ୍ୟାତନାମା ''ଶନିବାରେର ଚିଠି'' ର ସଂପାଦକ ରଜନୀକାନ୍ତ ଦାସଙ୍କର ଗୋଟିଏ ସଂପାଦକୀୟ ଲେଖାକୁ ଉଦ୍ଧାର କରିଥିଲେ ଏହି ଗଦ୍ୟ କବିତାର ଲେଖକମାନଙ୍କ ସଂପର୍କରେ । ସେ ଲେଖିଥିଲେ-''ହେ ଗଦ୍ୟକବିତାର

ଲେଖକଗଣ !! ତୁମ୍ଭେମାନେ ପ୍ରଚାର କରିବାରେ ଲାଗିଛ ଯେ ଯେଉଁମାନେ ତୁମ ଲେଖା ବୁଝିବାକୁ ଅକ୍ଷମ, ସେମାନଙ୍କର ବାପ' ମା'ରେ ଠିକଣା ନାହିଁ । ତୁମ କବିତା ନ ବୁଝିପାରିଲେ ମଧ୍ୟ କିଏ ଏପରି ଅପମାନକୁ ଗ୍ରହଣ କରିବ ? ତେବେ ମୌନ ରହିବା ବ୍ୟତୀତ ଅନ୍ୟ ଉପାୟ ନାହିଁ । ମାତ୍ର ହେ ନବ୍ୟ ଲେଖକଗଣ !! ଆଉ ସହ୍ୟ ହେଉନାହିଁ । ଏଣିକି ପଛେ ତୁମରି ଭାଷାରେ ଅବୈଧ ସନ୍ତାନ ଭାବରେ ଗଣା ହେବି ପଛକେ, ସତ କହୁଛି, ତୁମ କବିତା ମୁଁ ଆଦୌ ବୁଝିପାରୁ ନାହିଁ ।''

ଏହି ପ୍ରସଙ୍ଗରେ ଆଉ ଏକ ଅନୁଭୂତି ମନେପଡୁଛି । ଏକଦା ନବଭାରତ ପ୍ରେସର ଉପର ମହଲାରେ ପଣ୍ଡିତ ନୀଳକଣ୍ଠଙ୍କ ସଂଧ୍ୟା ଆସରରେ ବସିଥାଏ । କେତେ ସମୟ ପରେ ସାହିତ୍ୟିକମାନେ ବିଦାୟ ନେଲେ । ଏକୁଟିଆ ପାଇ ପଣ୍ଡିତ ନୀଳକଣ୍ଠଙ୍କୁ ପଚାରିଲି, ''ସାର୍, ସଚ୍ଚିବାବୁ ଯେଉଁ ପ୍ରକାର କବିତା ଲେଖୁଛନ୍ତି, ସେ ବିଷୟରେ ଅନେକ ପାଠକ ଉଦାର ଭାବନା ପ୍ରକାଶ କରୁନାହାନ୍ତି । ଆପଣଙ୍କ ମତ କ'ଣ ? ନିଜର ଦାଢ଼ି ଆଉଁସି ପଣ୍ଡିତ ଜୀ କହିଲେ- ''ସଚ୍ଚି ଜଣେ ଶକ୍ତିଶାଳୀ ଲେଖକ । ସେ ମଧ୍ୟ ଆମ ନବଭାରତର ପୃଷ୍ଠାରେ ପ୍ରକାଶିତ ହେଉଛନ୍ତି । ବିଲାତରାଜ୍ୟର ସାହିତ୍ୟରେ କିଛି ପରୀକ୍ଷା ନିରୀକ୍ଷା ଚାଲିଛି । ହଠାତ୍ କିଛି ମନ୍ତବ୍ୟ ଦେବା କ'ଣ ଠିକ୍ ହେବ ? ଯଦି ସେହି ନବୀନ ଧାରା ସାର୍ଥକ ନହୁଏ । ତେବେ ତାହା ଆପେଆପେ ମଉଳି ଆସିବ ।'' ''ସେହି ସମୟରେ ସୁସାହିତ୍ୟିକ ଅନନ୍ତପ୍ରସାଦ ପଣ୍ଡା ଜଣେ ନବୀନ ଲେଖକଙ୍କର କବିତା ଅବୋଧ ହେଉଛି ବୋଲି ଗୋଟିଏ ସାହିତ୍ୟ ପତ୍ରିକାରେ ମନ୍ତବ୍ୟ ଦେଇଥିଲେ । ସେହି ତରୁଣ କବି ଅତ୍ୟନ୍ତ ଉତ୍କ୍ଷିପ୍ତ ହୋଇ ଅନନ୍ତ ପ୍ରସାଦ ପଣ୍ଡାଙ୍କର ବୌଦ୍ଧିକ ଗ୍ରାହକତାକୁ କଟାକ୍ଷ କରି ଲେଖିଲେ । ଏହାର ପ୍ରତିଉତ୍ତର ଦେଇ ଶ୍ରୀ ପଣ୍ଡା ଲେଖିଲେ- ''ମୁଁ ସେ କାଳର ଜଣେ ଇଂରେଜୀ ଅନର୍ସ ଗ୍ରାଜୁଏଟ୍ । ମୁଁ ଯଦି ଆପଣଙ୍କର କବିତାର ଭାବ ବୁଝିବାପାଇଁ ଅକ୍ଷମ ହେଲି, ତାହାହେଲେ ଓଡ଼ିଶାରେ ଆପଣଙ୍କ କବିତାର ଗ୍ରାହକ କେତେଜଣ ?''

ଏହିପରି ବହୁ ଆଦର ଓ ଅନାଦର, ଅନୁକୂଳ ତଥା ପ୍ରତିକୂଳ ସମାଲୋଚନା ମଧ୍ୟରେ ଆଧୁନିକ କବିତା ରାଜ୍ୟରେ ଗଦ୍ୟ କବିତାରେ କବିଗଣ ସାରସ୍ୱତ ସମାଜରେ ବହୁଳ ପ୍ରଚାରିତ ନ ହେଲେ ହେଁ ସାହିତ୍ୟ କ୍ଷେତ୍ରରେ ସୁପ୍ରତିଷ୍ଠିତ ଓ ନାନା ଭାବରେ ବହୁ ସମ୍ମାନ ଓ ଉପଢୌକନର ଅଧିକାରୀ ।

ଓଡ଼ିଆ କାବ୍ୟଜଗତର ସୁଦୀର୍ଘ ପରମ୍ପରା ହେଉଛି ସାଙ୍ଗୀତିକତା ଓ ଛନ୍ଦମାଧୁର୍ଯ୍ୟ । ସେଥିପାଇଁ ସୁଗେୟ ହେତୁ ଏହି ଶ୍ରେଣୀର କବିତା ମନେ ରହିଯାଉଥିଲା । ଯେକୌଣସି ସମୟରେ ଏହି ପ୍ରକାର କବିତା ଅଥବା ଗୀତକୁ ଗାନ କରି ଲୋକମାନେ ଆନନ୍ଦ ଲାଭ କରୁଥିଲେ । ମାତ୍ର ଛନ୍ଦ ଓ ସାଙ୍ଗୀତିକାର ଅଭାବରେ ଯେତେ ବୌଦ୍ଧିକ ପ୍ରଲେପ ଥିଲେ ମଧ୍ୟ ଆଧୁନିକ ଗଦ୍ୟଛନ୍ଦର କବିତା ଆଉ ମନରେ ରଖିହେଉ ନାହିଁ । ସେହି କାରଣରୁ ବୋଧହୁଏ ଆମ ସମୟରେ ଆମର ପରମ୍ପରାରେ ନଥିବା କବିତା- ପାଠୋତ୍ସବର ଲୋକପ୍ରିୟତା ପ୍ରତିଦିନ ବୃଦ୍ଧିଲାଭ କରିବାରେ ଲାଗିଛି ।

ଏମ୍.ଏ. ଅଧ୍ୟୟନ କାଳରେ ମୁଁ ବଙ୍ଗଳା ସାହିତ୍ୟ ଶ୍ରେଣୀରେ ନିୟମିତ ଯୋଗ ଦେଉଥିଲି । ବଙ୍ଗଳା ଲିପିରେ ଲେଖିଜାଣି ନଥିବାରୁ ପରୀକ୍ଷା ଦେଲି ସଂସ୍କୃତ ଓ ପାଲି ସାହିତ୍ୟ ବିଷୟରେ । ଆମର ବଙ୍ଗଳା ସାହିତ୍ୟର ଅଧ୍ୟାପକ ଥିଲେ ଅତ୍ୟନ୍ତ ବିଦ୍ୱାନ ଶ୍ରୀ ବିବେକାନନ୍ଦ ମୁଖାର୍ଜୀ । ବିଶାଳ ବପୁବନ୍ତ ଚେହେରା । ଖଦଡ଼ ଧୋତି ପରିହିତ, ଏଇ ଦାଢ଼ି ଶୋଭିତ ଅଧ୍ୟାପକଙ୍କୁ ଦେଖିଲେ ସ୍ୱତଃ ମୁଣ୍ଡ ନଇଁ ଯାଉଥିଲା । ସେ ଯେତେବେଳେ ଜାଣିଲେ ଯେ ମୁଁ ପ୍ରଜାତନ୍ତ୍ରର ସହକାରୀ ସଂପାଦକଭାବରେ କାର୍ଯ୍ୟ କରୁଛି, ମୋତେ ଦିନେ ପଚାରିଲେ– 'ପଠାଣି, ତୁମେ କ'ଣ ରାଜନୀତି କରିବାକୁ ମନସ୍ଥ କରିଛ ?'' ମୁଁ ନାହିଁ କଲି । ଏମ୍.ଏ. ପଢ଼ିବା ପାଇଁ ତାହା ଏକ ଆଶା ମାତ୍ର । ପଚାରିଲି– ''ସାର୍, ଏପରି କଥା କାହିଁକି ପଚାରିଲେ ?'' ସାର୍ କହିଲେ, ''ରାଜନୀତିଜ୍ଞମାନେ ଭାଲୁ । ସେମାନେ ଆଦରରେ କୋଳେଇ ପକାଇଲେ ମଧ ଦେହରୁ ଛାଲ ଛାଡ଼ିଯାଏ । ତେଣୁ ତୁମେ ସେମାନଙ୍କର ଅତି ନିକଟ ହେବ ନାହିଁ । କର୍ତ୍ତବ୍ୟ କରି ଚାଲି ଆସୁଥିବ ।'' ବାସ୍ତବରେ ଏହା ଅକ୍ଷରେ ଅକ୍ଷରେ ସତ୍ୟ । ରାଜନୀତିଜ୍ଞମାନେ କ୍ଷମତାଶାଳୀ ହୋଇଥିବାରୁ ସେମାନଙ୍କର ଅପ୍ରୀତି ଅଥବା ଅବିଶ୍ୱାସ ଭାଜନ ହେଲେ ତୁମର ପରିଣତି ଭୟାବହ ନିଶ୍ଚୟ ହେବ । ତେଣୁ ସାଧୁ ! ସାବଧାନ ।

ବୟସରେ ତରୁଣ ହେଲେ କ'ଣ ହେଲା, ରବିବାର ପ୍ରଜାତନ୍ତ୍ରର ସାହିତ୍ୟ ବିଭାଗ ଓ 'ଝଙ୍କାର' ପତ୍ରିକାର ସଂପାଦନା ସହିତ ସଂଯୁକ୍ତ ହୋଇଥିବାରୁ ତରୁଣ ପ୍ରବୀଣ ନିର୍ବିଶେଷରେ ସାହିତ୍ୟସେବୀମାନଙ୍କର ଅଜସ୍ର ଶ୍ରଦ୍ଧା ଓ ସମ୍ମାନର ସୁଯୋଗ ମିଳୁଥାଏ । ଓଡ଼ିଶାର ସର୍ବାଞ୍ଚଳର ବହୁ ଲେଖକ ଲେଖିକାମାନଙ୍କ ସହିତ ପତ୍ରମାଧ୍ୟମରେ ସଂପର୍କ ଜାରି ରହିଥାଏ । ସାହିତ୍ୟସେବା କ୍ଷେତ୍ରରେ ଜଣେ ନବାଗତ ତରୁଣ ପାଇଁ ଏହା ଥିଲା ମହାର୍ଘ ସୁଯୋଗ ।

ଅବସ୍ଥାଚକ୍ରରେ ସାମ୍ବାଦିକ ଜୀବନକୁ ଧରି ରଖି ପାରିଲି ନାହିଁ ସିନା, ଆଜିପର୍ଯ୍ୟନ୍ତ ପ୍ରଜାତନ୍ତ୍ର ପରିବାରର ଜଣେ ବୋଲି ନିଜକୁ ମନେକରି ଆସିଛି । ଏହି ଅନୁଷ୍ଠାନରେ ଅତ୍ୟନ୍ତ ନିକଟ ସଂପର୍କରେ ଆସିଥିଲି ଚିନ୍ତାମଣି ପାଣିଗ୍ରାହୀ, ଜାନକୀବଲ୍ଲଭ ପଟ୍ଟନାୟକ, ଶଶିଭୂଷଣ ମିଶ୍ର, ଚନ୍ଦ୍ରଶେଖର ମହାପାତ୍ର, ରମେଶଚନ୍ଦ୍ର ମହାନ୍ତି, ଚକ୍ରଧର ସାମଲ ଏବଂ ସର୍ବୋପରି ଶ୍ରୀ ହରେକୃଷ୍ଣ ମହତାବ ପ୍ରମୁଖଙ୍କର । 'ପ୍ରଜାତନ୍ତ୍ର' କର୍ମକ୍ଷେତ୍ରରୁ ବିଦାୟ ନେଇ ଆସିଥିଲେ ସୁଦ୍ଧା ମଧ୍ୟେ ମଧ୍ୟେ ଶ୍ରୀ ମହତାବଙ୍କର ପ୍ରେରଣାଗର୍ଭିତ ଚିଠି ପାଇବାର ଭାଗ୍ୟ ଅର୍ଜନ କରିଥିଲି । ଏକାଧିକ ଥର ବିଷୁବ ମିଳନ ସାହିତ୍ୟ ସଭାରେ ଓ ସାଧାରଣ ଅଧିବେଶନରେ ସଭାପତି ଆସନ ଅଳଙ୍କୃତ କରିବାର ସୁଯୋଗ ମିଳିଥିଲା । ସର୍ବୋପରି ଶ୍ରୀ ମହତାବଙ୍କର ସର୍ବଶେଷ ଲେଖା ଇଂରାଜୀ ପୁସ୍ତକ "While serving my nation" ର ସମୀକ୍ଷା ମୋ ଦ୍ୱାରା ଲେଖା ହେଉ ବୋଲି ଶ୍ରୀ ମହତାବ କାମନା କରିଥିଲେ । ତାଙ୍କ ପରି ବିଶାଳ ବ୍ୟକ୍ତିତ୍ୱର ଏପରି ଆସ୍ଥାପୋଷଣ ମୋ ପାଇଁ ଥିଲା ଆଉ ଏକ ଅମୃତ ଅନୁଭବ ।

ସାଂପ୍ରତିକ ଓଡ଼ିଶାର ରାଜନୀତି, ସାମ୍ବାଦିକତା ଓ ସାହିତ୍ୟ କ୍ଷେତ୍ରରେ ଜାନକୀବାବୁ ଜଣେ ସ୍ୱନାମଧନ୍ୟ ପୁରୁଷ । ସେ ଇଚ୍ଛା କରିଥିଲେ ଉଚ୍ଚ ସରକାରୀ ରାଜକର୍ମଚାରୀ ଭାବରେ

ସ୍ୱଚ୍ଛନ୍ଦରେ ଜୀବନ ନିର୍ବାହ କରିପାରିଥାଆନ୍ତେ । ମାତ୍ର ଏହି ଉଚ୍ଚାଭିଳାଷୀ ତରୁଣ ଯୁବକ ବନାରସ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଏମ୍.ଏ. ଡିଗ୍ରୀ ହାସଲ କରି ତତ୍କାଳୀନ ସାମ୍ବାଦିକତାର ଅଭାବ ଓ ଅସ୍ଥିର ଜୀବନକୁ ଆଦରି ନେଇଥିଲେ । ତାଙ୍କ ବୟସର ଜଣେ ସଦ୍ୟ କଲେଜ ଫେରନ୍ତା ଯୁବକ ଅଳ୍ପଦିନ ମଧ୍ୟରେ ''ପ୍ରଜାତନ୍ତ୍ର'' ଓ Eastern Times ପରି ଦୁଇଟି ଦୈନିକ ସଂବାଦପତ୍ରର ମୁଖ୍ୟ ସଂପାଦକ ହେବା କମ୍ ଗୌରବର କଥା ନୁହେଁ । ଭାରତର ସର୍ବଶେଷ ଗଭର୍ଣ୍ଣର ଜେନେରାଲ ରାଜଗୋପାଳ ଆଚାରୀ ଓଡ଼ିଶା ପରିଦର୍ଶନ କାଳରେ Eastern Times ର ସଂପାଦକୀୟ ପାଠ କରି ପ୍ରଶଂସା କରିଥିଲେ ବୋଲି ଜଣାଯାଏ । ଏହି ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ମହାନ ଦେଶଭକ୍ତ ନବକୃଷ୍ଣ ଚୌଧୁରୀ । ଜାନକୀବାବୁଙ୍କ ଧୀମତ୍ତା ଓ ସଂଜତ ବିଚାର ଉପରେ ତାଙ୍କ ପରି ଜଣେ ବିଦ୍ୱାନ ମୁଖ୍ୟମନ୍ତ୍ରୀଙ୍କର ଅମାପ ଆସ୍ଥା ରହିଥିଲା । ସେ ସମୟରେ ଓଡ଼ିଶାର ଶାସନକଳର ଚାରିଆଡ଼େ କେବଳ ଅଣଓଡ଼ିଆ ଆଇ.ସି.ଏସ୍. ପ୍ରଶାସକ । ଆଇ.ଏ.ଏସ୍. ପ୍ରଶାସକ ଅଳ୍ପ ସଂଖ୍ୟାରେ ଆସିଥାଆନ୍ତି । ଅନେକ ସମୟରେ ନିଜେ ନବବାବୁ ଜାନକୀବାବୁଙ୍କୁ ଡାକି ନିଅନ୍ତି ନାନା ଅର୍ଥନୈତିକ ସମସ୍ୟା ବିଷୟରେ ପରାମର୍ଶ କରିବା ପାଇଁ । ମୁଁ ଆଶ୍ଚର୍ଯ୍ୟ ହେଉଥାଏ, ଗର୍ବ ମଧ୍ୟ ଅନୁଭବ କରୁଥାଏ । ଏତେ ବରିଷ୍ଠ ଆଇ.ସି.ଏସ୍. ଅଫିସର ଥିବା ସତ୍ତ୍ୱେ ନବବାବୁ, ଯୁବକ ଜାନକୀବାବୁଙ୍କର ପରାମର୍ଶ ଲୋଡ଼ିବାକୁ ଶ୍ରେୟ ମଣୁଥିଲେ । ଦିନେ ଖବର ମିଳିଲା, ନବବାବୁ ପ୍ରସ୍ତାବ କରୁଛନ୍ତି ଜାନକୀବାବୁଙ୍କୁ ନିର୍ବାଚନରେ ଠିଆ ହୋଇ ଏମ୍.ଏଲ୍.ଏ. ହେବାକୁ । ସେ କାଳର ଷାଠିଏ ଜଣିଆ ବିଧାନ ସଭାରେ ଜଣେ ଏମ୍.ଏଲ୍.ଏ. ଅଥବା ମନ୍ତ୍ରୀଟିଏ ହେବା ପରମ ଗୌରବ ବୋଲି ମନେ କରାଯାଉଥିଲା । ମୋର ବିଶ୍ୱାସ ହେଉଥିଲା, ଜାନକୀବାବୁଙ୍କୁ ମୁଖ୍ୟମନ୍ତ୍ରୀ ନିଶ୍ଚୟ ମନ୍ତ୍ରୀଟିଏ କରିଦେଇଥାଆନ୍ତେ । ପ୍ରତିଦିନ ସଂଧ୍ୟାବେଳେ ଜାନକୀବାବୁଙ୍କ ସହିତ ସଂଧ୍ୟା ଭ୍ରମଣରେ ଯାଉଥାଏ କଚେରୀ ପାଖରୁ କାଠଯୋଡ଼ି କୂଳେକୂଳେ ଖାନ୍‌ନଗର ପର୍ଯ୍ୟନ୍ତ । ସେହି ଶ୍ମଶାନ ଅଞ୍ଚଳ ନିର୍ଜନ ଓ ଭୟଙ୍କର ଦିଶୁଥାଏ । ଆଜି ଦୃଶ୍ୟପଟ ସମ୍ପୂର୍ଣ୍ଣ ବଦଳିଗଲାଣି । ବୁଲିଗଲାବେଳେ ଏମ୍.ଏଲ୍.ଏ. ହେବା ପାଇଁ ରାଜି ହେବାକୁ ଅନୁରୋଧ କଲି । ସେ କହିଲେ– ଓଡ଼ିଶାରେ ମାତ୍ର ତିନିଜଣ ମୁଖ୍ୟ–ସଂପାଦକ ସଂବାଦପତ୍ରର, ଅଥଚ ବିଧାନସଭାରେ ଷାଠିଏ ଜଣ ସଭ୍ୟ ଏବଂ ସେମାନଙ୍କର ମଧ୍ୟରେ ୧୦/୧୨ ଜଣ ମନ୍ତ୍ରୀ । ଆମେ ତିନିଜଣଙ୍କ ମଧ୍ୟରେ ରହିବା ବା ଷାଠିଏଜଣଙ୍କ ମଧ୍ୟରେ ରହିବା ? ରାଜନୈତିକ ପଶାପାଲିରେ କ୍ଷମତାର ବଳୟ ମଧ୍ୟରେ ନ ରହି ଏକ ସାରସ୍ୱତ ବାତାବରଣ ମଧ୍ୟରେ ଆତଜାତ ହେବା ପାଇଁ ସେ ଅଧିକ ପସନ୍ଦ କରିଥିଲେ । ବିଧିର ବିଧାନ କେ କରିବ ଆନ । ଦୀର୍ଘକାଳ ପ୍ରଜାତନ୍ତ୍ରର ସେବା କଲା ପରେ ସମୟକ୍ରମେ ଏହି ଅନୁଷ୍ଠାନରୁ ବାହାରି ସେ ପ୍ରତିଷ୍ଠା କଲେ ''ପୌରୁଷ'' ସାହିତ୍ୟ ପତ୍ରିକା । କ୍ରୋଡ଼ପୃଷ୍ଠାରେ ମହାଭାରତର ମହାବୀର କର୍ଣ୍ଣଙ୍କର ଗୋଟିଏ ବାକ୍ୟ ସର୍ବଦା ରହୁଥିଲା– ''ଜନ୍ମ ମୋର ଦୈବାଧିନ, ମାତ୍ର ପୁରୁଷକାର ମୋର ଅଧୀନ ।'' ଆଜୀବନ ସେ ଏହି ପୁରୁଷକାର ଉପରେ ବିଶ୍ୱାସ କରି କାର୍ଯ୍ୟ କରିଛନ୍ତି । ଏକଦା ବିଧାନସଭାର ଆକର୍ଷଣକୁ

ପ୍ରତ୍ୟାଖ୍ୟାନ କରିଥିବା ଜାନକୀବାବୁ ରାଜନୀତି-ସୁନ୍ଦରୀର ବାହୁପାଶରେ ଆଜୀବନ ବନ୍ଦୀ ହୋଇ ରହିଗଲେ । ତଥାପି ସାହିତ୍ୟ-ସୁନ୍ଦରୀର ପ୍ରେମାନୁଭବକୁ ସେ ଛାଡ଼ିପାରି ନାହାନ୍ତି । ନଚେତ୍ ଦୀର୍ଘବର୍ଷ ଅବିଶ୍ରାନ୍ତ ସାଧନା ମଧ୍ୟରେ ସେ ଓଡ଼ିଆ ସାହିତ୍ୟକୁ ବିଶାଳ ସଂସ୍କୃତ ଭାଗବତର ଓଡ଼ିଆ ଭାଷାରେ ଗଦ୍ୟାନୁବାଦ ଉପହାର ଦେଇପାରି ନଥାନ୍ତେ ।

ସେହି ତରୁଣ ବୟସରେ ସ୍ୱପ୍ନ ଦେଖୁଥିଲି ସାମ୍ବାଦିକତା କରି ପ୍ରଜାତନ୍ତ୍ର ପରିସରରେ ରହିଯିବି, ମାତ୍ର ତାହା ବୋଧହୁଏ ଈଶ୍ୱରଙ୍କର ଇଚ୍ଛା ନଥିଲା । ଜଣକ ପରେ ଜଣେ ବରିଷ୍ଠ ସଂପାଦକ ଅବସର ନେଲା ପରେ ମୁଁ ନିଶ୍ଚୟ ପ୍ରଜାତନ୍ତ୍ରର ମୁଖ୍ୟ ସଂପାଦକ ଭାବରେ ବିଦାୟ ନେଇ ପାରିଥାଆନ୍ତି । କାରଣ ଶ୍ରୀ ମହତାବଙ୍କର ଅଶେଷ ଆଶୀର୍ବାଦ ଓ ବିଶ୍ୱାସର ମୁଁ ଅଧିକାରୀ ହୋଇପାରିଥିଲି ଅଳ୍ପକାଳ ମଧ୍ୟରେ । ଅନେକ ବୟସ୍କ ପ୍ରତିଷ୍ଠିତ ଲେଖକ ମୋ ବିରୁଦ୍ଧରେ ମହତାବଙ୍କୁ ଚିଠି ଲେଖୁଥିଲେ ସେମାନଙ୍କର ଲେଖା ସ୍ଥାନ ପାଉନାହିଁ ବୋଲି । କେବେହେଲେ ଥରେ ସୁଦ୍ଧା ସେ ମୋତେ ଆଦେଶ ଦେଉନଥିଲେ ସେମାନଙ୍କ ସପକ୍ଷରେ । ମୋର ବିଚାର ଓ ନିରପେକ୍ଷତା ଉପରେ ତାଙ୍କର ଅଶେଷ ଆସ୍ଥା ପୂରି ରହିଥିଲା ।

ଏମ୍.ଏ. ଶେଷ ପରୀକ୍ଷା ଦେବା ପାଇଁ ଗୋଟିଏ ମାସ ଛୁଟୀ ନେଇ ଚାଲିଆସିଲି । ପରୀକ୍ଷା ଦେଇସାରିଲା ପରେ ଆଉ ସାମ୍ବାଦିକତାର ନିଶାରେ ଘାରି ହେଲି ନାହିଁ କେତେକ ବ୍ୟକ୍ତିଗତ କାରଣରୁ । ପରବର୍ତ୍ତୀ ଜୀବନରେ ଅନେକଥର ସୁଯୋଗ ଆସିଥିଲେ ମଧ୍ୟ ଆଉ ଧରା ଦେବା ସମ୍ଭବ ହେଲା ନାହିଁ ।

•••

# କର୍ମମୟ ଜୀବନର ଖାଲଢ଼ିପ

ଏମ୍.ଏ. ପରୀକ୍ଷା ଦେଇସାରି ପୁରୀ ଫେରି ଆସିଥାଏ । ସବୁବେଳେ ମାନସିକ ଦୋଳନ, ଏହାପରେ କ'ଣ କରିବି ? 'ସମାଜ' ଖବର କାଗଜରେ ବିଜ୍ଞାପନ ପାଠ କଲି । ଖ୍ରୀଷ୍ଟ କଲେଜ କଟକରେ ଓଡ଼ିଆ ସାହିତ୍ୟ ଅଧ୍ୟାପକ ପଦ ଖାଲି ଅଛି । ଏମ୍.ଏ. ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀ ଆଶା କରୁଥିବା ପ୍ରାର୍ଥୀମାନେ ଦରଖାସ୍ତ କରିବାରେ ଆପତ୍ତି ନାହିଁ । ଦରଖାସ୍ତ ସହିତ ରେଭେନ୍ସା କଲେଜର ଓଡ଼ିଆ ସାହିତ୍ୟ ବିଭାଗର ମୁଖ୍ୟଙ୍କର ସାର୍ଟିଫିକେଟ ଓ ଜଣେ ଗେଜେଟେଡ୍ ଅଫିସରଙ୍କର ସାର୍ଟିଫିକେଟ ଦେବାକୁ ହେବ ।

କଟକ ଆସି ପ୍ରଥମେ ସାକ୍ଷାତ କଲି ବିଭାଗୀୟ ମୁଖ୍ୟ ପ୍ରଫେସର କରୁଣାକର କରଙ୍କୁ । ସେ ମୋତେ ସାର୍ଟିଫିକେଟ ଦେଲେ ନାହିଁ । ଟାଳଟୁଳ କରି କହିଲେ, ଏମ୍.ଏ. ଫଳାଫଳ ପ୍ରକାଶିତ ହେବା ପରେ ହିଁ ମୁଁ ଦେଇପାରେ । ଆମ ସମୟରେ କ୍ୱଚିତ୍ ପ୍ରଥମ ଶ୍ରେଣୀ ପାଉଥିଲେ । ମୁଁ ଦ୍ୱିତୀୟଶ୍ରେଣୀ ଆଶା କରୁଥିଲି, ଅଧ୍ୟାପକ ହେବା ପାଇଁ ଯେଉଁ ଯୋଗ୍ୟତା ଆବଶ୍ୟକ । ପ୍ରଫେସର ମୋ ଉପରେ ସନ୍ତୁଷ୍ଟ ନଥିଲେ । କାରଣ ସେ ବ୍ୟକ୍ତିଗତ ଈର୍ଷାବଶତଃ ଅଧ୍ୟାପକ ରାଜକିଶୋର ରାୟଙ୍କୁ ରେଭେନ୍ସା କଲେଜରୁ ବଦଳି କରିବା ପାଇଁ ମୋର ସହପାଠୀମାନଙ୍କର ଦସ୍ତଖତ ସଂଗ୍ରହ କରିଥିଲେ । ସେଥିରେ ମୁଁ ଦସ୍ତଖତ କଲି ନାହିଁ । ମୋତେ ଏକାନ୍ତରେ ଡାକି ମୁଁ କୁଆଡ଼େ ପଠିତ କାବ୍ୟ ବିଷୟରେ ନୋଟ୍ସ ପ୍ରସ୍ତୁତ କରି ଅଧ୍ୟାପକ ରାୟଙ୍କୁ ଦେଉଛି ବୋଲି ଧମକ ଦେଇ ପଚାରିଲେ । ଏପରି ଅଭିଯୋଗ ଶୁଣି ମୁଁ କେବଳ ବ୍ୟସ୍ତ ହୋଇ କାନ୍ଦିବାକୁ ଲାଗିଲି । କାହିଁ ଅଧ୍ୟାପକ ରାୟ ଆଉ ମୁଁ ଜଣେ ଅକିଞ୍ଚନ ଛାତ୍ର ଯାହାର ପୁଣି ଓଡ଼ିଆ ଅନର୍ସ ନଥିଲା । ମୁଁ ଅର୍ଥନୀତି ଅନର୍ସରୁ ରେଭେନ୍ସା କଲେଜକୁ ଆସିଥିଲି ଓଡ଼ିଆରେ ଏମ୍.ଏ. ଅଧ୍ୟୟନ କରିବା ପାଇଁ । ମୁଁ ମଧ୍ୟ ଶୁଣିଥିଲି ବିଭାଗୀୟ ମୁଖ୍ୟ ଅସନ୍ତୁଷ୍ଟ ହେଲେ ଏମ୍.ଏ. ରେ ଭଲ କ୍ଲାସ୍ ମିଳିବ ନାହିଁ । ମୋ କ୍ଲାସ୍‌ର ୨୫ ଜଣ ଛାତ୍ରଙ୍କ ମଧ୍ୟରୁ ମୋତେ ମିଶାଇ କେବଳ ଚାରିଜଣ ଅଧ୍ୟାପକ ରାୟଙ୍କ ବିରୁଦ୍ଧରେ ଦସ୍ତଖତ ଦେଇ ନଥିଲେ ।

ସେ ସମୟରେ ଅଧ୍ୟାପକ ରାୟଙ୍କ ପରି ବିଦ୍ୱାନ ଅଧ୍ୟାପକ ଅଳ୍ପ କେତେଜଣ ଥିଲେ । ବ୍ୟକ୍ତିଗତ ଈର୍ଷାର ଶରବ୍ୟ ହୋଇ ସେ ରେଭେନ୍ସା କଲେଜରୁ ବଦଳି ହୋଇ ଚାଲିଗଲେ । ଡକ୍ଟର କର ମୋ ବ୍ୟତୀତ ମୋର ସମସ୍ତ ସହପାଠୀଙ୍କୁ ସାର୍ଟିଫିକେଟ ଦେଇଥିଲେ ।

ଡକ୍ଟର କରୁଣାକର ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଡି.ଲିଟ୍. ଉପାଧିଧାରୀ । ରେଭେନ୍ସା କଲେଜକୁ ଆସିବା ପୂର୍ବରୁ ସେ କିଛିକାଳ ପୁରୀ ସଂସ୍କୃତ କଲେଜର ଅଧ୍ୟକ୍ଷ ଦାୟିତ୍ୱ ତୁଲାଇଥିଲେ । ବିଖ୍ୟାତ ସଂସ୍କୃତ ଅଳଙ୍କାର ଗ୍ରନ୍ଥ 'ସାହିତ୍ୟ ଦର୍ପଣ' ସଂପାଦନା କରି ସେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କର ପାଣ୍ଡିତ୍ୟ ଓ ଅଧ୍ୟାପନା କୌଶଳ ପାଇଁ ଆମେ ଛାତ୍ରମାନେ ଗର୍ବ ଅନୁଭବ କରୁଥିଲୁ । ଏତେବଡ଼ ପଣ୍ଡିତ ଅଧ୍ୟାପକ କାହିଁକି ଅଧ୍ୟାପକ ରାୟଙ୍କ ପ୍ରତି ଈର୍ଷାରେ ଜଳିଯାଉଥିଲେ ଏବଂ ତାଙ୍କର ବଦଳିର କାରଣ ହେଲେ, ତାହା ଆଜିଯାଏ ବୁଝିପାରି ନାହିଁ ।

ସେଦିନ ଥାଏ ଦରଖାସ୍ତ ଦେବାର ଶେଷ ତାରିଖ । ଜଣେ ଗେଜେଟେଡ୍ ଅଫିସରଙ୍କର ପ୍ରଶଂସାପତ୍ର ଆବଶ୍ୟକ । ମନେପଡ଼ିଲା ଗୋପୀନାଥ ମହାନ୍ତିଙ୍କ କଥା । ଝଙ୍କାର ଓ ରବିବାର ପ୍ରଜାତନ୍ତ୍ର ସଂପାଦନା ସମୟରେ ତାଙ୍କର ନିକଟ ସଂପର୍କରେ ଆସିଥିଲି । ନିଜେ ଲେଖାଲେଖି କରୁଥିବାରୁ ତାଙ୍କର ଆଶୀର୍ବାଦ ଓ ପ୍ରେରଣା ମଧ୍ୟ ଲାଭ କରିଥିଲି । ସେହି ସମୟରେ ଗୋପୀନାଥ ମହାନ୍ତି ଫାଷ୍ଟକ୍ଲାସ୍ ମାଜିଷ୍ଟ୍ରେଟ୍ ଓ ଡେପୁଟି କଲେକ୍ଟର ଏବଂ ଓଡ଼ିଆ ସାହିତ୍ୟର ଅତ୍ୟନ୍ତ ଖ୍ୟାତନାମା ସାହିତ୍ୟିକ । ମାତ୍ର ମୋ ପରି ଜଣେ ତରୁଣ ଲେଖକ ଓ ଛାତ୍ରକୁ ଖୋଲା ମନରେ ସେ ପ୍ରଶଂସା କରି ଲେଖିଥିଲେ-

"I have known Sri Pathani Pattnaik B.A., son of Sri Somanath Pattnaik of Markandeswar Sahi, Puri as a co-worker in the field where Modern Oriya literature is erected. He evinces a geunine interest in Oriya literature and is strong, determined and persevering. xxx" 18.7.57.

ଓଡ଼ିଆ ଏମ.ଏ. ଶ୍ରେଣୀରେ ଗୋପୀନାଥ ମହାନ୍ତିଙ୍କର ଉପନ୍ୟାସ 'ପରଜା' ପାଠ୍ୟ ରହିଥିଲା । ସେଥିପାଇଁ ତାଙ୍କର ପ୍ରତ୍ୟେକଟି ଉପନ୍ୟାସ ପାଠ କରି ଅନୁଶୀଳନ କରିବାର ସୁଯୋଗ ରହିଥିଲା । ପରବର୍ତ୍ତୀ ସମୟରେ ଏହି ବରେଣ୍ୟ ଲେଖକଙ୍କର ନିକଟ ସଂପର୍କରେ କେତେଥର ଆସିଥିଲି ଏବଂ ବିଶେଷ କରି ପୁରୀ ଜିଲ୍ଲା ବୋର୍ଡ଼ର ସ୍ୱତନ୍ତ୍ର ଅଫିସର ଭାବରେ ସେ କାର୍ଯ୍ୟରତ ଥିବା ସମୟରେ ପ୍ରାୟ ତାଙ୍କର ସଖ୍ୟ ଲାଭ କରୁଥିଲି । ମନଧ୍ୟାନ ଦେଇ ତାଙ୍କଠାରୁ ଶୁଣୁଥିଲି ଓଡ଼ିଆ ସାହିତ୍ୟ, ଆନ୍ତର୍ଜାତିକ ସାହିତ୍ୟ ଓ ସାହିତ୍ୟସେବୀମାନଙ୍କର ଆଚରଣ ସଂପର୍କରେ ।

ସେ କାଳରେ ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ନିଯୁକ୍ତି ଏକ ସ୍ୱତନ୍ତ୍ର ଧରଣର । କୌଣସି ଇଣ୍ଟରଭିଉ ବୋର୍ଡ଼ର ସମ୍ମୁଖୀନ ହେବାକୁ ପଡୁନଥିଲା । ଅଧ୍ୟକ୍ଷ ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତି ବିଶ୍ୱାସ କରୁଥିଲେ ଯେ ପ୍ରାର୍ଥୀଙ୍କର ବିଶ୍ୱବିଦ୍ୟାଳୟ ଯୋଗ୍ୟତା ଯାହା ଥାଉନା କାହିଁକି ସେ ସଫଳତାର ସହିତ ଶ୍ରେଣୀ କକ୍ଷରେ ଶୃଙ୍ଖଳା ରଖି ନପାରିଲେ ଜଣେ ଭଲ ଅଧ୍ୟାପକ ହୋଇପାରିବ ନାହିଁ । ତେଣୁ ପତ୍ୟେକ ପ୍ରାର୍ଥୀଙ୍କୁ ଶ୍ରେଣୀ କକ୍ଷରେ ଅଧ୍ୟାପନା କରିବା ପାଇଁ କୁହାଯାଏ । ସେଠାରେ ପଛ ବେଞ୍ଚରେ ଉପସ୍ଥିତ ରହିଥିବେ ଅଧ୍ୟକ୍ଷ ଓ ବିଭାଗୀୟ ମୁଖ୍ୟ । ତାହାହିଁ ହେଉଛି ଅଧ୍ୟାପକ ନିଯୁକ୍ତିର ଇଣ୍ଟରଭିଉ । ମୋର ପାଳି ପଡ଼ିଲା ଚତୁର୍ଥ ବାର୍ଷିକ ଶ୍ରେଣୀର ଏମ୍.ଆଇ.ଏଲ୍.

କ୍ଲାସ୍ ନେବା ପାଇଁ । ସେଦିନର ପାଠ୍ୟ ଥିଲା ଗୋଟିଏ କ୍ଷୁଦ୍ର କବିତା 'ପ୍ରଣୟିନୀ ପ୍ରତି' । ଏହାର ଲେଖକ ହେଉଛନ୍ତି ପଣ୍ଡିତ ନୀଳକଣ୍ଠ ଦାସ ।

ଇଣ୍ଟରଭିଉ ପୂର୍ବଦିନ ପାଠ୍ୟ ବିଷୟଟି ଜଣାଇ ଦିଆଯାଏ । ଆମେ ପ୍ରାୟ ପନ୍ଦର କୋଡ଼ିଏ ଜଣ ପ୍ରାର୍ଥୀ ଥାଉ । କାହା ଭାଗ୍ୟରେ କେଉଁ କ୍ଲାସ୍ ପଡ଼େ । ସେ ସମୟରେ ଚତୁର୍ଥ ବାର୍ଷିକ ଏମ୍.ଆଇ.ଏଲ୍ କ୍ଲାସ୍‌ରେ ପ୍ରାୟ ଦେଢ଼ଶହ ଛାତ୍ର । ସମସ୍ତେ ବୟସ୍କ ଏବଂ ଅଧିକାଂଶ ଚାକିରୀ କରିଥାନ୍ତି । ଅନେକ ଛାତ୍ର ମୋଠାରୁ ବୟସରେ ବଡ଼ ଏବଂ ଅତ୍ୟନ୍ତ ଅନୁଭୂତିସମ୍ପନ୍ନ । ସେତେବେଳେ ଯେଉଁ ସରକାରୀ କର୍ମଚାରୀମାନେ ଉଚ୍ଚଶିକ୍ଷାର ସୁଯୋଗ ପାଇନଥିଲେ, ସେମାନେ ଖ୍ରୀଷ୍ଟ କଲେଜର ସକାଳୁଆ ଶ୍ରେଣୀରେ·ଅଧ୍ୟୟନ କରି ଡିଗ୍ରୀ ଲାଭ କରିବାର ସୁଯୋଗ ଗ୍ରହଣ କରିପାରୁଥିଲେ । କିପରି ଆଲୋଚନା କଲେ ଏହି ବୟସ୍କ ଛାତ୍ରମାନଙ୍କର ମନକୁ ଛୁଇଁପାରିବି, ତାହାହିଁ ହେଲା ମୋର ବଡ଼ ସମସ୍ୟା । ପରାମର୍ଶ ଗ୍ରହଣ କରିବା ପାଇଁ ମୋର ଏମ୍.ଏ. ଶ୍ରେଣୀର ଅଧ୍ୟାପକ ଗୌରୀକୁମାର ବ୍ରହ୍ମାଙ୍କ ପାଖକୁ ଗଲି । ସେ ରହୁଥାଆନ୍ତି ଦରଘାବଜାରର ଗୋଟିଏ ଭଡ଼ା ଘରେ । ଅଧ୍ୟାପକ ବ୍ରହ୍ମାଙ୍କ ପରି ଅଧ୍ୟାପକ ବିରଳ । ଅକୁଣ୍ଠ ଚିତ୍ତରେ ଛାତ୍ରମାନଙ୍କୁ ଘଣ୍ଟାଘଣ୍ଟା ଧରି ସାହାଯ୍ୟ କରନ୍ତି । ସାର୍‌ଙ୍କ ପାଖରେ ମୋର ସମସ୍ୟା ରଖିଲି । ଅଧ୍ୟାପକ ବ୍ରହ୍ମା ତାଙ୍କର ଅଧ୍ୟାପକ ଜୀବନ ଆରମ୍ଭ କରିଥିଲେ ଖ୍ରୀଷ୍ଟ ମହାବିଦ୍ୟାଳୟରେ । ତାଙ୍କର ଅଧ୍ୟାପନା କୌଶଳ ଯୋଗୁ ଖ୍ରୀଷ୍ଟ କଲେଜରେ ଓଡ଼ିଆ ଅନର୍ସ ଛାତ୍ରମାନେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସୁନାମ ଅର୍ଜନ କରିଥିଲେ । ସାର୍ କହିଲେ, ତମକୁ ଯେଉଁ କବିତାଟି ପଢ଼ାଇବାକୁ ଦିଆଯାଇଛି, ତାହା ହେଉଛି ପଣ୍ଡିତ ନୀଳକଣ୍ଠଙ୍କର 'ପ୍ରଣୟିନୀ' କାବ୍ୟର ଏକ ଅଂଶ । ଏ କାବ୍ୟଟି ପୁଣି ଗୋଟିଏ ଇଂରେଜୀ କାବ୍ୟର ଅନୁବାଦ । ଏହି ବିଷୟରେ ମୋର ଆଦୌ ଚର୍ଚ୍ଚା ନାହିଁ । ତୁମେ ଇଂରେଜୀ ପ୍ରଫେସର ବିଶ୍ୱଭୂଷଣ ଦାସଙ୍କୁ ସାକ୍ଷାତ କର । ସେ ଉପଯୁକ୍ତ ବାଟ ବତାଇଦେବେ । ରେଭେନ୍ସାର ଛାତ୍ର ହେଲେ ମଧ ଇଂରେଜୀ ପ୍ରଫେସର ବିଧୁବାବୁଙ୍କ ସହିତ ମୋର ଆଦୌ ପରିଚୟ ନଥିଲା । ସାହସ ହେଲା ନାହିଁ ତାଙ୍କୁ ପରାମର୍ଶ ମାଗିବା ପାଇଁ । ସେତେବେଳେ ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର ନବଭାରତ ପ୍ରେସ୍‌ର ଉପର ମହଲାରେ ରହୁଥାଆନ୍ତି । ବର୍ତ୍ତମାନ ଯେଉଁଠାରେ ବାଙ୍କାବଜାରରେ 'ବୁକ୍ସ ଆଣ୍ଡ୍ ବୁକ୍ସ' ବହି ଦୋକାନ, ସେଇ ଘରେ ନବଭାରତ ପ୍ରେସ୍ ଚାଲିଥିଲା ।

ଅତ୍ୟନ୍ତ ସନ୍ତର୍ପଣରେ ପ୍ରେସ୍‌ର ଉପର ମହଲାକୁ ଯାଇ ପଣ୍ଡିତଙ୍କୁ ପ୍ରଣାମ କଲି । ସଂଧ୍ୟା କାଳ । ଅନେକ ସାହିତ୍ୟିକ ସେଠାରେ ଥାଆନ୍ତି ପଣ୍ଡିତଙ୍କର ଆଲୋଚନା ଶୁଣିବା ପାଇଁ । ପଣ୍ଡିତେ ଭାବିଥିବେ, ମୁଁ ମଧ ଅନ୍ୟମାନଙ୍କ ପରି ଜଣେ ଆଗ୍ରହୀ ଶ୍ରୋତା । ଆଲୋଚନାରେ ମୋର ମନ ନଥାଏ । କିପରି କ'ଣ ପଚାରିବି ଏକୁଟିଆ ପାଇଲେ, ସେଥିପାଇଁ ଅପେକ୍ଷା କରିଥାଏ । ରାତି ନଅଟା ବେଳକୁ ସବୁ ସାହିତ୍ୟିକ ବିଦାୟ ନେଲେ । ଏ ହେଲା ମୋ ପାଇଁ ଅପୂର୍ବ ସୁଯୋଗ । ଅତ୍ୟନ୍ତ ଆବେଗରେ ପଚାରିଲି, ସାର୍, ଆପଣ ମୌଳିକ କାବ୍ୟ ଲେଖିଛନ୍ତି । ଅନୁବାଦ କଲେ କାହିଁକି ? ସେ ଦୀର୍ଘ ଏକଘଣ୍ଟାକାଳ ତାଙ୍କର କଲିକତା

ରହଣିର ଅନୁଭୂତି କହିଲେ । ଇଂରେଜ କବି ଟେନିସନ୍‌ଙ୍କର ପ୍ରିନ୍‌ସେସ୍ କାବ୍ୟ ପାଠ କଲାବେଳେ ବିଲାତରେ ନାରୀ ଆନ୍ଦୋଳନର ପ୍ରସଙ୍ଗ ତାଙ୍କୁ ଅଧିକ ସ୍ପର୍ଶ କଲା । ସେ ତ ସଂସ୍କାରକ ଥିଲେ । ଏହି କାବ୍ୟକୁ ଓଡ଼ିଆରେ ଅନୁବାଦ କଲେ ମଧ୍ୟ କଥାବସ୍ତୁକୁ ସମ୍ପୂର୍ଣ୍ଣ ଭାରତୀୟ ଢାଞ୍ଚାରେ ପକାଇଦେଲେ ଏବଂ କାବ୍ୟର ଉପସଂହାର ମଧ୍ୟ ଭାରତୀୟ ଆଦର୍ଶକୁ ଲକ୍ଷ୍ୟ କରି ପରିବର୍ତ୍ତିତ ହୋଇଥିଲା । ଯେଉଁ ଅଂଶଟି ପାଠ୍ୟ ଥିଲା, ତାହାର ମୂଳ ଇଂରେଜୀ ପଦ ବିଷୟରେ ପଣ୍ଡିତଙ୍କଠାରୁ ଅନେକ କଥା ଗ୍ରହଣ କଲି ।

ପରଦିନ ଇଣ୍ଟରଭିଉର ପରୀକ୍ଷା । ଗୋଟିଏ ପିରିୟଡ୍ ଥାଏ ପଞ୍ଚାବନ ମିନିଟ୍ । ପାଞ୍ଚମିନିଟ୍ ଉପସ୍ଥାନ ଗ୍ରହଣ କଲେ ସୁଦ୍ଧା ପଚାଶ ମିନିଟ୍‌ର କ୍ଲାସ୍ ନେବାକୁ ହେବ । ମୋର ଭାଗ୍ୟକୁ ଅଧ୍ୟକ୍ଷ ରେଭରେଣ୍ଡ୍ ମହାନ୍ତି ଥିଲେ ଇଂରେଜୀ ସାହିତ୍ୟର ଅଧ୍ୟାପକ । ଛାତ୍ରଜୀବନରେ ଭାଷଣ ଦେବାର ଅଭ୍ୟାସ ଥିଲା । ତେଣୁ ନିର୍ଭୟରେ ଓ ନିଃସଂକୋଚରେ କହିଲି, ଇଂରେଜୀ ସାହିତ୍ୟର, ଭିକ୍ଟୋରିଆ ଯୁଗର ନାରୀ ଆନ୍ଦୋଳନର ଫଳଶ୍ରୁତି କିପରି 'ପ୍ରିନ୍‌ସେସ୍' କାବ୍ୟ ଏବଂ ଓଡ଼ିଶାରେ ସତ୍ୟବାଦୀ ଯୁଗର ସଂସ୍କାରଧର୍ମୀ ଆନ୍ଦୋଳନର ଉପଲକ୍ଷ୍ୟ ହେଲା 'ପ୍ରଣୟିନୀ' କାବ୍ୟ । ମୂଳ ଇଂରାଜୀ ପଦରୁ କେତୋଟି ପିଲାମାନଙ୍କୁ ଡାକିଦେଲି । ଘଣ୍ଟା ବାଜିଲା । କ୍ଲାସ୍ ସରିଲା । ଅଧ୍ୟକ୍ଷ ଆଗେ ଆଗେ ଅଫିସ୍‌କୁ ଚାଲିଗଲେ । ମୋ ସହିତ ବିଶ୍ରାମ କକ୍ଷକୁ ଆସିଲେ ବିଭାଗୀୟ ମୁଖ୍ୟ ଅଧ୍ୟାପକ ଶ୍ରୀଧର ଦାସ । ଜଣେ ବୈୟାକରଣ ଓ ସୁଲେଖକ ଭାବରେ ଶ୍ରୀଧର ବାବୁଙ୍କର ଖ୍ୟାତି ବହୁତ । ମୋତେ ଆସିବା ବାଟରେ କହିଲେ, ''ତୁମେ ସିନା ଗୋଟିଏ କ୍ଲାସ୍ ନେଲ ବୋଲି ଏତେ କଥା କହିପାରିଲ । ଆମେ ତ ସପ୍ତାହରେ ବତିଶ କ୍ଲାସ୍ ନେଉଛୁ । ଏତେ କଥାର ପ୍ରସ୍ତୁତି ପାଇଁ ବେଳ କାହିଁ ।'' ଚାକିରୀ ହେଉ କି ନ ହେଉ, ମୋର ଆଲୋଚନା ଅଧ୍ୟାପକ ଶ୍ରୀଧର ଦାସଙ୍କ ମନ୍‌କୁ ଘେନିଛି ବୋଲି ଅନୁଭବ କଲି । ମୋତେ ବିଶ୍ରାମ କକ୍ଷରେ ଅପେକ୍ଷା କରିବାକୁ କହି ବାହାରି ଗଲେ ଅଧ୍ୟକ୍ଷଙ୍କ ସହିତ ପରାମର୍ଶ କରିବା ପାଇଁ । ମାତ୍ର ପାଞ୍ଚମିନିଟ୍ ପରେ ଫେରି ଆସି କହିଲେ- ''ତୁମକୁ ଚାରିମାସ ପାଇଁ ନିଯୁକ୍ତିପତ୍ର ଦିଆଯିବ । କ'ଣ ରାଜି ?''

ହାତ ପାହାନ୍ତାରେ ଯେତେବେଳେ ଅଧ୍ୟାପକ ହେବାର ସୁଯୋଗ ମିଳିଛି, ଏ ସୁଯୋଗ ଛାଡ଼େ କିଏ ? ମୋର ସହପାଠୀ ବନ୍ଧୁ ଶ୍ରୀନିବାସ ମିଶ୍ରଙ୍କୁ ଆଠମାସ ଓ ମୋତେ ଚାରିମାସ ପାଇଁ ନିଯୁକ୍ତି ପତ୍ର ଦିଆଗଲା । ଓଡ଼ିଆ ସାହିତ୍ୟ ବିଭାଗରେ ଦୁଇଜଣ ମାତ୍ର ସ୍ଥାୟୀ ଅଧ୍ୟାପକ ଥିଲେ । ସେମାନେ ହେଲେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଓ ଶ୍ରୀଧର ଦାସ । କଲେଜର ବୟସ ମାତ୍ର ଛ' ବର୍ଷ । ଦଶ ବାରଜଣ ଅଧ୍ୟାପକ ଓ ଅଧ୍ୟକ୍ଷଙ୍କୁ ନେଇ କଲେଜ ଆରମ୍ଭ ହୋଇଥାଏ । ଇଂରେଜୀ, ଅର୍ଥନୀତି, ଅଙ୍କ ପ୍ରଭୃତି ବିଭାଗର ଅଧ୍ୟାପକମାନେ ଯୋଗ ଦେଇଥିଲେ, ସେମାନେ ସରକାରୀ କଲେଜରେ ନିଯୁକ୍ତି ପାଇ ଚାଲିଯାଉଥିଲେ । ସରକାରୀ କଲେଜର ଇଂରେଜୀ ପ୍ରଫେସର୍ ସର୍ବେଶ୍ୱର ଦାସ, ଇତିହାସ ପ୍ରଫେସର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ନବୀନ କୁମାର ସାହୁ, ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି (କ), ଅଧ୍ୟାପକ

ଗୌରୀକୁମାର ବ୍ରହ୍ମା, ଅଧ୍ୟାପକ ଗୌରହରି ସାମନ୍ତରାୟ, ଅଧ୍ୟାପକ ରୁଦ୍ରମାଧବ ସାହୁ, ଅଧ୍ୟାପକ କୃଷ୍ଣମୋହନ ପଟ୍ଟନାୟକ, ଅଧ୍ୟାପକ ଅନନ୍ତ ଚରଣ ସାହୁ ପ୍ରଭୃତି ଅନେକ ଅଧ୍ୟାପକ ଯେଉଁମାନଙ୍କର ଅଧ୍ୟାପକ ଜୀବନର ମୂଳଦୁଆ ପଡ଼ିଥିଲା ଏହି କଲେଜରେ । ଜାତୀୟ ସଂହତିର ଅପୂର୍ବ ସମନ୍ୱୟ ଘଟିଥିଲା ଏହି କଲେଜରେ । କଲିକତା, କେରଳ, ଚେନ୍ନାଇ, ଆନ୍ଧ୍ର, ଓଡ଼ିଶା, ବନାରସ ପ୍ରଭୃତି ବିଭିନ୍ନ ଅଞ୍ଚଳର ଅଧ୍ୟାପକଗଣ ଏଠାରେ ଶିକ୍ଷାଦାନରେ ବ୍ରତୀ ହୋଇ କୁଟୁମ୍ବିତା ସୃଷ୍ଟି କରିପାରିଥିଲେ ।

ଅବସର ଜୀବନରେ ସେମାନେ ଓଡ଼ିଶାର ସଂସ୍କୃତି ଓ ଚଳଣିରେ ମୁଗ୍ଧ ହୋଇ ଏହିଠାରେ ସବୁଦିନ ପାଇଁ ଘର କରି ରହିଗଲେ ।

ଢିଙ୍କି ସ୍ୱର୍ଗକୁ ଗଲେ ମଧ ଧାନ କୁଟିବ । କଲେଜ ଜୀବନରେ ସାଂସ୍କୃତିକ ଅନୁଷ୍ଠାନ ଗଢ଼ିବାର ଯେଉଁ ନିଶା ଥିଲା, ତାହା ପୁନର୍ବାର ଜାଗ୍ରତ ହୋଇଉଠିଲା । ଅଳ୍ପଦିନ ମଧ୍ୟରେ କେତେଜଣ ଉତ୍ସାହୀ ଛାତ୍ରଙ୍କୁ ଏକାଠି କରି ଆରମ୍ଭ କଲି ଅଭ୍ୟୁଦୟ ସାହିତ୍ୟ ସମାଜ । ପ୍ରତ୍ୟେକ ରବିବାର ଅପରାହ୍ଣରେ ସତୀଚଉରା ଶ୍ମଶାନ ନିର୍ଜନ ପରିବେଶରେ ଆମର ବୈଠକ ବସୁଥିବା କୌଣସି ଏକ ବୃକ୍ଷତଳେ ଶୀତଳ ପରିବେଶରେ । ସାହିତ୍ୟର ବିଭିନ୍ନ ବିଷୟ ଉପରେ ଆଲୋଚନା ହୁଏ । ମୋ ସହଯୋଗୀ ଥିଲେ ଅଧ୍ୟାପକ ଶ୍ରୀନିବାସ ମିଶ୍ର । ଯେଉଁ କେତେଜଣ ଉତ୍ସାହୀ ଛାତ୍ର ଏହି ଅନୁଷ୍ଠାନରେ ଯୋଗ ଦେଇଥିଲେ ପ୍ରଥମରୁ, ସେମାନେ ହେଲେ ଜଗନ୍ନାଥ ପ୍ରସାଦ ଦାସ, ସୁଧାଂଶୁ ରାଉତରାୟ, ବିବେକାନନ୍ଦ ଦାଶ, ରାମନାରାୟଣ ହୋତା ଓ କୈଳାଶ ବିହାରୀ ଦାସ । ଏହି ଛାତ୍ରମାନେ ଆଜି ନିଜନିଜ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ଜଗନ୍ନାଥ ଜଣେ ପ୍ରଥମ ଶ୍ରେଣୀର ଛାତ୍ର ଥିଲେ ଏବଂ ଛାତ୍ର ବୟସରେ ଭଲ କବିତା ଲେଖୁଥିଲେ । ସେ ଥିଲେ ଅଧ୍ୟାପକ ଶ୍ରୀଧର ଦାସଙ୍କର ଜ୍ୟେଷ୍ଠ ପୁତ୍ର । ଆଜି ଜଗନ୍ନାଥ ଜଣେ ଅବସରପ୍ରାପ୍ତ ପ୍ରସିଦ୍ଧ ପ୍ରଶାସକ । କବି, ନାଟ୍ୟକାର ଏବଂ ସାଂସ୍କୃତିକ ଆନ୍ଦୋଳନର ପୁରୋଧାଭାବରେ ସେ ରାଜଧାନୀ ଦିଲ୍ଲୀରେ ଅତ୍ୟନ୍ତ ସମ୍ମାନିତ ଓ ସ୍ୱୀକୃତିପ୍ରାପ୍ତ । ବିବେକାନନ୍ଦ ନିଖିଳ ଭାରତ ଶିକ୍ଷକ ଆନ୍ଦୋଳନରେ ଜଣେ ଆଗଧାଡ଼ିର ନେତା ଓ କର୍ମକର୍ତ୍ତା । ସୁଧାଂଶୁ ଜଣେ ଭଲ କବି ଓ ପ୍ରଶାସକ ଭାବରେ ଖ୍ୟାତି ଅର୍ଜନ କରିଥିଲେ । କୈଳାସ ଆଜୀବନ ସାହିତ୍ୟ ସାଧନା କରିବା ସହିତ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସହକାରୀ ସଂପାଦକ ଭାବରେ କର୍ମରତ ରହି ଅବସର ନେଇଥିଲେ । ବାମପନ୍ଥୀ ଆନ୍ଦୋଳନରେ କର୍ମରତ ଥାଇ ସୁଦ୍ଧା ରାମନାରାୟଣ ବ୍ୟବସାୟୀ ହିସାବରେ ସଫଳତା ଅର୍ଜନ କରିଥିଲେ । ବେଳେବେଳେ ଆମର ଏହି ସତୀଚଉରା ବୈଠକକୁ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଓ ଅଧ୍ୟାପକ ଶ୍ରୀଧର ଦାସଙ୍କୁ ନିମନ୍ତ୍ରଣ କରାଯାଉଥିଲା ଭାଷଣ ଦେବାପାଇଁ ।

ମୁଁ ଥିଲି କଲେଜରେ ସର୍ବକନିଷ୍ଠ ଅଧ୍ୟାପକ ବୟସରେ ଏବଂ କର୍ମକ୍ଷେତ୍ରରେ ମଧ । ଚାରିମାସର କର୍ମମୟ ଜୀବନ ଚାହୁଁ ଚାହୁଁ ବିଦାୟ ନେଇଗଲା । ମୋର ପରମ ସୌଭାଗ୍ୟ ଯେ ଖୁବ୍ ଅଳ୍ପଦିନରେ ଛାତ୍ର ସମାଜର ଶ୍ରଦ୍ଧା, ସ୍ନେହ ଓ ସମ୍ମାନ ଅର୍ଜନ କରିପାରିଥିଲି । ମୋର ଅନୁପସ୍ଥିତିରେ ଅଭ୍ୟୁଦୟ ଆଲୋଚନା ଚକ୍ର ଆଉ କାର୍ଯ୍ୟକାରୀ ହେଲା ନାହିଁ ।

ଅଧ୍ୟାପକ ଜୀବନ ସିନା କ୍ଷଣସ୍ଥାୟୀ ଥିଲା, ମାତ୍ର ସାମାଜିକତାର କ୍ଷେତ୍ର ମୋତେ ଆହ୍ୱାନ କଲା । ସେତେବେଳେ ବାଳକୃଷ୍ଣ କରଙ୍କ ସଂପାଦିତ 'ମାତୃଭୂମି' ଓଡ଼ିଶାର ଏକ ଶକ୍ତିଶାଳୀ ସମ୍ବାଦପତ୍ର । ମାତ୍ର ତିନିଗୋଟି ଦୈନିକ ମଧ୍ୟରେ 'ସମାଜ' ଓ 'ପ୍ରଜାତନ୍ତ୍ର' ସରକାରୀ କଳର ସମର୍ଥକ ଥିଲେ । ବିପକ୍ଷଦଳର ମୁଖପତ୍ର ଥିଲା ଦୈନିକ ମାତୃଭୂମି । ସଂପାଦକ ବାଳକୃଷ୍ଣ କର ''ସହକାର'' ସାହିତ୍ୟପତ୍ର ମାସିକର ସଂପାଦକ ଭାବରେ ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ପ୍ରସିଦ୍ଧି ଅର୍ଜନ କରିଥାଆନ୍ତି । ସେ ପୁଣି ସଂପାଦନା କରୁଥିଲେ ପିଲାଙ୍କ ଉଦ୍ଦେଶ୍ୟରେ 'ଜହ୍ନମାମୁଁ' ମାସିକ ପତ୍ର । ତାଙ୍କର ମୁଖ୍ୟ ସଂପାଦନାରେ ଏକାଧିକ ଖଣ୍ଡରେ ପ୍ରକାଶ ପାଇଥାଏ ପିଲାଙ୍କ ଜ୍ଞାନକୋଷ ''ଶିଶୁ ସଂଖାଳୀ'' । ତାଙ୍କର ନେତୃତ୍ୱରେ ପ୍ରକାଶିତ ମୂଳ ବାଲ୍ମୀକି ରାମାୟଣର ଅନୁବାଦ ''ସାରସ୍ୱତ ରାମାୟଣ'', ''ସାରସ୍ୱତ ଭଗବଦ୍ ଗୀତା'' ଓ ''ପୁରୋହିତ ସର୍ବସ୍ୱ'' ।

ଲକ୍ଷ୍ମୀନାରାୟଣ ସାହୁଙ୍କର 'ସହକାର'ର ସଂପାଦନା ଦାୟିତ୍ୱ ଗ୍ରହଣ କଲାପରେ ଏହି ମାସିକ ସାହିତ୍ୟ ପତ୍ରିକାର ଐଶ୍ୱର୍ଯ୍ୟ ଓ ପ୍ରତିଷ୍ଠା ବୃଦ୍ଧିପ୍ରାପ୍ତ ହେଲା । ଏ ହେଉଛି ବିଂଶ ଶତାବ୍ଦୀର ତୃତୀୟ ଦଶକର କଥା । ପୁସ୍ତକ ପ୍ରକାଶନ ସଂସ୍ଥା ଥାଆନ୍ତି ଅଙ୍ଗୁଳିମେୟ । ତେଣୁ ଉପନ୍ୟାସ ପ୍ରକାଶନ ପାଇଁ ବିଶେଷ ଆଗ୍ରହ ପ୍ରକାଶିତ ହେଉ ନଥାଏ । ବାଳକୃଷ୍ଣ କର ଆରମ୍ଭ କଲେ 'ଆନନ୍ଦ ଲହରୀ ଉପନ୍ୟାସମାଳା ।' ଏହି ଉପନ୍ୟାସମାଳାରେ ଲେଖନୀଚାଳନା କରିଥିଲେ ହରିଶ୍ଚନ୍ଦ୍ର ବଡ଼ାଲ, ହରେକୃଷ୍ଣ ମହତାବ, କାହ୍ନୁଚରଣ ମହାନ୍ତି, ଚିନ୍ତାମଣି ମିଶ୍ର, କାଳୀପ୍ରସନ୍ନ କବି ଏବଂ ଆଉ କେତେଜଣ । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଅରୁଣୋଦୟ ହେଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହିପରି ଜଣେ କରିତକର୍ମା ବ୍ୟକ୍ତି ବାଳକୃଷ୍ଣ କର ଆରମ୍ଭ କଲେ 'ମାତୃଭୂମି ଦୈନିକ' ଏବଂ 'ମାତୃଭୂମି ସାପ୍ତାହିକ' । ବିରୋଧୀଦଳକୁ ସମର୍ଥନ କରୁଥିଲେ ହେଁ 'ମାତୃଭୂମି' କୌଣସି ନିର୍ଦ୍ଦିଷ୍ଟ ଦଳର ବାର୍ତ୍ତାବହ ନଥିଲା । ସରକାରୀ କାର୍ଯ୍ୟକଳାପର ଗଠନମୂଳକ ସମାଲୋଚନା ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ସାପ୍ତାହିକ 'ମାତୃଭୂମି' ବମ୍ବେ ସହରର 'ବ୍ଲିଜ୍' ପତ୍ରିକା ପରି ଥିଲା ଖୁବ୍ ପ୍ରଭାବଶାଳୀ । ଏହି ପତ୍ରିକାର ସଂପାଦନା ଦାୟିତ୍ୱରେ ଥିଲେ ପ୍ରସିଦ୍ଧ କବି ଓ ସୁସାହିତ୍ୟିକ ଭଗବାନ ପତି । ତାଙ୍କର ସହକାରୀ ଭାବରେ ମୋତେ ନିଯୁକ୍ତି ପତ୍ର ଦେବା ପାଇଁ ବାଳକୃଷ୍ଣ ବାବୁ ଡକାଇ ପଠାଇଲେ । ସେ ଥିଲେ ମୋର ଅନ୍ତରଙ୍ଗ ବନ୍ଧୁ ବିଚିତ୍ରାନନ୍ଦଙ୍କର ପିତା । 'ସହକାର'ର ଲେଖକ ଭାବରେ ତାଙ୍କ ନିକଟରେ ପୂର୍ବରୁ ପରିଚିତ ଥିଲି । ପିତୃସୁଲଭ ଅଧିକାରରେ ମୋତେ ଡାକି ନେଇଗଲେ ମାତୃଭୂମିର ସହକାରୀ ସଂପାଦକ ଭାବରେ ଯୋଗ ଦେବା ପାଇଁ । ଭଗବାନ ପତିଙ୍କର ପରି ଜଣେ ପ୍ରେମୀ ମଣିଷ କ୍ୱଚିତ୍ ଦେଖିଛି । ବାଳକୃଷ୍ଣ କର 'ସହକାର'ର ମୁଖ୍ୟ ସଂପାଦକ ଥିଲେ ହେଁ ପ୍ରକୃତ ପକ୍ଷେ ସଂପାଦନା ଦାୟିତ୍ୱରେ ଥିଲେ ସୁଯୋଗ୍ୟ କବି ଓ ସାହିତ୍ୟିକ ଭଗବାନ ପତି । ଓଡ଼ିଶାର ବରେଣ୍ୟ ଲେଖକମାନେ କଟକ ଆସିଲେ ସହକାର

ଅଫିସ୍‌କୁ ନିଶ୍ଚୟ ଆସୁଥିଲେ ଏବଂ ଭଗବାନ ପତିଙ୍କୁ ଅଶେଷ ସମ୍ମାନ କରୁଥିଲେ । ସେତେବେଳେ ଏତେ ସାହିତ୍ୟ ମାସିକ ନଥିଲା । ତେଣୁ କ୍ୱଚିତ୍ ଲୋକ ଆଲୋକକୁ ଆସିବାର ସୁଯୋଗ ଲାଭ କରୁଥିଲେ । ମାତୃଭୂମି ସାପ୍ତାହିକ ସହିତ ସହକାର ସଂପାଦନାରେ ମଧ୍ୟ ଭଗବାନ ପତିଙ୍କୁ ସାହାଯ୍ୟ କରୁଥିଲି । ମାତୃଭୂମିରେ କର୍ମମୟ ଜୀବନ ଥିଲା ଅତ୍ୟନ୍ତ ସ୍ମରଣୀୟ । କାରଣ ଦୈନିକ ମାତୃଭୂମିର ସହକାରୀ ସଂପାଦନାରେ ଥିଲେ ଗୌର ରାଉତ, ରାମପ୍ରସାଦ ସିଂହ, ଯୋଗେନ ଦତ୍ତ, ଦେବେନ୍ଦ୍ର ପଟ୍ଟନାୟକ, ବିଚିତ୍ରାନନ୍ଦ କର ଓ ଆଉ କେତେଜଣ । ଯୋଗେନ ଦତ୍ତ ଓ ଗୌର ରାଉତ ଥିଲେ ଓଡ଼ିଶାର ପ୍ରସିଦ୍ଧ ସାମ୍ବାଦିକ । ରାମପ୍ରସାଦ ସିଂହ ଥିଲେ ବିଖ୍ୟାତ ଔପନ୍ୟାସିକ ଏବଂ ଇଂରେଜୀ ଦୈନିକ ''ଦି.ନିଉ. ଓଡ଼ିଶା'' ର ମୁଖ୍ୟ ସଂପାଦକ । ତାଙ୍କ ଲିଖିତ ଉପନ୍ୟାସ ''ପ୍ରତିହିଂସା'', ''ପୂଜାର ବଳୀ'' ପ୍ରଭୃତି ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଆଲେଖ୍ୟ ଗ୍ରହଣ କରିଥାଏ । ଦେବେନ୍ଦ୍ର ବାବୁ ପରବର୍ତ୍ତୀ କାଳରେ ଭାରତ ସରକାରଙ୍କ ପ୍ରଚାର ବିଭାଗରେ କାର୍ଯ୍ୟ କରି ଅବସର ନେଇଥିଲେ । ସେ ଥିଲେ ଆଧ୍ୟାତ୍ମିକବାଦୀ ଏବଂ ବାବା ବୈକୁଣ୍ଠ ବ୍ରହ୍ମଚାରୀଙ୍କ ପ୍ରଧାନ ଅନୁଗତ ।

ବିଖ୍ୟାତ କବି ଗୋଦାବରୀଶ ମହାପାତ୍ରଙ୍କର 'ନିଆଁଖୁଣ୍ଟା'' ମୁଦ୍ରିତ ହେଉଥାଏ ସାରସ୍ୱତ ପ୍ରେସ୍‌ରେ । ତେଣୁ ଅଧିକାଂଶ ଦିନ ମଧ୍ୟାହ୍ନରେ ଏହି ସାହିତ୍ୟିକମାନଙ୍କର ମିଳନ ଓ ଆଲୋଚନା ଅତ୍ୟନ୍ତ ଉପଭୋଗ୍ୟ ହୁଏ । ଅନେକ ସମୟରେ ଏହି ବୈଠକରେ ଯୋଗ ଦିଅନ୍ତି ଓଡ଼ିଶାର ବିଶିଷ୍ଟ ନାରୀନେତ୍ରୀ ଓ ସୁସାହିତ୍ୟିକା ସରଳା ଦେବୀ । ସୁଦୂର ବାମଣ୍ଡା, ଜୟପୁର, ବଲାଙ୍ଗିର, ବାଲେଶ୍ୱର, ଭଦ୍ରକ, ପୁରୀ, ଗଞ୍ଜାମ ଓ କଟକର ବହୁ ଲେଖକ 'ସହକାର' ଅଫିସ୍‌କୁ ଆସିଲେ ସାହିତ୍ୟ ଆଲୋଚନା ସରଗରମ ହୋଇଉଠେ । ସମସ୍ତେ ମାନନୀୟ ଓ ବରେଣ୍ୟ । ସାହିତ୍ୟ କ୍ଷେତ୍ରରେ ପ୍ରସିଦ୍ଧ । କିଛି ଦୂରରେ ବସି ଏହି ସାହିତ୍ୟ ଆଲୋଚନାକୁ ଉପଭୋଗ କରେ । ପରିଚିତ ହେବାର ସୌଭାଗ୍ୟ ମଧ୍ୟ ଲାଭ କରେ ।

ମାତୃଭୂମି ସାପ୍ତାହିକ ସଂପାଦନା କାଳର ଗୋଟିଏ ଭାରତବିଖ୍ୟାତ ଘଟଣା ମନେପଡୁଛି । ସାପ୍ତାହିକ ପୃଷ୍ଠାରେ ରାଜନୀତିକ ହରେକୃଷ୍ଣ ମହତାବଙ୍କ ବିରୁଦ୍ଧରେ ପାଞ୍ଚଗୋଟି ଅଗ୍ରଲେଖା ପ୍ରକାଶ ପାଇଥାଏ । ସମଗ୍ର ଓଡ଼ିଶାରେ ବୁଦ୍ଧିଜୀବୀ ମହଲରେ ଚହଳ ପଡ଼ିଗଲା । ଶ୍ରୀ ମହତାବ ଏପରି ବିଚଳିତ ହୋଇପଡ଼ିଲେ ଯେ ସେ ସଂପାଦକ ବାଳକୃଷ୍ଣଙ୍କ ନାମରେ ଏକଲକ୍ଷ ଟଙ୍କାର ମାନହାନି ମକଦ୍ଦମା ଦାୟର କଲେ । ୧୯୫୨ ମସିହାରେ ଏ ପ୍ରକାର ମକଦ୍ଦମା ସମଗ୍ର ଭାରତରେ ଅଭିନବ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କଟକର ପ୍ରସିଦ୍ଧ ଆଇନଜୀବୀଗଣ ଦୁଇ ଭାଗରେ ବିଭକ୍ତ ହୋଇଗଲେ । ଦଳେ ବାଳକୃଷ୍ଣ କରଙ୍କୁ ସମର୍ଥନ କଲାବେଳେ ଅନ୍ୟ ଦଳ ମହତାବଙ୍କ ପାଇଁ କଳାକୋଟ ପିନ୍ଧିଲେ ।

ଏତେବଡ଼ ମକଦ୍ଦମା । ମାତ୍ର ବାଳକୃଷ୍ଣ ବାବୁ ଆଦୌ ବିଚଳିତ ହୋଇନଥିଲେ ଏବଂ ଦିନେହେଲେ ନିଜର ସହକାରୀମାନଙ୍କୁ ଆକ୍ଷେପ କରିନଥିଲେ । କିଛିଦିନ ମକଦ୍ଦମା ଚାଲିଲା ପରେ ଶୁଣାଗଲା ଯେ ଶ୍ରୀ ମହତାବ ବମ୍ବେ ପ୍ରଦେଶର ଗଭର୍ଣ୍ଣର ହୋଇଯିବେ । ମୁଣ୍ଡ ଉପରେ

ଏପରି ଏକ ମକଦ୍ଦମା ରହିବା ଜଣେ ଗଭର୍ଣ୍ଣର ପକ୍ଷରେ ଅସମ୍ମାନକର ବୋଲି ଅନୁଭବ କରି ସାଲିସ କରିବା ପାଇଁ ପ୍ରସ୍ତାବ ଦେଲେ ମଧ୍ୟସ୍ଥିଙ୍କ ଜରିଆରେ । ମକଦ୍ଦମା ଉଠାଇ ନିଆଗଲା ଏବଂ ମାତୃଭୂମି ଦୈନିକରେ କ୍ଷୁଦ୍ର ସଂବାଦଟିଏ ପ୍ରକାଶିତ ହେଲା ଦୁଃଖ ପ୍ରକାଶ କରି । ଏହି ଗୋଟିଏ ଘଟଣାରୁ ଅନୁମାନ କରାଯାଇପାରିବ, 'ମାତୃଭୂମି' ସାମ୍ବାଦିକତା କ୍ଷେତ୍ରରେ କେତେ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିପାରିଥିଲା । ବାଳକୃଷ୍ଣ ବାବୁଙ୍କ ମୃତ୍ୟୁପରେ ପାରିବାରିକ ଅବୁଝାମଣା ଯୋଗୁ ସବୁଦିନ ପାଇଁ ଏହି ପ୍ରଭାବଶାଳୀ ପତ୍ରିକା ଅସ୍ତମିତ ହୋଇଗଲା ।

ମାତୃଭୂମିରେ ମାତ୍ର ଗୋଟିଏ ବର୍ଷର କର୍ମମୟ ଜୀବନ । ତେବେ ଗୋଟିଏ ସ୍ମରଣୀୟ ଘଟଣା ମନେପଡୁଛି । ସେତେବେଳେ ପ୍ରସିଦ୍ଧ କବି ଡକ୍ଟର ମାୟାଧର ମାନସିଂହ ଥାଆନ୍ତି ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ । ଶିକ୍ଷାବିତ୍ ମାୟାଧର ମାନସିଂହ ଗଙ୍ଗାଧର ମେହେର କଲେଜର ଅଭୂତପୂର୍ବ ପରିବର୍ତ୍ତନ ଆନୟନ କରିଥିଲେ, ଯାହା ଅନ୍ୟ କୌଣସି କଲେଜରେ ହୋଇନଥିଲା, ଆଜି ମଧ୍ୟ ହୋଇନାହିଁ । ଅଧ୍ୟକ୍ଷ ମାନସିଂହ କଲେଜର ଖୋଲାଜାଗାରେ ନାନା ପ୍ରକାର ଫସଲ ଆମଦାନୀ କଲେ । ଏଥିରେ କାମ କଲେ ଗରିବ ଛାତ୍ରମାନେ; ଯେଉଁମାନେ ଗରିବ ପିଲାଙ୍କ ପାଣ୍ଠିରୁ କିଛି ସାହାଯ୍ୟ ପାଆନ୍ତି । ପିଲାମାନେ ଫସଲ ଉତ୍ପାଦନ କରିବାରେ ସହାୟକ ହେବାର କାରଣ ହେଲା, ସେମାନେ ପରିଶ୍ରମ କରି ଅର୍ଥ ରୋଜଗାର କରନ୍ତି । କାହାର ଦୟା ପାଇଁ ହାତ ପତାଇ ନାହାନ୍ତି । ଏହି ପ୍ରକାର ସ୍ୱାଭିମାନ ସୃଷ୍ଟି କରିଥିଲେ ପିଲାଙ୍କ ମନରେ । ହଷ୍ଟେଲର ଅନ୍ତେବାସୀମାନେ ପୂର୍ବେ ଭୂମି ଆସନରେ ବସି ଭୋଜନ କରୁଥିଲେ । ଅଧ୍ୟକ୍ଷ ସେମାନଙ୍କ ପାଇଁ ବେଞ୍ଚ, ଡେସ୍କର ବ୍ୟବସ୍ଥା କରିଥିଲେ । କଲେଜ ହତା ଭିତରେ ଷ୍ଟେସନାରୀ ଷ୍ଟୋର ଏବଂ ଏକ ଜଳଖିଆ ଦୋକାନର ଆୟୋଜନ ମଧ୍ୟ ହୋଇଥିଲା । ଛାତ୍ରମାନେ ବଜାରକୁ ଯିବାର ଆବଶ୍ୟକତା ରହିଲା ନାହିଁ । କଲେଜ ବାରଣ୍ଡାରେ ଧାରାବାହିକ ଭାବରେ ମଣିଷ ସଭ୍ୟତାର ବିକାଶକ୍ରମର ଅନେକ ମାନଚିତ୍ର, ମିଳିତ ଜାତିସଂଘର କ୍ରମ ଇତିହାସ ସଂବଳିତ ମାନଚିତ୍ର ଏବଂ ବିଜ୍ଞାନର ବିକଶିତ ରୂପ ବିଷୟରେ ମାନଚିତ୍ରଗୁଡ଼ିକ କାନ୍ଥରେ ଛପାଯାଇଥିଲା । ଛାତ୍ରମାନେ କେବଳ କାନ୍ଥରୁ ପଢ଼ିପଢ଼ି ଅନେକ କଥା ଶିକ୍ଷା କରିବାର ସୁଯୋଗ ଗ୍ରହଣ କରିପାରିଥିଲେ । ଆଶ୍ଚର୍ଯ୍ୟର କଥା ଯେ କେହି ଜଣେ ହେଲେ ଛାତ୍ର ଏହି ମାନଚିତ୍ରଗୁଡ଼ିକ ନଷ୍ଟ କରିବା ପାଇଁ ଉଦ୍ୟମ କରିନଥିଲେ ।

କଲେଜର ମେଗାଜିନ୍ ଥିଲା "ମେହେର ପ୍ରଦୀପ" । ବର୍ଷକୁ ଥରୁଟିଏ କଲେଜ ମେଗାଜିନ୍ ସର୍ବତ୍ର ପ୍ରକାଶିତ ହୁଏ ଏବଂ କିଛି ଛାତ୍ର ଓ ଅଧ୍ୟାପକ ଏଥିରେ ଲେଖା ପ୍ରକାଶ କରିଥାଆନ୍ତି । କିନ୍ତୁ କବି ମାନସିଂ ଏହି ପତ୍ରିକାକୁ ମାସିକ କରିଦେଲେ ଏବଂ ଏଥିରେ ଓଡ଼ିଶାର ସର୍ବାଞ୍ଚଳର ଲେଖକମାନେ ଲେଖା ପ୍ରକାଶ କରୁଥିଲେ । କେବଳ ଦ୍ୱାଦଶ ସଂଖ୍ୟାଟି ପିଲାଙ୍କର ମେଗାଜିନ୍ ଭାବରେ ରୂପାୟିତ ହେଉଥିଲା । ଏହି ଉଦ୍ୟମରେ ପ୍ରଧାନ ସହାୟକ ଥିଲେ ସାହିତ୍ୟସେବୀ ଅଧ୍ୟାପକଦ୍ୱୟ-ଚିନ୍ତାମଣି ବେହେରା ଓ ସର୍ବେଶ୍ୱର ଦାଶ ।

ସବୁଠାରୁ ସ୍ମରଣୀୟ ଘଟଣା ହେଉଛି, କଲେଜର ବାର୍ଷିକ ଉତ୍ସବକୁ ଏକ ସାହିତ୍ୟ ସମ୍ମିଳନୀର ରୂପ ଦେବା । ବସ୍‌ର ଆୟୋଜନ କରି ଭୁବନେଶ୍ୱର୍, ଭଦ୍ରଖ, ବାଲେଶ୍ୱର,

କଟକ, ପୁରୀ, ଅଞ୍ଚଳର ଅନେକ ସାହିତ୍ୟସେବୀଙ୍କୁ ନିମନ୍ତ୍ରଣ କରାଯାଇଥିଲା ଏହି ସମ୍ମେଳନର ଯୋଗ ଦେବା ପାଇଁ । ଭଗବାନ ପତିଙ୍କ ସହିତ ମୁଁ ମଧ୍ୟ ଏହି ସମ୍ମିଳନୀରେ ଯୋଗ ଦେଇଥିଲି । ବୁଢ଼ାରଜା ପର୍ବତର ପାଦଦେଶରେ ସରକାରୀ ଗୃହରେ ଅତିଥିମାନେ ରହିବାର ବ୍ୟବସ୍ଥା ହୋଇଥିଲା । ସମ୍ବଲପୁରୀ ଭାଷାରେ ଗଙ୍ଗାଧର ମେହେରଙ୍କର ଜୀବନୀର ଏକ ନାଟ୍ୟରୂପ ଅଭିନୀତ ହୋଇଥିଲା ସଭାମଞ୍ଚରେ । କଲିକତାର ବିଖ୍ୟାତ ବୁଦ୍ଧିଜୀବୀ ଡକ୍ଟର କାଳୀଦାସ ନାଗ ପ୍ରଧାନ ଅତିଥି ଭାବରେ ଏକ ସାରଗର୍ଭକ ଭାଷଣ ପ୍ରଦାନ କରିଥିଲେ । ଏହି ସୁଯୋଗରେ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲେଖକମାନଙ୍କ ସହିତ ଆଳାପ କରିବାର ସୁଯୋଗ ମିଳିଥିଲା ।

ସେଦିନ ପୂର୍ବାହ୍ଣରେ କୌଣସି କାର୍ଯ୍ୟକ୍ରମ ନଥିଲା । ମୋର ବନ୍ଧୁ ମହାପାତ୍ର ନୀଳମଣି ସାହୁ ଏମ୍.ଏ. ପାଶ୍ କରି ଗଙ୍ଗାଧର ମେହେର କଲେଜ ଲାଇବ୍ରେରୀର ସହକାରୀ ଭାବରେ କାର୍ଯ୍ୟରତ ଥାଆନ୍ତି । ପରବର୍ତ୍ତୀ କାଳରେ ସେ ଓଡ଼ିଶାର ସରକାରୀ କଲେଜରେ ବରିଷ୍ଠ ପ୍ରାଧ୍ୟାପକ ଏବଂ ଓଡ଼ିଆ ସାହିତ୍ୟର ବରେଣ୍ୟ ଲେଖକ ଭାବରେ ସୁପ୍ରତିଷ୍ଠିତ ।

ହୀରାକୁଦ ବନ୍ଧ ପାଇଁ କାର୍ଯ୍ୟ ଆରମ୍ଭ ହୋଇଯାଇଥାଏ । ମହାନଦୀର ବିସ୍ତୀର୍ଣ୍ଣ କଙ୍କରିଳ ବକ୍ଷରେ ଯନ୍ତ୍ର-ରାକ୍ଷସର କାରସାଦି ଅନବରତ ଲାଗି ରହିଥାଏ । ଦୁଇଟି ସାଇକେଲ ଯୋଗାଡ଼ କରାଗଲା । ଗୋଟିଏ ସାଇକେଲ ଭଗବାନ ପତି ନେଲେ । ଅନ୍ୟଟିରେ ନୀଳମଣିଙ୍କ ପଛରେ ବସି ସମ୍ବଲପୁରଠାରୁ ଚାଲିଲୁ ମହାନଦୀର ବିସ୍ତାରିତ ବକ୍ଷ ଦର୍ଶନ କରିବା ପାଇଁ ଯେଉଁଠାରେ ବର୍ତ୍ତମାନ ବନ୍ଧର ମୂଳଦୁଆ ଆରମ୍ଭ ହୋଇଥାଏ । ମଣିଷ ହାତରେ ତିଆରି ହୀରାକୁଦର ବିଶାଳ ଜଳଭଣ୍ଡାର ଆଜି ଇତିହାସରେ ରୂପାନ୍ତରିତ । ଏହାର ପ୍ରାଥମିକ ରୂପ ଦର୍ଶନ କରିବାର ସୌଭାଗ୍ୟ ମିଳିଥିଲା ବନ୍ଧୁ ନୀଳମଣିଙ୍କ ଯୋଗୁ ।

ପୁରୀ କଲେଜରେ ଆଇ.ଏ. ଶ୍ରେଣୀରେ ମୋତେ ପାଠ ପଢ଼ାଇଥିବା ଅଧ୍ୟାପକ ଗୋଲକବିହାରୀ ଧଳ ବିଲାତରୁ ଫୋନେଟିକ୍ସରେ ଉଚ୍ଚଡିଗ୍ରୀ ହାସଲ କରି ସମ୍ବଲପୁର କଲେଜରେ ଶିକ୍ଷାଦାନ କରୁଥାଆନ୍ତି । ଏତେଦିନ ବ୍ୟବଧାନରେ ମୋ ପରି ଜଣେ ସାଧାରଣ ଛାତ୍ରକୁ ମନେରଖି ଅତ୍ୟନ୍ତ ସ୍ନେହରେ ସାର୍ କୁଣ୍ଢାଇ ପକାଇଲେ । ପରବର୍ତ୍ତୀ କାଳରେ ସାର୍ ରେଭେନ୍ସା ମହାବିଦ୍ୟାଳୟର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ହେବା ସମୟରେ ନିଜେ ଅଧ୍ୟାପକ ଭାବରେ ସାର୍‌ଙ୍କ ଅଧ୍ୟକ୍ଷତାରେ ଗଠିତ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍‌ରେ କାର୍ଯ୍ୟ କରିବାର ସୌଭାଗ୍ୟ ଲାଭ କରିଥିଲି । ସେହିପରି ଓଡ଼ିଆ ଅଧ୍ୟାପକ ସମ୍ମିଳନୀରେ ସାର୍ ଥାଆନ୍ତି ସଭାପତି ଏବଂ କାର୍ଯ୍ୟକାରୀ ସମିତିର ସଭ୍ୟ ଭାବରେ କାର୍ଯ୍ୟ କରିବାର ସୌଭାଗ୍ୟ ଲାଭ କରିଥିଲି । ଅଧ୍ୟାପକ ଧଳଙ୍କ ପରି ବିଦ୍ୱାନ ଓ ସ୍ୱାଧୀନଚେତା ବ୍ୟକ୍ତିତ୍ୱ କ୍ରମଶଃ ବିରଳ ହୋଇଯାଉଅଛନ୍ତି ।

ଅଧ୍ୟାପକ ଧଳ ବିଲାତରେ ଛାତ୍ର ଥିବା ସମୟରେ ମୁଁ ଥିଲି ରେଭେନ୍ସା କଲେଜରେ ଓଡ଼ିଆ ଏମ୍.ଏ. ଶ୍ରେଣୀର ଛାତ୍ର ଏବଂ 'ରବିବାର ପ୍ରଜାତନ୍ତ୍ର'ର ସାହିତ୍ୟ ବିଭାଗର ସଂପାଦକ । ମୋର ବିନୀତ ଅନୁରୋଧରେ ଅଧ୍ୟାପକ ଧଳ ଧାରାବାହିକ ଭ୍ରମଣ କାହାଣୀ ପ୍ରଜାତନ୍ତ୍ର ପାଇଁ

ପଠାଇଲେ ଏବଂ ପରବର୍ତ୍ତୀ ସମୟରେ ଓଡ଼ିଆ ସାହିତ୍ୟ ଆମେରିକା ଓ ଇଂଲଣ୍ଡ ବିଷୟରେ ଦୁଇଟି ଚମତ୍କାର ଭ୍ରମଣକାହାଣୀ ପାଇପାରିଲା ।

ଅଧ୍ୟାପକ ଧଳ ହିନ୍ଦୀ ସାହିତ୍ୟର କଥାସମ୍ରାଟ ପ୍ରେମଚନ୍ଦଙ୍କର କେତୋଟି ଉପନ୍ୟାସର ଓଡ଼ିଆ ଅନୁବାଦ କରି ଯଶସ୍ୱୀ ହୋଇଛନ୍ତି । ହିନ୍ଦୀ ଭାଷାରେ ଧ୍ୱନିତତ୍ତ୍ୱ ବିଷୟରେ ପାଣ୍ଡିତ୍ୟପୂର୍ଣ୍ଣ ପ୍ରଥମ ଗ୍ରନ୍ଥର ଲେଖକ ହେଉଛନ୍ତି ଅଧ୍ୟାପକ ଧଳ । ତାଙ୍କ ପୂର୍ବରୁ ହିନ୍ଦୀଭାଷୀ କୌଣସି ଲେଖକ ଏପରି ଗୌରବର ଅଧିକାରୀ ହୋଇପାରି ନଥିଲେ ।

'ମାତୃଭୂମି'ରେ କର୍ମରତ ଥିବାବେଳେ ସହପାଠୀ ବନ୍ଧୁ ବିଚିତ୍ରାନନ୍ଦ ଥିଲେ ସହକର୍ମୀ । ଏହି ସଖ୍ୟର ଅମୃତ ଅନୁଭବ ଲାଭ କରିଥିଲି ବନ୍ଧୁ ଶେଷନିଃଶ୍ୱାସ ନେଲାପର୍ଯ୍ୟନ୍ତ । ଏପରି ନିଷ୍କପଟ ବନ୍ଧୁତା ଆଜି ଦୁର୍ଲ୍ଲଭ ହୋଇଯାଉଛି ।

'ମାତୃଭୂମି'ରେ ପ୍ରତ୍ୟେକ ବର୍ଷ ଗୋଟିଏ ଦିନ ବନ୍ଧୁମିଳନ ହୁଏ । ଏହି ସମାରୋହରେ ଯୋଗ ଦିଅନ୍ତି ଓଡ଼ିଶା ରାଜନୀତିର ବହୁ ମାନ୍ୟଗଣ୍ୟ ନେତା, ସାହିତ୍ୟିକ ଏବଂ ଆଇନଜୀବୀ । ମାତୃଭୂମି ଥିଲା ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପତ୍ରିକାଟିଏ । ଓଡ଼ିଶାର ବହୁ ବରେଣ୍ୟ ଲୋକଙ୍କର ଏହା ଥିଲା ମିଳନମଞ୍ଚ । ପ୍ରଧାନ ଆକର୍ଷଣ ଥିଲେ ସଂପାଦକ ବାଳକୃଷ୍ଣ କର ଏବଂ ତାଙ୍କ ସଂପାଦିତ ଦୈନିକ 'ମାତୃଭୂମି' ଓ 'ସହକାର' । ସମୟେ ସମୟେ ମାତୃଭୂମିର ସଂପାଦନା ମଣ୍ଡଳୀ ଓ ପ୍ରେସ୍ କର୍ମଚାରୀଗଣ ଏକାଠି ବଣଭୋଜି କରିବା ପାଇଁ ବାଳକୃଷ୍ଣ ଉତ୍ସାହିତ କରୁଥିଲେ ଏବଂ କଟକ ବାହାରେ କୌଣସି ରମଣୀୟ ପ୍ରାକୃତିକ ପରିବେଶରେ ଏପରି ଭୋଜିର ଆୟୋଜନ କରାଯାଉଥିଲା । ସମସ୍ତ ଖର୍ଚ୍ଚ ବହନ କରୁଥିଲେ ସଂପାଦକ ବାଳକୃଷ୍ଣ । ସମସ୍ତେ ଗୋଟିଏ ପରିବାରର ଲୋକ ବୋଲି ମନେକରୁଥିଲେ । ଖ୍ରୀଷ୍ଟ ମହାବିଦ୍ୟାଳୟରୁ ବିଦାୟ ନେଇ 'ମାତୃଭୂମି' ପତ୍ରିକାରେ ସାମ୍ବାଦିକତା ସୁଯୋଗ ପାଇଥିଲେ ହେଁ ଅଧ୍ୟାପକ ହେବା ପାଇଁ ମନ ଖାଲି ଛଟପଟ ହେଉଥାଏ । ସରକାରୀ କଲେଜରେ ଚାରିଗୋଟି ଓଡ଼ିଆ ଅଧ୍ୟାପକ ପଦ ପୂରଣ କରିବା ପାଇଁ ପବ୍ଲିକ୍ ସର୍ଭିସ୍ କମିଶନ୍ ଦରଖାସ୍ତ ଆହ୍ୱାନ କଲେ । ମୁଁ ମଧ୍ୟ ପ୍ରାର୍ଥୀ ହେଲି । ଇଣ୍ଟରଭିଉ ପରେ ଯେଉଁ ଚାରିଜଣ ମନୋନୀତ ହେଲେ, ସେମାନେ ହେଲେ ଶ୍ରୀନିବାସ ମିଶ୍ର, ଚିନ୍ତାମଣି ବେହେରା, ମହାପାତ୍ର ନୀଳମଣି ସାହୁ ଓ ପଠାଣି ପଟ୍ଟନାୟକ । ମୋର ଆନନ୍ଦ ଦେଖେ କିଏ !! ଅପେକ୍ଷା କଲି ନିଯୁକ୍ତି ପତ୍ର ପାଇବା ପାଇଁ । ତେବେ ସବୁ ଓଲଟପାଲଟ ହୋଇଗଲା । ସରକାର ପ୍ରଥମ ଦୁଇଜଣଙ୍କୁ ନିଯୁକ୍ତି ଦେଲେ । ନୀଳମଣି ଓ ମୁଁ ହତଭାଗ୍ୟ ତାଲିକାରେ ରହିଗଲୁ । କାହିଁକି କେଜାଣି, ସରକାର ଦୁଇଟି ପଦବୀ ପୂରଣ କଲେ ନାହିଁ । ମନରେ ହାତାଶାର କଳାମେଘ ଢାଙ୍କି ହୋଇ ରହିଥାଏ । ପ୍ରଜାତନ୍ତ୍ରରେ ମୋର ସହକର୍ମୀ ଥିଲେ ଚକ୍ରଧର ସାମଲ । ସେ ମଧ୍ୟ ଆମ ସହିତ ଦ୍ୱିତୀୟ ଶ୍ରେଣୀରେ ଏମ୍.ଏ. ପାସ୍ କରି ପ୍ରାର୍ଥୀ ହୋଇଥିଲେ । ମୋର ଦୁର୍ଦ୍ଦଶା ଦେଖି ଦିନେ କହିଲେ, ଯଦି ମୁଁ ପବ୍ଲିକ୍ ସର୍ଭିସ୍ କମିଶନ୍ ଦ୍ୱାରା ମନୋନୀତ ହୋଇଥାଆନ୍ତି, ତେବେ ସରକାରୀ କଳକୁ ପ୍ରଭାବିତ କରି ନିଶ୍ଚୟ ନିଯୁକ୍ତି ହାସଲ କରିଥାଆନ୍ତି । ସେ ଦିଗରେ ମୋର ଆଦୌ ଯୋଗ୍ୟତା

ନଥିଲା । ପରବର୍ତ୍ତୀ କାଳରେ 'ପ୍ରଜାତନ୍ତ୍ର'ରୁ ବିଦାୟ ନେଇ ଚକ୍ରଧର ବାବୁ ଜଣେ କଣ୍ଟ୍ରାକ୍ଟର ଭାବରେ ଜୀବିକା ନିର୍ବାହ କରିଥିଲେ । 'ଝଙ୍କାର' ସଂପାଦନା କଲାବେଳେ ସେ ଭଲ ଗଳ୍ପ ଲେଖୁଥିଲେ । ତାଙ୍କର ପ୍ରଥମ ଗଳ୍ପ ସଂକଳନ ''ବନ୍ୟା'' । ମାତ୍ର ଦୁଃଖର କଥା, ଏହି ପ୍ରତିଭା ସାରସ୍ୱତ ସାଧନାରୁ ଅପସରି ଗଲେ ଜୀବନ ଜଞ୍ଜାଳର ଆହ୍ୱାନରେ ।

ମନ ସବୁବେଳେ ହନ୍ତସନ୍ତ ହେଉଥାଏ । ପାଇବା ଜିନିଷ ହାତଛଡ଼ା ହୋଇଗଲା । ଏହା ଭାଗ୍ୟର ବିଡ଼ମ୍ବନା ବ୍ୟତୀତ ଆଉ କ'ଣ ହୋଇପାରେ । ଏହି ସମୟରେ "My Magazine" ଶୀର୍ଷକରେ ଗୋଟିଏ ଇଂରେଜି ମାସିକ ପତ୍ର ପ୍ରକାଶ ପାଉଥାଏ ବୋଧହୁଏ ଅମୃତସର ସହରରୁ । ଏଥିରେ ପ୍ରତ୍ୟେକ ସଂଖ୍ୟାରେ ଋଷିକେଶ ସ୍ୱାମୀ ଶିବାନନ୍ଦ ଆଧ୍ୟାତ୍ମିକ ଲେଖାଟିଏ ପ୍ରକାଶ କରୁଥାଆନ୍ତି । ମାନସିକ ଅଶାନ୍ତି ମଧ୍ୟରେ ସମୟ କାଟୁଥାଏ । ହଠାତ୍ ଦିନେ ମନେହେଲା, ସ୍ୱାମୀଜୀଙ୍କୁ ଚିଠିଟିଏ ଲେଖି ଆଶୀର୍ବାଦ କାମନା କରିବି । ମେଗାଜିନ୍‌ରୁ ଠିକଣା ସଂଗ୍ରହ କରି ଅତ୍ୟନ୍ତ ବ୍ୟାକୁଳ ମନରେ ଚିଠିଟିଏ ଲେଖିଲି । ମୁଁ କ'ଣ ଆଶା କରିଥିଲି, ଏପରି ଅହେତୁକ ଭାବରେ ଆର୍ଶୀବାଦ ପାଇବି ବୋଲି । କେଡ଼େ ମହାନ ସେ ମହାପୁରୁଷ । ମୋ ଚିଠିର ଉତ୍ତର ଦେଇଥିଲେ ସ୍ୱାମୀଜୀ ନିଜ ଦସ୍ତଖତରେ । ଚିଠିଟି ଅବିକଳ ଏଠାରେ ଉଦ୍ଧାର କରାଯାଉଛି ।

**The Divine Life Society**
Founder  Sri Swami Sivananda
P.O/ Ananda Kutir
Rishikesh

D. 17.11. 1952

Rev. Immortal self,

Salutations and adorations. Thy kind card. You are born for higher purpose. Aspire high. Aim high. Take shelter in the Lord. Pray to him, for light and knowledge. Be regular in your Japa and meditation. Study Gita, Upanishads daily. Attend Satsangh.

The All-merciful Lord will fulfill all your desires. Pray to Him incessantly. He will never forsake you. Serve and love all. Be kind and be compassionate

Have full faith in his mercy and grace. He is all-merciful. Depend on him alone. All you miseries will vanish He is Kamadhenu and Kalpataru. He will fulfill all your desires.

May the Almighty Lord bless you with long life, peace, plenty, prosperity and immortality.

Thy own self
Sivananda

ଚିଠିଟି ଟାଇପ ହୋଇଥିଲେ ହେଁ ସ୍ୱାମିଜୀ ନିଜ ହସ୍ତାକ୍ଷରରେ ଦସ୍ତଖତ କରିଥିଲେ । ମୋ ପରି  ଜଣେ ଅକିଞ୍ଚନ ସ୍ୱାମୀଜୀଙ୍କ ସ୍ୱହସ୍ତ ଲିଖିତ ଏହି ଚିଠିଟି ପାଇ ନିଜକୁ ପରମ ଭାଗ୍ୟବାନ ମନେକଲା ।

୧୯୫୨ ମସିହାରେ ଚିଠିଟି ପାଇଥିଲି । ବର୍ତ୍ତମାନ ୨୦୦୬ ମସିହା ଚାଲିଛି । ଦୀର୍ଘ ଚଉବନ ବର୍ଷକାଳ ସ୍ୱାମିଜୀଙ୍କର ଏହି ଚିଠିଟି ସାଇତି ରଖିଛି । ଜୀବନର ଚଲାପଥରେ ଯେତେବେଳେ ଝୁଣ୍ଟିପଡ଼ିଛି, ମାନସିକ ଅଶାନ୍ତିରେ ଘାଣ୍ଟି ହେଉଛି, ସେତେବେଳେ ଏହି ଚିଠିଟି ଦେଇଛି ମୋତେ ଅମାପ ସାନ୍ତ୍ୱନା । ଅନୁଭବ କରେ, ସତେ ଯେପରି ସ୍ୱାମୀଜୀଙ୍କର ଆଶୀର୍ବାଦ ଝରିଆସୁଛି । କାହାଠାରୁ ଦୀକ୍ଷା ନେଇ ନାହିଁ । କୌଣସି ଆଧାତ୍ମିକ ଅନୁଷ୍ଠାନର ନୀତିନିୟମରେ ବନ୍ଧା ପଡ଼ିନାହିଁ । କିନ୍ତୁ ମନେମନେ ଗ୍ରହଣ କରିନେଇଛି, ସ୍ୱାମୀ ଶିବାନନ୍ଦ ମୋର ପରମଗୁରୁ । ଯେତେବେଳେ ତାଙ୍କର କିଛି ଲେଖା ପାଠ କରିବାର ସୁଯୋଗ ପାଏ, ମନରେ ବୋଳି ହୋଇଯାଏ ଅଶେଷ ପ୍ରଶାନ୍ତି ।

ପ୍ରତ୍ୟେକ ଦିନ ଅଳ୍ପ ସମୟ ପାଇଁ ହେଉ ପଛକେ, ସ୍ୱାମୀଜୀଙ୍କୁ ସ୍ମରଣ କରି ଅପୂର୍ବ ସୁଖ ଅନୁଭବ କରିଥାଏ ।

ସବୁଦିନ ସମାନ ରହେ ନାହିଁ । ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣଇ ତେଣିକି ଯାଇ । କଥାରେ କହନ୍ତି- ଏ ମନ ଭାବୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା ।

ଜୀବନରେ ବଡ଼ ଏକ ପାରିବାରିକ ଦୁର୍ଘଟଣାର କାରଣ ହୋଇଥିଲି ''ମାତୃଭୂମି'' ରହଣି କାଳରେ । ମୁଁ ଥାଏ କଟକରେ ଗୋଟିଏ ମେସ୍‌ରେ । କ୍ୱଚିତ୍ ପୁରୀ ଯାଏ ଘରକୁ । ହଠାତ୍ ଚିଠିଟିଏ ପାଇଲି ବାପାଙ୍କଠାରୁ । ''ତୁମର ବାହାଘର ନିର୍ବନ୍ଧ ହୋଇଯାଇଛି । ତୁରନ୍ତ ଆସ କଥା ହେବା ପାଇଁ । ଝିଅଟି ଶୈଳବାଳାରେ ବି.ଏ. ଶ୍ରେଣୀର ଛାତ୍ରୀ । ଘର ତାଙ୍କର କଟକ ଜିଲ୍ଲାରେ ।'' କନ୍ୟା ପିତାଙ୍କର ପରିଚୟ ମଧ୍ୟ ଥିଲା ଚିଠିରେ । ସେ ଜଣେ ସରକାରୀ କର୍ମଚାରୀ ।

ବାହାଘର ନିର୍ବନ୍ଧ କଥା ଶୁଣି ମୁଣ୍ଡରେ ଚଡ଼କ ପଡ଼ିଲା । ମୋର ସ୍ଥାୟୀ ଚାକିରୀ ନାହିଁ । କେତେ ଅବା ବେତନ ମିଳୁଥିଲା !! ବାପା ଏପରି ନିଷ୍ପତ୍ତି କାହିଁକି ନେଲେ ? ମୋର ପାଠ ପଢ଼ା ଚାଲିଥାଏ । ମାତ୍ର କନିଷ୍ଠ ତ୍ରିଲୋଚନ ଭାରତ ସରକାରଙ୍କ ନୌବାହିନୀରେ ଚାକିରୀ କରିଥାଏ । ବାପାଙ୍କର ସମସ୍ୟା ହୋଇଥିବ ବଡ଼ପୁଅ ବାହା ନ ହୋଇ ସାନର କିପରି ବାହାଘର ହେବ ? ବନ୍ଧୁବାନ୍ଧବ ଓ ପରିବାର ଲୋକମାନେ କ'ଣ କହିବେ ? ପିଲାଦିନୁ ବାପାଙ୍କୁ କିଛି ଭରସି କହିବା ପାଇଁ ସାହସ କୁଳାଏ ନାହିଁ । ଆମ ପରିବାରରେ ସାନ ବଡ଼ ସମସ୍ତେ ତାଙ୍କୁ ଅତ୍ୟନ୍ତ ସମ୍ମାନ କରନ୍ତି । ତାଙ୍କର କଥା କେବେ ତଳେ ପକାଇ ଦିଅନ୍ତି ନାହିଁ । ପିଲାଦିନୁ କେବେ ହେଲେ ଅମାନିଆ ହୋଇନାହିଁ । ଆଜି କେଉଁ ସାହସରେ ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବି !!

ସେତେବେଳେ କଟକରୁ ପୁରୀ ବସ୍ ଯିବାର ବ୍ୟବସ୍ଥା ନଥାଏ । ଏକମାତ୍ର ଟ୍ରେନ୍ ହେଲା ଭରସା । ଟ୍ରେନ୍‌ରେ ବସି ପୁରୀ ବାହାରିଲି । ମନରେ କେବଳ ଅସୁମାରୀ ତୋଫାନ । କେବଳ ପ୍ରଭୁଙ୍କୁ ଡାକୁଥାଏ, ମୋତେ ସାହସ ଦିଅ, ଶକ୍ତି ଦିଅ । ଘରେ ପହଞ୍ଚିଲି ରାତି ନଅଟାରେ । ସେଦିନ କୋଣାର୍କ ଅର୍କକ୍ଷେତ୍ରରେ ମାଘସପ୍ତମୀ ବୁଡ଼ । ବୋଉ ଯାଇଛି କୋଣାର୍କ

ଚନ୍ଦ୍ରଭାଗାରେ ବୁଡ଼ ପକାଇବା ପାଇଁ । ଘରେ ବାପା ଏକାଟିଆ । ଭାଗବତ ମଉସାଙ୍କ ସହିତ ଦାଣ୍ଡଘରେ ବସି ନାଲି କାଳିରେ ବାହାଘରର ହିସାବ ଫର୍ଦ୍ଦ ପ୍ରସ୍ତୁତ କରୁଥାଆନ୍ତି ।

ବୋଉ ନଥିବାରୁ ରୋଷେଇ ବନ୍ଦ । ବଡ଼ ଦେଉଳରୁ ମହାପ୍ରସାଦ ଅଣାଯାଇଥାଏ । ଗୋଟିଏ ଥାଳିରେ ବାପା ଅଭଡ଼ା ବାଢ଼ି ଆଣିଲେ । ଖାଇ ବସିବା ମାତ୍ରକେ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରି କହିଲେ, ''ଘରକୁ ଶିକ୍ଷିତା ବୋହୂଟିଏ ଆଣିବା ପାଇଁ ସମସ୍ତେ ଲଗାଇଲେ । ନିର୍ବନ୍ଧ ହୋଇଛି ବଡ଼ ଦେଉଳରେ ସୂର୍ଯ୍ୟମନ୍ଦିରରେ ଜ୍ଞାତିକୁଟୁମ୍ବଙ୍କ ଗହଣରେ ।''

ମୁଁ ଗମ୍ଭୀର ହୋଇ ବସିଥାଏ । ବାପା ପଚାରିଲେ- ''ତୋର କିଛି କହିବାକୁ ଅଛି ?'' ଅନେକ ବେଳେ ଟ୍ରେନ୍‌ରେ ବସି ଏଇ ପଦକ ଭାବି ଆସିଥାଏ । ଅତ୍ୟନ୍ତ ଭୟ ଓ ସଂକୋଚରେ କହିଲି-''ବାପା ! ସେଠାରେ ବାହାଘର ହୋଇପାରିବ ନାହିଁ ।'' ବାପା ମୋ'ଠାରୁ ଏପରି ଉତ୍ତର ଶୁଣିବେ ବୋଲି କେବେ ଆଶା କରି ନଥିଲେ । ପଚାରିଲେ-''କାରଣ କ'ଣ ?'' କ'ଣ ଆଉ କାରଣ ଥିଲା ? କଥାକୁ ଅଧା ଗିଳି ପକାଇ କହିଲି-''ବାପା, ମୋତେ କାରଣ ପଚାରନ୍ତୁ ନାହିଁ ।''

ବାପାଙ୍କ ହାତରୁ ଅଭଡ଼ା ଗୁଣ୍ଡା ଥାଳିରେ ଖସି ପଡ଼ିଲା । ସେ ଅତ୍ୟନ୍ତ ମର୍ମାହତ ହୋଇ ଉଠିଗଲେ । ଆଉ ହାତ ଅଇଣ୍ଠା ହୋଇ ନାହାନ୍ତି । ରାତି ସାରା ଉପାସରେ ରହିଲେ । ଅନୁତାପରେ ଛଟପଟ ହେଉଥାନ୍ତି । ମୁଁ ମଧ୍ୟ ଅତ୍ୟନ୍ତ ଅବସାଦରେ ରାତିସାରା ଉଜାଗର ରହିଲି । ବୋଉ ଘରେ ଥିଲେ କେତେ ଆଲୋଚନା ପ୍ରତି ଆଲୋଚନା ହୋଇଥାଆନ୍ତା । ବାପାଙ୍କର ଅଭ୍ୟାସ, ପାହାନ୍ତାରୁ ନିତ୍ୟକର୍ମ ସାରି ବଡ଼ି ସକାଳୁ ଅଫିସ୍ ବାହାରିଯିବା । ମୁଁ ଆଦୌ ଉଠୁ ନଥାଏ । କେବଳ ଆଖି ବନ୍ଦ କରି ପଡ଼ିରହିଥାଏ । ଏହି ସମୟରେ ପଡ଼ିଶାଘର ଜଣେ ଅପା ମୁଁ ଆସିଛି ଶୁଣି ବାପାଙ୍କୁ ବାହାଘର କଥା ପଚାରିଲେ । ବାପା ପଦଟିଏ କହିଲେ, ''ମୁଁ ପୁରୀ ସହରରେ କାହା ଆଗରେ ମୁହଁ ଦେଖାଇବି । ତା' ପରି ପୁଅ ମୋତେ ଏପରି ଅପମାନିତ କରିବ ବୋଲି କେବେହେଲେ ସ୍ୱପ୍ନରେ ଭାବି ନଥିଲି ।''

ବାପା ଅଫିସ୍ ଚାଲିଗଲେ । କଥାଟି ସାଇପଡ଼ିଶା, ଜ୍ଞାତିକୁଟୁମ୍ବରେ ପ୍ରଚାରିତ ହୋଇଗଲା । ସମସ୍ତେ କେବଳ ମୋର ନିନ୍ଦା ଗାଇବାକୁ ଲାଗିଲେ । ସଭିଏଁ ଧାରଣା ହୋଇଗଲା ଯେ ମୁଁ କୁଆଡ଼େ କଟକରେ କୌଣସି ଝିଅକୁ ପ୍ରେମ କରୁଛି । ସେଥିପାଇଁ ଏପରି ଅବାଧ୍ୟ ଆଚରଣ ।

ସମସ୍ତ ନିନ୍ଦା ଅପବାଦ ନୀରବରେ ସହ୍ୟ କରୁଥାଏ । ପୁରୀରେ ରହିଲେ ଏହି ଅପ୍ରୀତିକର ଆଲୋଚନାର କି ଉତ୍ତର ଅଛି ମୋ ପାଖରେ । ମୁଁ ଯେଉଁ ମେସ୍‌ରେ ରହୁଥିଲି, ଝିଅର ପରିବାର ବିଷୟରେ ସେମାନେ ଭଲ ମନ୍ତବ୍ୟ ଦେଉନଥିଲେ । ଭାବପ୍ରବଣ ବୟସରେ ଭାସିଗଲି । ବାପାଙ୍କ ମନରେ ଏତେବଡ଼ ଆଘାତ ଦେଲି । ଆଉ କି ପୁରୀରେ ରହେ !! ପଡ଼ିଶା ଘରେ ଘରର ଚାବି ଦେଇ ଜରୁରୀ କାର୍ଯ୍ୟ ଅଛି କହି କଟକ ଚାଲି ଆସିଲି । ପ୍ରାୟ ଏକବର୍ଷ କାଳ ବାପା ମୋତେ ଆଉ ଚିଠି ଲେଖିନାହାନ୍ତି । ମୁଁ ମଧ୍ୟ ସାହସ କରି ଆଉ ଘରକୁ ଯାଇ ନାହିଁ ।

ବୋଉ ବ୍ୟସ୍ତ ହେଉଥାଏ । ସେ ବାପାଙ୍କୁ ବୁଝାଉଥାଏ, ଯଦି ପ୍ରକୃତରେ ସେ କାହାକୁ ମନୋନୀତ କରିଛି, ଆମେ ସେଠାରେ ବାହାଘର କରିଦେବା ।

ଶେଷରେ ବୋଉ ଏହି ମର୍ମରେ ମୋତେ ଚିଠି ଲେଖିଲା । ମୁଁ ଲେଖିଲି, ''ମୋର ସେପରି କୌଣସି ପ୍ରସ୍ତାବ ନାହିଁ । ତୁଁ ଯେଉଁଠି କହିବୁ ସେଠାରେ ମୋର ବାହାଘର ହେବ । ମାତ୍ର ମୁଁ ଚାକିରୀ ନପାଇଲା ପର୍ଯ୍ୟନ୍ତ ଆଦୌ ବାହାଘର ହେବ ନାହିଁ । ସାନଭାଇ ଚାକିରୀ କଲାଣି । ତାର ବାହାଘର କରିଦିଅ । ମୋର ସେଥିରେ ଆନନ୍ଦ ।''

ଆମ ସମାଜର ବୁଝାମଣା ବଡ଼ ଅଦ୍ଭୁତ । ଏଠାରେ ପୁଅ ପିଲାର ଭାଗ୍ୟ ପତର ତଳେ, ଝିଅ ପିଲାର ଭାଗ୍ୟ ପଥର ତଳେ । ଝିଅ ହେଲା ମାଟି ହାଣ୍ଡି । ସାମାନ୍ୟ ଆଘାତରେ ଦୁଇଖଣ୍ଡ ହୋଇଯିବ । ପୁଅ ହେଲା ପିତ୍ତଳ ଗରା । ତେନ୍ତୁଳିରେ ମାଜିଦେଲେ ସବୁବେଳେ ଚକ୍‌ଚକ୍ ।

ପୁଅର ଦୋଷ ଲୋକମାନେ ଅଳ୍ପ ସମୟ ମଧ୍ୟରେ ପାସୋରି ଦିଅନ୍ତି । ମାତ୍ର ଝିଅର ଗୁଣ ସର୍ବଦା ପ୍ରଚାରିତ ହେଉଥାଏ । ନିର୍ବନ୍ଧ ଥାଳିର ଚନ୍ଦନ ଓ ସିନ୍ଦୂର ଝିଅ ମୁଣ୍ଡରେ ମାରିଦେଲେ ସେ ହୋଇଯାଏ ମଙ୍ଗୁଳା କନ୍ୟା । ଏଣିକି ସେ ଆଉ ବାପଘରର ଝିଅ ବୋଲି ପରିଚୟ ଦେବ ନାହିଁ । ଶାଶୁଘରର ବୋହୂଟିଏ । ଥରେ ମଙ୍ଗୁଳା କନ୍ୟାର ବାହାଘର ଭାଙ୍ଗିଗଲେ ସବୁ ବଦ୍‌ନାମ ଝିଅକୁ ମୁଣ୍ଡାଇବାକୁ ପଡ଼େ ବିନା ଦୋଷରେ । ସମସ୍ତେ କଥା ହୁଅନ୍ତି, ଝିଅର କିଛି ଖୁଣ ଥିବ ନା, ନଚେତ୍ ବାହାଘର କାହିଁକି ଭାଙ୍ଗିଗଲା ନିର୍ବନ୍ଧ ପରେ ।

ଏହି କଥା ଚିନ୍ତା କରି କଟକରେ ଅତ୍ୟନ୍ତ ମନସ୍ତାପରେ ଦିନ ଯାଉଥାଏ । ମୋର ଆଚରଣ ପାଇଁ ଗୋଟିଏ ସରଳ ଝିଅର ଏପରି ବଦ୍‌ଗୁଣ କାହିଁକି ପ୍ରଚାର ହେବ ? ସେତେବେଳେ ଗୋଟିଏ ଗଳ୍ପ ଲେଖିଲି ରବିବାର 'ପ୍ରଜାତନ୍ତ୍ର'ରେ ଲଗ୍ନ ମଉଳି ଯାଇଛି । ଗୋଟିଏ ପୁଅ କିପରି ଯୌତୁକ ଲୋଭରେ ବାହାଘର ଭାଙ୍ଗି ଦେଉଛି । ଗଳ୍ପଟି ସେତେବେଳେ ଅନେକଙ୍କ ମନକୁ ଛୁଇଁଥିଲା । ମୋର କହିବାର ମର୍ମ ଥିଲା-ବାହାଘର ଭାଙ୍ଗିଗଲେ ଝିଅମାନେ କାହିଁକି ଦୋଷୀ ହେବେ ? ଏଥିପାଇଁ ପୁଅମାନେ ହିଁ ଅଧିକ ଦାୟୀ ।

•••

# ବୌଦ୍ଧଭୂମି ଭଦ୍ରକରେ

ସେଦିନର ବିଖ୍ୟାତ ଦୈନିକ ସଂବାଦପତ୍ର ''ମାତୃଭୂମି''ରେ ସହକାରୀ ସଂପାଦକ ଭାବରେ କାର୍ଯ୍ୟ କରୁଥାଏ । ୧୯୫୩ ମସିହା ଜାନୁଆରୀ ୮ ତାରିଖରେ ସଂବାଦ ପ୍ରକାଶ ପାଇଲା- ''ଭଦ୍ରକ କଲେଜର ଓଡ଼ିଆ ସାହିତ୍ୟର ଅଧ୍ୟାପକ ଶ୍ରୀ ଗଗନବିହାରୀ ମହାନ୍ତି ଅକାଳରେ ଶେଷନିଃଶ୍ୱାସ ତ୍ୟାଗ କରିଛନ୍ତି ।'' ସେତେବେଳକୁ ଅଧ୍ୟାପକ ଗଗନବିହାରୀ ଜଣେ ଜଣାଶୁଣା ଲେଖକ । ତାଙ୍କର ପ୍ରକାଶିତ ଅନେକ ଲେଖା ସମକାଳୀନ ସାହିତ୍ୟ ପତ୍ରିକା 'ଡଗର', 'ଝଙ୍କାର', 'ଆସନ୍ତାକାଲି', 'କୁଙ୍କୁମ', 'ରବିବାର ପ୍ରଜାତନ୍ତ୍ର'ର ସାହିତ୍ୟପୃଷ୍ଠା ମଣ୍ଡନ କରୁଥାଏ ଏବଂ ପାଠକୀୟ ଶ୍ରଦ୍ଧା ଅର୍ଜନ କରୁଥାଏ । ୧୯୪୮ ମସିହାରେ ତାଙ୍କର ଏକମାତ୍ର କାବ୍ୟଗ୍ରନ୍ଥ ''ପଥପୁଷ୍ପ'' ପ୍ରକାଶ ଲାଭ କରିଥିଲା । ଗଗନ ବାବୁ ଏକାଧାରରେ ଥିଲେ ଜଣେ କବି, ଗଳ୍ପ ଲେଖକ, ଔପନ୍ୟାସିକ, ନାଟ୍ୟକାର ଓ ପ୍ରାବନ୍ଧିକ ।

ଏମ୍.ଏ. ପାସ୍ କରିବା ସଂଗେସଂଗେ ମୁଁ ମାତ୍ର ଚାରିମାସ ପାଇଁ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ କାର୍ଯ୍ୟ କରିଥିଲି । ସେତେବେଳେ ଜାଣିବାକୁ ପାଇଲି ଯେ ୧୯୪୮ ମସିହାରେ ଗଗନ ବାବୁ ଅଳ୍ପକାଳ ପାଇଁ ଖ୍ରୀଷ୍ଟ କଲେଜରେ ଅଧ୍ୟାପନା କରିଥିଲେ । ସେହିବର୍ଷ ତାଙ୍କର ନିଜ ଅଞ୍ଚଳ ଭଦ୍ରକରେ କଲେଜ ହେବାରୁ ସେ ସେଠାରେ ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । ସେ ଇଚ୍ଛା କରିଥିଲେ ସରକାରୀ କଲେଜରେ ଚାକିରୀ କରିପାରିଥାଆନ୍ତେ । ମାତ୍ର ନିଜ ଅଞ୍ଚଳର କଲେଜକୁ ଗଢ଼ିବା ପାଇଁ ସେ ଏପରି ପ୍ରଲୋଭନକୁ ସ୍ୱୀକାର କଲେ ନାହିଁ ।

ଅଳ୍ପକାଳର ଅଧ୍ୟାପକ ଜୀବନ ଏପରି ମୋହ ସୃଷ୍ଟି କରିଥିଲା ଯେ ମୁଁ କାଳବିଳମ୍ବ ନକରି ମାତୃଭୂମିରୁ ଛୁଟି ନେଇ ଭଦ୍ରକ ଗଲି ଗଗନ ବାବୁଙ୍କ ସ୍ଥାନ କେବେ ପୂରଣ ହେଉଛି ଜାଣିବା ପାଇଁ । ସଂପାଦକ ବାଳକୃଷ୍ଣ କର ମୋର ସାମ୍ବାଦିକତା ଓ ସାହିତ୍ୟସେବା ବିଷୟରେ ସାର୍ଟିଫିକେଟ ଦେଇଥାଆନ୍ତି ।

ସେଦିନର ଭଦ୍ରକ ଏବଂ ଆଜିର ଜିଲ୍ଲା ରାଜଧାନୀ ଭଦ୍ରକ ମଧ୍ୟରେ ଆକାଶପାତାଳ ପ୍ରଭେଦ । ସାଳନ୍ଦୀ ନଦୀରେ ପୋଲ ହୋଇ ନଥାଏ । ନିପଟ ମଫସଲ ଅଞ୍ଚଳ । ଯେଉଁପଟେ କଲେଜ ଆରମ୍ଭ ହୋଇଥିଲା, ତାହା ଥାଏ ଅତ୍ୟନ୍ତ ଅନଗ୍ରସର । ସାମାନ୍ୟ କେତୋଟି ଆଜବେଷ୍ଟସ୍ ଘରେ କଲେଜ କ୍ଲାସ୍ ଆରମ୍ଭ ହୋଇଥାଏ । ଛାତ୍ର ସଂଖ୍ୟା ମଧ୍ୟ ବିଶେଷ

ନଥାଏ । ଅଫିସ୍‌ରେ ପହଞ୍ଚି ହେଡ଼କ୍ଲର୍କଙ୍କୁ ମୋର ପରିଚୟ ଦେଇ ପଚାରିଲି-''ଅଧ୍ୟାପକ ପୋଷ୍ଟ ପାଇଁ କେବେ ବିଜ୍ଞାପନ ପ୍ରକାଶ ପାଇବ ?'' ସେ ମହାଶୟ ଥିଲେ ଅତ୍ୟନ୍ତ ପ୍ରଭାବଶାଳୀ କର୍ମଚାରୀ ଏବଂ କଲେଜ ପରିଚାଳନା ସମିତିର ସଂପାଦକ ବରିଷ୍ଠ ଆଇନଜୀବୀ ନରୁବାବୁଙ୍କର ଥିଲେ ଅତ୍ୟନ୍ତ ବିଶ୍ୱାସୀ ଓ ପ୍ରିୟଲୋକ । ମୋର ସାର୍ଟିଫିକେଟରୁ ବାଳକୃଷ୍ଣଙ୍କର ଦସ୍ତଖତ ଦେଖି ସେ ମୁଗ୍ଧ ହୋଇଗଲେ । କାରଣ ବାଳକୃଷ୍ଣଙ୍କ ଶିକ୍ଷକ ଜୀବନରେ ସେ ଥିଲେ ଛାତ୍ର । ବିନା ଦରଖାସ୍ତରେ ସେହିଦିନ ମୋର ଚାକିରୀ ହୋଇଗଲା । ତାଙ୍କରି ପରାମର୍ଶରେ ମୋର ସହପାଠୀ ବନ୍ଧୁ ଅଧ୍ୟାପକ ଗଙ୍ଗାଧର ବଳ ମୋତେ କ୍ଳାସ୍ ବାଣ୍ଟିଦେଲେ । ବିନା ସଂକୋଚରେ କେତୋଟି କ୍ଳାସ୍ ନେଲି । ଅପରାହ୍ନ ତିନିଟାବେଳକୁ ପରିଚାଳନା ସମିତିର ସଂପାଦକ ନରୁବାବୁ କଚେରୀରୁ ଫେରି ମୋତେ ଚାରିମାସ ପାଇଁ ନିଯୁକ୍ତି ପତ୍ରରେ ଦସ୍ତଖତ କରିଦେଲେ । ଏ ସବୁ ଘଟଣା ମୋତେ ପ୍ରହେଳିକା ପରି ମନେ ହେଉଥାଏ । ମୋର କୌଣସି ଆସବାସ ସାଙ୍ଗରେ ନାହିଁ । ''ମାତୃଭୂମି'' କର୍ମକ୍ଷେତ୍ରରୁ ବିଦାୟ ନେଇନାହିଁ । ଏପରି ତରତରରେ ମୋତେ ନିଯୁକ୍ତି ଦେବାର କାରଣ ପରେ ଜାଣିପାରିଲି । ଅପରାହ୍ନ ସାଢ଼େ ତିନିଟାବେଳକୁ ଉତ୍କଳବିଶ୍ୱବିଦ୍ୟାଳୟର ଏକ ପରିଦର୍ଶନ କମିଟି କଲେଜ ପରିଦର୍ଶନରେ ଆସି ପହଞ୍ଚିଲେ । ସେହି କମିଟିର ସଭ୍ୟ ଥିଲେ କୁଳପତି ପ୍ରାଣକୃଷ୍ଣ ପରିଜା, ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ଖ୍ରୀଷ୍ଟ କଲେଜର ଅଧ୍ୟକ୍ଷ ରେଭ୍‌ରେଣ୍ଡ ବ୍ରହ୍ମାନନ୍ଦ ମହାନ୍ତି । ଖ୍ରୀଷ୍ଟ କଲେଜରେ ଅଳ୍ପକାଳ ଚାକିରୀ କରିଥିବାରୁ ଅଧ୍ୟକ୍ଷ ରେଭରେଣ୍ଡ ମହାନ୍ତି ମୋତେ ଜାଣିବା ସ୍ୱାଭାବିକ । ଏହି କମିଟି କ୍ଳାସ୍ ପରିଦର୍ଶନ କାଳରେ ମୁଁ ଗୋଟିଏ ଟିଉଟୋରିଆଲ କ୍ଳାସ୍‌ରେ କିଛି ଆଲୋଚନା କରୁଥିଲି । ସେମାନଙ୍କୁ ନମସ୍କାର କଲି । ରେଭରେଣ୍ଡ ମହାନ୍ତି ମୋତେ ଦେଖି କହିଲେ- ''ସୋ' ୟୁ ଆର୍ ହିଅର ।''

ସମୟ କରି କଟକ ଆସି 'ମାତୃଭୂମି'ରୁ ଇସ୍ତଫା ଦେଲି ଏବଂ ଆବଶ୍ୟକୀୟ ଜିନିଷ ଧରି ଫେରିଆସିଲି ଭଦ୍ରକକୁ । ସାଳିନ୍ଦୀ ନଦୀ ଆରପଟ ଏକ କ୍ଷୁଦ୍ର ପଲ୍ଲୀରେ ଗୋଟିଏ ମେସ୍ କରି ରହିଲି ଦୁଇ ସହପାଠୀ ବନ୍ଧୁଙ୍କ ସହିତ । ସେମାନେ ହେଲେ ମୋର ବିଭାଗର ବରିଷ୍ଠ ଅଧ୍ୟାପକ ଗଙ୍ଗାଧର ବଳ ଓ ଅର୍ଥନୀତି ଅଧ୍ୟାପକ ମଧୁସୂଦନ ମିଶ୍ର । ମଧୁସୂଦନ ଥିଲେ ମୋର ଚାରିବର୍ଷର ଅନ୍ତରଙ୍ଗ ସହପାଠୀ ପୁରୀ କଲେଜରେ ଯାହାର ପରିଚୟ ଏବେ ସାମନ୍ତ ଚନ୍ଦ୍ରଶେଖର କଲେଜ । ଏହି ମଧୁବାବୁ ପରେ ସରକାରଙ୍କ ଅର୍ଥନୀତି ବିଭାଗରେ ଯୋଗ ଦେଇ ଡାଇରେକ୍ଟର ଅଫ୍ ଟ୍ରେଜେରୀ ଭାବରେ ଅବସର ଗ୍ରହଣ କରିଛନ୍ତି । ଏହି ସହପାଠୀ ବନ୍ଧୁଙ୍କ ଯୋଗୁଁ କିପରି ଖ୍ରୀଷ୍ଟ କଲେଜର ଅଧ୍ୟାପକମାନେ ଉପକୃତ ହୋଇଥିଲେ ସେ ପ୍ରସଙ୍ଗ ପରେ ଆସିବ । ବନ୍ଧୁ ଗଙ୍ଗାଧର ବଳ ଏବଂ ମୁଁ ଉଭୟ ଥିଲୁ ଏମ୍.ଏ. କ୍ଳାସର ସହପାଠୀ । ସୌଭାଗ୍ୟର କଥା ଯେ ଏହି ବନ୍ଧୁତ୍ୱ ଓ ବୁଝାମଣା ଆଜୀବନ ଲାଭ କରିବାର ସୁଯୋଗ ପାଇଛି । ଅଧ୍ୟାପକ ଗଙ୍ଗାଧର ବଳ କେତେବର୍ଷ ଭଦ୍ରକରେ କର୍ମଜୀବନ ଅତିବାହିତ କରି ପରେ ସରକାରୀ କଲେଜରେ ଯୋଗ ଦେଲେ ଏବଂ ରେଭେନ୍ସା କଲେଜ ଓଡ଼ିଆ ବିଭାଗର ମୁଖ୍ୟ ଆସନ ଅଳଂକୃତ କରି

ବର୍ତ୍ତମାନ କଟକ ସହରରେ ନିଜ ଘରେ ଅବସର ଜୀବନ ବିତାଉଛନ୍ତି । ସେ ଜଣେ ନିରଳସ ସାରସ୍ୱତ ସାଧକ । କିଛି କବିତା, ଜୀବନୀ ପୁସ୍ତକ ଲେଖିଥିଲେ ହେଁ ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ସେ ଜଣେ ଶକ୍ତିଶାଳୀ ସାହିତ୍ୟ ସମାଲୋଚକ । ଜଣେ ବହୁପାଠୀ ଗବେଷକ ଅଧ୍ୟାପକ ଭାବରେ ତାଙ୍କର ପ୍ରତିଷ୍ଠା ଅନନ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏବେ ଅବସର ଜୀବନରେ ବିଖ୍ୟାତ ସାହିତ୍ୟ ମାସିକ ''ସହକାର''ର ମୁଖ୍ୟ ସଂପାଦକ ଭାବରେ ସେ କାର୍ଯ୍ୟରତ ।

ଅତି ଅଳ୍ପ ସମୟ ମଧ୍ୟରେ ଭଦ୍ରକକୁ ଭଲ ପାଇ ବସିଲି ଏବଂ ତାର ଐତିହ୍ୟ ଓ ପରଂପରା ବିଷୟରେ ଜାଣିବା ପାଇଁ ଆଗ୍ରହୀ ହେଲି । ଭଦ୍ରକର ଏପରି ନାମକରଣ କାହିଁକି ହେଲା ? ଏହି ପ୍ରଶ୍ନର ଉତ୍ତର ପାଇଲି ଏହିପରି । ବୌଦ୍ଧ ଭିକ୍ଷୁମାନଙ୍କୁ ''ଭଦ୍ର'' ବୋଲି ସମ୍ବୋଧନ କରାଯାଉଥିଲା । ଏକଦା ସମଗ୍ର ଓଡ଼ିଶାରେ ବହୁକାଳ ପର୍ଯ୍ୟନ୍ତ ବୌଦ୍ଧଧର୍ମ ପ୍ରସାର ଲାଭ କରିଥିଲା । ଆଜି ମଧ୍ୟ ଓଡ଼ିଶାର ସର୍ବାଞ୍ଚଳରେ ଅନେକ ବୌଦ୍ଧ ସ୍ତୂପ ଓ ସ୍ଥାପତ୍ୟର ଭଗ୍ନାବଶେଷ ଦୃଷ୍ଟିଗୋଚର ହୋଇଥାଏ । ଭଦ୍ରକରେ ବୌଦ୍ଧଭିକ୍ଷୁମାନେ ଅବସ୍ଥାନ କରୁଥିଲେ ଏବଂ ଅନେକ ସମୟରେ ବୌଦ୍ଧଭିକ୍ଷୁମାନଙ୍କର ସମ୍ମେଳନ ଏଠାରେ ଆୟୋଜନ କରାଉଥିଲେ । ଏହି ''ଭଦ୍ର'' ସମ୍ମେଳନରୁ କାଳକ୍ରମେ ସ୍ଥାନର ପରିଚୟ ''ଭଦ୍ରକ'' ହେଲା ବୋଲି ଅନୁମିତ ହୁଏ । ସ୍ୱାଧୀନତା ସଂଗ୍ରାମୀ ଗୌରଚନ୍ଦ୍ର ମହାପାତ୍ରଙ୍କ ଲିଖିତ ''ତ୍ୟାଗଭୂମି-ଭଦ୍ରକ'' ଲେଖାଟି ପାଠ କରିବାର ସୁଯୋଗ ମିଳିଥିଲା ବହୁପରେ । ସେଥିରେ ଭଦ୍ରକ ଅଞ୍ଚଳରେ ବୌଦ୍ଧଧର୍ମ ଓ ଜୈନଧର୍ମକାଳୀନ ଅନେକ କୀର୍ତ୍ତିର ପରିଚୟ ଦେଖିବାକୁ ମିଳିଥାଏ । ଭଦ୍ରକର ଅନତିଦୂରରେ କାଉପୁର ଅଞ୍ଚଳ । ଏଠାରେ ପ୍ରତ୍ନତାତ୍ତ୍ୱିକ ବିଭାଗ ଅନେକ ବୌଦ୍ଧମୂର୍ତ୍ତି ଆବିଷ୍କାର କରିଛନ୍ତି । ଏହି ମୂର୍ତ୍ତିଗୁଡ଼ିକ ଅଷ୍ଟମ ଅଥବା ନବମ ଶତାବ୍ଦୀର ବୋଲି ଅନୁମିତ ହୁଏ । ଭଦ୍ରକ ଜିଲ୍ଲାରେ ପୁଷ୍ପଗିରି ଏକ ବିଶ୍ୱପ୍ରସିଦ୍ଧ ବୌଦ୍ଧ ବିଶ୍ୱବିଦ୍ୟାଳୟ ବୋଲି ଖ୍ୟାତ ହୋଇଥିଲା । ଭଦ୍ରକ ବାଟେ ଚୀନ ପରିବ୍ରାଜକ ହୁଏନ୍ସାଂ ଏହି ବିଶ୍ୱବିଦ୍ୟାଳୟ ପରିଦର୍ଶନରେ ଯାଇଥିଲେ ବୋଲି ବିଶ୍ୱାସ କରାଯାଏ । ଭଦ୍ରକର ଦକ୍ଷିଣରେ ଅନତିଦୂରରେ ସୋଲମପୁର ବୋଲି ଏକ ଗ୍ରାମ ବିଦ୍ୟମାନ । ଏହି ଗ୍ରାମରୁ ୮ମ ଓ ୯ମ ଶତାବ୍ଦୀର ଅନେକ ବୌଦ୍ଧମୂର୍ତ୍ତି ଆବିଷ୍କୃତ ହୋଇଥିବା ଜଣାଯାଏ । କେବଳ ବୌଦ୍ଧଧର୍ମ ନୁହେଁ, ଜୈନଧର୍ମର ପ୍ରଭାବ ମଧ୍ୟ ଏହି ଅଞ୍ଚଳରେ ଅନୁଭୂତ ହୋଇଥାଏ । ଭ୍ରଦକ ନିକଟରେ କୁପାରୀ ଗ୍ରାମ ଅବସ୍ଥିତ । ଐତିହାସିକ ଯୁଗରେ ଏହାର ପରିଚୟ ଥିଲା କୋପକଟକ । ଜୈନ ତୀର୍ଥଙ୍କର ପାର୍ଶ୍ୱନାଥ ୮ମ-୯ମ ଶତାବ୍ଦୀରେ ଧର୍ମ ପ୍ରଚାର ପାଇଁ ଏଠାରେ ଉପସ୍ଥିତ ଥିଲେ ବୋଲି ବିଶ୍ୱାସ କରାଯାଏ । ଭଦ୍ରକର ଚରମ୍ପା ଅଞ୍ଚଳରୁ ୧୦ମ ଓ ୧୧ଶ ଖ୍ରୀଷ୍ଟାବ୍ଦର ଅନେକ ଜୈନମୂର୍ତ୍ତି ଆବିଷ୍କୃତ ହୋଇଅଛି । ଭଦ୍ରକର ଆରାଧ୍ୟଦେବୀ ହେଉଛନ୍ତି ଭଦ୍ରକାଳୀ । ଏକଦା ଏହି ସ୍ଥାନରେ ଶାକ୍ତଧର୍ମର ପ୍ରଭାବ ରହିଥିଲା ବୋଲି ଜଣାଯାଏ । ସବୁଠାରୁ ମଜାର କଥା ଯେ ପୁରାଣରେ ଅପୂଜ୍ୟ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପାଇଁ ମନ୍ଦିରମାଳିନୀ ଭାରତ ଭୂଖଣ୍ଡରେ ଯେଉଁ ଅଳ୍ପ କେତେକ ସ୍ଥାନରେ ମନ୍ଦିର ରହିଛି, ସେମାନଙ୍କ ମଧ୍ୟରେ ଭଦ୍ରକ ସନ୍ନିକଟ ପାଳିଆ ଗ୍ରାମସ୍ଥ ବ୍ରହ୍ମାଙ୍କର ମନ୍ଦିର ବିଶେଷ ଉଲ୍ଲେଖଯୋଗ୍ୟ ।

ଷୋଡ଼ଶ ଖ୍ରୀଷ୍ଟାବ୍ଦରେ ବୈଷ୍ଣବ ଧର୍ମର ପ୍ରଚାରକ ଶ୍ରୀଚୈତନ୍ୟ ପୁରୀ କ୍ଷେତ୍ରକୁ ଯିବା ବାଟରେ ଭଦ୍ରକର କୁଆଁସ ଗ୍ରାମରେ ଅବସ୍ଥାନ କରିଥିଲେ । ତାଙ୍କର ସ୍ମୃତିକୁ ରକ୍ଷାକରି ଏଠାରେ ତାଙ୍କର ବିଗ୍ରହ ଥିବା ମନ୍ଦିର ବିଦ୍ୟମାନ । ତାଙ୍କର ପଦଯାତ୍ରାକୁ ସ୍ମରଣ କରି କଟକ ମହାନଦୀକୂଳର ବାଲିଯାତ୍ରା ପରି ଏଠାରେ ମଧ ବାଲିଯାତ୍ରା ଅନୁଷ୍ଠିତ ହୋଇଥାଏ । ଶ୍ରୀଚୈତନ୍ୟ ଭଦ୍ରକରେ ଅବସ୍ଥାନ କରିଥିଲେ ଦୁଇଟି ଗ୍ରାମରେ । କୁଆଁସ ଓ ସଛିଆ ଗ୍ରାମରେ । ସଛିଆରେ ସେ ବ୍ୟବହାର କରିଥିବା ଶେଯଟି ଶ୍ରୀଚୈତନ୍ୟ ଛାଡ଼ି ଦେଇ ଆସିଥିଲେ । ଆଜି ମଧ ଏହି ଗ୍ରାମର ମଦନମୋହନଙ୍କ ମନ୍ଦିରରେ ତାହା ଅତ୍ୟନ୍ତ ଭକ୍ତିର ସହିତ ସଂରକ୍ଷିତ । ଏହି ପ୍ରସଙ୍ଗରେ କୃଷ୍ଣଦାସ କବିରାଜଙ୍କ ଲିଖିତ ଶ୍ରୀ ଶ୍ରୀ ଚୈତନ୍ୟଚରିତାମୃତରେ ଉଲ୍ଲେଖ ଅଛି- ''ତିହୋ କହେ ଦୁଇଦିନ ରହ ଏଇ ସ୍ଥାନେ । ଭଦ୍ରକର ଛାଡ଼ ଏଇ ମଲିନ ବସନେ ।'' ଆଜି ମଧ ଏହି ଗ୍ରାମରେ ଶ୍ରୀଚୈତନ୍ୟଙ୍କର ପାଦପଦ୍ମ ପୂଜା ପାଇଥାଏ । ପୁରୀ ଆସିବା ବାଟରେ ଶିଖ୍ ଧର୍ମର ପ୍ରତିଷ୍ଠାତା ଗୁରୁ ନାନକ ଭଦ୍ରକର ଯେଉଁ ସ୍ଥାନରେ ବିଶ୍ରାମ କରିଥିଲେ, ଆଜି ମଧ ତାହା ନାନକଡିହି ନାମରେ ପରିଚିତ । ଏହି ସ୍ଥାନଟି ପୁରୁଣା ବଜାର ନିକଟରେ । ସେଠାରେ ଏବେ ଶିଖଧର୍ମର ଭକ୍ତମାନେ ଗୋଟିଏ ଗୁରୁଦ୍ୱାର ପ୍ରତିଷ୍ଠା କରିଛନ୍ତି ।

ପ୍ରାଚୀନ ଓଡ଼ିଶାର ରାଜନୈତିକ ଇତିହାସରେ ମଧ ଭଦ୍ରକର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା ବୋଲି ଜଣାଯାଏ । ଗଙ୍ଗବଂଶୀ ରାଜାମାନେ ଶାସନର ସୁବିଧା ପାଇଁ ଓଡ଼ିଶାକୁ ୩୧ଟି ଦଣ୍ଡପାଟରେ ବିଭକ୍ତ କରିଥିଲେ । ତନ୍ମଧରେ ଭଦ୍ରକ ଦଣ୍ଡପାଟ ଥିଲା ଅନ୍ୟତମ । ୧୫୯୮ ଖ୍ରୀଷ୍ଟାବ୍ଦରେ ଭଦ୍ରକ ନିକଟବର୍ତ୍ତୀ ଗୋହୀରାଟିକିରାଠାରେ ସ୍ୱାଧୀନ ଓଡ଼ିଶାର ଶେଷ ସମ୍ରାଟ ମୁକୁନ୍ଦ ହରିଚନ୍ଦନ ତତ୍କାଳୀନ ବଙ୍ଗର ଶାସନକର୍ତ୍ତା ସୁଲେମାନ କର୍‌ରାନୀଙ୍କ ସହିତ ଯୁଦ୍ଧ କରି ମୃତ୍ୟୁବରଣ କରିଥିଲେ । ଏହିଠାରେ ସ୍ୱାଧୀନ ଓଡ଼ିଶାର ସୂର୍ଯ୍ୟ ଅସ୍ତମିତ ହୋଇଯାଇଥିଲେ । ଯେଉଁ ସମୟରେ ଓଡ଼ିଶା ମୋଗଲ ରାଜତ୍ୱର ଅଧୀନ ହୋଇଗଲା, ସମ୍ରାଟ ଆକବର ଓଡ଼ିଶାକୁ ତିନିଗୋଟି ସରକାରରେ ବିଭକ୍ତ କରିଥିଲେ । ତା' ମଧରେ ଭଦ୍ରକ ସରକାର ଥିଲା ଅନ୍ୟତମ । ମରହଟ୍ଟାମାନଙ୍କ ଶାସନାଧୀନରେ ଓଡ଼ିଶା ଚାରିଗୋଟି ଚକଲାରେ ବିଭକ୍ତ ହୋଇଥିଲା ଶାସନ ସୁବିଧା ଦୃଷ୍ଟିରୁ । ଏହି ଚାରିଗୋଟି ମଧରେ ଭଦ୍ରକ ଚକଲା ସ୍ୱୀକୃତି ଲାଭ କରିଥିଲା ।

ମୁଁ ତ ଓଡ଼ିଆ ସାହିତ୍ୟର ଅଧାପକ । ତେଣୁ ସାହିତ୍ୟ କ୍ଷେତ୍ରରେ ଭଦ୍ରକବାସୀଙ୍କର ଅବଦାନ ଜାଣିବାକୁ ଆଗ୍ରହ ହେଉଥାଏ । ଜାଣିବାକୁ ପାଇଲି, ଅଷ୍ଟାଦଶ ଶତାବ୍ଦୀର ଭଦ୍ରକ ଅଞ୍ଚଳର ଜନପ୍ରିୟ ଗଣକବି ବଂଶୀବଲ୍ଲଭ ରଚନା କରିଥିଲେ ହିନ୍ଦୁ ଓ ମୁସଲମାନ ସଂସ୍କୃତିର ସଂହତି ଅନୁରୋଧରେ ମୋଗଲ ତାମସା, ଫକୀର ତାମସା, ଭିଲ ତାମସା, ରାଧାକୃଷ୍ଣ ତାମସା, ଚଉଡ଼ା ତାମସା ପ୍ରଭୃତି ଲୋକ ନାଟକ । ସେହି ଭ୍ରଦକ ଅଞ୍ଚଳର ନଳାଙ୍ଗ ଗ୍ରାମରେ ଊନବିଂଶ ଶତାବ୍ଦୀରେ ଜଗନ୍ନାଥ ପାଣି ଥିଲେ ପ୍ରସିଦ୍ଧ ଲୀଳା, ସୁଆଙ୍ଗ ଓ ପ୍ରହସନର ଲେଖକ ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭଦ୍ରକ ଅଞ୍ଚଳର ସାରସ୍ୱତ ସାଧକ ଚିନ୍ତାମଣି ମହାନ୍ତି, କାନ୍ତକବି ଲକ୍ଷ୍ମୀକାନ୍ତ, ଜାତୀୟକବି ବାଞ୍ଛାନିଧି, କବି ନାରାୟଣ ମୋହନ ଦେ, କବି ନୀଳାଦ୍ରି

ଦତ୍ତ. ହରେକୃଷ୍ଣ ମହତାବ, ଉପେନ୍ଦ୍ର ପ୍ରସାଦ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ଲକ୍ଷ୍ମୀନାରାୟଣ ମହାନ୍ତି, ଗଗନ ବିହାରୀ ମହାନ୍ତି ଓ ବିଦ୍ୟୁତ୍‌ପ୍ରଭା ଦେବୀ ପ୍ରଭୃତିଙ୍କର ଓଡ଼ିଆ ସାହିତ୍ୟକୁ ଅବଦାନ ବିଶେଷ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ଅତ୍ୟନ୍ତ ସ୍ମରଣୀୟ ସାହିତ୍ୟ ପତ୍ରିକା ''ଡଗର''ର ଜନ୍ମ ଏହି ଭଦ୍ରକରେ । ମୋଟ ଉପରେ ସାହିତ୍ୟ, ସଂସ୍କୃତି ଓ ସଂଗୀତ କ୍ଷେତ୍ରରେ ଭଦ୍ରକର ଅବଦାନ ବାରି ହୋଇପଡ଼େ ।

ଏହିପରି ଏକ ଐତିହାସିକ ସ୍ଥାନରେ ଅଧ୍ୟାପନା କରିବାର ସୁଯୋଗ ଲାଭ କରି ନିଜକୁ ଧନ୍ୟ ମନେକରୁଥାଏ । କଲେଜରେ କନିଷ୍ଠତମ ଅଧ୍ୟାପକ ହେଲେ ହେଁ ଅଳ୍ପକାଳର ରହଣି ମଧ୍ୟରେ ଛାତ୍ରଛାତ୍ରୀମାନଙ୍କର ଅଫୁରନ୍ତ ସ୍ନେହ, ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇପାରିଥିଲି । କଲେଜ ସମୟ ବାହାରେ ଉପରଶ୍ରେଣୀ ଛାତ୍ରମାନଙ୍କର ଆଗ୍ରହ ଯୋଗୁ ସ୍ୱତନ୍ତ୍ର କ୍ଲାସ୍ ମଧ୍ୟ ନେଉଥିଲି ।

ଏକ ଖୋଲାପଡ଼ିଆ ଓ ଆମ୍ବବଗିଚାର ଗୋଟିଏ କଡ଼ରେ ଅଳ୍ପକେତୋଟି ଆଜବେଷ୍ଟସ ଘରେ କଲେଜ କ୍ଲାସ୍ ଆରମ୍ଭ ହୋଇଥାଏ । କିନ୍ତୁ ମୁଖ୍ୟ କୋଠାର ଭିତ୍ତି ପଡ଼ି ନିର୍ମାଣ କାର୍ଯ୍ୟପାଇଁ ଉଦ୍ୟମ ଜାରି ରହିଥାଏ । ଜଣେ ଥୁରୁଥୁରୁ ବୃଦ୍ଧଲୋକ ଏହି ନିର୍ମାଣ କାର୍ଯ୍ୟର ତଦାରଖ କରୁଥାଆନ୍ତି । କିଏ ସେହି ବୋଲି ଜାଣିବାକୁ ଆଗ୍ରହ ହେଲା । ପଚାରି ବୁଝିଲି, ସେ ହେଉଛନ୍ତି ଛକଡ଼ି ମହାନ୍ତି । ଏହି ଶୀର୍ଣ୍ଣକାୟ ଛକଡ଼ି ମହାନ୍ତି ଥିଲେ ଭଦ୍ରକ କଲେଜର ବିଶ୍ୱକର୍ମା । ଭଦ୍ରକର ଜଗନ୍ନାଥପୁର ଗ୍ରାମର ସେ ଅଧିବାସୀ । ମୟୂରଭଞ୍ଜ ରାଜ୍ୟରେ ଯେତେବେଳେ ରାମଚନ୍ଦ୍ର ଭଞ୍ଜଦେଓ ରାଜତ୍ୱ କରୁଥିଲେ, ସେହି ରାଜ୍ୟର ପବ୍ଲିକ୍ ଓ୍ୱାର୍କ୍ସ ବିଭାଗରେ ଛକଡ଼ି ବାବୁ ଥିଲେ ସବଡ଼ିନେଟ୍ ଇଞ୍ଜିନିୟର । ସେ ଥିଲେ ଅତ୍ୟନ୍ତ ଶିକ୍ଷାପ୍ରେମୀ । ନିଜର କନିଷ୍ଠ ଭାଇମାନଙ୍କୁ ଉଚ୍ଚଶିକ୍ଷା ପ୍ରଦାନ କରିଥିଲେ ।

ଭଦ୍ରକ କଲେଜ ଜୁଲାଇ ମାସ ଛଅ ତାରିଖ ୧୯୪୮ ମସିହାରେ, ଭଦ୍ରକ ହାଇସ୍କୁଲରେ ଆରମ୍ଭ ହେଲା । ଉପଯୁକ୍ତ ଜାଗାଟିଏ ଖୋଜା ପଡ଼ିଥାଏ କଲେଜର ସ୍ଥାୟୀ ଅବସ୍ଥାନ ପାଇଁ । ଏହି ସମୟରେ ଛକଡ଼ିବାବୁ ସେହି ବିସ୍ତୀର୍ଣ୍ଣ ଆମ୍ବବଗିଚା ଓ ପ୍ରାନ୍ତରକୁ ଦାନ କରିଦେଲେ କଲେଜ ପାଇଁ । ଏଥି ସହିତ ନିଜର ଜଗନ୍ନାଥପୁର ଜମିଦାରୀ, ତାଙ୍କର ରହିବା ଘର ମଧ୍ୟ କଲେଜ ନାମରେ ଦତ୍ତପତ୍ର କରିଦେଲେ ଦୁଇହଜାର ନଗଦଟଙ୍କା ସହିତ । କେବଳ ସେତିକି ନୁହେଁ, ଭଦ୍ରକ ନିକଟରେ ଟ୍ରେନିଂ ସ୍କୁଲ ପାଇଁ ଦାନ କରିଥିଲେ ନିଜର କୋଡ଼ିଏ ଏକର ଜମି । ଏପରି ନିଃସ୍ୱାର୍ଥପର ଦାନଶୀଳତା କ୍ୱଚିତ୍ ଦେଖିବାକୁ ମିଳିଥାଏ । କଲେଜର ପରିଚାଳନା ସମିତି ଛକଡ଼ି ମହାନ୍ତିଙ୍କ ନାମରେ କଲେଜକୁ ନାମିତ କରିବାକୁ ପ୍ରସ୍ତାବ କରନ୍ତେ ସେ କହିଲେ ଏହା ଏକ ଅନୁଚିତ କଥା ହେବ । ଏହି କଲେଜ ନିର୍ମାଣ ପାଇଁ ଭଦ୍ରକର ଜନସାଧାରଣ ମଧ୍ୟ ଅକୁଣ୍ଠ ଚିତ୍ତରେ ଶକ୍ତି ଅନୁସାରେ ସାହାଯ୍ୟ କରିଛନ୍ତି । ଏହି ପ୍ରଚାରମୁଖୀ ସ୍ୱାର୍ଥାନ୍ଧ ସଂସାରରେ ଦାନବୀର ଛକଡ଼ି ମହାନ୍ତି ଏକ ବ୍ୟତିକ୍ରମ ବ୍ୟକ୍ତିତ୍ୱ । ଛକଡ଼ି ବାବୁ ଦୁଇଟି ପୁସ୍ତକର ରଚୟିତା । ତାହା ହେଲା- (୧) ଭାରତୀୟ ଶିଳ୍ପ ଓ (୨) ହିତକଥା ।

ସାଳିନ୍ଦୀ ନଦୀ ଏକପ୍ରକାର କଲେଜ ପରିସରକୁ ଘେରି କରି ପ୍ରବାହିତ ହେଉଛି । ଭଦ୍ରକ କଲେଜର ଅନ୍ୟତମ ନିର୍ମାତା ହେଉଛନ୍ତି ବିଖ୍ୟାତ ଆଇନଜୀବୀ ବାଉଦପୁରର ନରେନ୍ଦ୍ର ମୋହନ ଦାସ । ସାଧାରଣରେ ସେ ନରୁବାବୁ ଭାବରେ ପରିଚିତ । କଲେଜ ପାଇଁ ସେ ଦିନରାତି ଖଟୁଥିଲେ । ଅଧ୍ୟାପକମାନଙ୍କର ସୁଖଦୁଃଖରେ ଭାଗୀଦାର ହେଉଥିଲେ । ଏକ ପିତୃସୁଲଭ ମୁରବୀ ପରି ତାଙ୍କୁ ସମସ୍ତେ ସମ୍ମାନ ଜଣାଉଥିଲେ ।

କଲେଜ ସମୟ ବାହାରେ ସାଳିନ୍ଦୀ ନଦୀ କୂଳରେ ପ୍ରାକୃତ ସୌନ୍ଦର୍ଯ୍ୟ ଉପଭୋଗ କରିବା ଏକ ନିତିଦିନିଆ ଅଭ୍ୟାସ ହୋଇଗଲା । ଅନେକ ଆଗ୍ରହୀ ଛାତ୍ର ସଖ୍ୟ ପ୍ରଦାନ କରୁଥିଲେ । ସେମାନଙ୍କର ନାନା ପ୍ରଶ୍ନ ଜାଣିବା ପାଇଁ ଆଗ୍ରହ ମୋତେ ମୁଗ୍ଧ କରିଦେଉଥିଲା ।

କଲେଜର ଛାତ୍ର ଇଉନିଅନ ଉତ୍ସବ କେବଳ କଲେଜର ନୁହେଁ, ଭଦ୍ରକର ଉତ୍ସବ ଭାବରେ ପରିଣତ ହୋଇଯାଇଥିଲା । ବିଶିଷ୍ଟ ଅତିଥିମାନଙ୍କର ଭାଷଣ ଶୁଣିବା ପାଇଁ ଏବଂ କଲେଜ ଛାତ୍ରଛାତ୍ରୀଙ୍କର ଅଭିନୀତ ନାଟକ ଦେଖିବା ପାଇଁ ଭଦ୍ରକର ସମ୍ଭ୍ରାନ୍ତ ପରିବାରର କି ସ୍ତ୍ରୀ, କି ପୁରୁଷ ଅତ୍ୟନ୍ତ ଉତ୍ସାହିତ ହୋଇ ଯୋଗ ଦେଉଥିଲେ । ମୋର ତ ସେଠାରେ ମାତ୍ର ତିନୋଟି ମାସର ରହଣି । କଲେଜ ଇଉନିଅନ ବାର୍ଷିକ ସଭାକୁ ବରେଣ୍ୟ ନେତା ଶ୍ରୀ ହରେକୃଷ୍ଣ ମହତାବ ନିମନ୍ତ୍ରିତ ହୋଇ ଯୋଗ ଦେଇଥାନ୍ତି । ତାଙ୍କର ଆଶୀର୍ବାଦରେ କଲେଜ ଅଗ୍ରସର ହେଉଥାଏ । ସେହି ସଭାରେ ବିପୁଳ ଜନସମାଗମ । ସମସ୍ତଙ୍କର ଆଖି ରହିଥାଏ ଶ୍ରୀ ମହତାବଙ୍କ ଉପରେ । ପରିଚାଳନା ସମିତିର ସଂପାଦକ ନରୁବାବୁ ମୋତେ ସାଙ୍ଗରେ ନେଇ ଶ୍ରୀ ମହତାବଙ୍କୁ ପରିଚୟ କରାଇ କହିଲେ- ''ଏହି ତରୁଣ ଅଧ୍ୟାପକ ଅଳ୍ପଦିନ ହେଲା ଯୋଗ ଦେଇଛନ୍ତି । ''ଶ୍ରୀ ମହତାବ ଆଦେଶ ଦେଲେ-ଆଉ ଏକ ଚେଆର ଆଣି ତାଙ୍କ ପାଖରେ ପକାଇବା ପାଇଁ । ଚେଆର ଆସିଲା ମାତ୍ରକେ ମୋତେ କହିଲେ ''ବସ'' । ଆଗରେ ଅନେକ ନିମନ୍ତ୍ରିତ ଅତିଥି ଓ ଭଦ୍ରକର ବିଶିଷ୍ଟ ଜନସାଧାରଣ । ମୋ ପରି ଜଣେ ନବାଗତ ତରୁଣ ଅଧ୍ୟାପକଙ୍କୁ ପାଖରେ ବସିବାକୁ କହିଲେ । ଆଦେଶ ମାନି ଅତ୍ୟନ୍ତ ସଂକୁଚିତ ହୋଇ ବସିଲି । ପରିଚାଳନା ସମିତିର ସଂପାଦକ ନରୁବାବୁ, କଲେଜର ଅଧ୍ୟାପକଗଣ, ଅନ୍ୟ କର୍ମଚାରୀମାନେ ସର୍ବୋପରି ସମବେତ ଅତିଥିବର୍ଗ ଚକିତ ହୋଇ ଅନାଇଥାଆନ୍ତି । ଶ୍ରୀ ମହତାବ ମୋତେ ଅତ୍ୟନ୍ତ ସ୍ନେହରେ ପଚାରିଲେ-''ତୁମର କ'ଣ ଏକପତ୍ନୀ ବ୍ରତରେ ବିଶ୍ୱାସ ନାହିଁ କି ? ଆମ ପ୍ରଜାତନ୍ତ୍ରରେ ସାମ୍ବାଦିକ ଜୀବନ ଆରମ୍ଭ କଲ । ପୁଣି ଏଠାରେ ?'' କହିଲି, ''ସାର୍, ମୋର ଅଧ୍ୟାପକ ହେବା ପାଇଁ ଇଚ୍ଛା ।'' ଶ୍ରୀ ମହତାବ କହିଲେ, ''ହଉ ଠିକ୍ ଅଛି, ଏ ଅନୁଷ୍ଠାନ ମଧ୍ୟ ମୋର । ମନ ଦେଇ କାମ କରିଯାଅ ।''

ଶ୍ରୀ ମହତାବ୍ ମୋତେ ଏପରି ଜନସମାଗମରେ ଆପଣେଇ ନେଲେ । ଏହି ଘଟଣାଟି ଯୋଗୁଁ ଛାତ୍ରସମାଜ, ସହକର୍ମୀ, ଅଧ୍ୟାପକ ବୃନ୍ଦ ଏବଂ ସହରର ସମ୍ଭ୍ରାନ୍ତ ପରିବାରର ମୁଁ ଶ୍ରଦ୍ଧା ଓ ସହାନୁଭୂତି ଅର୍ଜନ କଲି ।

କଲେଜ କ୍ଲାସ୍ ସାରି ଦିନେ ସାଳିନ୍ଦୀ କୂଳରେ ଏକାଟିଆ ବୁଲୁଛି, ଜଣେ ଛାତ୍ର ନିକଟକୁ ଆସି ସମ୍ମାନ ଜଣାଇଲେ । କିଛି ସମୟ ଭଦ୍ରକ ବିଷୟରେ କଥା ହେଲା ପରେ ସେ ମୋତେ

ସନ୍ତର୍ପଣରେ ଅନୁରୋଧ କଲେ, ''ସାର୍. ଆପଣ ଆମ ଘରକୁ ଯିବା ପାଇଁ ମୋ ବାପା ବୋଉ କହିଛନ୍ତି । ମୁଁ ସାଙ୍ଗରେ ନେଇ ପୁଣି ଛାଡ଼ି ଦେଇଯିବି ।''

ମୁଁ କହିଲି, ତୁମର ଯଦି କିଛି ପାଠ ବୁଝିବାର ଅଛି, ବିନା ସଂକୋଚରେ ମୋ ପାଖକୁ ଆସିବ । ମୁଁ ବତାଇଦେବି । ଏ ବିଷୟରେ ମୁରବୀମାନଙ୍କର ଅନୁରୋଧର ଆବଶ୍ୟକତା କ'ଣ ? ଛାତ୍ରମାନଙ୍କ ପାଇଁ ମୁଁ ସର୍ବଦା ପ୍ରସ୍ତୁତ ।

ସେ ତ ପିଲା ଲୋକ । ଛନ୍ଦକପଟର ପାଖ ପଶିବା ପାଇଁ ଆହୁରି ବିଳମ୍ବ ଅଛି । ଅତିଶୟ ସରଳ ମନରେ କହିଲା- ''ନାହିଁ ସାର୍, ବୋଉ କହିଲା, ସାର୍‌ଙ୍କୁ ଆମ ଘରକୁ ନିମନ୍ତ୍ରଣ କରି ଆଣିବୁ । ତୋର ଭଉଣୀକୁ ସେ ଦେଖିବେ । ଯଦି ତାଙ୍କର ମନ ମାନିବ, ତାହାହେଲେ ତାଙ୍କ ଘରକୁ ପ୍ରସ୍ତାବ ପଠାଇବା ।''

ଏ କଥା ଶୁଣି ମୁଁ ଏକପ୍ରକାର ଝାଉଁଳି ପଡ଼ିଲି । ଏ କି ପ୍ରକାର ପରିସ୍ଥିତି । ସହଜେ ପିଲାଦିନରୁ ପରିଚିତ ଲୋକଙ୍କ ଘରକୁ ଯିବାରେ ମୋର ସଂକୋଚ ଥାଏ । ଏଠାରେ ମୋର ରହଣି ମାତ୍ର ଏକମାସ ହୋଇନାହିଁ । ଏପରି କଥା ଶୁଣି ମୋତେ ଡର ମାଡ଼ିଲା । ଏଠାରେ ଲୋକେ କ'ଣ ଭାବିବେ । ଘରେ ମୋର ଅବସ୍ଥା କ'ଣ ହେବ !! ସହକର୍ମୀ ଓ ଛାତ୍ରମାନେ ଜାଣିଲେ ମୋର ଇଜ୍ଜତ ରହିବତ !!! ଏହି ଛାତ୍ରଠାରୁ ରକ୍ଷାପାଇବା ପାଇଁ ମିଥ୍ୟା କଥାଟିଏ କହିଲି, ''ମୋର ବାହାଘର ହୋଇସାରିଛି ।'' ଛାତ୍ରଟି ମୁହଁକୁ ଶୁଖାଇ ଫେରିଗଲା । ମୁଁ ଅନ୍ତତଃ ରକ୍ଷା ପାଇଗଲି ।

୧୯୫୩ ସାଲର ଫେବୃଆରୀ ମାସର ପ୍ରଥମ ସପ୍ତାହ ତତ୍କାଳୀନ ପ୍ରଜାତନ୍ତ୍ର ଦୈନିକର ମୁଖ୍ୟ ସଂପାଦକ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ମୋତେ ଚିଠି ଲେଖିଲେ- ''ତୁମେ ଆସନ୍ତାକାଲି ଦିନକ ପାଇଁ ଛୁଟି ନେଇ କଟକ ଆସି ମୋତେ ଦେଖା କର ।'' ଜାନକୀବାବୁ ମୋର ଅତ୍ୟନ୍ତ ହିତାକାଂକ୍ଷୀ ଏବଂ ବଡ଼ଭାଇ ପରି । ପରବର୍ତ୍ତୀକାଳରେ ସେ କେନ୍ଦ୍ରମନ୍ତ୍ରୀ ଏବଂ ଓଡ଼ିଶାରେ ଦୀର୍ଘ ଚଉଦବର୍ଷକାଳ ମୁଖ୍ୟମନ୍ତ୍ରୀ ହୋଇଥିଲେ । କଂଗ୍ରେସର ଜଣେ ଅଗ୍ରଗାମୀ ନେତାଭାବରେ ଭାରତରେ ସୁପରିଚିତ । ଓଡ଼ିଶା ରାଜନୀତିରେ କଂଗ୍ରେସ ଅନୁଷ୍ଠାନରେ ସେ ହେଉଛନ୍ତି ଅପ୍ରତିଦ୍ୱନ୍ଦ୍ୱୀ ନେତା । ରାଜନୀତିରେ ଥାଇ ମଧ୍ୟ ସେ ଆଜୀବନ ଓଡ଼ିଆ ସାହିତ୍ୟ ସାଧନାରେ ବ୍ରତୀ ରହିଛନ୍ତି ।

ଛୁଟି ନେଇ ତାଙ୍କୁ କଟକ ଘରେ ସାକ୍ଷାତ କଲି । ସେ କହିଲେ- ସ୍ୱାଧୀନ ଭାରତର ପ୍ରଥମ ପ୍ରେସ୍‌କମିଶନ ବସିଛି । ଏଥିପାଇଁ ପ୍ରତ୍ୟେକ ଭାରତୀୟ ଭାଷାର ଜଣେ ଜଣେ ସହକାରୀ ଗବେଷକ ଆବଶ୍ୟକ । ଓଡ଼ିଆ ଗବେଷକ ନିର୍ବାଚନ ପାଇଁ ଆକାଶବାଣୀ କେନ୍ଦ୍ରରେ ଏକ ଲିଖିତ ପରୀକ୍ଷା ଏବଂ ମୌଖିକ ପରୀକ୍ଷା ହେବ । ତୁମେ ପ୍ରଜାତନ୍ତ୍ରର ସହକାରୀ ସଂପାଦକ ଭାବରେ ଏହି ପରୀକ୍ଷା ଦିଅ ବୋଲି ମୁଁ ଭାବୁଛି । ତାଙ୍କଠାରୁ ସାର୍ଟିଫିକେଟ ଗ୍ରହଣ କରି ଆକାଶବାଣୀ କେନ୍ଦ୍ରରେ ଠିକ୍ ସମୟରେ ପହଞ୍ଚିଲି । ସେତେବେଳେ ମାତ୍ର ତିନିଗୋଟି ଦୈନିକ ଖବରକାଗଜ-'ସମାଜ', 'ପ୍ରଜାତନ୍ତ୍ର' ଓ 'ମାତୃଭୂମି' । ଏହି ତିନିଟି ପତ୍ରିକାର ମାତ୍ର ଦଶଜଣ

ଏପରି ପରୀକ୍ଷା ଦେବା ପାଇଁ ଉପସ୍ଥିତ । ଲିଖିତ ପରୀକ୍ଷାଟି ପୂର୍ବାହ୍ନରେ ସରିଗଲା । ଅପରାହ୍ନରେ ଆରମ୍ଭ ହେଲା ମୌଖିକ ପରୀକ୍ଷା । ସେହି ବୋର୍ଡ଼ରେ ଥିଲେ ଆକାଶବାଣୀର ନିର୍ଦ୍ଦେଶକ, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଚିନ୍ତାମଣି ଆଚାର୍ଯ୍ୟ, ଓଡ଼ିଶା ସରକାରଙ୍କ ପ୍ରତିନିଧି ସୁଧୀର ଘୋଷ ଓ ଅନ୍ୟଜଣେ ବରିଷ୍ଠ ଅର୍ଥନୀତି ଅଧ୍ୟାପକ । ମୋତେ ଦୀର୍ଘ ଅଧଘଣ୍ଟାଏ କାଳ ବୋର୍ଡ଼ର ସମ୍ମୁଖୀନ ହେବାକୁ ପଡ଼ିଲା । ଅପରାହ୍ନ ଚାରିଟା ପରେ ମୁକ୍ତି ପାଇ ପ୍ରଜାତନ୍ତ୍ର ଅଫିସ୍‌କୁ ଗଲି ଜାନକୀବାବୁଙ୍କୁ ବିଦାୟ ମାଗି ଭଦ୍ରକ ଯିବି ସଂଧ୍ୟା ଟ୍ରେନ୍‌ରେ । ଜାନକୀବାବୁ କହିଲେ- ଅପେକ୍ଷା କର, ମୌଖିକ ପରୀକ୍ଷାର ଫଳାଫଳ ବୁଝିବା । ସେ ଆକାଶବାଣୀ ନିର୍ଦ୍ଦେଶକଙ୍କ ସହିତ ଦୂରଭାଷ ଯୋଗେ ସଂପର୍କ ସ୍ଥାପନ କଲେ ଏବଂ ପଚାରିଲେ । ଉତ୍ତର ଆସିଲା- ଆପଣଙ୍କ କାଗଜର ସହକାରୀ ସଂପାଦକ ପଟ୍ଟନାୟକ ମୌଖିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଛନ୍ତି । ଜାନକୀବାବୁ ଆନନ୍ଦିତ ହୋଇ କହିଲେ- ''ତୁମେ ନିଶ୍ଚୟ ଲିଖିତ ପରୀକ୍ଷାରେ ସଫଳତା ଅର୍ଜନ କରିବ ।'' ଏହା ଏକ ସର୍ବଭାରତୀୟ ଚାକିରୀ । ଦିଲ୍ଲୀରେ ରହିବାକୁ ପଡ଼ିବ ମୋର ଶୁଭକାମନା କରି ବିଦାୟ ଦେଲେ ।

ଭଦ୍ରକ ଫେରି ଆସିଲି । ମାର୍ଚ୍ଚ ପ୍ରଥମ ସପ୍ତାହରେ ଦିଲ୍ଲୀର ପ୍ରେସ୍ କମିଶନ କର୍ତ୍ତୃପକ୍ଷ ନିଯୁକ୍ତି ପତ୍ର ପଠାଇଲେ । ତୁରନ୍ତ କର୍ମକ୍ଷେତ୍ରରେ ଟ୍ରେନିଂରେ ଯୋଗ ଦେବା ପାଇଁ ନିର୍ଦ୍ଦେଶ ଥିଲା । ମୋର ବିଭାଘର ପାଇଁ ବାପା ପୂର୍ବରୁ ନିର୍ବନ୍ଧ କରିସାରିଥିଲେ । ମୋତେ ଆଦେଶ ମିଳିଲା ମାର୍ଚ୍ଚ ନଅ ତାରିଖଦିନ ବିବାହ ବେଦିରେ ବସିବା ପାଇଁ ଯିବାକୁ ହେବ ଗାଁକୁ । ତେଣୁ ବାଧହୋଇ ଦିଲ୍ଲୀ ଅଫିସ୍‌କୁ ଦରଖାସ୍ତ କଲି ଦଶଦିନ ପରେ ଯୋଗଦେବାର ଅନୁମତି ଭିକ୍ଷାକରି ।

୧୯୫୩ ମସିହା ମାର୍ଚ୍ଚ ନଅ ତାରିଖ । ଏହି ତାରିଖଟି ସମଗ୍ର ଜୀବନକାଳ ପାଇଁ ଏକ ସ୍ମରଣୀୟ ଦିବସ । ଏହିଦିନ ଶୁଭ ଶଙ୍ଖର ଧ୍ୱନି ମଧ୍ୟରେ ବେଦିର ହୋମାଗ୍ନି ଆଗରେ ଶପଥ କରି ଯାହାଙ୍କୁ ପତ୍ନୀ ଭାବରେ ଗ୍ରହଣ କରିଥିଲି, ସେ ହେଲେ ପ୍ରଭାତ କୁମାରୀ ପଟ୍ଟନାୟକ । ଚିଲିକା ହ୍ରଦ ନିକଟରେ ହରିପୁର ଶାସନର ସମ୍ଭ୍ରାନ୍ତ ପରିବାରର ମୁଖ୍ୟ ଥିଲେ ଚାରିଗୋଟି ସରବରାକାରୀର ଅଧିକାରୀ ରାୟ ସାହେବ ଶ୍ୟାମସୁନ୍ଦର ପଟ୍ଟନାୟକ । ପ୍ରଭାତ କୁମାରୀ ଥିଲେ ତାଙ୍କର କନିଷ୍ଠ ଭ୍ରାତା ଲକ୍ଷ୍ମୀଧର ପଟ୍ଟନାୟକଙ୍କର ଏକମାତ୍ର କନ୍ୟା । ରାୟ ସାହେବଙ୍କର ଏକ ବିଶାଳ ଏକାନ୍ନବର୍ତ୍ତୀ ପରିବାର । ପ୍ରଚୁର ଜମି, ଗୋଚର ଓ ତୋଟାମାନ ଥିଲା ଏହି ପରିବାର ଅଧୀନରେ । ଘରୋଇ ଠାକୁର ବୃନ୍ଦାବନ ଚନ୍ଦ୍ର । ତାଙ୍କ ନାମରେ ଦଶବାଟି ସମ୍ପତ୍ତି ଖଞ୍ଜା । ବର୍ଷ ତମାମ ଏହି ମନ୍ଦିରରେ ଅତିଥି ଅଭ୍ୟାଗତ ଆତିଥ୍ୟ ଗ୍ରହଣ କରିଥାଆନ୍ତି । ବର୍ଷେବର୍ଷେ ନାଗା ସନ୍ନ୍ୟାସୀମାନଙ୍କର ହାତୀ, ଘୋଡ଼ା, ଓଟ ପଲଟଣ ସହିତ ସପ୍ତାହବ୍ୟାପୀ ଚର୍ଚ୍ଚା ଲାଗି ରହେ । ଠାକୁରଙ୍କର ବାରମାସରେ ତେର ପର୍ବ । ଓଡ଼ିଶାର ସର୍ବାଞ୍ଚଳର ବିଖ୍ୟାତ ପାଲାକାରମାନେ ନିମନ୍ତ୍ରିତ ହୋଇ ଠାକୁର ମନ୍ଦିର ସମ୍ମୁଖରେ ପାଲା ପରିବେଷଣ କରିଥାଆନ୍ତି । ସମଗ୍ର ଗ୍ରାମବାସୀ ଏହି ଧାର୍ମିକ ଉତ୍ସବମାନଙ୍କରେ ଅଂଶଗ୍ରହଣ କରି ଆନନ୍ଦ ଲାଭ କରନ୍ତି ।

ଏହିଭଳି ଏକ ସ୍ୱଚ୍ଛଳ ପରିବାର ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେଉଥିବାରୁ ବାପା ପ୍ରସ୍ତାବ କଲେ ଖୁବ୍ ଯାକଯମକରେ ବରଯାତ୍ରୀ ବନ୍ଧୁ ଦ୍ୱାରକୁ ଯିବେ । ଢୋଲବାଦ୍ୟ, ବଡ଼କାଠ ବାଦ୍ୟ ଓ ତେଲିଙ୍ଗିବାଜା ବାଜିବ । ଫୁଲଗଛ ଏବଂ ପେଟ୍ରୋମାକ୍ସ ଆଲୁଅର ସମାରୋହ ହେବ । ପ୍ରଚୁର ବାଣଫୁଟିବ । ଏହାଥିଲା ଏକପ୍ରକାର ସାମାଜିକ ଅହଂକାର ଓ ବଡ଼ପଣିଆ ଦେଖାଇହେବାର ମାଧମ । ସିଧାସଳଖ ବାପାଙ୍କୁ କିଛି କହିବାର ସାହସ ନଥିଲା । ବୋଉ ଆଗରେ କହିଲି, କୌଣସି ବାଜା ବୈଜୟନ୍ତୀ, ଫୁଲଗଛ, ବାଣର ରୋଷଣୀ ହେବ ନାହିଁ । କେବଳ ଶଙ୍ଖ ବାଜିବ, ତାହାହେଲେ ମୁଁ ପାଲିଙ୍କିରେ ବସିବି । କୌଣସି ପ୍ରକାର ଯୌତୁକ ଦାବୀ ହେବ ନାହିଁ । ଯାହାହେଉ ଶେଷରେ ବାପା ରାଜି ହେଲେ । ଅତ୍ୟନ୍ତ ନିରାଡ଼ମ୍ବର ଭାବରେ କେବଳ ମୁଷ୍ଟିମେୟ ପାରିବାରିକ ବନ୍ଧୁମାନଙ୍କ ଗହଣରେ ବାହାଘର ହେଲା । ଆଜିକାଲି ପରି ଶହଶହ ସାଙ୍ଗସୁଖ ଓ ଚିହ୍ନାପରିଚୟକୁ ନେଇ ବନ୍ଧୁଘରେ ଅତ୍ୟାଚାର କରିବାର ଅବକାଶ ନଥିଲା ।

ବିନା ଦାବୀରେ ଶଶୁରଘର ଯେଉଁ ଉପହାର ଦେଇଥିଲେ, ସେଥିରେ ସମସ୍ତଙ୍କର ଆଖି ଖୋସି ହୋଇଯାଇଥିଲା । ମୁଁ କିନ୍ତୁ ସନ୍ତୋଷ ଲାଭ କରିଥିଲି, ଯେତେବେଳେ ଜାଣିଲି, ମୋର ପତ୍ନୀ ଗୋଟିଏ ଟ୍ରଙ୍କ ଭରା ଉପନ୍ୟାସ ଓ କବିତାଗ୍ରନ୍ଥ ଆଣିଛନ୍ତି । ଆଜି ପରିଣତ ବୟସରେ ମଧ ତାଙ୍କର ପଢ଼ିବାର ନିଶା ଛାଡ଼ିନାହିଁ । ମୋର ଅନେକ ଲେଖାର ସେ ହେଉଛନ୍ତି ପ୍ରଥମ ଶ୍ରୋତା । ଏକ ଅତି ସ୍ୱଚ୍ଛନ୍ଦ ବହୁକୁଟୁମ୍ବୀ ପରିବାରରୁ ଆସି ସେ ଆମର ମଧବିତ୍ତ ପରିବାରରେ ନିଜର ଅକୁଣ୍ଠ ସେବା, ସ୍ନେହ ଓ ସହଣିକ ପଣରେ ଜଣେ ଆଦର୍ଶ ଗୃହଲକ୍ଷ୍ମୀର ଭୂମିକା ତୁଲାଇ ସମସ୍ତଙ୍କୁ ଆପଣେଇ ପାରିଛନ୍ତି । ସେ ଦୁଇପୁତ୍ର ଏବଂ ଦୁଇଟି କନ୍ୟାଙ୍କର ଜନନୀ । ତାଙ୍କର ଜାଗ୍ରତ ଦୃଷ୍ଟିରେ ବଡ଼ ଝିଅ ଓ ସାନ ପୁଅ ଏମ୍.ଏ. ଡିଗ୍ରୀଧାରୀ । ବଡ଼ପୁଅ ଏମ୍.ଏସ୍‌ସି. ଏବଂ ଗବେଷଣା କରି ଡକ୍ଟରେଟ୍ ଉପାଧି ହାସଲ କରିଛନ୍ତି । ସମସ୍ତେ ଅଭିଜାତ କର୍ମକ୍ଷେତ୍ରରେ ଅବସ୍ଥାପିତ । କେବଳ ସାନଝିଅ ଗ୍ରାଜୁଏଟ ହୋଇ ଏକ ସମ୍ଭ୍ରାନ୍ତ ପରିବାରରେ ଗୃହଲକ୍ଷ୍ମୀ । ବଡ଼ ଜାମାତା ଜୀବନବଲ୍ଲଭ ଦାସ ବିଚାର ବିଭାଗରେ ପଦସ୍ଥ କର୍ମଚାରୀ ଏବଂ ସାନ ଜ୍ୱାଇଁ ବାରୀନ୍ଦ୍ର ଦାସ ବରିଷ୍ଠ ଆଡ଼୍‌ଭୋକେଟ ।

ବାହାଘରର ସପ୍ତମଙ୍ଗଳାବାସୀ ମୋତେ ଭଦ୍ରକ ବାଟେ ଦିଲ୍ଲୀର କର୍ମକ୍ଷେତ୍ରରେ ଯୋଗ ଦେବାର କଥା । ଭଦ୍ରକରେ ପହଞ୍ଚି କଚେରୀରେ ପରିଚାଳନା ସମିତିର ସଂପାଦକ ନରୁବାବୁଙ୍କୁ ସାକ୍ଷାତ କଲି ଏବଂ ଦିଲ୍ଲୀ ଚାକିରୀର ନିଯୁକ୍ତିପତ୍ର ଦେଖାଇଲି । ଅନୁରୋଧ କଲି ବିନୀତ ଭାବରେ ମୋର ଇସ୍ତଫାପତ୍ର ଗ୍ରହଣ କରିବା ପାଇଁ । ନରୁବାବୁ ବିଚଳିତ ହୋଇପଡ଼ିଲେ । କହିଲେ- ପଠାଣିବାବୁ, ମୋର ପ୍ରଥମରୁ ଭୁଲ୍ ହୋଇଥିଲା ଆପଣଙ୍କ ପରି ଉତ୍ସାହୀ ଯୁବକଙ୍କୁ ମାତ୍ର ଚାରିମାସ ପାଇଁ ନିଯୁକ୍ତି ପତ୍ର ଦେବା । ସେଥିପାଇଁ ଆପଣ ଚେଷ୍ଟା କଲେ ଅନ୍ୟତ୍ର ଯିବା ପାଇଁ । ଆମେ ନୂଆ କଲେଜଟିଏ ଆରମ୍ଭ କରିଛୁ । ଆପଣଙ୍କର ଏଇ ଅଳ୍ପ କେତେଦିନର କାର୍ଯ୍ୟରେ ପରିଚାଳନା ସମିତି ଅତ୍ୟନ୍ତ ସନ୍ତୁଷ୍ଟ । ଆଗାମୀ ସପ୍ତାହରେ ପରିଚାଳନା ସମିତି

ଡାକି ମୁଁ ଆପଣଙ୍କୁ ପରମାନେଣ୍ଟ କରିଦେବି । ଭବିଷ୍ୟତରେ ଷ୍ଟାଫ୍ କ୍ୱାର୍ଟର ତିଆରି ହେଲେ ଆପଣଙ୍କୁ ପ୍ରଥମେ ବ୍ୟାଚଲର୍ କ୍ୱାଟରର ସୁବିଧା ମିଳିବ । ଆପଣ ଆମକୁ ଛାଡ଼ି ଯାଆନ୍ତୁ ନାହିଁ । କ'ଣ କହିବି !! ମୋର ବାକ୍ୟ ସ୍ଫୁରିଲା ନାହିଁ । ଏହି ତରୁଣ ପାଇଁ ଏତେ ସ୍ନେହ, ଏତେ ବିଶ୍ୱାସ । ମସ୍ତକ ନଇଁ ଯାଉଥାଏ । ତଥାପି ଭାରତ ସରକାରଙ୍କ ଚାକିରୀ ଓ ଦିଲ୍ଲୀର ଆକର୍ଷଣ । କହିଲି, ସାର୍ ! "ମୁଁ ଦିଲ୍ଲୀରେ ଯୋଗ ଦେଲେ ବର୍ତ୍ତମାନ ଦରମାର ଦୁଇଗୁଣ ପାଇବି ଏବଂ ଅନ୍ୟାନ୍ୟ ଆନୁସଙ୍ଗିକ ସୁବିଧାର ଆଶା ମଧ୍ୟ ରହିଛି । ଭାଗ୍ୟ ଅନୁକୂଳ ଥିଲେ ଭବିଷ୍ୟତ ଉନ୍ନତିର ସମ୍ଭାବନା ରହିପାରେ । ମୁଁ ଆପଣଙ୍କର ପୁଅ ପରି । ମୋର ଭବିଷ୍ୟତ ବିକାଶ ପାଇଁ ଆପଣ ନିଶ୍ଚୟ ବାଧକ ହେବେ ନାହିଁ ।"

ଏତିକି କହିବା ମାତ୍ରକେ ତାଙ୍କ ଆଖି ଲୁହ ଛଳଛଳ ହୋଇଗଲା । ସେ ମୋତେ କୁଣ୍ଢାଇ ପକାଇ ମୁଣ୍ଡବାଳକୁ ଆଉଁସି ଦେଲେ । କହିଲେ, ମୁଁ ସ୍ୱାର୍ଥପର ହୋଇପଡ଼ିଥିଲି । ତୁମକୁ ଆଶୀର୍ବାଦ କରୁଛି । ଭବିଷ୍ୟତର ଚଲାପଥ ଉଜ୍ଜ୍ୱଳ ହେଉ । ସେଇଠି ଲେଖିକରି ଦେଲେ ଅଧକ୍ଷଙ୍କୁ ମୋତେ ଦାୟିତ୍ୱରୁ ଦରମା ସହିତ ମୁକ୍ତି ଦେବା ପାଇଁ ।

କେତୋଟି ଦିନର ରହଣି ଭଦ୍ରକରେ । ମାତ୍ର ସାରାଜୀବନ ପାଇଁ ତାହା ଅଭୁଲା ଓ ଅଲିଭା ହୋଇ ରହିଯାଇଛି ।

• • •

# ଅଧ୍ୟାପକ ଜୀବନର ସ୍ମରଣୀୟ ମୁହୂର୍ତ୍ତ

ପୁରୀ ସହରରେ ଏକ ଲୋକପ୍ରିୟ ଢଗ ଶୁଣିବାକୁ ମିଳିଥାଏ ଏହିପରି "ନଈରେ ବାଳିହା ଚହଟିଲା । କଜଳ ସୁନ୍ଦର ହଅଲୋ ରାଣ୍ଡ ପୁଣି ଚାଖିଆ ଲେଉଟିଲା" । ଅଧିକାଂଶ ସାଧାରଣ ପଣ୍ଡା ପଢ଼ିଆରୀ ଓ ସେବକ ସଂପ୍ରଦାୟର ପିଲାମାନେ ଏହି ଢଗଟି କହନ୍ତି ସିନା, ତାର ପ୍ରକୃତ ମର୍ମ ବୁଝନ୍ତି ନାହିଁ ଅଥବା ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । କଥାଟି ହେଲା ପୁରୀ ସହରରେ ଶ୍ରୀଜଗନ୍ନାଥଙ୍କର ଏକ ପ୍ରଧାନ ସେବକ ବଂଶ ଖୁଣ୍ଟିଆ ପରିବାର । ସେହି ବଂଶରେ ଚାଖି ଖୁଣ୍ଟିଆ ଥିଲେ ବିଖ୍ୟାତ ମଲ୍ଲ ଓ କୁସ୍ତିବିଦ୍ୟା ବିଶାରଦ । ଖଣ୍ଡା ତଲୁଆର ଖେଳରେ ମଧ୍ୟ ସେ ଥିଲେ ଅତ୍ୟନ୍ତ ଧୂରୀଣ । ୧୮୨୭ ଖ୍ରୀଷ୍ଟାବ୍ଦରେ ଶ୍ରୀଜଗନ୍ନାଥଙ୍କ ଚନ୍ଦନସେବା ପରିବାରରେ ଜନ୍ମଗ୍ରହଣ କରିଥିଲେ ଭୀମସେନ୍ ହଜୁରୀ । ତାଙ୍କ ନାମ ଥିଲା ଚାଖି । ପୁରୀ ପଣ୍ଡା ହିସାବରେ ଏହି ଭୀମକର୍ମା ଚାଖିଖୁଣ୍ଟିଆ ଝାନ୍‌ସୀ ରାଣୀ ଲକ୍ଷ୍ମୀବାଈଙ୍କର ଥିଲେ ବିଶ୍ୱସ୍ତ ବନ୍ଧୁ ଓ ହିତାକାଂକ୍ଷୀ । ସିପାହୀ ବିଦ୍ରୋହ ସଂଗ୍ରାମରେ ଇଂରେଜ ମାନଙ୍କ ବିରୁଦ୍ଧରେ ଝାନ୍‌ସୀ ରାଣୀ ଲକ୍ଷ୍ମୀବାଈ ସଂଗ୍ରାମ କରି ବୀରଗତି ପ୍ରାପ୍ତ ହୋଇଥିଲେ । ଏହି ସଂଗ୍ରାମରେ ସହଯୋଗ କରି ଚାଖି ଖୁଣ୍ଟିଆ ଇଂରେଜଙ୍କ କାରାଗାରରେ ବନ୍ଦୀ ହୋଇ ରହିଲେ ଅନେକ ବର୍ଷ । ଚାଖିଙ୍କର କୌଣସି ଖୋଜଖବର ନପାଇ ପୁରୀରେ ଆତ୍ମୀୟସ୍ୱଜନ ତାଙ୍କର ମୃତ୍ୟୁ ହୋଇଛି ବୋଲି ଗ୍ରହଣ କରିଗଲେ । ତେଣୁ ତାଙ୍କର ଯୁବତୀ ସ୍ତ୍ରୀ ବିଧବା ହୋଇ ଜଗନ୍ନାଥଙ୍କର ଆଶ୍ରୟ ଗ୍ରହଣ କଲେ । ବହୁ ବର୍ଷ ପରେ ବନ୍ଦୀଶାଳାରୁ ମୁକ୍ତିଲାଭ କରି ଚାଖି ଖୁଣ୍ଟିଆ ଫେରି ଆସିଲେ ପୁରୀ ସହରକୁ । ଏହି ଆନନ୍ଦ ଉଲ୍ଲାସ ମଧ୍ୟରେ କେହି ଜଣେ ବିଧବାବେଶୀ ଚାଖିଙ୍କ ସହଧର୍ମିଣୀକୁ କଜଳ ସୁନ୍ଦର ଲଗାଇ ସଧବା ହୁଅ ବୋଲି ଗଦ୍‌ଗଦ୍ ହୃଦୟରେ କହିଥିବେ । ତହିଁରୁ ଏ ପ୍ରକାର ଢଗର ପ୍ରଚଳନ ।

ଚାଖି ଥିଲେ ପରମଭକ୍ତ ଓ କବି । ତାଙ୍କ ରଚିତ ଜଗନ୍ନାଥଙ୍କ ଭଜନର ଗୋଟିଏ ପଦ ଏହିପରି–

"ଚକାନୟନକୁ ପତିତ କେହି / ଚକାଇ ଖର ନିଶ୍ୱାସ ପକାଇ
ବକାରି ମୋ ଆର୍ତ୍ତ ଶୁଣ ସତ୍ୱରେ ହେ / ଢଙ୍କା ବାଜୁଛି ମହିମା ହେ
ଠକାର କରି କର୍ଣ୍ଣଗିର ନ ଶୁଣ / କାହିଁକି ବିଚିତ୍ର କର୍ମା ହେ ।

ଏମ.ଏ. ପାସ୍ କରିବା ସଂଗେ ସଂଗେ ଖ୍ରୀଷ୍ଟ ମହାବିଦ୍ୟାଳୟରେ ମାତ୍ର ଚରୋଟି ମାସ ଅଧ୍ୟାପକ ହେବାର ସୌଭାଗ୍ୟ ଲାଭ କରିଥିଲି । ଯେତେବେଳେ ସେହି ଅନୁଷ୍ଠାନ ପ୍ରତି

ମାୟା ଓ ମମତା ବଦ୍ଧମୂଳ ହେବାକୁ ବସିଥିଲା, ସେତେବେଳେ ବିଦାୟ ନେଇ ଚାଲି ଆସିଥିଲି । ଦୁଇ ବର୍ଷ ମଧ୍ୟରେ ମାତୃଭୂମିରେ ସଂପାଦନା, ଭଦ୍ରକ କଲେଜରେ ଅଧ୍ୟାପନା ଏବଂ ଦିଲ୍ଲୀ ଓ କଲିକତାରେ ଭାରତ ସରକାରଙ୍କ ଦପ୍ତରରେ କର୍ମସଂସ୍ଥାନରେ ଥିଲେ ମଧ୍ୟ ହୃଦୟର କେଉଁ ନିଭୃତ କୋଣରେ ଅଧ୍ୟାପକ ଜୀବନକୁ ମନେମନେ ଝୁରି ହେଉଥିଲି । ଭାଗ୍ୟର ଆହ୍ୱାନରେ ପୁନର୍ବାର ଡାକରା ମିଳିଲା । ୧୯୫୪ ସାଲ ଜୁଲାଇ ମାସ ପାଞ୍ଚ ତାରିଖରେ ଖ୍ରୀଷ୍ଟ ମହାବିଦ୍ୟାଳୟ ଓଡ଼ିଆ ସାହିତ୍ୟ ବିଭାଗରେ ଯୋଗ ଦେବାପାଇଁ । ମୋର ଅନୁଭବ ହେଲା ଠିକ୍ ଚାଖି ଖୁଣ୍ଟିଆ ଫେରି ଆସିଲା ପରି ।

କଲେଜରେ ପ୍ରଥମ ଦିନର ଅନୁଭବ ଅବିସ୍ମରଣୀୟ । ସେତେବେଳେ କେବଳ ଆର୍ଟସ କଲେଜର ଛାତ୍ରସଂଖ୍ୟା ପାଞ୍ଚଶହ । ଅଧ୍ୟାପକ ସଂଖ୍ୟା ଥିଲା ଚଉଦ । ମୁଁ ହେଲି ସର୍ବକନିଷ୍ଠ ଅଧ୍ୟାପକ । ସନ୍ତର୍ପଣରେ ଅଧ୍ୟକ୍ଷ ରେଭରେଣ୍ଡ ବ୍ରହ୍ମାନନ୍ଦ ମହାନ୍ତିଙ୍କୁ ସାକ୍ଷାତ କଲି ବିଭାଗୀୟ ମୁଖ୍ୟ ଅଧ୍ୟାପକ ଶ୍ରୀଧର ଦାସଙ୍କ ସହିତ । ପ୍ରଥମ ଦିନରୁ ଅଧ୍ୟାପକ ତ ହେଲି, ଆଉ ଦୁଇଟି ନିଯୁକ୍ତି ମିଳିଲା । ସୁପରିଣ୍ଟେଣ୍ଡେଣ୍ଟ୍ ବି.ଏନ୍. ହଷ୍ଟେଲ ଓ କଲେଜ ମେଗାଜିନର ମୁଖ୍ୟ ସଂପାଦକ । ବୋଧହୁଏ ଛାତ୍ର ଜୀବନରୁ ବିଭିନ୍ନ ପତ୍ରପତ୍ରିକାରେ ଲେଖାଲେଖି କରୁଥିବାରୁ ଏହି ତରୁଣ ଓ କନିଷ୍ଠତମ ଅଧ୍ୟାପକ ଉପରେ ସଂପାଦନାର ଦାୟିତ୍ୱ ଲଦି ଦିଆଗଲା । ସେତେବେଳେ ହଷ୍ଟେଲର ସୁପରିଣ୍ଟେଣ୍ଡେଟ ବା ତତ୍ତ୍ୱାବଧାରକ ପାଇଁ କୌଣସି ସ୍ୱତନ୍ତ୍ର ରହିବା ଘରର ବ୍ୟବସ୍ଥା ହୋଇ ନଥାଏ । ତେଣୁ ମୋତେ ଆଦେଶ ମିଳିଲା ଖ୍ରୀଷ୍ଟ କଲେଜିଏଟ ସ୍କୁଲ ଦ୍ୱିତୀୟ ମହଲାର ଗୋଟିଏ ଏକକୋଣିଆ କୋଠରୀରେ ରହିବାପାଇଁ । କାଠ କଡେକଡେ ୨୭ଟି ପାହାଚ ଉଠିଲେ ସେହି କୋଠରୀରେ ପ୍ରବେଶ କରିବାକୁ ହୁଏ । ସ୍କୁଲ ଛୁଟି ହେଲା ପରେ ସମସ୍ତ ପରିବେଶ ଅତ୍ୟନ୍ତ ନିର୍ଜନ । ସେତେବେଳେ ସେ ଅଂଚଳରେ କୌଣସି ଦୋକାନ ବଜାର ମୁଣ୍ଡଟେକି ନଥାଏ । ସଂଧ୍ୟା ପରେ ଚାରିଆଡ଼େ ଶୂନ୍ୟ ଶାନ ଓ ଅନ୍ଧାର । ସ୍କୁଲର ଗୋଟିଏ ପାର୍ଶ୍ୱରେ ଧାଡ଼ିଏ ଲମ୍ବି ଯାଇଛି ଆକାଶଛୁଆଁ ଦେବଦାରୁ ଗଛ । ସଂଧ୍ୟାର ଅନ୍ଧକାର ଜମି ଆସିଲେ ଅସଂଖ୍ୟ ବାଦୁଡ଼ି ପକ୍ଷୀ କେଉଁଆଡୁ ଉଡ଼ିଆସି ଏହି ଗଛମାନଙ୍କରେ ଆଶ୍ରୟ ଲୋଡ଼ନ୍ତି । ତଳ ମହଲାର ଗୋଟିଏ କଣକୁ ଘରଟିଏ ମିଳିଥାଏ ପାଇଖାନା ଭାବରେ ବ୍ୟବହାର କରିବା ପାଇଁ । ଉଠା କମୋଡ଼ ବ୍ୟବସ୍ଥା । ସେହି ଘରର ଉପର ସ୍କାଇଲାଇଟରେ ଏକ ବିଶାଳ ବପୁଧାରୀ ପେଚା ଆଶ୍ରୟ ଗ୍ରହଣ କରିଥାଏ । ସଂଧ୍ୟା ହେଲେ ଚାରିଆଡ଼ ମାଡ଼ିମାଡ଼ି ପଡ଼େ । ରାସ୍ତା ଆରପାଖରେ ଆଜବେଷ୍ଟସ ଛପର ହଷ୍ଟେଲ ଘର । ଗୋଟିଏ କଣକୁ ପିଲାମାନଙ୍କର ରୋଷଶାଳା । ହଷ୍ଟେଲ କଣ୍ଟ୍ରାକ୍ଟରର ନାଁ ଥାଏ ବେଙ୍ଗ । ପିଅନ ନାଁ ମୋଚା, କଳା ମଚମଚ ବଳିଷ୍ଠ ଚେହେରା । ଅତ୍ୟନ୍ତ ବିଶ୍ୱସ୍ତ ଏବଂ ଆଜ୍ଞାଧୀନ । ଦୁଇଓଳି ସେହି ଦ୍ୱିତଳ ପ୍ରାସାଦ ଉପରକୁ ସେ ପାଣି ଯୋଗାଏ ଏବଂ ହଷ୍ଟେଲରୁ ଖାଇବାକୁ ଆଣିଦିଏ । ସମଗ୍ର ରାତି ଏକାଟିଆ ରହିବାକୁ ହୁଏ । ଆଖ ପାଖରେ କେହି ହାଁ କରିବାକୁ ନାହିଁ । ଏଣେ ପୁଣି ପୃଥୁଳାକାୟ ପେଚାଟିଏ ଏକମାତ୍ର ସାଥୀ । କଣ୍ଟ୍ରାକ୍ଟରର ବେଙ୍ଗ ମୋତେ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ,

ସହାନୁଭୂତି ଦେଖାଇ କହୁଥିଲେ, ସାର୍ ! ଏ ଘର ଛାଡ଼ିଦିଅନ୍ତୁ । ଏଇଟା ଗୋଟାଏ ଭୂତ କୋଠି । ପେଚାର ଘର । ଏଠାରେ କ'ଣ ମଣିଷ ରହନ୍ତି ? ପ୍ରଥମେ ମନରେ ଭୟ ଆସୁଥିଲା, ପରେ ଦେହସୁହା ହୋଇଗଲା । ସେଠାରେ ରହିଥିଲି ଦୁଇଟି ବର୍ଷ । ଅବଶ୍ୟ ଜଣେ ତରୁଣ ସହକର୍ମୀ ସହକାରୀ ତତ୍ତ୍ୱାବଧାରକ ହୋଇ ମୋର ପାଖ ବଖରାରେ ରହିଥିଲେ ଅଳ୍ପଦିନ ପାଇଁ । ସେ ହେଲେ ନୂତନ ନିଯୁକ୍ତିପ୍ରାପ୍ତ ଗଙ୍ଗାଧର ଦାସ ଇତିହାସ ଅଧ୍ୟାପକ । କେତୋଟି ଦିନ ମଧ୍ୟରେ ଆମେ ଦୁହେଁ ଅତ୍ୟନ୍ତ ଘନିଷ୍ଠ ହୋଇଗଲୁ । ଏକାଠି ଭ୍ରମଣ, ହୋଟେଲ ଖିଆ, ସିନେମା ଦେଖା । ମାତ୍ର ଏ ସଖ୍ୟ ଥିଲା ଅଳ୍ପ କେତେମାସ ପାଇଁ । ଗଙ୍ଗାଧର ବାବୁ ପ୍ରଥମ ଶ୍ରେଣୀରେ ଏମ.ଏ. ଡିଗ୍ରୀ ହାସଲ କରିଥିଲେ । ସରକାରୀ କଲେଜରୁ ଚାଲିଗଲେ । ତା' ପରେ ପ୍ରଶାସନରେ ଯୋଗଦାନ କରି ଆଇ.ଏ.ଏସ. ଭାବରେ ଅବସର ଗ୍ରହଣ କରିଥିଲେ । ହଷ୍ଟେଲ ରହଣିର ଆଉ କେତେକଥା ପରେ ଆସିବ । ଏଥର କଲେଜକୁ ଫେରିଯାଏଁ ।

ଆମର ଓଡ଼ିଆ ସାହିତ୍ୟ ବିଭାଗରେ ମୋର ବରିଷ୍ଠ ଅଧ୍ୟାପକ ସହକର୍ମୀ ଥିଲେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଅଧ୍ୟାପକ ଶ୍ରୀଧର ଦାସ ଓ ଅଧ୍ୟାପକ ବନମାଳୀ ମିଶ୍ର । ଅଧ୍ୟାପକ ବାନାମ୍ବର ଆଚାର୍ଯ୍ୟ ଏହି କଲେଜ ପ୍ରତିଷ୍ଠା ବେଳର ଅଧ୍ୟାପକ ଥିଲେ । ୧୯୪୪ ମସିହାରୁ ସେ ପ୍ରଥମେ କେନ୍ଦୁଝର ସଂସ୍କୃତ ବିଦ୍ୟାଳୟରେ ପଣ୍ଡିତ ଥିଲେ ଏବଂ କେନ୍ଦୁଝର ଗ୍ରନ୍ଥମାଳାର ପାଣ୍ଡିତ୍ୟପୂର୍ଣ୍ଣ ସଂପାଦନା କରିଥିଲେ । ପ୍ରାଚୀ ସମିତିର ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ପଛକୁ ଗ୍ରନ୍ଥ ସଂପାଦନା କ୍ଷେତ୍ରରେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କୁ ସ୍ମରଣ କରାଯାଇପାରେ । ସେ ଥିଲେ ଜଣେ ଶକ୍ତିଶାଳୀ ପ୍ରାବନ୍ଧିକ ଓ ସାହିତ୍ୟ ସମାଲୋଚକ । ଓଡ଼ିଶାବିଖ୍ୟାତ ପଣ୍ଡିତ ନୀଳକଣ୍ଠ ଦାସ ପଣ୍ଡିତ ବାନାମ୍ବରଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । କଟକର ଅନେକ ବରେଣ୍ୟ ଅଧ୍ୟାପକ ଓ ବୁଦ୍ଧିଜୀବୀଙ୍କର ପଣ୍ଡିତ ମହାଶୟ ଥିଲେ ପରମବନ୍ଧୁ । ସେ ଆକାଶବାଣୀରେ ନିୟମିତ ସାହିତ୍ୟ ଆଲୋଚନାରେ ଅଂଶଗ୍ରହଣ କରୁଥିଲେ । କେନ୍ଦୁଝର ରାଜାଙ୍କର ସଭାପଣ୍ଡିତ ଭାବରେ ବହୁ ବର୍ଷ କାର୍ଯ୍ୟ କରିଥିବାରୁ ରାଜାଙ୍କୁ ପ୍ରଭାବିତ କରି ଖ୍ରୀଷ୍ଟ କଲେଜ ବି.ଏନ. ହଷ୍ଟେଲ ଘରଟି କରି ଦେଇଥିଲେ । ତେଣୁ ରାଜାଙ୍କ ନାମାନୁସାରେ ହଷ୍ଟେଲ ନାମିତ ହେଲା ବଳଭଦ୍ର ନାରାୟଣ ହଷ୍ଟେଲ । ବାନାମ୍ବର ବାବୁ କଲେଜରେ ଥିବା ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟରେ ପ୍ରତିନିଧିତ୍ୱ କରି ଆସିଥିଲେ । ପରେ ପଣ୍ଡିତ ମହାଶୟ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ ବିଶ୍ୱକୋଷ ସଂକଳନର ସହକାରୀ ସଂକଳକ ଥାଇ ଅବସର ଗ୍ରହଣ କରିଥିଲେ । ଡକ୍ଟର ମାୟାଧର ମାନସିଂହ ଥିଲେ ମୁଖ୍ୟ ସଂକଳକ ।

ଆମର ବିଭାଗୀୟ ମୁଖ୍ୟ ଥିଲେ ଅଧ୍ୟାପକ ଶ୍ରୀଧର ଦାସ । ଅଧ୍ୟକ୍ଷ ରେଭରେଣ୍ଡ ମହାନ୍ତିଙ୍କର ସେ ଥିଲେ କଲେଜ ପରିଚାଳନାରେ ଡାହାଣ ହାତ ସଦୃଶ । ଅଧ୍ୟାପନାର ଦାୟିତ୍ୱ ସହିତ କଲେଜର ଅନେକ ଆଫିସିକ କାର୍ଯ୍ୟରେ ଶ୍ରୀଧରବାବୁଙ୍କର କୁଶଳୀ ହାତର ସ୍ପର୍ଶ ରହିଥିଲା । ଶିକ୍ଷାବିଭାଗ ଓ ବିଶ୍ୱବିଦ୍ୟାଳୟର ନୀତିନିୟମ ବିଷୟରେ ସେ ଥିଲେ ଧୂରୀଣ ବ୍ୟକ୍ତି । ଅଧ୍ୟାପକ ଶ୍ରୀଧର ଦାସ ଦୀର୍ଘକାଳ ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଏବଂ

ବୌଦ ରାଜାଙ୍କର ଶିକ୍ଷାବିଭାଗ ଅଫିସର ଭାବରେ କାର୍ଯ୍ୟକରି ଶେଷରେ ଖ୍ରୀଷ୍ଟ କଲେଜରେ ଯୋଗ ଦେଇଥିଲେ । ଜଣେ ବୈୟାକରଣ ଓ ନାନା ଅଭିଧାନର ସଂକଳକ ଭାବରେ ସେ ଥିଲେ ସୁନାମଧନ୍ୟ । ଓଡ଼ିଆ, ଇଂରାଜୀ, ସଂସ୍କୃତ ସାହିତ୍ୟରେ ତାଙ୍କର ଅଧିକାର ବାରିହୋଇ ପଡୁଥିଲା । ଜଣେ ପାଠ୍ୟପୁସ୍ତକ ଲେଖକ ହିସାବରେ ସେ ଥିଲେ ସୁପ୍ରଚାରିତ ଓଡ଼ିଶାର ବିଦ୍ୟାଳୟ ସମୂହରେ । ସଂସ୍କୃତ ଓ ବିଶ୍ୱସାହିତ୍ୟର ଅନେକ ଉଲ୍ଲେଖନୀୟ ଗ୍ରନ୍ଥର ସେ ଥିଲେ ଓଡ଼ିଆ ଭାଷାରେ ଜଣେ ବିଶିଷ୍ଟ ଅନୁବାଦକ । ଏହି କର୍ମଯୋଗୀ ଅଧ୍ୟାପକ ଶତାଧିକ ପୁସ୍ତକର ପ୍ରଣେତା ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ତାଙ୍କ ପରି ପିତୃପ୍ରତିମ ସ୍ନେହୀ ଓ ସାହାଯ୍ୟକାରୀ ସହକର୍ମୀ ବାସ୍ତବିକ ଏ ଯୁଗରେ ବିରଳ । ସେହିପରି ମୋର ଉପରିସ୍ଥ ସହକର୍ମୀ ଥିଲେ ଅଧ୍ୟାପକ ବନମାଳୀ ମିଶ୍ର । ସେ ଥିଲେ ପଣ୍ଡିତ ନୀଳକଣ୍ଠ ଦାସଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଏବଂ ସ୍ନେହଭାଜନ । ତେଣୁ ପଣ୍ଡିତ ନୀଳକଣ୍ଠ ଓଡ଼ିଶା ବିଧାନସଭାର ବାଚସ୍ପତି ଆସନ ଅଳଂକୃତ କରିବାବେଳେ ବନମାଳୀବାବୁ ଆସେମ୍ବ୍ଲି ପ୍ରକାଶନର ସଂପାଦକ ପଦବୀ ମଣ୍ଡନ କରି ସେହିଠାରୁ ଅବସର ଗ୍ରହଣ କରିଥିଲେ । କେବଳ ଆମ ବିଭାଗର ନୁହେଁ, ଅଧ୍ୟାପକମାନଙ୍କ ବିଶ୍ରାମ କକ୍ଷରେ ପ୍ରତ୍ୟେକ ବିଭାଗର ବରିଷ୍ଠ ଓ କନିଷ୍ଠ ସହକର୍ମୀମାନଙ୍କ ମଧ୍ୟରେ ଏକ ସ୍ନେହପ୍ରବଣ କୁଟୁମ୍ବିତା ରାଜପଣ କରୁଥାଏ ।

ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ କେବଳ ରେଭେନ୍ସା କଲେଜ ଓ ଖ୍ରୀଷ୍ଟକଲେଜରେ ଓଡ଼ିଆ ସାହିତ୍ୟରେ ଅନର୍ସ ପାଠ୍ୟର ବ୍ୟବସ୍ଥା ରହିଥାଏ । ସୁନାମଧନ୍ୟ ଅଧ୍ୟାପକ ଓ ପଣ୍ଡିତ ଗୌରୀକୁମାର ବ୍ରହ୍ମା, ଅଧ୍ୟାପକ ବାନାମ୍ବର ଆଚାର୍ଯ୍ୟ, ଅଧ୍ୟାପକ ଶ୍ରୀଧର ଦାସଙ୍କ ପରି ବିଦ୍ୱାନ ଅଧ୍ୟାପକମାନଙ୍କ ଶିକ୍ଷାଦାନ ଯୋଗୁ ଓଡ଼ିଆ ଅନର୍ସ ପାଠପଢ଼ାର ଏକ ଗୌରବମୟ ପରଂପରା ସୃଷ୍ଟି ହୋଇଯାଇଥିଲା । ତେଣୁ ସେମାନେ ବିଦାୟ ନେଲା ପରେ ସୁଦ୍ଧା ବହୁବର୍ଷ ପର୍ଯ୍ୟନ୍ତ ଖ୍ରୀଷ୍ଟକଲେଜ ଓଡ଼ିଆ ଅନର୍ସ ପରୀକ୍ଷାଫଳରେ ପ୍ରଥମ କେତୋଟି ସ୍ଥାନ ଅଧିକାର କରି ଆସିଥିଲେ ।

ସେତେବେଳେ କେବଳ ଆର୍ଟସ ବିଲ୍ଡିଂ ସଗର୍ବରେ ମୁଣ୍ଡଟେକି ଦଣ୍ଡାୟମାନ । ସରକାରୀ ଚାକିରୀ କରିଥିବା ଅନେକ ବୟସ୍କ କର୍ମଚାରୀ ସୁଯୋଗ ଅଭାବରେ ଉଚ୍ଚଶିକ୍ଷାରୁ ବଞ୍ଚିତ ହୋଇଥିଲେ । ସକାଳୁଆ କଲେଜ ହେବାରୁ ଅଧିକାଂଶ ଅଫିସ କର୍ମଚାରୀ ଉଚ୍ଚଶିକ୍ଷା ଉଦ୍ଦେଶ୍ୟରେ ଏଠାରେ ଛାତ୍ର ହୋଇଥାଆନ୍ତି । ଅଧିକାଂଶ ଛାତ୍ର ହୁଏତ ମୋର ସମବୟସ୍କ ନଚେତ୍ ମୋଠାରୁ ବୟସରେ କିଞ୍ଚିତ ବଡ଼ । ତେଣୁ ଏହି ବୟସ୍କ ଛାତ୍ର ସମାଜର ଶ୍ରଦ୍ଧା, ସ୍ନେହ ଓ ସମ୍ମାନ ଆଦୌ ଭୁଲିବାର ନୁହେଁ । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଅପୂର୍ବ ବୁଝାମଣା ରାଜପଣ କରୁଥାଏ । କଲେଜର ଅନେକ ଅଭାବ ଅସୁବିଧା ରହିଥାଏ । କିନ୍ତୁ ଛାତ୍ର ଅଶାନ୍ତି ଥାଏ ସ୍ୱପ୍ନପ୍ରାୟ । ସମସ୍ତେ ନିଜନିଜ କର୍ତ୍ତବ୍ୟ ବିଷୟରେ ସଚେତନ । କାହାର ସମୟ ଅଛି ଛାତ୍ର ରାଜନୀତି କରି ନାମ କମାଇବା ପାଇଁ ।

ପ୍ରତ୍ୟେକ ପିରିୟଡ଼ ଥିଲା ପଞ୍ଚାବନ ମିନିଟ । ଏମ.ଆଇ.ଏଲ. କ୍ଲାସରେ ଛାତ୍ରଙ୍କ ସଂଖ୍ୟା ଆଜିକାଲି ପରି ୧୨୮ ସୀମିତ ନଥିଲା, ତାହା ଦେଢ଼ଶହରୁ ଅଧିକ ହୋଇଥାଏ ।

ପ୍ରତ୍ୟେକଟି ଟିଉଟୋରିଆଲ ପିରିୟଡ଼ରେ ପିଲାମାନେ ପ୍ରଶ୍ନର ଉତ୍ତର ଲେଖିବେ ଏବଂ ଅଧ୍ୟାପକ ଖାତା ସଂଶୋଧନ କରି ପିଲାମାନଙ୍କୁ ଖାତା ଫେରାଇଦେବେ । ଛାତ୍ରମାନଙ୍କର ନାନା ସନ୍ଦେହ ଦୂରୀକରଣରେ ମଧ୍ୟ ସାହାଯ୍ୟ କରିବାକୁ ହୁଏ । ତେଣୁ ଛାତ୍ରମାନଙ୍କ ସହିତ ଏକ ବୌଦ୍ଧିକ ସଂପର୍କ ଯୋଡ଼ି ହୋଇଯାଇଥାଏ ।

କଲେଜରେ ପ୍ରଥମ ଦିନରେ ଗୋଟିଏ ଅହେତୁକ ଦୁର୍ଘଟଣା ମନେପଡୁଛି । ବିଭାଗୀୟ ମୁଖ୍ୟ ମୋତେ ହଠାତ୍ ପଠାଇ ଦେଲେ ଚତୁର୍ଥବର୍ଷ କଳା ଶ୍ରେଣୀରେ ଫକୀରମୋହନଙ୍କ 'ମାମୁଁ' ଉପନ୍ୟାସ ଆଲୋଚନା କରିବାପାଇଁ । ସେହି କ୍ଲାସଟି ସେ ନେଉଥିଲେ । ମୋର ଆଦୌ ପ୍ରସ୍ତୁତି ନଥିଲା । ତଥାପି ଅତ୍ୟନ୍ତ ସଙ୍କୋଚ ମନରେ ବଡ଼ପିଲାଙ୍କର ଏହି ଶ୍ରେଣୀରେ ଠିଆହେଲି ଅଧ୍ୟାପକ ଭାବରେ । ଉପନ୍ୟାସରେ ଉତ୍ତରରାୟଙ୍କର ପୁଅ ନଟୁବାବୁ ମାଇନର ପାସ୍ କରିବାରୁ ଏକ ବ୍ରାହ୍ମଣ ଭୋଜନ ଦେଉଥାଆନ୍ତି । ଫକୀରମୋହନଙ୍କ ଥଟ୍ଟାଳି ଶୈଳୀକୁ ଉପଲକ୍ଷ୍ୟ କରି କହିଲି- କଥାରେ କହନ୍ତି-''ନୃତ୍ୟତି ଭୋଜନେ ବିପ୍ରା ମୟୂରା ମେଘଦର୍ଶନେ ।'' କଳାହାଣ୍ଡିଆ ବର୍ଷୁକ ମେଘ ଦେଖିଲେ ମୟୂର ଯେପରି ଆନନ୍ଦମନରେ ମତୁଆଲା ହୁଏ, ସେହିପରି ଭୋଜନ ନାଁ ଶୁଣିଲେ ବ୍ରାହ୍ମଣମାନେ କୁରୁଳି ଉଠନ୍ତି । ମୋ ଆଗଧାଡ଼ିରେ ବସିଥିବା ଜଣେ ବୟସ୍କ ଛାତ୍ର ପାଖ ସହପାଠୀକୁ ଚୁପ୍ କରି କହିଲା- ଏ ନୂଆ ସାର୍‌ଙ୍କର ଭାରି ବ୍ରାହ୍ମଣ ନିନ୍ଦା । ମୋ କାନ୍‌ରେ କଥାଟି ପଡ଼ିଲା । ଅତ୍ୟନ୍ତ ବିଚଳିତ ହେଲି । ପିଲାଟିର ଏପରି ଭୁଲଧାରଣା ହେଲା କାହିଁକି ? ନିଷ୍ପତ୍ତି କଲି, ଆଉଥରେ ଏ କ୍ଲାସଟି ନେଇ ପିଲାଟିର ଅନ୍ଧବୁଝାମଣା ଦୂର କରିବି । ଉପସ୍ଥାନ ଗ୍ରହଣ କଲାବେଳେ ପଛକୁ ଚାହିଁ ଦେଖିଲି, ପୁରୀ କଲେଜରେ ମୋ ସହିତ ଆଇ.ଏ. ପଢୁଥିବା ଜଣେ ସହପାଠୀ ବସିଛି । ବଡ଼ ସଙ୍କୋଚ ଅନୁଭବ କରୁଥାଏ । ଘଣ୍ଟା ବାଜିଲା ପରେ ପିଲାମାନେ ପ୍ରଥମେ ବାହାରି ଯିବାପାଇଁ ଅପେକ୍ଷା କଲି । କାରଣ ମୁଁ ଚାହୁଁଥିଲି ମୋର ସହପାଠୀ ସହିତ କଥା ହେବାପାଇଁ । ସେ ମଧ୍ୟ ଦୁଃଖରେ ଝାଉଁଳି ପଡ଼ିଥାଏ । ସବା ପଛଧାଡ଼ିରେ ଯାଇ ତାର ହାତକୁ ଟାଣି ଆଣିଲି । ସେ କହିଲା- ମୋର ଭାଗ୍ୟ ଖରାପ ହେତୁ ପୁରୀରେ ପଢ଼ା ଛାଡ଼ିଲି । ଏବେ କଟକରେ ଚାକିରୀ କରି ପଢୁଛି । ସହପାଠୀମାନଙ୍କ ଆଗରେ ସେ ଇଚ୍ଛା କରୁନଥିଲା ମୋ ସହିତ ତା'ର ପୂର୍ବରୁ ଅନ୍ତରଙ୍ଗ ସମ୍ପର୍କ ଅଛି ବୋଲି ଜଣାଇବାକୁ । ସେ କରଛଡ଼ା ଦେଇ ଆଗେଇ ଯିବାପୂର୍ବରୁ ଧୀର ସ୍ୱରରେ ମୋର ରହିବା ଠିକଣା ଦେଲି । ଆସିବାକୁ ଅନୁରୋଧ କଲି । ତା' ପରେ ମୋର ରହଣି ସ୍ଥାନରେ ଦୁଇ ସହପାଠୀଙ୍କର ଆଲୋଚନା ଜାରିରହେ ।

ଥରେ ଗୋଟିଏ ଟିଉଟୋରିଆଲ କ୍ଲାସରେ ଜାଣିବାକୁ ପାଇଲି, ସେମାନଙ୍କ ମଧ୍ୟରେ ଜଣେ ଛାତ୍ର ଭଲ ହସ୍ତରେଖା ପଢ଼ିପାରନ୍ତି । ହାତ ଦେଖାଇ ଭବିଷ୍ୟତ ବିଷୟରେ ଜାଣିବାର ଲୋଭ ସମ୍ବରଣ କରିପାରିଲି ନାହିଁ । ଅନୁରୋଧ କଲି, ମୋର ବସାଘରକୁ ଆସି ହସ୍ତରେଖା କଳନା କରିବା ପାଇଁ । ସେ ଜଣେ ବୟସ୍କ ଛାତ୍ର ଓ ସରକାରୀ ଚାକିରୀଆ । ତେବେ କଥାନୁସାରେ ରବିବାର ଦିନ ସକାଳେ ଆସି ପହଞ୍ଚିଲେ ମିଶନ ସ୍କୁଲର ସେହି ଏକାଟିଆ

ବିଶ୍ରାମ କକ୍ଷରେ । ଧରିଥିଲେ ଏକ ମ୍ୟାଗ୍ନିଫାଇଙ୍ଗ ଗ୍ଲାସ । ଅଳ୍ପ ସମୟ ଆଳାପ ପରେ ସେହି ବୟସ୍କଛାତ୍ର ସଙ୍କୋଚ ପରିହାର କରି ମୋର ଅନେକ ଗୋପନୀୟ କଥା ପ୍ରକାଶ କରିଥିଲେ । ହସ୍ତରେଖା ଅଧ୍ୟୟନ ଯେ ବିଜ୍ଞାନ ସମ୍ମତ, ଏଥିରେ ସନ୍ଦେହ ରହିଲା ନାହିଁ । ଏହି ପ୍ରସଙ୍ଗରେ ଆଉ ଏକ ଘଟଣା ମନେପଡୁଛି । ଏ ହେଉଛି ବିଂଶ ଶତାବ୍ଦୀର ଉତ୍ତର ସତୁରୀର କୌଣସି ଦିନ । ମୋର ବାସଭବନକୁ ଆସିଥିଲେ ସାହିତ୍ୟିକ ବନ୍ଧୁ ଗଣେଶ ପରିଜା ଝଙ୍କଡ଼ଠାରେ ଅନୁଷ୍ଠିତ ସାରଳା ଦାସଙ୍କ ଜୟନ୍ତୀ ଉତ୍ସବକୁ ବକ୍ତାଭାବରେ ନିମନ୍ତ୍ରଣ କରିବାପାଇଁ । ସେ ବନ୍ଧୁତାର ଅନୁରୋଧରେ ମୋର ହାତରେଖା ପାଠକରି କହିଲେ, ତୁମର ଏକ ପ୍ରମୋଶନ ଯୋଗ ଅଛି । ସେତେବେଳକୁ ମୁଁ ରିଡ଼ର ଓ ବିଭାଗୀୟ ମୁଖ୍ୟ ହୋଇ ସାରିଥାଏ । ଖ୍ରୀଷ୍ଟକଲେଜ ଖ୍ରୀଷ୍ଟିଆନ ଶିକ୍ଷାସମିତି ଦ୍ୱାରା ପ୍ରତିଷ୍ଠିତ ଓ ପରିଚାଳିତ ହେଉଥିବାରୁ ଏଠାରେ ସରକାରୀ କଲେଜ ଏବଂ ପରବର୍ତ୍ତୀ କାଳରେ ଘରୋଇ କଲେଜପରି ଟ୍ରାନ୍ସଫର ଲାଗୁ ହୁଏ ନାହିଁ । ଆମ କଲେଜରେ ଅଧ୍ୟକ୍ଷ ଆସନରେ ଜଣେ ଖ୍ରୀଷ୍ଟିଆନ ଶିକ୍ଷାବିତ୍ ଅଧ୍ୟକ୍ଷ ଆସନ ଅଳଙ୍କୃତ କରି ଆସୁଥିଲେ । କୌଣସି ଅଣଖ୍ରୀଷ୍ଟିଆନ ଅଧ୍ୟାପକ ଅଧ୍ୟକ୍ଷ ଦାୟିତ୍ୱ ସାମୟିକ ବହନ କରିବାରେ ଆପତ୍ତି ନଥାଏ । ତେଣୁ ଜଣେ ଅଣଖ୍ରୀଷ୍ଟିଆନ ଅଧ୍ୟାପକ ଅଧ୍ୟକ୍ଷ ଆସନରେ ସ୍ଥାୟୀ ଭାବରେ ଅବସ୍ଥାପିତ ହେବା ଥିଲା କଳ୍ପନାତୀତ । ବନ୍ଧୁ ଗଣେଶ ପରିଜାଙ୍କ ଭବିଷ୍ୟତବାଣୀକୁ ହସିହସି ଉଡ଼ାଇ ଦେଲି । ମାତ୍ର ଏହି ଘଟଣାର କେତୋଟି ବର୍ଷ ପରେ ସରକାର ମୋର ଇଚ୍ଛା ବିରୁଦ୍ଧରେ ବାଧ୍ୟ କରିଥିଲେ ଅଧ୍ୟକ୍ଷ ଆସନରେ ସ୍ଥାୟୀ ଭାବରେ ଅବସ୍ଥାପିତ ହେବାପାଇଁ । ସେହିଦିନଠାରୁ କଲେଜରେ ଏକ ନୂତନ ପରମ୍ପରା ଆରମ୍ଭ ହେଲା ଏବଂ ବରିଷ୍ଠତା ଭିତ୍ତିରେ କଲେଜ ଅଧ୍ୟାପକମାନେ ଏହି ଆସନ ଅଳଙ୍କୃତ କରି ଆସିଅଛନ୍ତି । ପରେ ସେ ଆଲୋଚନା ଆସିବ ।

ଲେଖିଥିଲି କଲେଜରେ ଯୋଗ ଦେଲା ଦିନ ହିଁ କଲେଜ ମୁଖପତ୍ରର ସଂପାଦକ ଦାୟିତ୍ୱ ଗ୍ରହଣ କରିଥିଲି । ପ୍ରଥମ କେତୋଟି ବର୍ଷ ଅନିୟମିତ ଭାବରେ ଯେଉଁ ମୁଖପତ୍ର ପ୍ରକାଶିତ ହୋଇଥିଲା, ତାର ନାଁ ଥିଲା ଖ୍ରୀଷ୍ଟିଆନ କଲେଜ ମେଗାଜିନ । ଏହାର ପ୍ରକାଶନ ମଧ୍ୟ ବନ୍ଦ ହୋଇଯାଇଥିଲା କୌଣସି କାରଣରୁ । ସ୍ୱାଧୀନତା ପ୍ରାପ୍ତି ପରେ ଖ୍ରୀଷ୍ଟିଆନ କଲେଜ ଖ୍ରୀଷ୍ଟକଲେଜ ନାମରେ ପରିଚୟ ଗ୍ରହଣ କଲା । ମୁଁ କଲେଜ ମୁଖପତ୍ରର ନାଁ ରଖିଲି ''ଉନ୍ମେଷ'' । ପ୍ରଥମ ବର୍ଷଟି ଏହି ନାମରେ ପତ୍ରିକା ପ୍ରକାଶିତ ହେଲା । ମାତ୍ର ସରକାରୀ ନିୟମ ଅନୁସାରେ ପତ୍ରିକାପାଇଁ ସରକାରଙ୍କ ଦପ୍ତରରୁ ଅନୁମତି ଗ୍ରହଣ କରିବାକୁ ହେବ । ଦରଖାସ୍ତ କରାଗଲା । ମାତ୍ର ସରକାରଙ୍କ ଘୋଷଣାନାମାରେ ମୁଖପତ୍ରର ନାମ ରହିଲା ''ସାନ୍ତ୍ୱନା'' । ଏହି ନାମ ଶୀର୍ଷକରେ ବୋଧହୁଏ ଦୀର୍ଘ ଦଶବର୍ଷ କାଳ କଲେଜ ମୁଖପତ୍ରର ସଂପାଦନା କରିଥିଲି । ଅପୂର୍ବ ଉତ୍ସାହ ଅନୁଭବ କରୁଥାଏ । ଛାତ୍ର ଜୀବନରୁ ଲେଖାଲେଖି କରି ଆସୁଥିବାରୁ ଛାତ୍ରମାନଙ୍କର ସ୍ନେହ ଦୃଷ୍ଟି ମଧ୍ୟ ରହିଥାଏ, ମୋ ଉପରେ । ସେ ସମୟରେ ଯେଉଁ ଛାତ୍ରମାନେ ''ସାନ୍ତ୍ୱନା'' ପୃଷ୍ଠାରେ ପ୍ରକାଶିତ ହୋଇଥିଲେ, ପରବର୍ତ୍ତୀକାଳରେ ସେମାନଙ୍କ ମଧ୍ୟରୁ କେତେଜଣ ଓଡ଼ିଆ ସାହିତ୍ୟରେ ଅତ୍ୟନ୍ତ ସୁପରିଚିତ ଓ ସୁବିଖ୍ୟାତ ହୋଇଛନ୍ତି । ମନେପଡୁଛି ଆମ ଓଡ଼ିଆ

ଅନର୍ସ କ୍ଲାସର ଅତ୍ୟନ୍ତ ବୁଦ୍ଧିମାନ ଛାତ୍ର ସୌଭାଗ୍ୟ ମିଶ୍ରଙ୍କ କଥା । ତାଙ୍କର ହାତଲେଖା କବିତା ପ୍ରଥମେ "ସାନ୍ତ୍ୱନା" ର ପୃଷ୍ଠାକୁ ଗୌରବାନ୍ୱିତ କରିଥିଲା ବୋଲି ଅନୁଭବ କରୁଛି । କାରଣ ପରବର୍ତ୍ତୀ କାଳରେ ସେ କେବଳ ଜଣେ ବିଖ୍ୟାତ ଇଂରାଜୀ ପ୍ରଫେସର ହୋଇ ନଥିଲେ, ସେ ସର୍ବଭାରତୀୟ ସ୍ତରରେ ଜଣେ ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ କବି ଭାବରେ ସୁନାମଧନ୍ୟ । ଆମ ସାହିତ୍ୟର ବିଖ୍ୟାତ ଔପନ୍ୟାସିକ ବିଭୂତି ପଟ୍ଟନାୟକ ଏକଦା କଲେଜରେ ଓଡ଼ିଆ ସମ୍ମାନ ଶ୍ରେଣୀର ଛାତ୍ର ଥିଲେ ଏବଂ "ସାନ୍ତ୍ୱନା" ର ପୃଷ୍ଠାକୁ ମଣ୍ଡନ କରିଥିଲେ । ସେହିପରି ପୂର୍ବତନ ଛାତ୍ର ଏବଂ ପରବର୍ତ୍ତୀ କାଳରେ ନିଜନିଜ କ୍ଷେତ୍ରରେ ସୁବିଖ୍ୟାତ ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ, କବି ଦୀପକ ମିଶ୍ର, ନାଟ୍ୟକାର ରତ୍ନାକର ଚଇନି, ଗବେଷକ ବାସୁଦେବ ସାହୁ, ସମାଲୋଚକ ରବୀନ୍ଦ୍ର କୁମାର ପ୍ରହରାଜ, ସଂକଳକ ଓ ସଂଗଠକ ଭୋଳାନାଥ ରାଉତ, ଔପନ୍ୟାସିକ-ଗାଳ୍ପିକ ଓ ସର୍ବଭାରତୀୟ ସ୍ତରରେ ଶିକ୍ଷକ ନେତା ଅବନୀ କୁମାର ବରାଳ, ଔପନ୍ୟାସିକ ନରସିଂହ ସାହୁ, ଔପନ୍ୟାସିକ ଦେବରାଜ ଲେଙ୍କା, ସମାଲୋଚକ ଅସିତ୍ କବି, ନାଟ୍ୟକାର ନୀଳାଦ୍ରିଭୂଷଣ ହରିଚନ୍ଦନ, ସମାଲୋଚକ ବୈଷ୍ଣବ ସାମଲ, ସମାଲୋଚକ ନବକିଶୋର ପୃଷ୍ଟି, କବି ମନୋରଞ୍ଜନ ମହାନ୍ତି, ଗବେଷକ କୁଳମଣି ରାଉତ, ସମାଲୋଚକ ବିଚିତ୍ରାନନ୍ଦ ମହାନ୍ତି, କବି ନୃସିଂହ ରଥ ପ୍ରଭୃତି ପ୍ରଥମେ "ସାନ୍ତ୍ୱନା" ପୃଷ୍ଠାରେ ଉଦ୍‌ଭାସିତ ହୋଇଥିଲେ । "ସାନ୍ତ୍ୱନା" ର ଅତୀତ୍ତପୃଷ୍ଠାକୁ ଆଜି ସ୍ମରଣ କଲେ ମନରେ ଅପୂର୍ବ ଆହ୍ଲାଦ ସୃଷ୍ଟି ହୁଏ ।

କଲେଜରେ ବହୁଦିନ ପର୍ଯ୍ୟନ୍ତ ଝିଅମାନେ ପାଠ ପଢ଼ିବା ଓ ଚାକିରୀ କରିବା ବାରଣ ଥିଲା । ଅବଶ୍ୟ ବର୍ତ୍ତମାନ ସେ ଅବସ୍ଥା ନାହିଁ । ସମସ୍ତ ପରମ୍ପରାକୁ ଭଗ୍ନ କରି ପ୍ରଥମେ ଆରତି ପାତ୍ର ଇତିହାସ ଅଧ୍ୟାପିକା ଭାବରେ ଯୋଗ ଦେଇଥିଲେ । ସେ ଥିଲେ ଜଣେ କୁଶଳୀ ଅଧ୍ୟାପିକା ଏବଂ ଛାତ୍ରସମାଜରେ ପ୍ରଶଂସାଭାଜନ ହୋଇଥିଲେ । ପରବର୍ତ୍ତୀକାଳରେ ସେ ସରକାରୀ କଲେଜରେ ଅଧ୍ୟାପିକା ଓ ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରି ଅବସର ଜୀବନଯାପନ କରୁଛନ୍ତି । ବିବାହ ପରେ ତାଙ୍କର ପରିଚୟ ହେଉଛି ଆରତି ମହାପାତ୍ର । ପ୍ରଥମେ ସେ ଯେଉଁ ଦୁଃସାହସିକତାର ପରିଚୟ ଦେଇଥିଲେ, ବର୍ତ୍ତମାନ ତାର ଫଳଶ୍ରୁତି ହେଲା କଲେଜରେ ସହଶିକ୍ଷାର ପ୍ରଚଳନ ସହିତ ଆଶାତୀତ ଅଧ୍ୟାପିକା କର୍ମରତ ହେବାର ପରଂପରା । କଲେଜରେ ଝିଅ ପଢୁ ନଥିବାରୁ ସେକାଳରେ ଯେଉଁ ନାଟକ ଅଭିନୀତ ହେଉଥିଲା କଲେଜ ନାଟ୍ୟସଂସ୍ଥା ଆନୁକୂଲ୍ୟରେ, ସେଥିରେ କୌଣସି ପ୍ରକାର ନାରୀମାନଙ୍କର ଭୂମିକା ରହୁନଥିଲା । ଏକଦା ଏହି ନାଟ୍ୟସଂସ୍ଥାରେ ଛାତ୍ର ଭାବରେ ଅଭିନୟ କରିଥିବା ଅନେକ ଛାତ୍ର ଚଳଚ୍ଚିତ୍ର, ଆକାଶବାଣୀ ଓ ଦୂରଦର୍ଶନରେ ଉଚ୍ଚକୋଟୀର କଳାକାର ରୂପେ ସ୍ୱୀକୃତି ଅର୍ଜନ କରିଅଛନ୍ତି ।

୧୯୫୫ ମସିହାରେ ଦଳେଇଘାଇ ଭାଙ୍ଗିଯାଇ କଟକ ଜିଲ୍ଲାରେ ପ୍ରଳୟଙ୍କର ବନ୍ୟାର ବିଭୀଷିକା ଦେଖିବାକୁ ମିଳିଲା । ଆଖିପିଛୁଳାକେ ଅସଂଖ୍ୟ ଗ୍ରାମ ଜଳମଗ୍ନ ହୋଇଗଲା । ଗ୍ରାମବାସୀ ଜନସାଧାରଣ ବାସସ୍ଥାନ ହରାଇବା ସହିତ ହା ଅନ୍ନ ହା ଅନ୍ନ ସଙ୍କଟରେ

ଘାଣ୍ଟିହେଲେ । କଲେଜର ସର୍ବକନିଷ୍ଠ ଅଧ୍ୟାପକ ହେଲେ ହେଁ ଅଧ୍ୟକ୍ଷଙ୍କ ଆଦେଶରେ ମୋର ନେତୃତ୍ୱରେ ବାରଜଣ ଛାତ୍ର ଦୀର୍ଘ ପନ୍ଦରଦିନ କାଳ ବନ୍ୟା ଅଂଚଳରେ ଢେନାପୁର ଡ଼ାକବଙ୍ଗଳାକୁ ଆଶ୍ରୟ କରି ସେବାକାର୍ଯ୍ୟ କରିଥିଲେ । ମୁଁ ଖୋର୍ଦ୍ଧା ଅଂଚଳର ହୋଇଥିବାରୁ ବନ୍ୟାର ପ୍ରକୋପ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞଥିଲି । ଅବଶ୍ୟ ସ୍କୁଲରେ ପାଠ ପଢ଼ିଲାବେଳେ ଭାର୍ଗବୀ ଓ ଦୟାନଦୀର ବନ୍ୟାରେ ପୁରୀ ସଦର ଅଂଚଳ ବନ୍ୟାଞ୍ଚଳରେ ସେବା କରିବାର ସୁଯୋଗ ପାଇଥିଲି । କିନ୍ତୁ ଦଳେଇଘାଇ ଜନିତ ବନ୍ୟା ମହାପ୍ରଳୟର ସମ୍ଭାବନା ସୃଷ୍ଟି କରିଥିଲା । ମାଇଲ ମାଇଲ ବ୍ୟାପି ସବୁଜିମା ପରିପୂର୍ଣ୍ଣ ଚାଷଜମିରେ ବାଲି ମାଡ଼ି ଯାଇ ମରୁଭୂମିର ଦୃଶ୍ୟ ସୃଷ୍ଟି କରିଥାଏ । ଏ ପ୍ରକାର ଭୟଙ୍କର ଦୃଶ୍ୟ ଥିଲା ମୋର କଳ୍ପନାତୀତ । ଗ୍ରାମେ ଗ୍ରାମେ ସରକାରୀ ଚାଉଳ ବଣ୍ଟନବେଳେ ସର୍ବହରା କୃଷକମାନଙ୍କୁ ପଚାରି ବୁଝୁଥିଲି ସେମାନଙ୍କର ମାନସିକ ଅବସ୍ଥା । ଆଜୀବନ ବନ୍ୟା ଓ ମରୁଡ଼ିର ପ୍ରକୋପ ସହ୍ୟକରି ଆସିଥିବାରୁ ସେମାନେ ଆଦୌ ଭାଙ୍ଗି ପଡ଼ି ନଥିଲେ । ଏ ପ୍ରକାର ପ୍ରାକୃତିକ ଦୁର୍ଘଟଣା ଥିଲା ସେମାନଙ୍କର ଦେହସୁହା । ସେହି ବାଲୁକା ପ୍ରାନ୍ତରରେ ଧାନ ପରିବର୍ତ୍ତେ ସେମାନେ ଅନ୍ୟାନ୍ୟ ଅର୍ଥକାରୀ ରବିଫସଲ ଅମଳ କରିବେ ବୋଲି ସାହସ ବାନ୍ଧି ବସିଥାଆନ୍ତି । ତେବେ ଏହି ସରକାରୀ ସାହାଯ୍ୟ ଗ୍ରାମବାସୀଙ୍କର କେତେକ କ୍ଷେତ୍ରରେ ନୈତିକ ଅଧଃପତନ ପାଇଁ କାରଣ ହୋଇଥିଲା । ନଥିଲା ଲୋକମାନେ ସାହାଯ୍ୟ ନେବାପାଇଁ ହକଦାର । ମାତ୍ର ଗ୍ରାମର ସ୍ୱଚ୍ଛଳ ଲୋକମାନେ ମଧ୍ୟ ସମସ୍ତ ଲଜ୍ଜା ସଙ୍କୋଚ ପରିହାର କରି କାନି ପତାଇ ରିଲିଫ୍ ଚାଉଳ ଗ୍ରହଣ କରୁଥିବାର ଦେଖିଛି । ୧୦/୧୫ଟି ଗ୍ରାମ ମଧ୍ୟରେ କେବଳ ଜଣେ ମୁସଲମାନ ବୃଦ୍ଧ ବ୍ୟକ୍ତି ନିଜଆଡୁ ସାହାଯ୍ୟ ଗ୍ରହଣ ନକରି ତାଙ୍କ ଭାଗର ଚାଉଳ କୌଣସି ଅସହାୟ ବୁଢ଼ୀକୁ ଦେବାକୁ ପ୍ରାର୍ଥନା କରିଥିଲେ । ସେଦିନ ସେହି ତରୁଣ ବୟସରେ ଅନୁଭବ କଲି, ଏବେ ମଧ୍ୟ ଆଲୋକର ଶିଖା ନିର୍ବାପିତ ହୋଇଯାଇ ନାହିଁ ।

ସେତେବେଳେ କଲେଜରେ କୌଣସି ପ୍ରାଚୀରର ଘେର ନଥିଲା । ଚାରିଆଡ଼େ ଖୋଲା ରହିଥାଏ । ସାହି ବସ୍ତିର ଲୋକମାନେ କଲେଜ ପଡ଼ିଆ ଅତିକ୍ରମ କରି ଯିବାଆସିବା କରୁଥାଆନ୍ତି । କଲେଜର ବାରଣ୍ଡାରେ ସଜ୍ଜିତ ଅନେକ ଫୁଲକୁଣ୍ଡରେ ବର୍ଷସାରା ଫୁଲ ଫୁଟୁଥାଏ । ତାର ଜାଲି ଦିଆଯାଇ କଲେଜ ଆଗରେ ନାନାପ୍ରକାର ଫୁଲର ଲଟା ମଡ଼ାଯାଇ ଶୋଭା ପାଉଥାଏ । ଛାତ୍ର, ପଥଚାରୀ, ମେଣ୍ଢା, ଛେଳି ଅଥବା ଗୋରୁଗାଈ କେହି ଏହି ଫୁଲଗଛ ନଷ୍ଟ କରିବା ଶୁଣା ନଥିଲା । ତେଣୁ ଦୁଃଖ ହୁଏ ସେହି ଦିନର ଅନୁଭବକୁ ସ୍ମରଣ କରି । କୁଆଡ଼େ ହଜିଗଲା ସେହି ନିଷ୍ଠା ଓ ଜାତୀୟ ଚରିତ୍ର ।

ଏଥର ଫେରିଆସୁଛି ଅଧ୍ୟାପନା କ୍ଷେତ୍ରକୁ । ସେତେବେଳେ କେବଳ ରେଭେନ୍ସା କଲେଜ ଓ ଖ୍ରୀଷ୍ଟ କଲେଜରେ ଓଡ଼ିଆ ସାହିତ୍ୟରେ ଅନର୍ସ ପାଠ୍ୟକ୍ରମର ବ୍ୟବସ୍ଥା ରହିଥିଲା । ତେଣୁ ଏହି କଲେଜରେ ଓଡ଼ିଆ ବିଭାଗରେ ସର୍ବକନିଷ୍ଠ ଅଧ୍ୟାପକ ହେଲେହେଁ ଅନର୍ସ କ୍ଲାସ ନେବାର ଦାୟିତ୍ୱ ଆପେଆପେ ଆସିଗଲା । ତେଣୁ ପ୍ରଥମ ଦିନରୁ କଠୋର ପରିଶ୍ରମ କରି ନିର୍ଦ୍ଦିଷ୍ଟ

ପାଠ୍ୟ ବିଷୟରେ ପ୍ରସ୍ତୁତ ହେଲା ପରେ କ୍ଲାସକୁ ଯାଏ । ଅଧିକାଂଶ ଛାତ୍ର ବୟସ୍କ ଏବଂ ଚାକିରୀଆ । ସେମାନେ ଅଭିଜ୍ଞ । ତାଙ୍କର ମନକୁ ଘେନିଲା ପରି ଅଧାପନା ନ କଲେ, ସେମାନଙ୍କର ଅନୁସନ୍ଧିତ୍ସୁ ପ୍ରଶ୍ନ ସମୂହର ସମୁଚିତ ଉତ୍ତର ଦେଇ ନ ପାରିଲେ ଉପହସିତ ହେବାକୁ ହେବ । ଏହା ଥିଲା ଏକ ପ୍ରକାର ଆହ୍ୱାନ । କୌଣସି ବିଷୟରେ ସନ୍ଦେହ ହେଲେ ବିଦ୍ୱାନ ତଥା ବରିଷ୍ଠ ସହକର୍ମୀ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଏବଂ ଅଧାପକ ଶ୍ରୀଧର ଦାସଙ୍କ ଘରକୁ ଯାଇ ପଠିତବ୍ୟ ବିଷୟରେ ସନ୍ଦେହ ଦୂର କରିଥାଏ । ସେତେବେଳେ ରେଭେନ୍ସା କଲେଜରେ ଅଧାପକ ଥାଆନ୍ତି ମୋର ଶିକ୍ଷାଗୁରୁ ଗୌରୀକୁମାର ବ୍ରହ୍ମା । ସେ ଦରଘାବଜାରରେ ଭଡ଼ାଘରେ ରହୁଥାଆନ୍ତି । ଅଧିକାଂଶ ସଂଧ୍ୟାରେ ସାରଙ୍କ ପାଖକୁ ଯାଏ ନାନା ପ୍ରଶ୍ନର ସମାଧାନ ଶିକ୍ଷା କରିବା ପାଇଁ । ଅକୁଣ୍ଠଚିତ୍ତରେ ଅଧାପକ ବ୍ରହ୍ମା ଘଣ୍ଟାଘଣ୍ଟା ଧରି ମୋତେ ବୁଝାଇ ଦେବାରେ ଆଦୌ କ୍ଲାନ୍ତି ଅନୁଭବ କରନ୍ତି ନାହିଁ । ଏହିପରି ଅକାତର ଭାବରେ ସାହାଯ୍ୟ କରିବା ଅଧାପକ ଏ ଯୁଗରେ ବିରଳ ହୋଇଯାଉଛନ୍ତି । ନିର୍ଦ୍ଦିଷ୍ଟ ପାଠ୍ୟବିଷୟକୁ ଅଧିକ ମନୋଜ୍ଞ ତଥା ଆକର୍ଷଣୀୟ କରିବା ପାଇଁ ନାନା ଗ୍ରନ୍ଥରୁ ଉଦାହରଣ ପରିବେଷଣ କରେ । ବିଶେଷତଃ ଅନର୍ସ ଶ୍ରେଣୀରେ କୌଣସି ବିଷୟରେ ଚର୍ଚ୍ଚା କଲାବେଳେ ପୁସ୍ତକଗତ ପ୍ରସଙ୍ଗର ସମୀକ୍ଷା କରିବା ସଙ୍ଗେ ସଙ୍ଗେ ଅତୀତର ସାହିତ୍ୟ ପତ୍ରିକାମାନଙ୍କରେ ପ୍ରକାଶିତ ଉଚ୍ଚକୋଟୀର ସମାଲୋଚନାର ତୁଳନାତ୍ମକ ବିଚାର ମଧ୍ୟ ଉପସ୍ଥାପନ କରିଥାଏ । ଚେଷ୍ଟା କରୁଥାଏ, କିଛି ନୂତନ ଦିଗ୍‌ଦର୍ଶନ ଦେବାପାଇଁ । ଲକ୍ଷ୍ୟ କରିଚି, ପିଲାମାନେ ଆଗ୍ରହର ସହିତ ମୋତେ ଗ୍ରହଣ କରୁଥିଲେ ଶ୍ରେଣୀକକ୍ଷରେ । ତେଣୁ ମୋର ଆନନ୍ଦର ସୀମା ନଥାଏ । ଅନର୍ସ ଅଧୟନ କରୁଥିବା ପିଲାମାନଙ୍କ ପାଇଁ ମୋର ବସାଘର ଥାଏ ଅବାରିତ । କଲେଜ ସମୟ ବାହାରେ ସେମାନେ ଆସି ମୋର ବସାଘରେ ସନ୍ଦେହ ଦୂର କରୁଥିଲେ । ଘଣ୍ଟାଘଣ୍ଟା ଧରି ସ୍ୱତନ୍ତ୍ର କ୍ଲାସ ନେବାରେ ମୋର ଆଦୌ କ୍ଲାନ୍ତି ନଥିଲା । ଏହି ଧାରା ଅକ୍ଷୁର୍ଣ୍ଣ ରହିଥିଲା ୧୯୮୨ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ । ଅଧକ୍ଷ ଦାୟିତ୍ୱ ନେଲା ପରେ ଅନର୍ସ କ୍ଲାସ ନେଉଥିଲେ ହେଁ ଆଉ ସ୍ୱତନ୍ତ୍ର କ୍ଲାସ ନେବା ସମ୍ଭବ ହେଲାନାହିଁ ଦାୟିତ୍ୱର ଚାପରେ । ଅନର୍ସ ପିଲାମାନଙ୍କ ସହିତ ଏତେ ନିକଟ ସଂପର୍କ ସତ୍ୱେ କେଜାଣି କିପରି ଏକ ଦୂରତ୍ୱ ରଖି ଚଳୁଥିଲି । କେବଳ ପାଠ ଆଲୋଚନା ବ୍ୟତୀତ ପିଲାମାନେ ମୋ ସହିତ ଅନ୍ୟ ବିଷୟରେ ମିଶୁ ନଥିଲେ, ଅଥବା ସେପରି ସୁଯୋଗ ଦେଇପାରୁ ନଥିଲି । ସକାଳୁଆ କଲେଜ ହେଉଥିବାରୁ ଅନେକ ସମୟରେ ରେଭେନ୍ସା କଲେଜରେ ଓଡ଼ିଆ ଅନର୍ସ ଅଧୟନ କରୁଥିବା କେତେକ ଛାତ୍ର ମୋର ଅନୁମତି ନେଇ କ୍ଲାସରେ ଯୋଗ ଦେଉଥିଲେ । ଏଥିପାଇଁ ଅତ୍ୟନ୍ତ ସାବଧାନ ହୋଇ ମୋତେ ପଢ଼ାଇବାକୁ ହେଉଥିଲା । କାରଣ ଏହି ପିଲାମାନେ ହିଁ ଆମର ସୁନାମ ଅଥବା ଦୁର୍ନାମର କାରଣ ହେବେ ।

ପୁରୀ କଲେଜରେ ଛାତ୍ର ଥିଲାବେଳେ ବନ୍ଧୁମାନଙ୍କ ମେଳରେ ଗୋଟିଏ ସାହିତ୍ୟ ଅନୁଷ୍ଠାନ କରିଥିଲି ତରୁଣ ସାହିତ୍ୟ ମନ୍ଦିର ନାମରେ । ଏହି ଅନୁଷ୍ଠାନର ପ୍ରଥମ ସଂପାଦକ ଓ ପରେ ସଭାପତି ହୋଇଥିଲି । ପୁରୀ ଛାଡ଼ି କଟକରେ ଛାତ୍ର ହେଲାପରେ ଏହି ଅନୁଷ୍ଠାନ

ଅକାଳରେ ମୃତ୍ୟୁବରଣ କଲା । ଏହି ଅନୁଷ୍ଠାନ ଆନୁକୂଲ୍ୟରେ ''ତରଙ୍ଗ'' ନାମରେ ଏକ ଗଳ୍ପ ସଂକଳନ ପ୍ରକାଶିତ ହୋଇଥିଲା । କିନ୍ତୁ ''ପ୍ରଭାତୀ'' ଶୀର୍ଷକରେ ଏକ ହାତଲେଖା ମେଗାଜିନ କେତେ ବର୍ଷଧରି ଆତ୍ମପ୍ରକାଶ କରିଥିଲା ଆମ୍ଭମାନଙ୍କ ଉଦ୍ୟମରେ ।

ଖ୍ରୀଷ୍ଟ କଲେଜରେ ପ୍ରଥମେ ଯେଉଁ ଚାରୋଟି ମାସ ଅଧ୍ୟାପକ ଥିଲି ୧୯୫୧ ସାଲରେ, ସେତେବେଳେ କେତେଜଣ ଉତ୍ସାହୀ ଛାତ୍ରଙ୍କୁ ନେଇ ଗଠନ କରିଥିଲି ଅଭ୍ୟୁଦୟ ପାଠଚକ୍ର । କଲେଜ ଛାଡ଼ି ଦେବାରୁ ଏହି ଅନୁଷ୍ଠାନ ଆଉ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ପୁନର୍ବାର ଏହି କଲେଜରେ ଅଧ୍ୟାପକ ଜୀବନ ଆରମ୍ଭ ହେବାରୁ ମନ ଉଚ୍ଚାଟ ହେଲା କେତେଜଣ ସାହିତ୍ୟପ୍ରାଣ ଛାତ୍ରଙ୍କୁ ନେଇ 'ଅଭ୍ୟୁଦୟ ସାହିତ୍ୟସମାଜ' ଗଠନ କରିବା ପାଇଁ । ତାହାହିଁ ହେଲା । ସତୀ ଚଉରାର ନିର୍ଜନ ଉପକଣ୍ଠରେ ଅଥବା ଟାଉନହଲ ଭଡ଼ା ନିଆଯାଇ ଆଲୋଚନା ସଭାର ଆୟୋଜନ କରାଗଲା । ଏହି ଅନୁଷ୍ଠାନରେ ବିଶେଷ ଭାବରେ ଉତ୍ସାହ ପ୍ରଦର୍ଶନ କରିଥିଲେ ଛାତ୍ରଥିବା ଭୋଳାନାଥ ରାଉତ, ରବୀନ୍ଦ୍ର କୁମାର ପ୍ରହରାଜ, ବାସୁଦେବ ସାହୁ, ନଗେନ୍ଦ୍ର ନାଥ ପ୍ରଧାନ, ବଳରାମ ଦାସ, ସଦାନନ୍ଦ ଜେନାମଣି, ନବକିଶୋର ପୃଷ୍ଟି, କୃଷ୍ଣଚନ୍ଦ୍ର ମହାନ୍ତି, ବିଜୟାନନ୍ଦ ଦାସ, ଗଙ୍ଗାଧର ନନ୍ଦ, ବ୍ରହ୍ମାନନ୍ଦ ସିଂହ, ଯତୀନ୍ଦ୍ରନାଥ ମହାନ୍ତି ପ୍ରଭୃତି । ଏମାନେ ସମସ୍ତେ ପରବର୍ତ୍ତୀ କର୍ମମୟ ଜୀବନରେ ସଫଳତା ଅର୍ଜନ କରି ଯଶସ୍ୱୀ ହେବା ସହିତ ଅବସର ଜୀବନଯାପନ କରୁଛନ୍ତି । ମୋ ସଭାପତିତ୍ୱରେ ଏହି ଅନୁଷ୍ଠାନର ଦୁଇଜଣ କର୍ମଠ ସଂପାଦକ ଥିଲେ ଭୋଳାନାଥ ଓ ରବୀନ୍ଦ୍ର କୁମାର । କେବଳ ସାହିତ୍ୟ ଆଲୋଚନା ସଭାରେ ସୀମିତ ନରଖି କିଛି ଅଭିନବ ପ୍ରକାଶନ ପାଇଁ ଉଦ୍ୟମ ଆରମ୍ଭ ହେଲା । ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଶତବାର୍ଷିକୀ ଉତ୍ସବ ପାଳନ ଅବସରରେ ଆମ ଅନୁଷ୍ଠାନ ଆନୁକୂଲ୍ୟରେ ପ୍ରକାଶ ପାଇଲା 'ମେହେର ଆଲୋକ' ଗଙ୍ଗାଧରଙ୍କ ସାହିତ୍ୟର ନୂତନ ଦିଗ୍‌ଦର୍ଶନ ପ୍ରଦର୍ଶନ କରି । ଏହି କ୍ଷେତ୍ରରେ ଆମର ଶିଶୁ ଅନୁଷ୍ଠାନ ଅଗ୍ରଣି ଭୂମିକା ଗ୍ରହଣ କରିଥିଲା । ପରବର୍ତ୍ତୀ ପ୍ରକାଶନ ହେଲା ''ସାହିତ୍ୟରେ ରହସ୍ୟବାଦ ।'' ଏଥିରେ ଓଡ଼ିଆ, ବଙ୍ଗଳା, ହିନ୍ଦୀ, ପାର୍ସି ଏବଂ ଇଂରାଜୀ ପ୍ରଭୃତି ବିଭିନ୍ନ ସାହିତ୍ୟରେ କିପରି ରହସ୍ୟବାଦ ପ୍ରତିଫଳିତ, ତାହାର ଆଲୋଚନା କରାଯାଇଛି । ଓଡ଼ିଆ ପ୍ରକାଶନ ଇତିହାସରେ ତାହାହିଁ ପ୍ରଥମ ଓ ଶେଷ ଉଦ୍ୟମ । ଆଲୋଚନା ପ୍ରସଙ୍ଗରେ ମନକୁ ଆସିଲା, ଓଡ଼ିଆ ଉପନ୍ୟାସର ଅର୍ଦ୍ଧଶତାବ୍ଦୀର ସୃଷ୍ଟିଧର୍ମକୁ ଆଲୋକକୁ ଆଣିବାପାଇଁ । ଏତେବେଳକୁ ଏହି ପୂର୍ବତନ ଛାତ୍ରମାନେ କଲେଜ ପରିତ୍ୟାଗ କରି ବିଭିନ୍ନ କର୍ମକ୍ଷେତ୍ରରେ ଯୋଗ ଦେଇସାରିଲେଣି । ତଥାପି ସଂପର୍କ ଅବ୍ୟାହତ ରହିଥାଏ । ଦୀର୍ଘ ପାଞ୍ଚବର୍ଷର ପରିଶ୍ରମର ଫଳଶ୍ରୁତି ହେଲା ୧୯୬୯ ରେ ପ୍ରକାଶିତ ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ ରୟାଲ ସାଇଜର ଦୀର୍ଘ ସାତଶହ ପୃଷ୍ଠାବ୍ୟାପୀ ଏହି ପୁସ୍ତକର ମୁଖବନ୍ଧ ଲେଖିଥିଲେ ବରେଣ୍ୟ ଔପନ୍ୟାସିକ କାହ୍ନୁଚରଣ ମହାନ୍ତି । ମୋ ଦ୍ୱାରା ଲିଖିତ ଓଡ଼ିଆ ଉପନ୍ୟାସର ଯୁଗରୁଚି ଓ ଶିଳ୍ପରୀତି ସହିତ କ୍ରମିକ ଧାରା ସଂପର୍କରେ ଏକ ଦୀର୍ଘ ଆଲୋଚନା ପୁସ୍ତକର ପ୍ରଥମରୁ ପ୍ରଦତ୍ତ ହୋଇଥିଲା । ପ୍ରାୟ ୫୦ଜଣ ଔପନ୍ୟାସିକଙ୍କ ବିଷୟରେ ବିଷଦ

ଆଲୋଚନା ଲେଖିଥିଲେ ଓଡ଼ିଶାର ସର୍ବାଞ୍ଚଳର ଅନେକ ବ୍ରେଣ୍ୟ ସାହିତ୍ୟ ଅଧ୍ୟାପକ ଓ ଆଲୋଚକ । ଏହି ପ୍ରକାର ଉଦ୍ୟମ ଓଡ଼ିଆ ସାହିତ୍ୟରେ ସର୍ବପ୍ରଥମ ଥିଲା । କିଛି କାଳ ପରେ ବିଭିନ୍ନ କର୍ମକ୍ଷେତ୍ରରେ ସଭ୍ୟମାନେ ବିଚ୍ଛିନ୍ନ ହୋଇପଡ଼ିବା ଯୋଗୁ ଅଭ୍ୟୁଦୟ ସାହିତ୍ୟସମାଜ ଆଉ କ୍ରିୟାଶୀଳ ହୋଇପାରିଲା ନାହିଁ । ତେବେ ଅବସର ଗ୍ରହଣ କଲାପରେ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଲେଖନୀ ଚାଳନା କରିଥିବା ଔପନ୍ୟାସିକମାନଙ୍କର ସ୍ୱତନ୍ତ୍ର ଆଲୋଚନାର ସଂକଳନ ମୋ ଦ୍ୱାରା ସମ୍ଭବ ହୋଇଥିଲା ଉପନ୍ୟାସ ସାହିତ୍ୟର ପରିଚୟ ଦ୍ୱିତୀୟ ଖଣ୍ଡରେ ।

ଧୀରେଧୀରେ ଓଡ଼ିଆ ସାହିତ୍ୟ ବିଭାଗର କଳେବର ବୃଦ୍ଧି ହେଉଥାଏ । ଅଧ୍ୟାପକ ବାନାମ୍ବର ଆଚାର୍ଯ୍ୟ ଓ ଅଧ୍ୟାପକ ବନମାଳୀ ମିଶ୍ର ବିଦାୟ ନେଲେ ଅନ୍ୟ କର୍ମକ୍ଷେତ୍ରର ଆହ୍ୱାନରେ । ନୂତନ ଅଧ୍ୟାପକ ଆସିଲେ ରଙ୍ଗାଧର ଷଡ଼ଙ୍ଗୀ, ବିଜୟ ମହାପାତ୍ର ଓ ଦେବେନ୍ଦ୍ର ମହାନ୍ତି । ଇତିହାସ ବିଭାଗରେ ଯୋଗ ଦେଇଥାନ୍ତି ଶରତଚନ୍ଦ୍ର ବେହେରା । ଆମେ ଏହି କନିଷ୍ଠ ଅଧ୍ୟାପକ କେତେଜଣ ପ୍ରଥମେ ଭୋଜିର ଆୟୋଜନ କଲୁ । ଅଧ୍ୟାପିକା ଆରତି ପାତ୍ର ତାଙ୍କ ଘରେ ଭୋଜିପାଇଁ ନିମନ୍ତ୍ରଣ କଲେ ପ୍ରଥମେ । ତା' ପରେ ଶରତବାବୁ, ବିଜୟବାବୁ, ରଙ୍ଗାଧରବାବୁ ଓ ଆମ ଘରେ ଏକାଠି ହୋଇ ଭୋଜି ଖାଇବାର ପରମ୍ପରା ସୃଷ୍ଟି ହେଲା । ସମୟକ୍ରମେ ଆରତି ପାତ୍ର, ଶରତ ବେହେରା କଲେଜରୁ ବିଦାୟ ନେଲେ ଅନ୍ୟ ସଂସ୍ଥାର ଆମନ୍ତ୍ରଣରେ । ତେବେ କାଳକ୍ରମେ ଆମର ଭୋଜିସଭାର ପରିବାର ବୃଦ୍ଧିଲାଭ କରୁଥାଏ । ଏଥିରେ ଆମ ଓଡ଼ିଆ ସାହିତ୍ୟ ବିଭାଗର ମୋ ସହିତ ବିଜୟବାବୁ, ଦେବେନ୍ଦ୍ରବାବୁ, ମୃତ୍ୟୁଞ୍ଜୟ ବାବୁ ଓ ଚନ୍ଦ୍ରବାବୁ, ଦର୍ଶନ ବିଭାଗର ବିରଞ୍ଚି ନାରାୟଣ ସାହୁ, ଇତିହାସ ବିଭାଗର ସୁଧାଂଶୁ ମହାପାତ୍ର, ଅଙ୍କ ବିଭାଗର ଗଙ୍ଗାଧର ନାୟକ, ଅର୍ଥନୀତି ବିଭାଗର ଦୟାନିଧି ସାମନ୍ତରାୟ ଓ ଇଂରାଜୀ ବିଭାଗର ଗଦାଧର ମିଶ୍ର ପ୍ରଭୃତି ଥିଲେ ଉତ୍ସାହୀ ସଭ୍ୟ । ବହୁ ବର୍ଷ ଧରି ଏହି ବନ୍ଧୁମାନେ ପ୍ରତିମାସରେ ଏକାଠି ହୋଇ ଭୋଜିର ଆୟୋଜନ କରି ଉପଭୋଗ କରୁଥିଲେ । ଏକପ୍ରକାର ସସ୍ନେହ କୁଟୁମ୍ବିତାର ଡ଼ୋରୀ ସମସ୍ତଙ୍କୁ ଏକାଠି କରିପାରିଥିଲା, ଆମ ଦଳ ଅବସର ନେଲା ପରେ ଏହି ପରଂପରା ବିସ୍ମୃତ ହୋଇଯାଇଛି ।

ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ୍ ଭାବରେ ଛଅଟି ମାସ ଅତିକ୍ରାନ୍ତ ହୋଇଥାଏ ମିଶନସ୍କୁଲର ସେହି ନିର୍ଜନ ଦ୍ୱିତଳ କକ୍ଷରେ । ଏକମାତ୍ର ସାଥୀ ହେଉଛି ମୋର ଲାଇବ୍ରେରୀ ବହି ନଚେତ୍ ସଂବାଦପତ୍ର । ହଠାତ୍ "ସମାଜ" ଖବରକାଗଜରେ ପଢ଼ିଲି, ସୁଲେଖକ ଦେବ ମହାପାତ୍ର ବମ୍ବେ ସହରରୁ ନିଜ ଗ୍ରାମ କଟକ ଜିଲ୍ଲାର ଧରାଧରପୁରକୁ ଫେରି ଆସିଛନ୍ତି ଏକ ଆଧ୍ୟାତ୍ମିକ ବେଶ ପରିଧାନ କରି । ବମ୍ବେରେ ସେ ଅତି ଲୋକପ୍ରିୟ "କୁଙ୍କୁମ" ମାସିକ ସାହିତ୍ୟପତ୍ରିକା ସଂପାଦନା କରୁଥିଲେ । ଏହି ପତ୍ରିକାରେ କଲେଜଛାତ୍ର ଭାବରେ ମୋର କେତେକ ଗଳ୍ପ ଓ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଦେବ ମହାପାତ୍ର ଜଣେ ଶକ୍ତିଶାଳୀ ଗଳ୍ପଲେଖକ । ତାଙ୍କର ଲେଖା "ଡଗର" ସାହିତ୍ୟପତ୍ରିକାକୁ ମଣ୍ଡନ କରୁଥାଏ । ଖବରକାଗଜରୁ ଦେବବାବୁଙ୍କର

ରୂପପରିବର୍ତ୍ତନ ପାଠକରି ତାଙ୍କର ଗ୍ରାମ ଠିକଣାରେ ଚିଠିଟିଏ ଲେଖିଲି ଅସଲ କାରଣ ଜାଣିବାପାଇଁ । ସେ ମଧ୍ୟ ତୁରନ୍ତ ମୋ ଚିଠିର ଉତ୍ତର ଦେଇଥିଲେ । ପାଠକୀୟ ଆଗ୍ରହ ପାଇଁ ସେହି ଚିଠିଟି ଅବିକଳ ଏଠାରେ ଉଦ୍ଧାର କରୁଅଛି ।

**Shree Dev Paramahana**

Dharadhar Pur
P.O. Raghunathpur
Cuttack-Orissa
28/1/55

ପ୍ରିୟ ପଠାଣି ବାବୁ,

ଆପଣଙ୍କ ଚିଠି ପାଇ ଖୁବ୍ ଖୁସି ହେଲି । ଗୋପାଳଠାରୁ ଆପଣଙ୍କ ଖବର ବୁଝୁଥିଲି । ସାକ୍ଷାତ ସିନା ହୋଇନାହିଁ କିନ୍ତୁ ଆମର ଯେଉଁ ସମ୍ବନ୍ଧ, ସ୍ନେହ ଶ୍ରଦ୍ଧା ଚିରଦିନ ଅକ୍ଷୁର୍ଣ୍ଣ ରହିବ ।

ବୟେରେ ମୋର ଯା ମଧ୍ୟରେ କୌଣସି ଚୋରି ହୋଇ ନଥିଲା । ସେଇ ଯାହା ହୋଇଥିଲା ୧୯୪୭ରେ ।

ମୋର କାର୍ଯ୍ୟପନ୍ଥା ଓ ଅନୁଭୂତି ସଂପର୍କରେ ଜାଣିବାକୁ ଚାହିଁଛନ୍ତି । ସବୁକଥା ଲେଖିବି କ'ଣ ? ଦେଖା ହେଲେ କହିବି । ଅଳ୍ପ କେଇପଦ ଲେଖୁଚି, ସେଥିରୁ ଯାହ ବୁଝିବେ ।

ଭଗବାନ କାଠ, ପଥର, ତରୁ, ତୃଣ, ସର୍ବତ୍ର ପୂରି ରହିଛନ୍ତି ସେ ସର୍ବବ୍ୟାପୀ । ପଥରପ୍ରତିମା, ଅଙ୍କାଛବି, ଶାଳଗ୍ରାମ, ଗୁଆ ଯେ କୌଣସି ବସ୍ତୁ ସ୍ଥାପନ କରି ଭଗବାନଙ୍କୁ ଆବାହନ କଲେ ସେ ଆସନ୍ତି । ତାଙ୍କୁ ପୂଜା କରାଯାଏ । ତା'ପରେ ସ୍ୱସ୍ଥାନଂ ଗଚ୍ଛନ୍ତୁ କହି ତାଙ୍କୁ ବିଦା ମଧ୍ୟ କରିଦିଆଯାଏ । ସେଇ ଯୋଗୁ ମନୁଷ୍ୟ ଘଟକୁ ମଧ୍ୟ ସେ ଆସିପାରନ୍ତି । ଗୁଆକୁ ପଞ୍ଚାମୃତରେ ସ୍ନାନ କରାଇ ଜୀବନ୍ୟାସ ଦେଲା ପରି ମନୁଷ୍ୟ ଯଦି ଶମ, ଦମ, ତିତିକ୍ଷା, ଇନ୍ଦ୍ରିୟ ସଂଯମ ଆଦି ପଞ୍ଚାମୃତ ସ୍ନାନ କରି ଭଗବାନଙ୍କୁ ନିଜ ଘଟରେ ଆଣି ବସାଇ ପାରେ, ତାହା ହେଲେ ପ୍ରଭୁ ସେ ଘଟରେ ଆସି ବସିବେ । ଯେତେବେଳେ ଜୀବ ଜାଣେ ଯେ ପରମ ଆସି ବସିଲେଣି, ସେତେବେଳେ ଜୀବ ଆଉ ପରମଙ୍କର ଭିନ୍ନାଭିନ୍ନ କିଛି ନଥାଏ । ସେତେବେଳେ ଅହଂ ସପରମ ବା ପରମ ହଂସ ତାର ଅର୍ଥ ଆତ୍ମଜ୍ଞାନ ଲାଭ କଲେ ଭକତ ଭଗବାନ ଦୁଇ ବୁଝିଲେ ଭିନ୍ନାଭିନ୍ନ ନାହିଁ । ଥିଓସୋଫିଷ୍ଟମାନେ ସେମାନଙ୍କୁ ଅଂଶେଖ ବା ମାଷ୍ଟର କହନ୍ତି । ଭାଗବତରେ ସେଇ ଯୋଗୁ ଲେଖା ଅଛି "ଗୁରୁହିଁ ସାକ୍ଷାତ ଈଶ୍ୱର, ଗୁରୁଙ୍କୁ ନ ମଣିବ ନର । ମୁହିଁ ବସଇ ଗୁରୁ ଦେହେ, ମୋ ଠହୁଁ ଗୁରୁ ଭିନ୍ନ ନୁହେଁ ।" ଆହୁରି ମଧ୍ୟ ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁର୍ଦେବ, ମହେଶ୍ୱର, ଗୁରୁସାକ୍ଷାତ ପରଂବ୍ରହ୍ମ...

ସେପରି ସ୍ଥାନରେ ଭଗବାନ ସ୍ୱୟଂ ପ୍ରକାଶ ହୋଇଥିବା ହେତୁ ଭଗବାନଙ୍କର ମହିମା ଆପଣାଛାଏଁ ପ୍ରକାଶ ପାଏ ।

ଏଇଥିରୁ ସବୁକଥା ବୁଝିପାରିବେ । ଭଗବାନ ଯେ ଆସି ମୋରି ଦେହରେ ଆର୍ବିଭାବ ହେବେ ଏ କଥା ମୁଁ ତ ଆଗରୁ ଜାଣି ନଥିଲି । କୁଙ୍କୁମର auto-suggestion କୁ ପ୍ରଶଂସା କରି ଲେଖିବା ପରେପରେଇ 'କୁଙ୍କୁମ' ବନ୍ଦ । ଭଗବାନଙ୍କ କୃପା ପାଖରେ auto-suggestion ତାନ୍ତ୍ରିକ ସାଧନା ଭଳି ନିକୃଷ୍ଟ । ଭଗବାନ ମୋର ଭୁଲ ମୋତେ ବୁଝାଇ ଯଥାର୍ଥ କର୍ତ୍ତବ୍ୟ ମୋ ପାଇଁ ସ୍ଥିର କରିଦେଲେ ।

ସେଥିଯୋଗୁ ଏଇ ନୂଆ ଜୀବନର ଆରମ୍ଭ ଯେ ଘଟେ ହୁଏ ଦିବ୍ୟଜ୍ଞାନ । ତହିଁ ଅବତାର ଭଗବାନ । ବୁଦ୍ଧିଜୀବୀ ଦେବ ମହାପାତ୍ରର ମୃତ୍ୟୁ ହୋଇ ମୁକ୍ତଜୀବର ଜନ୍ମ ହୋଇଛି । ସେଇ ଠାକୁର ବଡ଼ଦେବ ହୋଇ ପୂଜା ପାଉଛନ୍ତି । ଦେବ ମହାପାତ୍ର ଗୁଆ ହୋଇ ଥାପନା କରାହୋଇଛି । ପୂଜା ପାଉଛନ୍ତି ଚୈତନ୍ୟ-ଧର୍ମ ସଂସ୍ଥାପନ କରିବା ପାଇଁ ଯେ ଯୁଗେଯୁଗେ ଜନ୍ମ ହୁଅନ୍ତି ।

ମୁଁ ଯାହା ଉପରେ ସନ୍ତୁଷ୍ଟ ସେଇମାନେ ହିଁ ପ୍ରଭୁଙ୍କର ଭକ୍ତ । ସର୍ବଧର୍ମାନ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ । ଯେ ମୋ ନିକଟରେ ଶରଣାପନ୍ନ ତାର ଅଭୀଷ୍ଟ ନିଶ୍ଚୟ ପୂର୍ଣ୍ଣ ହେବ । ମୁଁ ଯଦି ତାର ଭକ୍ତିରେ ସନ୍ତୁଷ୍ଟ– 'ମୁଁ' ପ୍ରତ୍ୟେକ ଜୀବର ହୃଦୟରେ ବାସ କରୁଛି । ତେଣୁ ମୋ ଆଡ଼କୁ ଶ୍ରଦ୍ଧା କଲେ, ଶରଣାପନ୍ନ ହେଲେ ନିଶ୍ଚୟ "ମୋତେ" ଉପଲବ୍ଧି କରି ପାରିବେ । ଏଠାରେ ଶରଣାପନ୍ନ ପ୍ରତ୍ୟେକ ଭକ୍ତର ସଦିଚ୍ଛାମାନ ପୂର୍ଣ୍ଣ ହେଉଛି । ବର୍ତ୍ତମାନ ଏହି ସତ୍ୟ ଏ ଆଡ଼େ ଗାଁ ଗଣ୍ଡାରେ ବ୍ୟାପୀ ଗଲାଣି ଭଗବାନ ଅଛନ୍ତି । ଭଗବାନଙ୍କର ଶରଣାପନ୍ନ ହୋଇ ତାଙ୍କୁ ଏକାନ୍ତ ବିଶ୍ୱାସ କରି ସତ ପଥରେ ଚାଲିଲେ ଭଗବାନ ସମସ୍ତ ବିପଦରୁ ରକ୍ଷା କରି ଶାନ୍ତି ପ୍ରଦାନ କରିବେ । ଏହାହିଁ ଲୋକମାନେ ଶିଖୁଛନ୍ତି । ଭଗବାନଙ୍କୁ ନପାଇବା ଯାଏ ଜୀବର ଶାନ୍ତି ନାହିଁ । ତେଣୁ ବିଶ୍ୱଶାନ୍ତି କୌଣସି ism ଦ୍ୱାରା ସମ୍ଭବପର ନୁହେଁ । ବ୍ୟକ୍ତିଗତ ଭାବରେ ଶାନ୍ତି ତା'ପରେ ସାମୂହିକ ଭାବେ ।

ଆପଣଙ୍କ ଦ୍ୱାରା ଅନେକ କାମ ହେବ । ଆପଣଙ୍କର ଉଚ୍ଚାକାଙ୍କ୍ଷା ସମସ୍ତ ପୂର୍ଣ୍ଣହେବ । ଲେଖକ ହିସାବରେ ଆପଣଙ୍କର ବୈଶିଷ୍ଟ୍ୟ ଓ ସମ୍ମାନ ଢେର ଢେର ଆଗେଇ ଯିବ କେବଳ ଓଡ଼ିଶାରେ ନୁହେଁ ଭାରତରେ– ଏଇଟା ଭବିଷ୍ୟତବାଣୀ ଭାବି ପାରନ୍ତି ବା ଯାହା ଭାବି ପାରନ୍ତି । ମନେ ରଖିଥିବେ ।

କେତେ କଥା ଲେଖିଗଲିଣି । ମୁଁ ଖୁବ୍ ନିକଟରେ ଅଛି । ଯଦି କେବେ ମନ ହୁଏ, ଏଠିକି ଆସିବେ । କଥାବାର୍ତ୍ତା ହେବା । ଗୋପାଳକୁ ପଚାରିଲେ

ବାଟ କହିଦବ । ମୁଁ ତ ଏ ଗାଁ ଛାଡ଼ି କୁଆଡ଼େ ଯାଉନାହିଁ ବା ଯାଇପାରିବି ନାହିଁ । ଅନେକ ତା ହେଲେ ହତାଶ ହୋଇ ଫେରିବେ । ଆଉ ସବୁ ଭଲ । ଶୁଭେଚ୍ଛା ନେବ ।

ଆପଣଙ୍କର ମଙ୍ଗଳାକାଙ୍‌କ୍ଷୀ

ଶ୍ରୀଦେବ

ଚିଠିରେ ଯେଉଁ "ଗୋପାଳ" କଥାଟି ଉଲ୍ଲେଖ ରହିଛି, ତାଙ୍କର ପରିଚୟ ସ୍ମରଣ କରି ପାରୁନାହିଁ । ହୁଏତ କେହି ଜଣେ ଛାତ୍ର ଦେବବାବୁଙ୍କୁ ଭଲ ଭାବରେ ଜାଣିଥିବେ । ଦେବବାବୁ ମୋତେ ନିମନ୍ତ୍ରଣ କରିଥିଲେ ହେଁ ତାଙ୍କ ପାଖକୁ ଯାଇନାହିଁ । ଥରେ ହେଲେ ଆମର ସାକ୍ଷାତ ହୋଇନାହିଁ । ସେ ବେଳର ସଂବାଦପତ୍ରରେ ଆମରି ପରି ଜଣେ ଲେଖକଙ୍କର ହଠାତ୍ ଏପରି ଅଲୌକିକ ମହିମା ବିଷୟରେ ପ୍ରଚାର ହେଉଥିବାରୁ ରହସ୍ୟ ଜାଣିବା ପାଇଁ ଚିଠିଟି ଲେଖିଥିଲି । ମୋ ବିଷୟରେ ଭବିଷ୍ୟତବାଣୀ କରିଥିବାରୁ ଆଜିଯାଏ ଚିଠିଟି ସାଇତିବାର ପ୍ରୟୋଜନ ହୋଇଥିଲା ।

•••

# ନିର୍ଜନ କୋଠି : ଅଧିବାସର ଅନୁଭୂତି

ସ୍କୁଲ ଛୁଟି ପରେ ଖ୍ରୀଷ୍ଟ କଲେଜିଏଟ ହାଇସ୍କୁଲର ସେହି ବିଶାଳ କୋଠିରେ ନିର୍ଜନତା ରାଜପଣ କରେ । କେହି ପାଖପଡ଼ୋଶୀ ନଥିଲେ । ଦୋକାନ ବଜାର ନଥିଲା । ସମସ୍ତ ଅଞ୍ଚଳ ଏକପ୍ରକାର ନିଛାଟିଆ, କେବଳ ରାସ୍ତା ଆରପଟେ ଆମ କଲେଜ ହଷ୍ଟେଲ ରୁମରେ ଆଲୁଅ ଥାଏ ଏକମାତ୍ର ପ୍ରହରୀ । ଏହି ସୁଉଚ୍ଚ କୋଠାର ଉପର ମହଲା କଡ଼ରେ ଗୋଟିଏ କୋଠରୀ ହେଉଛି ମୋର ବାସସ୍ଥାନ । ସେହି ଘରେ କେବଳ ବିଜୁଳି ଆଲୁଅର ବ୍ୟବସ୍ଥା । ସମସ୍ତ ପରିବେଶରେ ସଂଧ୍ୟାପରେ ଅନ୍ଧକାର ମାଡ଼ି ଆସେ । ଯଦି କୌଣସି କାରଣରୁ କିଛି ସମୟ ପାଇଁ ବିଜୁଳି ଆଲୁଅ ଚାଲିଗଲା, ତେବେ ଏକମାତ୍ର ଭରସା ହେଉଛି ଟର୍ଚ୍ଚ ଆଲୁଅ । ସଂଧ୍ୟା ପରେ ଟର୍ଚ୍ଚ ଥାଏ ଅନ୍ତରଙ୍ଗ ସହଚର ଶୟନେ, ସ୍ୱପନେ, ଜାଗରଣେ ।

ସ୍କୁଲ ଛୁଟି ଦିନରେ ଦିବାଭାଗର ନିର୍ଜନତା ମଧ୍ୟ ମାଡ଼ି ମାଡ଼ି ପଡ଼େ । ଆଜିକାଲି ପରି ସେତେବେଳେ ଏପରି ଯାନବାହାନର ଚଳାଚଳ ନଥାଏ । ତେବେ ତଳ ମହଲାର ଗୋଟିଏ ରୁମରେ ଖ୍ରୀଷ୍ଟଧର୍ମ ସଂପର୍କୀୟ ଏକ ଲାଇବ୍ରେରୀ କିଛିଦିନ ପୂର୍ବରୁ ଆରମ୍ଭ ହୋଇଥିଲା । ସେଠାରେ ବେଳେବେଳେ ଯାଇଁ ବସେ ଓ କିଛି ବହି ପଢ଼ିବା ପାଇଁ ଆଣେ । କାହିଁକି କେଜାଣି, ଅଳ୍ପଦିନ ପରେ ସେ ପୁସ୍ତକାଳୟ ମଧ୍ୟ ଉଠିଗଲା । ସ୍କୁଲ ପଛପଟେ ଏକ ବିଶାଳ ବରଗଛ ସମସ୍ତ ଅଞ୍ଚଳକୁ ଆବୋରି ରହିଥାଏ । ତାହାରି ପାଖକୁ ଏକ କ୍ଷୁଦ୍ର କୋଠରୀରେ ଓ୍ୱାଇ.ଏମ.ସି.ଏ ର ସଭ୍ୟମାନେ ଟେବୁଲ ଟେନିସ ଖେଳିବାପାଇଁ ଆସନ୍ତି ସଂଧ୍ୟାକାଳରେ । ରାତି ନଅଟା ପରେ ସେମାନେ ବିଦାୟ ନିଅନ୍ତି । ପୁନର୍ବାର ଅନ୍ଧକାର ଖେଳେଇ ହୋଇଯାଏ ।

ମନେପଡୁଛି ଗୋଟିଏ ସଂଧ୍ୟାର ବିକଳ ଅନୁଭୂତି । ବଜାରରୁ ସଂଧ୍ୟା ଆଠଟାରେ ଫେରି ଆସିଥାଏ । ସତେଇଶିଟି ପାହାଚ ସେହି ଅନ୍ଧାରରେ ଚଢ଼ିଲେ ଯାଇ ଚାବି ଖୋଲି ଆଲୁଅ ଜଳାଇବାକୁ ହୁଏ । ପ୍ରଥମ ପାହାଚରେ ପାଦ ଦେବାପୂର୍ବରୁ ଆଖିରେ ପଡ଼ିଲା ସେହି ଦେବଦାରୁ ଗଛ ମୂଳରେ କୌଣସି ଛାୟାମୂର୍ତ୍ତି । ହଠାତ୍ ମନକୁ ଛୁଇଁଲା କୌଣସି ଅଶରୀରୀ ପ୍ରେତଯୋନିର କଥା । ଟର୍ଚ୍ଚ ପକାଇଲି । କେହି ନାହିଁ । ଟର୍ଚ୍ଚ ଲିଭାଇଦେଲି, ପୁନର୍ବାର ସେହି ଛାୟାମୂର୍ତ୍ତି । ଏତିକିବେଳକୁ ମୋର ସାରା ଅଙ୍ଗପ୍ରତ୍ୟଙ୍ଗରେ ଗମଗମ ଝାଳ । ଭୟରେ ଥରୁଥାଏଁ । କିଏ ଅଛି ଯେ କାହାକୁ ଡାକିବି । ମୁଣ୍ଡ ଝାଇଁ ଝାଇଁ ହୋଇଗଲା । କେତେବେଳେ ମୁଁ ତଳ ପାହାଚରେ ବସି ପଡ଼ିଛି ଜାଣେ ନାହିଁ । ତାପରେ ବୋଧହୁଏ ଭୟରେ ମୋର ହୋସ ନାହିଁ ।

ସାଧାରଣତଃ ବଜାରରୁ ଫେରି ଆସିଲେ ଉପର ଘରେ ଆଲୁଅ ଲଗାଇଦିଏ । ନଅଟା ବାଜିଲେ ହଷ୍ଟେଲ ପିଅନ ରାସ୍ତା ସେପଟ ମେସ୍‌ରୁ ମୋ ପାଇଁ ରାତି ଖାଇବା ନେଇଆସେ । ସେଦିନ ରାତି ଦଶଟା ହେଲାଣି, ଆଲୁଅ ଲାଗିଲା ନାହିଁ, ପିଅନ ଭାବିଲା, ବୋଧହୁଏ ସାର୍ ଶୋଇ ଯାଇଛନ୍ତି । ଆଲୁଅ ଲଗାଇବାକୁ ମନେ ନାହିଁ । ସେ ଆସିଲା ମୋ ଅବସ୍ଥା ବୁଝିବାପାଇଁ । ସେଇ ଅନ୍ଧାରରେ ତଳ ପାହାଚରେ ବସିଥିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । ମୋତେ ହଲାଇ ଦେବାରୁ ଉଠି ବସିଲି । କହିଲା– ''ସାର୍ ଏଠାରେ ଏକାକୀ ବସିଛନ୍ତି ?'' ଝାଡ଼ିଝୁଡ଼ି ହେଇ ଠିଆହେଲି । କ'ଣ ଆଉ ଉତ୍ତର ଦେବି । କହିଲି, ପବନରେ ବସିବାକୁ ଭଲଲାଗିଲା । ଯାହାହେଉ ସେ ଆପେଆପେ ଯାଇ ଦୁଆର ଖୋଲି ଆଲୁଅ ଜାଳିଲା, ଖାଇବାକୁ ଦେଇ ଚାଲିଗଲା । ଏତେବେଳକୁ ମନରୁ ସେହି ଆଶଙ୍କା ଓ ଭୟ ଚାଲିଗଲାଣି । ନିଜର ମନକୁ ବୁଝାଇ ଦେଲି, ଓ୍ୱାଇ.ଏମ. ସି.ଏ.ର ରୁମ୍‌ରୁ ଆଲୋକ ରେଖା ମୋର ପଛରେ ପଡ଼ି ମୋର ଛାୟା ମୋତେ ଭୂତର ଭେଳିକି ଦେଖାଇଥିଲା । ନିର୍ଜନ ରାତିର ପରମସାଥୀ ହେଉଛି ମନର ସାହସ । ଦୁଇବର୍ଷ ଚାହୁଁ ଚାହୁଁ ବିତିଗଲା । ଆଉ ଅଶରୀରୀ ଆତ୍ମା ମୁଣ୍ଡକୁ ଭାରାକ୍ରାନ୍ତ କରିନାହିଁ ।

ଆଉ ଦିନକର କଥା । ରହୁଥିବା ଘରର ଝରକାଟି ଖୁବ୍ ବଡ଼ । ଆମର ସାଧାରଣ ଘରର ଦୁଆର ପରି । ସେଥିରେ ଆଦୌ ରେଲିଙ୍ଗ ନଥାଏ । ପ୍ରଚୁର ଆଲୋକ ଓ ପବନ ଆତଯାତ ହେଉଥାଏ । ଖରାଦିନ, ଖିଲିଖିଲି ପବନ ବହୁଥାଏ । ରାତି ବାରଟା ପରେ ଲେଖାପଢ଼ା ସାରି ଶୋଇବାକୁ ଗଲି । ଆଲୁଅ ଲିଭାଇ ଦେଲି, ତକିଆ ପାଖରେ ଟର୍ଚ୍ଚଟି ଏକମାତ୍ର ସାଥୀ । ଛାଇ ନିଦ ଆସିଯାଇଛି, ହଠାତ୍ ଭୟଙ୍କର ଶବ୍ଦ ହେଲା । କେହି ଯେପରି ଝରକାବାଟେ ବାହାରୁ ଘର ଭିତରକୁ ଡ଼େଇଁ ପଡ଼ିଛି । ନିଦ ଭାଙ୍ଗିଗଲା, ଭୟରେ ଆଖି ବୁଜି ନିସ୍ତରଙ୍ଗ ହୋଇ ପଡ଼ିରହିଲି । କାଳେ ହଲଚଲ ହେଲେ ସେହି ଚୋର ମୋତେ ଛୁରା ମାରିଦେବ । କେହି ତ ପାଖ ପଡ଼ିଶାରେ ନାହିଁ । ଡାକିଲେ ବା କିଏ ଶୁଣିବ । ପାଟି କଲେ ଚୋର ଆକ୍ରମଣ କରିପାରେ । ଭାବୁଥାଏ ମନେମନେ ଧୀରେଧୀରେ ମୋର ଟ୍ରଙ୍କ୍ ଖୋଲିଲା ପରି ! କିଛି ତ ଚୋରୀକଲା ପରି ସମ୍ପତ୍ତି ନାହିଁ । ହତାଶ ହୋଇ ମୋତେ ଛୁରାରେ ଆଘାତ ନ କରିବ ବୋଲି କିଏ କହିବ ? ପାଟି ଅଠା ହୋଇଗଲା । ଭୟ ଓ ଆତଙ୍କରେ କେତେବେଳେ ଗାଢ଼ ନିଦ୍ରାରେ ଶୋଇଯାଇଛି । ସକାଳୁ ପିଅନ ଆସି ଦୁଆର ବାଡ଼େଇଲା, ପାଣି ଦେଲେ ନିତ୍ୟକର୍ମ ସାରିବି ବୋଲି । କେବେ ଏପରି ଶୋଇଯାଏ ନାହିଁ, ଉଠିପଡ଼ି ଦେଖିଲି ଝରକାର ପିଣ୍ଡିରେ ମୋର ଛତାଟି ଓହଳି ଥିଲା । ପବନରେ ହଲିଯାଇ ତଳେ ଖସିପଡ଼ିଛି । ସେଇ ଶବ୍ଦ ହିଁ ମୋର ଏପରି ବିପତ୍ତିର କାରଣ ହୋଇଥିଲା । ପ୍ରକୃତରେ ଭୟ ବାହାରେ ନଥାଏ, ଥାଏ ନିଜର ମନ ମଧ୍ୟରେ ।

ଭାରତ ବିଖ୍ୟାତ ସେବକ ଲକ୍ଷ୍ମୀନାରୟଣ ସାହୁଙ୍କର ଘର ଦେଉଳ ସାହିରେ । ତାଙ୍କ ଘରେ ଆମର ବରିଷ୍ଠ ସହକର୍ମୀ ଅଧ୍ୟାପକ ବାନାମ୍ବର ଆଚାର୍ଯ୍ୟ ଭଡ଼ା କରି ରହୁଥାଆନ୍ତି । ମୋର କିଛି ସନ୍ଦେହ ଥିଲେ ଯାଏ ପଣ୍ଡିତଙ୍କ ପାଖକୁ । ଅତ୍ୟନ୍ତ ସ୍ନେହରେ ବୁଝାଇ ଦିଅନ୍ତି ।

ଆଦର କରି ନ ଖୁଆଇଲେ ତାଙ୍କର ମନ ବୁଝେନାହିଁ, ସେଇ ସ୍ଥାନରେ ପରିଚୟ ହେଲା ଲକ୍ଷ୍ମୀନାରାୟଣ ସାହୁଙ୍କ ସହିତ । ସେ ଥିଲେ ଭାରତ ବିଖ୍ୟାତ ହିନ୍ଦ୍ ସେବକ୍ ସମାଜର ବରେଣ୍ୟ ସଭ୍ୟ । ତାଙ୍କର ଅନ୍ୟତମ ସହକର୍ମୀ ଥିଲେ ଶ୍ୟାମସୁନ୍ଦର ମିଶ୍ର ।

ଲକ୍ଷ୍ମୀନାରାୟଣ ଥିଲେ ଉତ୍କଳମଣି ଗୋପବନ୍ଧୁଙ୍କର ଅନୁଜ ପ୍ରତିମ ସହକର୍ମୀ ସେବା କ୍ଷେତ୍ରରେ । ବିଦ୍ୟାନୁରାଗ ତାଙ୍କର କଳ୍ପନାତୀତ । ବିଭିନ୍ନ ପାଞ୍ଚଗୋଟି ବିଷୟରେ ସେ ଏମ.ଏ. ଡିଗ୍ରୀ ହାସଲ କରିଥିଲେ । ଜୈନଧର୍ମ ବିଷୟରେ ଏକ ଗବେଷଣାତ୍ମକ ଗ୍ରନ୍ଥ ଲେଖିଥିଲେ । ଆଦିବାସୀ ଗୀତ ସଂକଳନ ଓ ଆଦିବାସୀ ସଂସ୍କୃତି ବିଷୟରେ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ବୁଦ୍ଧିଜୀବୀମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ସେ କିଛିକାଳ ମଧ୍ୟ ଓଡ଼ିଶା ଆସେମ୍ବ୍ଲିର ମନୋନୀତ ସଭ୍ୟ ହୋଇଥିଲେ । ଗଦ୍ୟ ପଦ୍ୟ ସମ୍ବଳିତ ଅନେକ ପୁସ୍ତକର ରଚୟିତା ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ତାଙ୍କର ଆତ୍ମଚରିତ ହେଉଛି ଜଣେ ଆଜୀବନ ସଂଗ୍ରାମୀ ଓ ସଂସ୍କାରକର ଜୀବନଲିପି । ସେ କାଳରେ ସେ 'ବୈତରଣୀ' ନାମରେ ଏକ ଇଂରାଜୀ ମାସିକପତ୍ର ଓ ଓଡ଼ିଆ ସାହିତ୍ୟ ବିଷୟକ ମାସିକପତ୍ର ''ସହକାର'' ପ୍ରକାଶ କରିଥିଲେ । ଦୀର୍ଘ ୧୦ ବର୍ଷକାଳ 'ସହକାର' ସଂପାଦନା କଲାପରେ ସେ ତାହାକୁ ହସ୍ତାନ୍ତର କରିଥିଲେ ସୁସାହିତ୍ୟିକ ବାଳକୃଷ୍ଣ କରଙ୍କୁ ।

ବାନାମ୍ବର ବାବୁଙ୍କ ଘରେ ଏହିପରି ଜଣେ ପ୍ରତିଷ୍ଠିତ ସମାଜସେବୀ, ସାହିତ୍ୟିକ ଓ ସଂସ୍କାରକଙ୍କର ନିକଟ ସଂପର୍କରେ ଆସିବାର, ସୌଭାଗ୍ୟ ଲାଭ କରିଥିଲି । ଅବଶ୍ୟ ୧୯୫୨ ସାଲରେ 'ମାତୃଭୂମି' ଦୈନିକ କାଗଜର ସହକାରୀ ସଂପାଦକ ଥିଲାବେଳେ ପତ୍ରିକା ଅଫିସରେ ଥରୁଟିଏ ସାକ୍ଷାତ ହୋଇଥିଲା । ସେ ମୋର ପରିଚୟ ପାଇ ପ୍ରସ୍ତାବ ଦେଲେ ତାଙ୍କର ଭାରତ ସେବକ ସମାଜରେ ଯୋଗ ଦେବାପାଇଁ । ଏପରି ତ୍ୟାଗପୂତ ଜୀବନ ଅତିବାହିତ କରିବାପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ନଥିଲି । ତେଣୁ ରାଜି ହେଲି ନାହିଁ ।

ଖ୍ରୀଷ୍ଟକଲେଜରେ ଯୋଗ ଦେଲାପରେ ତାଙ୍କର ନିକଟ ସଂପର୍କରେ ଆସିବାର ସୁଯୋଗ ମିଳିଲା । ଦିନେ କଲେଜରୁ ଆସି ସେହି ଏକାଟିଆ କୋଠରୀରେ ବିଶ୍ରାମ କରୁଛି । ଅପେକ୍ଷା କରୁଛି ମେସ୍‌ରୁ ଖାଇବା ଆସିବ ବୋଲି । ହଠାତ୍ ଲକ୍ଷ୍ମୀନାରାୟଣ ସାହୁ ସତେଇଶିଟି ପାହାଚ ଚଢ଼ି ମୋ ରୁମରେ ହାଜର ଅବେଳରେ । ନମସ୍କାର କଲି ଓ ଏକମାତ୍ର ଚୌକିଟି ବଢ଼ାଇ ଦେଲି ବସିବାପାଇଁ । କହିଲେ, ଆଜି ତୁମର ଏଇଠି ଖାଇବି ଓ ବିଶ୍ରାମ କରିବି । ହଷ୍ଟେଲ ପିଅନ ମୋ ପାଇଁ ମିଲ୍ସ ନେଇ ଆସିଲାବେଳେ କହିଲି ଆଉ ଗୋଟିଏ ମିଲ୍ ଆଣିବା ପାଇଁ । ଶ୍ରୀଯୁକ୍ତ ସାହୁ ଭୋଜନ ପରେ ମୋରି ବିଛଣାରେ ବିଶ୍ରାମ କଲେ । ଅସରନ୍ତି ଆଲୋଚନା ଚାଲିଥାଏ ଦେଶର ଇତିହାସ, ରାଜନୀତି ଓ ସାମାଜିକ ଆନ୍ଦୋଳନ ସଂପର୍କରେ । ବିଖ୍ୟାତ ଜନନେତା ହରେକୃଷ୍ଣ ମହତାବଙ୍କର ଆତ୍ମଜୀବନୀ ''ସାଧନାର ପଥେ'' ଆଗରୁ ପାଠ କରିଥିଲି । ସେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ଯେ ଶ୍ରୀ ମହତାବ, ଶ୍ରୀ ନିତ୍ୟାନନ୍ଦ କାନୁନଗୋ, ଶ୍ରୀ ନବକୃଷ୍ଣ ଚୌଧୁରୀ ପ୍ରଭୃତି ତରୁଣ ଉତ୍ସାହୀ ଯୁବକମାନଙ୍କୁ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ପ୍ରେରଣା ପ୍ରଦାନ କରିଥିଲେ ସାଧାରଣ ଜୀବନକୁ ଆସିବାପାଇଁ । ଓଡ଼ିଶା ଏବଂ ଓଡ଼ିଶା ବାହାରେ ବହୁ ବରପୁତ୍ରମାନଙ୍କ ସହିତ ଶ୍ରୀ ସାହୁଙ୍କର ଅତ୍ୟନ୍ତ ସମ୍ମାନଜନକ ନିବିଡ଼ ସଂପର୍କ ରହିଥିଲା । ମୋ ବୟସର ତରୁଣ ଅଧ୍ୟାପକମାନଙ୍କୁ ସେ ସର୍ବଦା ଉତ୍ସାହିତ କରୁଥିଲେ ଗଭୀର ଅଧ୍ୟୟନ ଓ ଅନୁଶୀଳନ କରିବାପାଇଁ । ଏ ଯୁଗରେ ଏପରି ବ୍ୟକ୍ତିତ୍ୱ ବିରଳ ହୋଇଯାଉଛନ୍ତି ।

ହଠାତ୍ ମନରେ ଆସିଲା, ନିର୍ଜନ ପରିବେଶକୁ ମଧୁମୟ କରିପାରେ ସଙ୍ଗୀତର ଝଙ୍କାର । ଭାବିଲି ବେହେଲା ଶିକ୍ଷା କରିବି । ସେତେବେଳେ ନ୍ୟାସନାଲ ମିଉଜିକ୍ ଆସୋସିଏସନ ଥାଏ ଏକ ଅଗ୍ରଣୀ ସଙ୍ଗୀତ କଳାର ଅନୁଷ୍ଠାନ । କଳାବିକାଶ କେନ୍ଦ୍ର ଆଲୋଚନାକୁ ଆସି ନଥାଏ । ଏହି ଅନୁଷ୍ଠାନରେ କେନ୍ଦ୍ରୀୟ ଅଫିସ ଥାଏ ଜି.ପି.ଓ. ର ପଛପଟ ଗଳିରେ । ମୋର ବରିଷ୍ଠ ସହକର୍ମୀ ଦର୍ଶନ ବିଭାଗର ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ଦର୍ଜୀ ଅତ୍ୟନ୍ତ ସଙ୍ଗୀତ ରସିକ ଓ ଏହି ଅନୁଷ୍ଠାନର ସଭ୍ୟ । ତାଙ୍କୁ ଅନୁରୋଧ କଲି ବ୍ୟବସ୍ଥା କରିଦେବା ପାଇଁ । ସେ ମୋତେ ସାଙ୍ଗରେ ନେଇ ସଂଧ୍ୟା କାଳରେ ଏହି ଅନୁଷ୍ଠାନର କର୍ମକର୍ତ୍ତାଙ୍କ ସହିତ ପରିଚୟ କରାଇଦେଲେ । କିଛି ଦିନ ଗଲି ଏବଂ ଜଣେ ବେହେଲା ବାଦକଙ୍କଠାରୁ ପ୍ରାଥମିକ ବାଜଣା ଶିକ୍ଷା କରି ଅଭ୍ୟାସ କଲି । କାହିଁକି କେଜାଣି ଏହି ଅନୁଷ୍ଠାନର ତଦାନୀନ୍ତନ ସଂପାଦକଙ୍କର ଅନୁଦାର ବ୍ୟବହାର ମୋର ତରୁଣ ପ୍ରାଣରେ ଆଘାତ କଲା । ସଙ୍ଗୀତ ଶିକ୍ଷା ସେହିଠାରେ ଅନ୍ତ ହେଲା ।

ମିଶନ ସ୍କୁଲର ଜଣେ ବରିଷ୍ଠ ଶିକ୍ଷକ ଚନ୍ଦ୍ରଶେଖର ମିଶ୍ର ତଳ ମହଲାର ଗୋଟିଏ କୋଠରୀରେ ଏକାଟିଆ ରହନ୍ତି । ସ୍କୁଲ ସମୟ ପରେ ସେ ବାହାରି ଯାଆନ୍ତି ଟିଉସନ କରିବାପାଇଁ, ଫେରି ଆସି ଶୋଇଯାନ୍ତି । ତାଙ୍କ ସହିତ ସାକ୍ଷାତ ଆଳାପର ସୁଯୋଗ ନଥାଏ । ପ୍ରତି ଶନିବାର ରବିବାର ସେ ନିଜ ଘର ଆଠଗଡ଼କୁ ଚାଲିଯାଆନ୍ତି । ତେବେ ଚନ୍ଦ୍ରବାବୁ ଜଣେ ସେଦିନର ପ୍ରତିଷ୍ଠିତ କବି ଓ ସାହିତ୍ୟିକ । ସେ ଥାଆନ୍ତି ପ୍ରାଚୀନ ସାହିତ୍ୟ ଅନୁଷ୍ଠାନ ''ଉତ୍କଳ ସାହିତ୍ୟ ସମାଜ''ର ସଂପାଦକ । ମୁଁ ଲେଖାଲେଖି କରୁଛି ଜାଣି ମୋତେ ଟାଣି ନିଅନ୍ତି ସାହିତ୍ୟ ସମାଜର ଆଲୋଚନା ସଭାରେ ଶ୍ରୋତା ହେବାପାଇଁ । ସଭାପତି ଥାଆନ୍ତି ବିଖ୍ୟାତ ପଣ୍ଡିତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି । ସେତେବେଳେ ଯାବତୀୟ ରାଜନୈତିକ ସଭା ହେଉଥାଏ ଟାଉନହଲରେ କିମ୍ବା ମ୍ୟୁନିସିପାଲ୍ଟି ପଡ଼ିଆରେ । ସହୀଦ ଭବନ ହଲ ଜନ୍ମ ହୋଇ ନଥାଏ ଅବା ମ୍ୟୁନିସିପାଲ୍ଟି କଲ୍ୟାଣମଣ୍ଡପ । ଏଥର ଅବସର ବେଳେ ଆରମ୍ଭ ହେଲା ସଭାରେ ଯୋଗ ଦେବାର ଏକ ନିଶା । ସେଦିନର ସାହିତ୍ୟ ସଭାର ଅନୁଭୂତି ଅତ୍ୟନ୍ତ ରୋମାଞ୍ଚକର । ଆଜିର ତରୁଣ ସାହିତ୍ୟସେବୀ ଏ କଥା କଳ୍ପନା କରିପାରିବେ ନାହିଁ । ମଞ୍ଚାସୀନ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ମହାନ ଜ୍ଞାନ ତପସ୍ୱୀ । ଗୁରୁମାନଙ୍କର ସେ ଗୁରୁ । ତାଙ୍କ ନିକଟରେ ସମସ୍ତଙ୍କର ମୁଣ୍ଡ ନଇଁଯାଏ । ବେଳେବେଳେ ସଭାପତିଙ୍କ ପାଖରେ ସଭାମଣ୍ଡନ କରୁଥିବେ ପଣ୍ଡିତ ନୀଳକଣ୍ଠ ଦାସ । ତାଙ୍କର ବ୍ୟକ୍ତିତ୍ୱ ଓ ପାଣ୍ଡିତ୍ୟ ସୁଦୂର ପ୍ରସାରୀ । ଶ୍ରୋତାମାନଙ୍କ ମଧ୍ୟରେ ଶୋଭା ପାଉଥାଆନ୍ତି କାଳିନ୍ଦୀଚରଣ ପାଣିଗ୍ରାହୀ, ମାୟାଧର ମାନସିଂହ, ସରଳାଦେବୀ, ଭିକାରୀଚରଣ ପଟ୍ଟନାୟକ, ଜଗନ୍ନାଥ ତ୍ରିପାଠୀ, ଅନନ୍ତ ପଣ୍ଡା, କମଳାକାନ୍ତ ଦାସ, ବାଳକୃଷ୍ଣ ପଟ୍ଟନାୟକ,

ନବକିଶୋର ଦାସ, ନବକୁମାର ଦାସ, ଚିନ୍ତାମଣି ଆଚାର୍ଯ୍ୟ, ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରଭୃତି ଅନେକ ସାହିତ୍ୟରଥୀ ଓ ଆଜୀବନ ସାରସ୍ୱତ ସାଧକ । ବାରମ୍ବାର ଏହି ଯଶସ୍ୱୀ ସାହିତ୍ୟ ସାଧକମାନଙ୍କୁ ଦର୍ଶନ କରିବାର ସୌଭାଗ୍ୟ ମିଳୁଥାଏ । ଏମାନେ ଆଲୋଚନାରେ ଅଂଶଗ୍ରହଣ କଲାବେଳେ ଦର୍ଶକମଣ୍ଡଳୀ ମନ୍ତ୍ରମୁଗ୍ଧ ହୋଇ କାନ ଡ଼େରି ଥାଆନ୍ତି । ସାହିତ୍ୟସଭା ଭାଷଣସର୍ବସ୍ୱ ନଥିଲା । ଅନେକ ଲେଖକ ପ୍ରବନ୍ଧ ପାଠ କରୁଥିଲେ । କଟକରେ ଆଉ ଏକ ସାରସ୍ୱତ ଆକର୍ଷଣ ଥିଲା ଭଂଜଜୟନ୍ତୀ ଅନୁଷ୍ଠାନ । ସେତେବେଳେ ଭଂଜମଣ୍ଡପ ଜନ୍ମ ହୋଇ ନଥିଲା । ବିଚ୍ଛନ୍ଦଚରଣ ଥିଲେ ଏହି ଅନୁଷ୍ଠାନର ଆତ୍ମା ଓ ସର୍ବଶ୍ରେଷ୍ଠ ପ୍ରେରଣାଦାତା । ସାହିତ୍ୟରେ ବିଜାତୀୟ ପ୍ରଭାବ ବିରୁଦ୍ଧରେ ତୀବ୍ର ଆନ୍ଦୋଳନ ଥିଲା ଏହି ଅନୁଷ୍ଠାନର ପ୍ରଧାନ ଆଭିମୁଖ୍ୟ । କବି ବିଚ୍ଛନ୍ଦଚରଣ ପଟ୍ଟନାୟକ ତିଆରି କରିଥିଲେ ଏକ ତରୁଣ ସାହିତ୍ୟ-ସଂଗ୍ରାମୀଦଳ । ସେମାନଙ୍କ ମଧ୍ୟରେ ହୃଦାନନ୍ଦ ରାୟ, ରଜତ କୁମାର କର, କବିପ୍ରସାଦ ମିଶ୍ର, ଶୈଳେଶ୍ୱର ନନ୍ଦ, ଚନ୍ଦ୍ରଶେଖର ନନ୍ଦ ପ୍ରଭୃତି ଅନେକ ପ୍ରତିଭାଦୀପ୍ତ ଯୁବକ ଛାତ୍ର ଅବସ୍ଥାରୁ ଯୋଗଦେଇଥିଲେ । ବିଚ୍ଛନ୍ଦବାବୁଙ୍କର "ସାହିତ୍ୟ ପାଇଁ ସଂଗ୍ରାମ" ଅଭିଯାନକୁ ଏହି ଯୁବକଗଣ ଆଜି ପରିଣତ ବୟସରେ ମଧ୍ୟ ଅକ୍ଷୁର୍ଣ୍ଣ ରଖିଛନ୍ତି । ବିଚ୍ଛନ୍ଦଚରଣଙ୍କ ପ୍ରତିଷ୍ଠିତ "କଳିଙ୍ଗ ଭାରତୀ"- ୧୯୪୪ ଲୁପ୍ତପ୍ରାୟ ପ୍ରାଚୀନ ଓଡ଼ିଆ ସାହିତ୍ୟର ଚର୍ଚ୍ଚା କରିବାରେ କେବଳ ସୀମିତ ନଥିଲା, ଓଡ଼ିଶାର ନୃତ୍ୟ, ସଙ୍ଗୀତ ଓ ସଂସ୍କୃତି ବିଷୟରେ ମଧ୍ୟ ଦିଗ୍‌ଦର୍ଶନ ଦେଉଥିଲା । ଜଣେ କବି ଲେଖିଥିଲେ- "କ୍ଷୁଦ୍ର ମଞ୍ଜି ଉପୁଜାଏ ମହାଦ୍ରୁମ ଶତ ଶତ । ଦେଶଭକ୍ତ, ସାଧୁରକ୍ତ ନୁହେଁ ଭସ୍ମେ ପରିଣତ ।" ବାସ୍ତବିକ କଳିଙ୍ଗ-ଭାରତୀ ଏକ ସାଂସ୍କୃତିକ ପୁନର୍ଜାଗରଣର ମୂଳଉତ୍ସ ରୂପେ ପରିଗଣିତ ହୋଇଅଛି ।

ସଭାପତି ଆର୍ତ୍ତବଲ୍ଲଭ ଥିଲେ ଜ୍ଞାନତପସ୍ୱୀ । ତାଙ୍କର ବିଚାର ବିମର୍ଶ ଶ୍ରୋତାମାନଙ୍କ ମନରେ ଗଭୀର ରେଖାପାତ କରୁଥିଲା । ଶ୍ରଦ୍ଧା, ସ୍ନେହ ଓ ସମ୍ମାନର ସମାରୋହ ମଧ୍ୟରେ ସାହିତ୍ୟ ସଭା ପରିଚାଳିତ ହେଉଥାଏ । ପୂର୍ବରୁ କହିଛି, ଏମ.ଏ. ଅଧ୍ୟୟନ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟର ସହକାରୀ ଗବେଷକ ଭାବରେ ଏକବର୍ଷ କାଳ ଆର୍ତ୍ତବଲ୍ଲଭଙ୍କ ନିକଟ ସଂପର୍କରେ ଆସିଥିଲି ସାରଳା ଦାସଙ୍କ ଚଣ୍ଡୀପୁରାଣର ତୁଳନାତ୍ମକ ସଂପାଦନା କାର୍ଯ୍ୟରେ ସହପାଠୀ ବନ୍ଧୁ ଶ୍ରୀନିବାସ ମିଶ୍ରଙ୍କ ସହିତ । ସେହି ସମୟରେ ଜାଣିବାକୁ ପାଇଲି, ଅଧ୍ୟାପକ ଆର୍ତ୍ତବଲ୍ଲଭ କତିପୟ ସାହିତ୍ୟପ୍ରେମୀ ସହକର୍ମୀଙ୍କ ସହିତ ପ୍ରତିଷ୍ଠା କରିଥିଲେ 'ପ୍ରାଚୀ ସମିତି' ୧୯୨୬ ଖ୍ରୀଷ୍ଟାବ୍ଦରେ । ଲୋପମୁଖୀ ପ୍ରାଚୀନ ସାହିତ୍ୟର ଉଦ୍ଧାର, ସଂପାଦନା ଓ ପ୍ରକାଶ କରିବା ଥିଲା ଏହି ଅନୁଷ୍ଠାନର ମୁଖ୍ୟ ଉଦ୍ଦେଶ୍ୟ । ୧୯୨୯ ମସିହାରେ ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର ପ୍ରାଚୀ ସମିତିକୁ ଦାନ କରିଥିଲେ ଏକ ମୁଦ୍ରଣଯନ୍ତ୍ର । ଏଥିରୁ ପ୍ରାଚୀ ସମିତି ମୁଖପତ୍ର ୧୯୩୧ ରେ ପ୍ରକାଶିତ ହୁଏ ବିଚ୍ଛନ୍ଦଚରଣଙ୍କ ସଂପାଦନାରେ "The Prachi" ନାମରେ ।

ପ୍ରାଚୀ ସମିତି ଆନୁକୂଲ୍ୟରେ ୫୪ଟି ପୁସ୍ତକ ପ୍ରକାଶିତ ହୁଏ । ଏଥିରୁ ୩୭ଟି ଗ୍ରନ୍ଥର ସଂପାଦନା ଓ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ଲେଖିଥିଲେ ଆର୍ତ୍ତବଲ୍ଲଭ । ଓଡ଼ିଆ ସାହିତ୍ୟର ଇତିହାସ

ଉଦ୍ଧାର କରିବାପାଇଁ ଆର୍ତ୍ତବଲ୍ଲଭଙ୍କର ପ୍ରଚେଷ୍ଟା ଅଭିନନ୍ଦନୀୟ । କିଟଦ୍ରଂଷ୍ଟ ତାଳପତ୍ର ପୋଥି ସଂସାରରୁ ଆର୍ତ୍ତବଲ୍ଲଭ ଉଦ୍ଧାର କରି ଆଲୋକକୁ ଆଣିଥିଲେ-ରସବାରିଧି- ବୃନ୍ଦାବନ ଦାସ; ରାମବିଭା- ଅର୍ଜୁନ ଦାସ; ନିର୍ଗୁଣମାହାତ୍ମ୍ୟ- ବିଷ୍ଣୁଗର୍ଭ ପୁରାଣ- ଚୈତନ୍ୟଦାସ; ନଳଚରିତ- ମଧୁସୂଦନ ଦାସ; ଉଷାଭିଳାଷ- ଶିଶୁଶଙ୍କର ଦାସ; ବଟ ଅବକାଶ- ବଳରାମ ଦାସ; ବ୍ରହ୍ମଶାଙ୍କୁଳି, ଅଣାକାର ସଂହିତା, ଗୁରୁଭକ୍ତି ଗୀତା- ଅଚ୍ୟୁତାନନ୍ଦ ଦାସ; ରହସ୍ୟମଞ୍ଜରୀ- ଦେବଦୁର୍ଲ୍ଲଭ ଦାସ; ଶଶିସେଣା- ପ୍ରତାପ ରାୟ; ପ୍ରେମଭକ୍ତି ବ୍ରହ୍ମଗୀତା, ଶିବ ସ୍ୱରୋଦୟ- ଯଶୋବନ୍ତ ଦାସ; ରୁକ୍ମିଣୀ ବିଭା- କାର୍ତ୍ତିକ ଦାସ; ପ୍ରେମ ପଞ୍ଚାମୃତ- ଭୂପତି ପଣ୍ଡିତ; ପରଚେ ଗୀତା- ଦ୍ୱାରିକା ଦାସ; ଶ୍ରୀଚୈତନ୍ୟ ଭାଗବତ- ଈଶ୍ୱର ଦାସ; ପୂର୍ଣ୍ଣତମ ଚନ୍ଦ୍ରୋଦୟ- ବୃନ୍ଦାବତୀ ଦାସୀ; ରସକଲ୍ଲୋଳ, ଜଗମୋହନ ଛାନ୍ଦ- ଦୀନକୃଷ୍ଣ ଦାସ; ଲାବଣ୍ୟବତୀ- ଉପେନ୍ଦ୍ରଭଞ୍ଜ; ଗୋପୀଭାଷା- ଦନାଇ ଦାସ; ମଥୁରାମଙ୍ଗଳ- ଭକ୍ତଚରଣ ଦାସ; ଚତୁରବିନୋଦ- ବ୍ରଜନାଥ ବଡ଼ଜେନା; ବିଦଗ୍ଧ ଚିନ୍ତାମଣି- ଅଭିମନ୍ୟୁ ସାମନ୍ତସିଂହାର; ଖାଡ଼ିଙ୍ଗା ଭାଗବତ- ଦୀନକୃଷ୍ଣ ଖାଡ଼ଙ୍ଗା; ସ୍ତୁତି ଚିନ୍ତାମଣି, ବ୍ରହ୍ମନିରୂପଣ ଗୀତା, ଶ୍ରୁତିନିଷେଧ ଗୀତା, ଭଜନମାଳା- ଭୀମଭୋଇ; ମାଦଳାପାଞ୍ଜି, ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ, ବ୍ରହ୍ମନାରଦୀୟ ପୁରାଣ, ଲୀଳାବତୀ, ଜୟକୃଷ୍ଣ ଭଜନ, ନାରାୟଣ ଶତକ, ମହିମାଧର୍ମ ପ୍ରତିପାଦକ ଇତ୍ୟାଦି ।

ଏତଦ୍‌ବ୍ୟତୀତ ପ୍ରାଚୀସମିତି ଆନୁକୂଲ୍ୟରେ ଅନ୍ୟମାନଙ୍କ ସଂପାଦନାରେ ଆଉ କେତେକ ପୁସ୍ତକ ପ୍ରକାଶିତ ହୋଇଥିଲା

ଓଡ଼ିଶାର ଜାତୀୟ ଜୀବନର ଭୀଷ୍ମପିତାମହ ମଧୁସୂଦନ ଦାସ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କୁ ଅଭିନନ୍ଦନ ଜଣାଇଥିଲେ ୧୯୩୨ ମସିହା ଜୁନମାସ ନଅ ତାରିଖରେ ଇଂରେଜ ସରକାର ତାଙ୍କୁ ରାୟସାହେବ ଉପାଧିରେ ସମ୍ମାନିତ କରିଥିବାରୁ । ଏଥିରେ ଆର୍ତ୍ତବଲ୍ଲଭଙ୍କ ସାରସ୍ୱତ ସାଧନାର ଉଚ୍ଛ୍ୱସିତ ପ୍ରଶଂସା କରାଯାଇଛି ।

ମଧୁବାବୁଙ୍କ ଚିଠି-

My dear Rai Saheba

The Utkal luminary which illuminated the Indian firmament has set and has gone down the horizon. But an observer can see the rich clouds reflected in the western sky.

We all wish to see the great luminary rise once more and give us the dawn of a new national life.

You have devoted a good deal of your valuable time to direct the attention of the present generation to the ancient literature of the nation. The beautiful colours in the western sky must be fully appreciated, loved and admired before the youthful mind is aglow with a desire to see the down of a new national life.

The honour conferred on you should have come earlier. But you are young and I am sure you will receive

higher honours not only from government but from your nation who will crown you with ever green laurels while you live and when you leave this world, you will receive a crown of life from your creater for your services to your nation and country.

With best wishes for health, happiness and prosperity.

Yours very sincerely
M.S. Das

ସେତେବେଳେ ବଡ଼ମାନଙ୍କଠାରୁ ଏହିପରି ଆଶୀର୍ବାଦ ସ୍ୱତଃ ଝରି ଆସୁଥିଲା । ସାହିତ୍ୟସମାଜର ସଭ୍ୟ ଆସନରେ ମଣ୍ଡିତ ହେଉଥିଲେ ଆଜୀବନ ଜ୍ଞାନତପସ୍ୱୀ ଓ ଶକ୍ତିଶାଳୀ ସାରସ୍ୱତ ସ୍ରଷ୍ଟାଗଣ । ଉତ୍କଳ ସାହିତ୍ୟ ସମାଜ ପ୍ରସଙ୍ଗରେ ଆଲୋଚନା ପରେ ଆସିବ । ସେଦିନର ସେହି ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ଆଜି ଆଉ ଦେଖିବାକୁ ମିଳୁନାହିଁ । ତୁରନ୍ତ ନାମ କମାଇବାର ବ୍ୟାକୁଳତା ଓ ସହଜସାଧ ପ୍ରଚାରମୁଖୀନତା ସାହିତ୍ୟ ସଂସାରକୁ ଆଚ୍ଛନ୍ନ କରିରଖିଛି ।

କଟକର ଟାଉନହଲ ଅଥବା ମ୍ୟୁନିସିପାଲ୍ଟି ପଡ଼ିଆରେ ସାଧାରଣତଃ ରାଜନୈତିକ ସଭା ଆହୂତ ହେଉଥାଏ । କଟକର କଳାବିକାଶ କେନ୍ଦ୍ର, ସହୀଦ ଭବନ, ଦି ୟୁନିଭର୍ସ ପରି ସଭା କରିବାର କ୍ଷେତ୍ର ପ୍ରସ୍ତୁତ ହୋଇ ନଥିଲା । ଅବଶ୍ୟ ବାଲିଯାତ୍ରା ପଡ଼ିଆରେ ବେଳେବେଳେ ସଭା ହେଉଥାଏ । ଏହି ସଭାରେ ବହୁ ଭାରତବିଖ୍ୟାତ ଓ ଓଡ଼ିଶାବିଖ୍ୟାତ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଦର୍ଶନ କରିବା ଓ ଭାଷଣ ଶୁଣିବାର ସୌଭାଗ୍ୟ ମିଳୁଥିଲା । ସେମାନେ ହେଲେ ଜୟପ୍ରକାଶ ନାରାୟଣ, ଆଶୋକ ମେହେଟ୍ଟା, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ପଣ୍ଡିତ ଜବାହାରଲାଲ ନେହେରୁ, ହରେକୃଷ୍ଣ ମହତାବ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ, ନବକୃଷ୍ଣ ଚୌଧୁରୀ, ରାମକୃଷ୍ଣ ପତି, ସୁରେନ୍ଦ୍ର ଦ୍ୱିବେଦୀ, ମନମୋହନ ମିଶ୍ର, ସରଳାଦେବୀ, ଶ୍ୟାମସୁନ୍ଦର ମିଶ୍ର, ନବକିଶୋର ଦାସ ପ୍ରଭୃତି ଅନେକ ସ୍ମରଣୀୟ ବ୍ୟକ୍ତିତ୍ୱ ।

ଆଜି ସହରର ଚତୁପାର୍ଶ୍ୱକୁ ରିଙ୍ଗ୍‌ରୋଡ଼ ଘେରିଯିବା ଯୋଗୁ ମହାନଦୀ କୂଳରେ ଅବସର ବିନୋଦନ ପାଇଁ ଅପୂର୍ବ ସୁଯୋଗ ମିଳିଯାଇଛି । ସେତେବେଳେ ଏ ସୁଯୋଗ ନଥିଲା । କାଠଯୋଡ଼ି କୂଳରେ ଅବସରକାଳୀନ ଝଟି ବସୁଥିଲା । ଦୁଇଟି ନଦୀ ଥିଲେ ପୂର୍ଣ୍ଣଗର୍ଭା । ଗଡ଼ଗଡ଼ିଆ ମହାଦେବଙ୍କ ମନ୍ଦିର ନିକଟ ନଦୀ ତୁଠରେ ଅନେକ ନୌକା ଡେରା ହେଇଥାଏ । ଏହିଠାରୁ ନୌକାରେ ବସି ଲୋକମାନେ ଯାଉଥିଲେ ଧବଳେଶ୍ୱର । ସତୀଚଉରା ପାଖରେ ନଦୀବଢ଼ିର ସ୍ରୋତ ଧକ୍କା ଖାଉଥିଲା । ଏହି ଅର୍ଦ୍ଧଶତାବ୍ଦୀ ମଧ୍ୟରେ ନଦୀଗର୍ଭ ପୋତିହୋଇ ଆଉ ଗୋଟିଏ ନୂଆ ସହର (CDA) ବସି ସାରିଲାଣି । ମହାନଦୀ ପଟେ ନଦୀଗର୍ଭରେ ଚଡ଼ା ସୃଷ୍ଟି ହୋଇ ବାଲିଯାତ୍ରା ସଂପ୍ରସାରିତ ହୋଇଛି । ଉଭୟ ନଦୀର କୂଳେ କୂଳେ ଅନେକ ମନ୍ଦିର ମୁଣ୍ଡଟେକି ଠିଆ ହେଲେଣି । ଶତଶତ ପୋଖରୀ ପୋତାଯାଇ ତାରି ଉପରେ ମୁଣ୍ଡ ଟେକିଲାଣି ଆକାଶଚୁମ୍ବୀ କୋଠା ଘରମାନ । ସେଦିନର ହାତଟଣା ରିକ୍ସା, ଶଗଡ଼ଗାଡ଼ି ଓ ଘୋଡ଼ାଗାଡ଼ି ଆଉ ଦେଖିବାକୁ ମିଳୁନାହିଁ । ବର୍ତ୍ତମାନ ହଜାର ହଜାର ସଂଖ୍ୟାରେ ବାଷ୍ପୀୟଯାନ କଟକଚ

ରାଜରାସ୍ତାକୁ ଆବୋରି ବସିଅଛନ୍ତି । ଆମୋଦ ପ୍ରମୋଦ ପାଇଁ ଦୁଇଟି ସିନେମାଘର ଥିଲା- ପ୍ରଭାତ ସିନେମା ଓ କ୍ୟାପିଟାଲ ସିନେମା । ସେତେବେଳେ ରଙ୍ଗୀନ ଚଳଚ୍ଚିତ୍ରର ଯୁଗ ଆସି ନଥିଲା । ପ୍ରାୟ ପ୍ରତ୍ୟେକ ତିନି ଦିନରେ ଗୋଟିଏ ନୂଆ ଚଳଚ୍ଚିତ୍ର ଦେଖିବାକୁ ମିଳୁଥିଲା । କ୍ୟାପିଟାଲ ସିନେମାରେ ବଙ୍ଗଳାଚିତ୍ର ଓ ଇଂରାଜୀଚିତ୍ର ପ୍ରଦର୍ଶନ ଥିଲା ଅତ୍ୟନ୍ତ ଆକର୍ଷଣୀୟ । ପ୍ରତ୍ୟେକ ରବିବାର ସକାଳବେଳା ଇଂରାଜୀ କିମ୍ବା ବଙ୍ଗଳା ଚିତ୍ରର ପ୍ରଦର୍ଶନ କରାଯାଉଥିଲା । ସେତେବେଳକୁ ସିନେମା ଘରେ ଟିକଟରେ କଳାବଜାର ଯୁଗ ଧୀରେଧୀରେ ପ୍ରବେଶ କରୁଛି । ''କାଲାବାଜାର'' ଚଳଚ୍ଚିତ୍ର ହିଁ ଏହି ବିଷମଞ୍ଜି ବୁଣି ଦେଇଯାଇଥାଏ । ପ୍ରତ୍ୟେକ ରବିବାର ସକାଳ ଓଳି କ୍ୟାପିଟାଲରେ ନିଶ୍ଚୟ ସିନେମା ଦେଖିବାକୁ ଯାଏ । ସେଦିନର ଛବି ଥିଲା ବିଖ୍ୟାତ ଇଂରାଜୀ ଚଳଚ୍ଚିତ୍ର "Knights of The Round Table" ଭୀଷଣ ଭିଡ଼ । ଦେଖଣାହାରୀ ଲମ୍ବାଧାଡ଼ିରେ ଠିଆ ହୋଇ ଟିକଟ ଆଣିବାକୁ ଅସମ୍ଭବ ଲାଗୁଥାଏ । ଭୟଙ୍କର ଠେଲାପେଲା । ଏଣେ ବାହାରେ କଳାବଜାରୀମାନେ ଘୂରିଘୂରି ଟିକଟ ବିକୁଥାଆନ୍ତି ଚଢ଼ା ଦାମରେ । ମୁଁ ତ କଳାବଜାର ଟିକଟ କିଣିବି ନାହିଁ । ଭାବୁଥାଏ ଫେରିଯିବି ମିସନସ୍କୁଲର ସେହି ନିର୍ଜନ କୋଠରୀକୁ । ହଠାତ୍ ଜଣେ ଛାତ୍ର ପାଖକୁ ଆସି ପଚାରିଲେ ସାର, ସିନେମା ଯିବେ କି ? କହିଲି, ଯିବାକୁ ତ ଆସିଥିଲି । ଟିକଟ ପାଇବା ମୁସ୍କିଲ । ମୋ ପାଖରେ ରେଭେନ୍ସାର ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ମଧ୍ୟ ଅସହାୟ ହୋଇ ଅପେକ୍ଷା କରିଥାଆନ୍ତି । ସେ ଛାତ୍ର କହିଲେ, ସାର୍ ଟଙ୍କା ଦିଅନ୍ତୁ, ଟିକଟ ଆଣିଦେବି । କହିଲି, କଳାବଜାର ଟିକଟ କିଣି ଯିବି ନାହିଁ । ସେ ହସିଲା, କହିଲା ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ସେ କଳାବଜାରୀଙ୍କ ମଧ୍ୟରେ ମୋର ସାଙ୍ଗ ଅଛନ୍ତି । ଠିକ୍ ରେଟ୍‌ରେ ଆଣିଦେବି । କହିଲି, ରେଭେନ୍ସା କଲେଜର ଏହି ଅଧ୍ୟାପକଙ୍କ ପାଇଁ ମଧ୍ୟ ଆଉ ଗୋଟିଏ ଟିକଟ ଆଣିବ । ଆମେ ଦୁହେଁ ସିନେମା ଘରେ ପ୍ରବେଶ କଲୁ । ଜାନକୀ ବାବୁ ପଚାରିଲେ- ସେ ପିଲାଟି କିଏ ? କହିଲି- ''ସେ ଆମର ଛାତ୍ର । ଅତ୍ୟନ୍ତ ଚଗଲା ପ୍ରକୃତିର । ସେଭଳି ପିଲାମାନଙ୍କୁ ଆମେ କଲେଜ ହତାରେ ଅତ୍ୟନ୍ତ ସଙ୍କୋଚର ସହିତ ବ୍ୟବହାର କରୁ । କିନ୍ତୁ କଲେଜ ବାହାରେ ସେମାନେ ଆମର କେତେ ବିଶ୍ୱସ୍ତ ଓ ଆପଣାର ।'' ଜାନକୀବାବୁ ଦୀର୍ଘନିଃଶ୍ୱାସ ପକାଇ କହିଲେ- ''ପଠାଣିବାବୁ ! ସେହି ଟିକଟ କିଣା ଲମ୍ବା ଧାଡ଼ିରେ ମୋ କଲେଜର ଏକାଧିକ ପିଲା ଠିଆ ହୋଇଥିଲେ । କେହି ତ ମୋ ପାଇଁ ଦରଦୀ ହେଲେ ନାହିଁ । ତୁମ ପ୍ରତି ପିଲାମାନେ କେତେ ସ୍ନେହପ୍ରବଣ ଓ ଅନୁଗତ ।'' ଭାରି ସୁଖ ମଣିଥିଲି ଆମର ଛାତ୍ରମାନଙ୍କର ପ୍ରଶଂସା ଶୁଣି ଜାନକୀବାବୁଙ୍କ ପରି ଜଣେ ଶକ୍ତିଶାଳୀ ଲେଖକ ଓ ଅଧ୍ୟାପକଙ୍କଠାରୁ ।

ନିର୍ଜନ କୋଠରୀର ଅଧିବାସକୁ କିଛି ସମୟ ଭୁଲିଯିବାପାଇଁ ରବିବାର ଦିନ ସଂଧ୍ୟାରେ ସିନେମା ଘରକୁ ପଳାଇଆସେ । କେଉଁ ଚଳଚିତ୍ର ଚାଲିଛି, ସେ ଧାରଣା ନଥାଏ । ଦିନେ ଦିନେ ଟିକଟ କରି ହଲରେ ପ୍ରବେଶ କଲାପରେ ଦେଖେ, ତେଲୁଗୁ ଚିତ୍ର ଚାଲିଛି । ଭାଷା ନ ବୁଝିଲେ ନାହିଁ । ଆରାମରେ ଚଳଚ୍ଚିତ୍ର ସହିତ ଏକାଠି ହୋଇ ଫେରିଆସେ ।

ଦୀର୍ଘ ପଚାଶବର୍ଷ କାଳ ଆକାଶବାଣୀରେ ନାନା ବିଭାଗରେ ମୋର ଲେଖା ପ୍ରଚାରିତ ହୋଇଆସିଛି । ମୋର ସହପାଠୀ ବନ୍ଧୁ ଲକ୍ଷ୍ମୀଧର ମହାନ୍ତି ଆକାଶବାଣୀରେ କାର୍ଯ୍ୟ କରୁଥାଏ ଅଫିସ ସହକାରୀ ଭାବରେ । ତାରି ଜରିଆରେ ଚେଷ୍ଟାକଲି ଆକାଶବାଣୀର ଘୋଷକ (ଆନାଉନ୍‌ସର) ଭାବରେ ସାମୟିକ କାର୍ଯ୍ୟ କରିବାପାଇଁ । ମାତ୍ର ସଫଳ ହୋଇପାରିଲି ନାହିଁ । ସେହି ବନ୍ଧୁର ଉଦ୍ୟମରେ ସୁଯୋଗ ମିଳିଲା ଏକ 'ଟକ୍' ଦେବାପାଇଁ । ସେତେବେଳେ ଆଜିକାଲି ପରି ରେକର୍ଡ଼ିଂ ବ୍ୟବସ୍ଥା ଆସି ନଥାଏ । ଟକ୍‌ର ବ୍ୟବଧାନ ସମୟ ହେଉଛି ପନ୍ଦର ମିନିଟ୍ । ''ଲାଇଫ୍ ବ୍ରଡ଼କାଷ୍ଟ'' ହେତୁ ଅତ୍ୟନ୍ତ ସାବଧାନ ଭାବରେ ପାଠ କରିବାକୁ ହୁଏ । ସଫଳତା ଅର୍ଜନ କଲି । ପଛକୁ ଫେରି ଚାହିଁନାହିଁ । ଆକାଶବାଣୀ ରେକର୍ଡ଼ିଂ ଯୁଗ ଆସିଲା ପରେ ମୋର ଅନେକ ଭାଷଣ ସାଇତି ରଖିଛନ୍ତି ଏବଂ ବାରମ୍ବାର ପ୍ରଚାର କରିଥାଆନ୍ତି । ବହୁଦିନ ପର୍ଯ୍ୟନ୍ତ ଏହି ଟକ୍ ପାଇଁ ପଚିଶଟଙ୍କା ମିଳୁଥିଲା । ମୋର ପ୍ରଥମ ଦିନର ଏହି ଅନୁଭୂତି ଉଲ୍ଲେଖ ନ କରି ରହିପାରୁନାହିଁ । ପଚିଶ ଟଙ୍କାର ଚେକ୍ ପାଇ ଫେରି ଆସୁଛି, ଆକାଶବାଣୀରେ କାର୍ଯ୍ୟ କରୁଥିବା ବକ୍ସିବଜାର ମଧୁପୁର କୋଠିରେ ଜଣେ ଚତୁର୍ଥ ଶ୍ରେଣୀ କର୍ମଚାରୀ ଦେଖାଦେଲେ ଗେଟ୍ ପାଖରେ । ପଚାରିଲେ, ସାର୍ ଆପଣଙ୍କର କଣ ବ୍ୟାଙ୍କରେ ଆକାଉଣ୍ଟ ଅଛି ? ନାହିଁ କଲି, ନୂଆ ନୂଆ ଚାକିରୀ ମୁଁ କିଏ, ବ୍ୟାଙ୍କ କିଏ । ସେ ପ୍ରସ୍ତାବ ଦେଲେ ମୋତେ ଚବିଶ ଟଙ୍କା ଦେଇ ଚେକଟି ନେବାପାଇଁ । ମନ୍ଦୁ ଖୋଜୁଥିଲା ଯାହା ବଇଦ ବତାଇଲା ତାହା । ଖୁସି ମନରେ ଚବିଶ ଟଙ୍କା ଉପୁରି ରୋଜଗାର କରି ଚାଲିଲି ବକ୍ସିବଜାର । ଗୋଟିଏ ରେଡ଼ିମେଡ଼ ଦୋକାନରେ ମୋ ପାଇଁ ପ୍ୟାଣ୍ଟ ଓ ହାଓ୍ୱାଇଟିଏ କିଣିଲି । ଗଲି ପ୍ରଭାତ ସିନେମା । ସେଠାରେ ହୋଟେଲରେ ଜଳଖିଆ ଖାଇ ପ୍ରଥମ ଶ୍ରେଣୀ ଟିକେଟ କିଣି ସିନେମା ଦେଖିଲି । ରାତି ନଅଟାରେ ମୋର ନିର୍ଜନ କୋଠରୀକୁ ଫେରି ଆସିଲାବେଳକୁ ଆଉ ହାତରେ ଥିଲା ଆଠ ଅଣା ପଇସା । ଆଜି ଏ କଥା କିଏ ବିଶ୍ୱାସ କରିବ ? କି ଥିଲା ଏ ରାଜ୍ୟ ! କି ହୋଇଛି ଆଜ !

ସେଇ ତରୁଣ ବୟସରେ କଣ୍ଠସ୍ୱର ପରୀକ୍ଷାରେ ବିଫଳ ହେବାରୁ ଆନାଉନ୍ସର ହେବାପାଇଁ ଯୋଗ୍ୟ ହେଲି ନାହିଁ । ମାତ୍ର ଈଶ୍ୱରଙ୍କ ଅପାର କରୁଣାରୁ ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ ଆକାଶବାଣୀ ଓ ପରବର୍ତ୍ତୀ ପର୍ଯ୍ୟାୟରେ ଦୂରଦର୍ଶନରେ ନିରବିଚ୍ଛିନ୍ନ ଅଂଶଗ୍ରହଣ କରିବାପାଇଁ ଯୋଗ୍ୟ ବିବେଚିତ ହୋଇଛି । କେବଳ ସେତିକି ନୁହେଁ, ଆକାଶବାଣୀ ତାଙ୍କର ବାର୍ଷିକ ପୁରସ୍କାର ପ୍ରଦାନ ନିର୍ବାଚନ କମିଟିରେ ମଧ୍ୟ ସଭ୍ୟ ମନୋନୀତ କରିଥିଲେ । ତାଙ୍କର ସରକାରୀ ଚିଠିର ନମୁନା ଏହିପରି–

**Government of India All India Radio, Cuttack**

Confidential

by Hand

No-Cut-24 (1)/80-P6 Dated- 24.12.1980

**Sri Pathani Pattnaik**
Keonjhar Colony (Near Kanika Kothi)
Cuttack-1

Sir,

Kindly recall the discussion you had with Sri Manoranjan Das, Producer, Drama of this Station regarding your acting as honorary member of the Scneening committee for Annual Akashvani Award, 1980.

The Committee will meet at 11.30 AM on 29th and 30th of this month. We will be arranging for your transport for attending the meeting.

While expressing our gratefulness to you, we request you to kindly confirm this arrangement at your earliest.

*Yours faithfully,*
**H.N Patro**
Assistant Station Director for Station Director.

ପୁରୀ ରଥଯାତ୍ରା ପାଇଁ ପ୍ରତ୍ୟେକ ବର୍ଷ ଆକାଶବାଣୀ କେନ୍ଦ୍ରରୁ ଘୋଷକ ପ୍ରେରଣ କରାଯାଇଥାଆନ୍ତି । ପ୍ରଥମ ଅବସ୍ଥାରେ ଏହି ଘୋଷକ ହେବାର ସୁଯୋଗ ଲାଭ କରିଥିଲି । ପରବର୍ତ୍ତୀ କାଳରେ ବହୁବର୍ଷ ଧରି ଘୋଷକ ନିର୍ବାଚନ କମିଟିରେ ଆକାଶବାଣୀ, ଅନ୍ୟତମ ସଭ୍ୟ ଭାବରେ ବରଣ କରି ମୋତେ ସମ୍ମାନିତ କରିଥିଲେ ।

ସେହିପରି କଟକ ଦୂରଦର୍ଶନ କେନ୍ଦ୍ରରେ ମଧ୍ୟ ଆନାଉନ୍ସର ନିର୍ବାଚନ କମିଟିର ଅନ୍ୟତମ ବିଚାରକ ହେବାର ସୁଯୋଗ ମିଳିଥିଲା । ଦୂରଦର୍ଶନ କେନ୍ଦ୍ର ଭୁବନେଶ୍ୱରରେ ସ୍ଥାୟୀଭାବରେ କାର୍ଯ୍ୟ କଲାପରେ ଆଲୋଚକ ଭାବରେ ବହୁବର୍ଷ ନିମନ୍ତ୍ରଣ ଲାଭ କରିଆସିଛି । କେବଳ ସେତିକି ନୁହେଁ, ଦୂରଦର୍ଶନ କେନ୍ଦ୍ରରୁ ଯେଉଁ ଓଡ଼ିଆ ଚଳଚ୍ଚିତ୍ର ପରିବେଷଣ କରାଯାଏ, ତାହାର ନିର୍ବାଚନ କମିଟିରେ ମଧ୍ୟ କାର୍ଯ୍ୟ କରିବାପାଇଁ ନିମନ୍ତ୍ରିତ ହୋଇଛି । କେନ୍ଦ୍ର ନିର୍ଦ୍ଦେଶକଙ୍କର ଗୋଟିଏ ଚିଠି ଏହିପରି–

**Gajendra Nayak**
Director

**GOVERNMENT OF INDIA**
DOORDARSHAN KENDRA
Bhubaneswar-751005

No, BBSR- 26/2/93- P/ TV (SP) Dated the 26th February-93

Dear Professor Pattnaik

I write to enquire if you would be kind enough to agree to be a member of the selection committee for Sponsored Programme and Feature Films at Doordarshan Kendra, Bhubaneswar. This committee is intended to consider process and approve proposal received from outside producers for telecast of TV programmes under Doordarshan Sponsorship Scheme. This committee is also intended to select and do the grading of selected films (Regional Language). The members will be nominated for a period of one year and will serve in the committee in an honorary capacity. The committee will ordinarily meet once a Quarter. However the Chairman may call a meeting.

at any time if considered necessary in addition to this.

For attending such meeting, the members will be entilted to T.A. admissible under the rules and a consultation fee of Rs 150- each for diem. I do hope that you will kindly agree to be a member of these committees.

I shall be grateful if you could kindly let me have your kind consent at a very early date. With regards.

Yours sincerely
Gajendra Nayak

Professor Pathani Pattnaik
Keonjhar Colony
Kanika Road
Cuttack-8.

ଆକାଶବାଣୀ ଅନୁଭୂତି କହୁକହୁ ଦୂରର କଥା ମନେପଡ଼ିଗଲା । କଲେଜରେ ଥିଲି ଅନ୍ୟତମ କନିଷ୍ଠ ଅଧାପକ । କିନ୍ତୁ ଅଧକ୍ଷ ମହୋଦୟ ଅନେକ ଦାୟିତ୍ୱ ଦେବାଯୋଗୁଁ କାମ ଶିଖିବାପାଇଁ ଅପୂର୍ବ ସୁଯୋଗ ସୃଷ୍ଟିହେଲା ପ୍ରଥମ ଜୀବନରୁ । ହଷ୍ଟେଲ ଦାୟିତ୍ୱ, କଲେଜ ମେଗାଜିନ ସଂପାଦନା, ଫ୍ରି-ସିପ ବୋର୍ଡ଼, ଅଭାବୀ ପିଲାଙ୍କୁ ସାହାଯ୍ୟ-କମିଟି ପ୍ରଭୃତିରେ ବରିଷ୍ଠ ଅଧାପକମାନଙ୍କ ସହିତ କାର୍ଯ୍ୟକରି ଅନେକ କଥା ଶିକ୍ଷା କରିପାରିଲି । କନିଷ୍ଠ ଅଧାପକ ହେଲେ ମଧ କଲେଜ ପରୀକ୍ଷାରେ ଟାବୁଲେଟର ରହିଲି ଅନେକବର୍ଷ । କେବଳ ଏତିକି ନୁହେଁ, ଅଧକ୍ଷ ମୋ ଉପରେ କ୍ରୀଡ଼ାବିଭାଗର ଉପସଭାପତି ଦାୟିତ୍ୱ ମଧ ଦେଲେ । କଟକରେ ଉତ୍କଳ ବିଶ୍ୱବିଦ୍ୟାଳୟ କାର୍ଯ୍ୟ କରୁଥିବାରୁ ବିଶ୍ୱବିଦ୍ୟାଳୟର କ୍ରୀଡ଼ା ପରିଚାଳନା କମିଟିରେ ମଧ ତିନୋଟି ବର୍ଷ କାର୍ଯ୍ୟ କରିବାର ଅବକାଶ ମିଳିଲା । ଏହି କମିଟିର ଚେୟାରମ୍ୟାନ ଥାଆନ୍ତି କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜା । ଅନ୍ୟ ସଭ୍ୟ ହେଲେ ମେଡ଼ିକାଲ କଲେଜର ଡ଼ି.ଆର.ପଟ୍ଟନାୟକ, ରେଭେନ୍ସା କଲେଜର ଅଧାପକ ଉପାଧାୟ, ଷ୍ଟୁଆର୍ଟ କଲେଜର ସରସୀ ମୋହନ ଦାସ, ଶୈଳବାଳା ମହିଳା କଲେଜର ଦେବବାଳା ରାୟ ଓ ଖ୍ରୀଷ୍ଟକଲେଜର ମୁଁ । ଏହି କମିଟିର ଆବାହକ ଥିଲେ ଷ୍ଟୁଆର୍ଟ କଲେଜର ଅଧାପକ ଲମ୍ବୁ ବାନାର୍ଜୀ । ତିନିବର୍ଷ କାଳ ଅତି ନିକଟରୁ ଡଃ ପରିଜାଙ୍କ ସଂପର୍କରେ ଆସିପାରିଲି । ପରବର୍ତ୍ତୀ କାଳରେ ଡଃ ପରିଜା ଉତ୍କଳ ସାହିତ୍ୟ ସମାଜର ସଭାପତି ହୋଇଥିଲେ ଏବଂ ତାଙ୍କର କାର୍ଯ୍ୟକାରୀ ସମିତିରେ ସଭ୍ୟ ହେବାର ସୌଭାଗ୍ୟ ଲାଭ କରି ପାରିଥିଲି । ତାଙ୍କର ବିଶାଳ ବ୍ୟକ୍ତିତ୍ୱ ନିକଟରେ ସମସ୍ତେ ନତମସ୍ତକ । କିନ୍ତୁ ସେ ଥିଲେ ସ୍ନେହୀ ଓ ଉଦାର ଭାବାପନ୍ନ । କଥା କଥାରେ ଓଡ଼ିଆ ଢ଼ଗ ଅଥବା ଓଡ଼ିଆ ଭାଗବତରୁ କିଛି ଉଦ୍ଧାର କରି ଆଲୋଚନା କରୁଥିଲେ ।

ଖ୍ରୀଷ୍ଟ ମହାବିଦ୍ୟାଳୟର ପଶ୍ଚିମ ପଟେ ମାଳାଞ୍ଚ ଏକ ଛାୟାଶୀତଳ ଦର୍ଶନୀୟ ସ୍ଥାନ । ବିଶାଳ ବୃକ୍ଷମାନଙ୍କର ଏକତ୍ର ସମାବେଶକୁ ଘେରି ଇଟାର ନିର୍ମିତ ଏକ ଗ୍ୟାଲେରୀ । କଲେଜର ସାଂସ୍କୃତିକ ସଭା ଅନୁଷ୍ଠାନ ପାଇଁ ଏହାଏକ ମନୋରମ ସ୍ଥଳ । ସେଠାରେ ଦକ୍ଷିଣ ଦିଗକୁ ଗୋଟିଏ ଥିଏଟର ଷ୍ଟେଜ ନିର୍ମାଣ କରାଯିବାର ପ୍ରସ୍ତାବ ହେଲା । ମୋର ହଷ୍ଟେଲ ପିଲାମାନଙ୍କ

ସହିତ ଏହି କ୍ଷେତ୍ର ପାଇଁ ଇଟା ବୋହିବାରେ ସାହାଯ୍ୟ କରିଥିଲୁ । ନିକାଞ୍ଚନ ସ୍ଥଳ ଥିବାରୁ ଏହି ମାଳାଞ୍ଚରେ ଅନେକ ବର୍ଷ ଓଡ଼ିଆ ଅନର୍ସ ପିଲାଙ୍କ ପାଇଁ ସ୍ୱତନ୍ତ୍ର କ୍ଲାସର ଆୟୋଜନ କରିଥିଲି ।

ମୋର ବିଭାଗୀୟ ମୁଖ୍ୟ ଥିଲେ ବିଦ୍ୱାନ ଅଧ୍ୟାପକ ଶ୍ରୀଧର ଦାସ । ସେ ଥିଲେ ଅଧ୍ୟକ୍ଷ ରେଭରେଣ୍ଡ ବ୍ରହ୍ମାନନ୍ଦ ମହାନ୍ତିଙ୍କର ଦକ୍ଷିଣହସ୍ତ ସ୍ୱରୂପ । କଲେଜର ଯେକୌଣସି କାର୍ଯ୍ୟ ଶ୍ରୀଧରବାବୁଙ୍କୁ ପରାମର୍ଶ କରି କରାଯାଉଥିଲା । ବେଳେବେଳେ ସାର୍ ଓଡ଼ିଆ ବିଭାଗର କାର୍ଯ୍ୟନିର୍ଘଣ୍ଟ ବଣ୍ଟନ ଏବଂ ନିର୍ଦ୍ଦିଷ୍ଟ ଦିନରେ କଲେଜ ପରୀକ୍ଷା ପାଇଁ ପ୍ରଶ୍ନପତ୍ର ପ୍ରସ୍ତୁତିକୁ ଠିକ୍ ସମୟରେ କରିପାରୁ ନଥିଲେ । ଏହା ଥିଲା ଆମ ବିଭାଗର ଏକ ଇଜ୍ଜତ ପ୍ରଶ୍ନ । କନିଷ୍ଠତମ ଅଧ୍ୟାପକ ହେଲେ ହେଁ ମୋର ସିନିଅର ସହକର୍ମୀ ଅଧ୍ୟାପକ ବନମାଳୀ ମିଶ୍ରଙ୍କ ସହଯୋଗରେ ବାରଟି ପ୍ରଶ୍ନପତ୍ର ପ୍ରସ୍ତୁତ କରିଦେଉଥିଲି ଏବଂ ଟାଇମ ଟେବୁଲର ମଧ୍ୟ ବିଭାଗୀକରଣ କରି ସାରଙ୍କ ଦସ୍ତଖତ ପାଇଁ ଅର୍ପଣ କରୁଥିଲି । ଅଧ୍ୟାପକ ଦାସ କ୍ରମେ ମୋ ଉପରେ ଆସ୍ଥା ପୋଷଣ କଲେ ଏବଂ ସେ ଅବସର ନେବା ପର୍ଯ୍ୟନ୍ତ ଏହି କାର୍ଯ୍ୟ ମୋ ଦ୍ୱାରା କରାଉଥିଲେ । କ୍ରମେ ଆମ ବିଭାଗରେ ଆଠଜଣ ଅଧ୍ୟାପକ କାର୍ଯ୍ୟ କଲେ । ମାତ୍ର ଏହି କାର୍ଯ୍ୟ ମୋ ଦ୍ୱାରା ସମାହିତ ହେଉ ବୋଲି ସେ କାମନା କରୁଥିଲେ । କେବଳ ସେତିକି ନୁହେଁ, ଯଦି କୌଣସି କାରଣରୁ କଲେଜ କାର୍ଯ୍ୟରେ ବ୍ୟସ୍ତ ରହି ଅନର୍ସ କ୍ଲାସ ନେବାପାଇଁ ଅକ୍ଷମ ହେଉଥିଲେ ମୁଁ ସ୍ୱତଃପ୍ରବୃତ୍ତ ହୋଇ ସେ କ୍ଲାସଟି ନେଇଯାଉଥିଲି । ତେଣୁ ସାରଙ୍କର ସସ୍ନେହ ଆଶୀର୍ବାଦ ଲାଭ କରୁଥିଲି । ସେ କେବେହେଲେ କୌଣସି କାର୍ଯ୍ୟକୁ ଆଦେଶ ପ୍ରଦାନ କରି କରାଉ ନ ଥିଲେ । ତାଙ୍କଠାରୁ ପିତୃସୁଲଭ ସ୍ନେହ ଓ ମର୍ଯ୍ୟାଦା ଆମେ ଲାଭ କରୁଥିଲୁ ।

ଅଧ୍ୟାପକ ଶ୍ରୀଧର ଦାସ କେବେହେଲେ ସହକର୍ମୀମାନଙ୍କୁ ନାନା କାର୍ଯ୍ୟରେ ନିଯୁକ୍ତ କରି ସ୍ୱାର୍ଥ ହାସଲ କରିବାକୁ ପସନ୍ଦ କରୁ ନ ଥିଲେ । ସେତେବେଳେ ପାଠ୍ୟପୁସ୍ତକ ଜାତୀୟକରଣ ହୋଇ ନଥାଏ । ସାରଙ୍କର ଅନେକ ପାଠ୍ୟପୁସ୍ତକ ପ୍ରଚଳିତ ହେଉଥାଏ । ଥରେ ମୋତେ କହିଲେ- ତୁମେ ଚାରିଜଣ ଓଡ଼ିଆ କବିଙ୍କର ଜୀବନୀ ଲେଖିକରି ଦିଅ ପ୍ରବନ୍ଧ ଆକାରରେ ଯାହାକୁ ସ୍କୁଲ ପିଲାମାନେ ବୁଝିପାରିବେ । ସଙ୍ଗେ ସଙ୍ଗେ ଲେଖିଦେଲି । କେତେ ମାସ ପରେ ''ସମାଜର ପ୍ରଥମ ପୃଷ୍ଠାରେ ଦେଖିଲି ପାଠ୍ୟପୁସ୍ତକର ବିଜ୍ଞାପନ । ''ଜୀବନୀ ବର୍ତ୍ତିକା''- ସଂପାଦନା ଅଧ୍ୟାପକ ଶ୍ରୀଧର ଦାସ ଓ ଅଧ୍ୟାପକ ପଠାଣି ପଟ୍ଟନାୟକ । ଏହା ନିର୍ବାଚିତ ହୋଇଥିଲା ଅଷ୍ଟମ ଶ୍ରେଣୀର ଅତିରିକ୍ତ ପାଠ୍ୟ ଭାବରେ । ମୁଁ ଆଶ୍ଚର୍ଯ୍ୟ ହେଲି । ମୋର ସଂପୂର୍ଣ୍ଣ ଅଜାଣତରେ ସାର୍ ମୋତେ ଏ ସମ୍ମାନ ଦେଇଥିଲେ ଏବଂ ପ୍ରକାଶକ ଗ୍ରନ୍ଥ ମନ୍ଦିରରୁ ରୟାଲଟି ବାବଦରେ କିଛି ଅର୍ଥ ମଧ୍ୟ ପାଇଥିଲି । ଏପରି ଉଦାର ମନୋଭାବ କ୍ୱଚିତ ଦେଖିବାକୁ ମିଳେ ବିଭାଗୀୟ ମୁଖ୍ୟମାନଙ୍କଠାରୁ । ଏହି ସୁଯୋଗରେ ଗ୍ରନ୍ଥ ମନ୍ଦିରର ତଦାନୀନ୍ତନ ପରିଚାଳକ ଶ୍ରୀଧର ମହାପାତ୍ରଙ୍କର ଶ୍ରଦ୍ଧାଭାଜନ ହୋଇଥିଲି । ଦିନେ ତାଙ୍କୁ ଅନୁରୋଧ କଲି ପତ୍ରପତ୍ରିକାରେ ମୋର ପ୍ରକାଶିତ କେତୋଟି ସାହିତ୍ୟ-ସମାଲୋଚନା ପ୍ରବନ୍ଧକୁ ପୁସ୍ତକ ଆକାରରେ ପ୍ରକାଶ କରିବାପାଇଁ । ସେ କହିଲେ ତୁମେ କୌଣସି ବରିଷ୍ଠ ସାହିତ୍ୟିକଙ୍କର ମତାମତ ଆଣ । ତୁରନ୍ତ

ଉତ୍ତର ଦେଲି– କଟକରେ ଅବସ୍ଥାନ କରୁଥିବା ଅନେକ ପ୍ରବୀଣ ସାହିତ୍ୟିକଙ୍କ ସଂପର୍କରେ ଆସିବାର ସୌଭାଗ୍ୟ ମିଳିଛି । ଯାହାଙ୍କୁ ଅନୁରୋଧ କରିବି, ସେ ମୋତେ ଆଖିବୁଜି ପ୍ରଶଂସା କରି ଦୁଇପଦ ଲେଖିଦେବେ । ମାତ୍ର ତାହା ଦ୍ୱାରା କ'ଣ ବହି ବିକ୍ରୀ ହେବ ? ବହି ମଧ୍ୟ ମୋ ପରି ତରୁଣ ଲେଖକଙ୍କର ନାମରେ ଚାଲିବ ନାହିଁ । ଯଦି ତାହା ପାଠକୀୟ ଆଦର ପାଇବ, ଆପଣଙ୍କ ପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା ବ୍ୟାନରରେ । ସେ ମୋର ମୁଣ୍ଡରେ ହାତ ବୁଲେଇ ଆଣି କହିଲେ– 'ତୁମର ଏପରି ସ୍ୱାଭିମାନରେ ମୁଁ ମୁଗ୍ଧ ହେଲି ।' ତା'ପରେ ମୋର ପ୍ରବନ୍ଧତକ ପୁସ୍ତକ ରୂପରେ ପ୍ରକାଶିତ ହେଲା । ସେହିଦିନୁ କଟକର ଅଧିକାଂଶ ସ୍ୱନାମଧନ୍ୟ ପ୍ରକାଶକ ମୋର ଆଲୋଚନା ପ୍ରବନ୍ଧ ଛାପି ଆସିଛନ୍ତି । କେବେହେଲେ କାହାରି ମନ୍ତବ୍ୟପାଇଁ ପ୍ରାର୍ଥୀ ହୋଇନାହିଁ । ଅଥଚ ଆଜି ଏଇ ବୟସରେ ବୋଧହୁଏ ଶତାଧିକ ପୁସ୍ତକର ମୁଖବନ୍ଧ ମୋ ଦ୍ୱାରା ଲେଖାଯାଇଛି ।

ଆମ କଲେଜରେ ବିଭିନ୍ନ ବିଭାଗରେ କେତେଜଣ ବଙ୍ଗୀୟ ଅଧ୍ୟାପକ କାର୍ଯ୍ୟ କରୁଥାଆନ୍ତି । ଅଧ୍ୟାପନା କ୍ଷେତ୍ରରେ ସେମାନେ ଥିଲେ ସମ୍ମାନିତ ଓ ସୁପରିଚିତ । ଏକଦା ଷ୍ଟାଫ ବିଶ୍ରାମ କକ୍ଷରେ ଅବସର ସମୟରେ ଜୟଦେବଙ୍କ ବିଷୟରେ ଆଲୋଚନା ହେଉଥାଏ । ସେମାନଙ୍କର ଦୃଢ଼ ଅଭିବ୍ୟକ୍ତି ଥାଏ ଜୟଦେବ ବଙ୍ଗାଳୀ କବି ବୋଲି । ମୋ ପରି ସର୍ବକନିଷ୍ଠ ଏବଂ ନବାଗତ ଅଧ୍ୟାପକର ସାହସ ନଥାଏ ପ୍ରତିବାଦ କରିବାପାଇଁ । ଏହା ଥିଲା ମୋ ପ୍ରତି ଏକ ଆହ୍ୱାନ । ପଢ଼ାପଢ଼ି କରି କଲେଜ ମୁଖପତ୍ର 'ସାନ୍ତ୍ୱନାରେ' ଜୟଦେବ ଉତ୍କଳୀୟ ବୋଲି ଏକ ପ୍ରବନ୍ଧ ପ୍ରକାଶ କରିଥିଲି ।

ଥରେ ନିମଚଉଡ଼ିରେ ଜଣେ ପୁସ୍ତକ ପ୍ରକାଶକଙ୍କ ସହିତ ଶ୍ରୀଧର ବାବୁଙ୍କ ଯୋଗୁ ମୋର ପରିଚୟ ହେଲା । ଏକଦା ମୋତେ ଏକାନ୍ତରେ ଦିନେ ଅନୁରୋଧ କଲେ ''ଚିଲିକା'' ବହି ପାଇଁ ଦଶପୃଷ୍ଠା ମଧ୍ୟରେ ଏକ ମୁଖବନ୍ଧ ଲେଖି ଦେବାପାଇଁ । ପଚାରିଲେ, ଏଥିପାଇଁ ଆପଣଙ୍କୁ କେତେ ଦେବି ? କହିଲି, ମୋର ଏ ବିଷୟରେ କୌଣସି ଧାରଣା ନାହିଁ । ଆପଣ କହୁନାହାନ୍ତି । ସେ କହିଲେ, ଆପଣ ପିଲାଲୋକ । ଆପଣଙ୍କୁ ଉତ୍ସାହିତ କରିବାପାଇଁ ତିରିଶ ଟଙ୍କା ଦେବି । ଶ୍ରୀଧର ବାବୁ ହୋଇଥିଲେ କୋଡ଼ିଏ ଟଙ୍କା ଦେଇଥାଆନ୍ତି । ମୋତେ ବଡ଼ ଅପମାନିତ ବୋଧ ହେଲା । ଏହା ଏକ ଆତ୍ମସମ୍ମାନର ପ୍ରଶ୍ନ । ଜଣେ ଅଧ୍ୟାପକକୁ ସେମାନେ ଏତେ ଶସ୍ତା ବୋଲି ଭାବନ୍ତି କାହିଁକି ? ଉତ୍ତର ଦେଲି– ''ଆଜ୍ଞା, ଏହି କ୍ଷେତ୍ରରେ ଶ୍ରୀଧର ବାବୁଙ୍କଠାରୁ ଯଦି ଶସ୍ତାରେ କାର୍ଯ୍ୟ ହାସଲ କରିପାରିବେ, ମୋ ପରି ଲୋକଙ୍କୁ ଏ ଦୟା କାହିଁକି ?'' ତାଙ୍କର ଅନୁରୋଧ ତ ରକ୍ଷା କଲି ନାହିଁ, ତହିଁ ଆରଦିନ କଲେଜରେ ସାର୍‌ଙ୍କୁ ଏହି କଥା କହି ମଧୁର ଗାଳିଟିଏ ଦେଲି ।

ଆଉ ଦିନେ ଚଉଧୁରୀ ବଜାର ଛକରେ ଯାଉଛି, ସାକ୍ଷାତ ହେଲା ଅଧ୍ୟାପକ ବାନାମ୍ବର ବାବୁଙ୍କ ସହିତ । ପଚାରିଲେ କୁଆଡ଼େ ଯାଉଚ । କହିଲି ଯାଉଚି କାଠଯୋଡ଼ି ନଦୀକୂଳକୁ । ସେ କିନ୍ତୁ ମୋତେ ସାଙ୍ଗରେ ଡାକିନେଲେ ପ୍ରଫେସର ଗିରିଜାଶଙ୍କର ରାୟଙ୍କ ଘରକୁ । ତାଙ୍କର

ଘର ସେହି ଚୌଧୁରୀ ବଜାରରେ । ସେ ଥିଲେ ବିଖ୍ୟାତ ନାଟ୍ୟକାର, ଔପନ୍ୟାସିକ ଓ କଟକର ପ୍ରଥମ ଶ୍ରେଣୀର ନାଗରିକ ରାମଶଙ୍କର ରାୟଙ୍କର ସୁପୁତ୍ର ଏବଂ ଓଡ଼ିଶାର ବିଖ୍ୟାତ ସଂବାଦପତ୍ର 'ଉତ୍କଳ ଦୀପିକା'ର ସଂପାଦକ ଗୌରୀଶଙ୍କର ରାୟଙ୍କର ପୁତୁରା । ଗିରିଜାବାବୁ ଥିଲେ ଜଣେ ଶକ୍ତିଶାଳୀ ପ୍ରାବନ୍ଧିକ ଓ ନାଟକ ସାହିତ୍ୟର ଆଲୋଚକ । ତାଙ୍କ ପୂର୍ବରୁ ୧୯୦୩ ସାଲରେ ଖଡ଼ିଆଳ ଯୁବରାଜ ବୀରବିକ୍ରମଦେବ ''ନାଟକ ରଚନା ପ୍ରଣାଳୀ'' ପ୍ରଣୟନ କରିଥିଲେ । ଏହା ଥିଲା କେବଳ ନାଟକର ଶିକ୍ଷରୀତି ସଂପର୍କରେ ଏକ କ୍ଷୁଦ୍ର ପୁସ୍ତକ । ପୁନଶ୍ଚ ଖଡ଼ିଆଳ ରାଜା ୧୯୧୧ ସାଲରେ ରଚନା କରି ପ୍ରକାଶ କରିଥିଲେ 'ଅଭିନୟ ପ୍ରକାଶିକା' । ଏଥିରେ ଓଡ଼ିଆ ନାଟକ ସଂପର୍କରେ କୌଣସି ରଚନା ନଥିଲା । ଅଧ୍ୟାପକ ଗିରିଜାଶଙ୍କର ଥିଲେ ପ୍ରଥମ ଲେଖକ ଓଡ଼ିଆ ରଙ୍ଗମଞ୍ଚ ଓ ନାଟକର କ୍ରମବିକାଶ ସଂପର୍କରେ । ଓଡ଼ିଆ ଭାଷା ସଂପର୍କରେ ତାଙ୍କର ଆଉ ଏକ ଆଲୋଚନା ଗ୍ରନ୍ଥ ଥିଲା ''ରଚନା ବିଚାର''–୧୯୪୨ । ତାଙ୍କ ଲିଖିତ ଅନ୍ୟ ପୁସ୍ତକଗୁଡ଼ିକ ହେଲା ସାହିତ୍ୟ ସନ୍ଦର୍ଭ–୧୯୪୦, ସରଳ ଭାଷାତତ୍ତ୍ୱ–୧୯୪୧, ଓଡ଼ିଆ ନାଟ୍ୟକଳା–୧୯୪୩ । ଗିରିଜାଶଙ୍କର ରେଭେନ୍ସା କଲେଜରେ ବରିଷ୍ଠ ଇଂରାଜୀ ଅଧ୍ୟାପକ ଥିଲେ । ପୁରୀ କଲେଜ ଆରମ୍ଭ ହୁଏ ୧୯୪୪ ରେ । ଗିରିଜାବାବୁ ହେଲେ ପ୍ରଥମ ଅଧ୍ୟକ୍ଷ । ୧୯୪୫ ରେ ମୁଁ କଲେଜରେ ପ୍ରବେଶ କଲି । ସେ ଆମର ଇଂରାଜୀ କ୍ଲାସ ନେଉଥିଲେ । ଓଡ଼ିଆ ବିଭାଗରେ ଯଥେଷ୍ଟ ଅଧ୍ୟାପକ ଆସି ନଥିବାରୁ ସେ ଆମକୁ ପଢ଼ାଉଥିଲେ ''ଚିଲିକା'' । ସେ ଅଳ୍ପ କେତୋଟି କ୍ଲାସ ନେଲା ପରେ ଅଧ୍ୟାପକ ଗୋଲକ ବିହାରୀ ଧଳ ପାଟଣାରୁ ସଂସ୍କୃତ ଏମ.ଏ. ରେ ପ୍ରଥମ ଶ୍ରେଣୀ ପ୍ରାପ୍ତ ହୋଇ ଆମର ଅଧ୍ୟାପକ ହେଲେ ଓ ''ଚିଲିକା'' ପଢ଼ାଇଲେ । ଗିରିଜାବାବୁଙ୍କର ସେହି ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ ଆଜି ପର୍ଯ୍ୟନ୍ତ ମନରେ ଛାପ ହୋଇ ରହିଯାଇଛି । ତାଙ୍କର ଇଂରାଜୀ ସାହିତ୍ୟ ଅଧ୍ୟାପନା କୌଶଳ ମଧ୍ୟ ଅନନ୍ୟ ସାଧାରଣ ।

ମୋର ପୂର୍ବତନ ଅଧ୍ୟକ୍ଷ ଓ ଅଧ୍ୟାପକ ଗିରିଜାବାବୁଙ୍କ ଘରକୁ ଅତ୍ୟନ୍ତ ସନ୍ତର୍ପଣରେ ପ୍ରବେଶ କରି ସମ୍ମାନ ଜଣାଇଲି । ବାନାମ୍ବର ବାବୁ ମୋତେ ପରିଚୟ କରାଇଦେଲେ । ସେ ହସିହସି କହିଲେ, ପଠାଣିକୁ ମୁଁ ଜାଣିଚି । ସେ ମୋର ଛାତ୍ର ଥିଲେ ପୁରୀ କଲେଜରେ । ମୋର ବିଶ୍ୱବିଦ୍ୟାଳୟ ସହକାରୀ ଗବେଷକ ହେବା, ପ୍ରଜାତନ୍ତ୍ର ଓ ମାତୃଭୂମିରେ ସାମ୍ବାଦିକତା କରିବା, ଭାରତ ସରକାରଙ୍କ ପ୍ରଥମ ପ୍ରେସକମିସନରେ ଚାକିରୀ କରିବା, ଭଦ୍ରକ କଲେଜ ଓ ଖ୍ରୀଷ୍ଟକଲେଜରେ ସାମୟିକ ଅଧ୍ୟାପକ ହେବାର ସମସ୍ତ ଖବର କହିଗଲେ । ମୁଁ ଆଶ୍ଚର୍ଯ୍ୟ ହେଉଥାଏ । ଶହଶହ ଛାତ୍ରମାନଙ୍କ ମଧ୍ୟରେ ମୁଁ ଥିଲି ଅନ୍ୟତମ । ଅଧ୍ୟକ୍ଷ ମହୋଦୟଙ୍କର ଦୃଷ୍ଟି ଆକର୍ଷଣ କଲାପରି ସେପରି ବିଶେଷ ଯୋଗ୍ୟତା ମୋର ନଥିଲା । ତେବେ ଏହି ବୟସରେ ଓଡ଼ିଆ ସାହିତ୍ୟ ରଚନାରେ ମୋର ଆଗ୍ରହ ବୋଧହୁଏ ସାରଙ୍କର ଦୃଷ୍ଟି ଆକର୍ଷଣ କରିଥାଇପାରେ । ସେ ମୋର ଜୀବନପଞ୍ଜି କେତେ ଆଗ୍ରହରେ ଲକ୍ଷ୍ୟ କରିଥିଲେ । ଆଶ୍ଚର୍ଯ୍ୟ ହେଲି ଏବଂ ନୀରବରେ ଆଉଥରେ ପ୍ରଣତି ଜଣାଇଲି । ଭାଗ୍ୟରେ ଥିଲେ ଏପରି ଗୁରୁଙ୍କର ଶିଷ୍ୟ ହେବାର ସୌଭାଗ୍ୟ ମିଳିଥାଏ ।

ଆଗରୁ କହିଛି, ଚନ୍ଦ୍ରବାବୁଙ୍କ ସହିତ ସାହିତ୍ୟ ସମାଜ ସଭାରେ ବାରମ୍ବାର ଯୋଗ ଦେଉଥାଏ । ଓଡ଼ିଶାର ବହୁ ବରେଣ୍ୟ ସାହିତ୍ୟିକମାନଙ୍କ ଗହଣରେ ବସିବାର ସୌଭାଗ୍ୟ କେତେଜଣଙ୍କୁ ମିଳେ ? ସେଦିନ ଥାଏ ୧୯୫୫ ମସିହା ଅଗଷ୍ଟ ମାସ ଏକୋଇଶି ତାରିଖ । ପୂର୍ବତନ ସଭାପତି ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କର କାର୍ଯ୍ୟକାଳ ପୂରି ଯିବାରୁ ନିର୍ବାଚନ ହେଉଥାଏ । ଆଜିର ସାହିତ୍ୟ ସମାଜ ନିର୍ବାଚନ ଯେଉଁମାନେ ଦେଖୁଛନ୍ତି, ସେମାନେ ଏକଥା ବିଶ୍ୱାସ କରିବା କଷ୍ଟକର ହେବ । ମୁଷ୍ଟିମେୟ ସାହିତ୍ୟିକ ଉପସ୍ଥିତ । ଆପୋସରେ ବିନା ପ୍ରତିଦ୍ୱନ୍ଦ୍ୱିତାରେ ନିଷ୍ପତ୍ତି ହୋଇଗଲା । ସଭାପତି ହେବେ ଆଡ଼ଭୋକେଟ ଚିନ୍ତାମଣି ଆଚାର୍ଯ୍ୟ । ଉପସଭାପତି ପ୍ରଫେସର କରୁଣାକର କର । ସହଯୋଗୀ ସଂପାଦକ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା । ସେଠାରେ ଯେଉଁମାନେ ଉପସ୍ଥିତ ଥିଲେ, ସମସ୍ତେ ରହିଲେ କାର୍ଯ୍ୟକାରୀ ସମିତିର ସଭ୍ୟ । ଗୋଟିଏ ସଭ୍ୟପଦ ଊଣା ପଡ଼ିଲା, କବି ବାଳକୃଷ୍ଣ ପଟ୍ଟନାୟକ ପ୍ରସ୍ତାବ କଲେ– ''ଆମ ପଠାଣିକୁ କାର୍ଯ୍ୟକାରୀ ସମିତିରେ ଗ୍ରହଣ କରାଯାଉ ।'' ଏହା ଥିଲା ମୋ ପାଇଁ ଏକ ବିଚିତ୍ର ଅନୁଭୂତି । ସେହିଦିନୁ ଦୀର୍ଘକାଳ ବିଭିନ୍ନ ସଭାପତିଙ୍କ ଅମଳରେ କାର୍ଯ୍ୟକାରୀ ସମିତିକୁ ନିର୍ବାଚିତ ହେଉଥିଲି ଏବଂ ସାରାଜୀବନ ଏହି ସଂପର୍କ ତୁଟାଇ ପାରିନାହିଁ । ପରେ ଏ ବିଷୟରେ ଆଲୋଚନା କରିବି ।

ଏମ.ଏ. ଅଧ୍ୟୟନ କାଳରେ କୁଳପତି ଚିନ୍ତାମଣି ଆଚାର୍ଯ୍ୟଙ୍କ ଆଶୀର୍ବାଦ ଲାଭ କରି ଏକବର୍ଷ କାଳ ବିଶ୍ୱବିଦ୍ୟାଳୟର ସହକାରୀ ଗବେଷକ ଭାବରେ କାର୍ଯ୍ୟ କରିଥିଲି । ଚିନ୍ତାମଣି ବାବୁ ଥିଲେ ଓଡ଼ିଶା ହାଇକୋର୍ଟର ବରିଷ୍ଠ ଆଇନଜୀବୀ । କଟକ ଜିଲ୍ଲା ପୁରୁଣାହାଟ ଶାସନର ଏକ ଜମିଦାର ପରିବାରର ସେ ଥିଲେ ଉତ୍ତରାଧିକାରୀ । ଆଜୀବନ ସାହିତ୍ୟସେବାରେ ରତ ରହିଥିଲେ । ଜଣେ ଐତିହାସିକ ଓ ଶକ୍ତିଶାଳୀ ପ୍ରାବନ୍ଧିକ ଭାବରେ ତାଙ୍କର ପ୍ରତିଷ୍ଠା ରହିଥିଲା । 'ଭୁବନେଶ୍ୱର'' ବିଷୟରେ ଗବେଷଣାତ୍ମକ ପୁସ୍ତକ ପାଇଁ ସେ ଐତିହାସିକ ଭାବରେ ଅତ୍ୟନ୍ତ ସ୍ମରଣୀୟ । ତାଙ୍କର ଲିଖିତ ପୁସ୍ତକମାନଙ୍କ ମଧ୍ୟରେ ଇତିହାସ ପ୍ରସଙ୍ଗ, ଶ୍ରୀକୃଷ୍ଣ, ଜଗନ୍ନାଥ ଦାସ, ସଫଳ ସ୍ୱପ୍ନ ପ୍ରଭୃତି ଉଲ୍ଲେଖନୀୟ । ସଂସ୍କୃତ ଶ୍ରୀମଦଭାଗବତ ଗ୍ରନ୍ଥକୁ ସମପର୍ଯ୍ୟାୟରେ ଓଡ଼ିଆ ଭାଗବତର ଉଦ୍ଧୃତି ସହିତ କେତେଖଣ୍ଡ ଗ୍ରନ୍ଥ ତାଙ୍କ ଦ୍ୱାରା ସଂପାଦିତ ହୋଇଥିଲା । ଇଂରାଜୀରେ ଲେଖିଥିଲେ ଓଡ଼ିଶାର ଇତିହାସ ଓ କେତେକ ଆଇନ ପୁସ୍ତକ । ବର୍ତ୍ତମାନ ମହାବିଦ୍ୟାଳୟମାନଙ୍କରେ ଯେଉଁ ସାଂସ୍କୃତିକ ସପ୍ତାହ ପାଳନ କରାଯାଉଛି, ବିଶ୍ୱବିଦ୍ୟାଳୟ କୁଳପତି ଭାବରେ ସେ ପ୍ରଥମେ ପ୍ରବର୍ତ୍ତନ କରାଇଥିଲେ ।

ଅନେକ ହୁଏତ ସ୍ମରଣ କରନ୍ତି ନାହିଁ ଯେ ଚିନ୍ତାମଣି ଆଚାର୍ଯ୍ୟ ''ପଞ୍ଚାମୃତ'' ନାମରେ ଏକ ଶିଶୁ ଉପଯୋଗୀ ସାହିତ୍ୟ ପତ୍ରିକା ସଂପାଦନା କରିଥିଲେ ୧୯୨୫ ମସିହାରେ । ଏହାର ପ୍ରକାଶକ ଥିଲେ କଟକ ଟ୍ରେଡ଼ିଂ କଂପାନୀ । ଚିନ୍ତାମଣି ବାବୁଙ୍କୁ ସଂପାଦନାରେ ସହଯୋଗ କରୁଥିଲେ ଅଗଣି ଦାସ । ଓଡ଼ିଶାର ସ୍ୱନାମଧନ୍ୟ ଲେଖକମାନେ ଏହି ପତ୍ରିକାରେ ପିଲାମାନଙ୍କ ପାଇଁ ଲେଖୁଥିଲେ । ସେମାନେ ହେଲେ ଚନ୍ଦ୍ରଶେଖର ମିଶ୍ର, ପ୍ରତିଭା ଦେବୀ, କୁନ୍ତଳାକୁମାରୀ

ସାବତ, କୁଳମଣି ଦାସ, ଭିକାରୀଚରଣ ପଟ୍ଟନାୟକ, ଲକ୍ଷ୍ମୀକାନ୍ତ ମହାପାତ୍ର, ପ୍ରାଣକୃଷ୍ଣ ପରିଜା, ଚିନ୍ତାମଣି ଆଚାର୍ଯ୍ୟ, ପଦ୍ମଚରଣ ପଟ୍ଟନାୟକ, ଅଗଣି ଦାସ, ଦିବ୍ୟସିଂହ ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର କର, ରମାରଞ୍ଜନ ମହାନ୍ତି, ଗୋପାଳଚନ୍ଦ୍ର ପ୍ରହରାଜ, ଉପେନ୍ଦ୍ର ତ୍ରିପାଠୀ, ପୀତାମ୍ବରୀ ଦେବୀ, ଉଦୟନାଥ ଷଡ଼ଙ୍ଗୀ, ଯୋନାଥନ ମହାନ୍ତି । ଏହି ପତ୍ରିକାକୁ କେବଳ ସଂପାଦନା କରୁନଥିଲେ, ପ୍ରାୟ ପ୍ରତ୍ୟେକ ସଂଖ୍ୟାରେ ପିଲାଙ୍କପାଇଁ ଲେଖୁଥିଲେ ଚିନ୍ତାମଣି ଆଚାର୍ଯ୍ୟ ।

ଚାହୁଁ ଚାହୁଁ ନିର୍ଜନ କୋଠିର ଦୁଇଟି ବର୍ଷ ଅଧିବାସ ଶେଷ ହୋଇଗଲା । ୧୯୫୬ ମସିହା ଡ଼ିସେମ୍ବର ମାସରେ ମହମ୍ମଦିଆ ବଜାର ପାଟରା ଗଳିରେ ଭଡ଼ାଘରକୁ ଉଠିଆସିଲି ।

•••

# ଅଧ୍ୟାପକ ଜୀବନର ଚଳାପଥେ

ଥରେ ଅଧ୍ୟାପକ ଜୀବନକୁ ଆଦରି ନେଲାପରେ ଆଉ ପଛକୁ ଫେରି ଚାହିଁ ନାହିଁ । ଜୀବନର ଖାଲଢ଼ିପ ରାସ୍ତାରେ ବିଭିନ୍ନ କର୍ମସ୍ଥଳୀର ଅନୁଭୂତି ଅଙ୍ଗେ ନିଭେଇଛି । ପ୍ରବଳ ଇଚ୍ଛାଥିଲା ସାମ୍ବାଦିକତା କ୍ଷେତ୍ରରେ ରହିଯିବା ପାଇଁ । ଭାଗ୍ୟ ତାହା କରାଇ ଦେଲା ନାହିଁ । ଭାରତ ସରକାରଙ୍କ ପ୍ରଥମ ପ୍ରେସକମିସନରେ ଓଡ଼ିଆ ଗବେଷକ ଭାବରେ କାର୍ଯ୍ୟକରି କେତେ ସ୍ୱପ୍ନ ଦେଖିଥିଲି । ମୋଟା ଦରମାରେ କେବଳ ଦିଲ୍ଲୀ, କଲିକତାରେ ସମୟ ବିତିଯିବ ପରା ! ସେଥିପାଇଁ ଭାଗ୍ୟ ଅନୁକୂଳ ନଥିଲା । ପବ୍ଲିକ ସର୍ଭିସକମିସନ ମନୋନୀତ କରିଥିଲେ ମଧ ସରକାରୀ କଲେଜରେ ସ୍ଥାନ ପୂରଣ ହେଲାନାହିଁ । ଖ୍ରୀଷ୍ଟ ମହାବିଦ୍ୟାଳୟରେ ନିଯୁକ୍ତି ମିଳିଲା ବେଳେ ଅଧକ୍ଷଙ୍କର ମୌଖିକ ସର୍ତ୍ତ ଥିଲା–''ଆମକୁ ଛାଡ଼ି ଆଉ କୁଆଡ଼େ ଯିବନାହିଁ ।'' ଭାରତ ସରକାର ଓଡ଼ିଶାରେ ପ୍ରେସ ଇନଫରମେସନ ବ୍ୟୁରୋ (ପି. ଆଇ.ବି.) ପ୍ରତିଷ୍ଠାପାଇଁ ବିଜ୍ଞାପନ ଦେଲେ । ଏଥିରେ ନିଯୁକ୍ତି ପାଇବାର ଯଥେଷ୍ଟ ସମ୍ଭାବନା ଥିଲା । ଜଣେ ପୂର୍ବତନ ପ୍ରେସକମିସନ କର୍ମଚାରୀ ହେତୁ । ମାତ୍ର ଅଧକ୍ଷଙ୍କୁ କଥାଦେଇ ଆଉ ଭାଙ୍ଗିବାର ପ୍ରଶ୍ନ ଉଠିଲା ନାହିଁ । ଆରମ୍ଭ ହେଲା ଅଧ୍ୟାପକ ଜୀବନର ସାଧନା । ମାଇନରିଟି ପରିଚାଳିତ କଲେଜ ହେତୁ ଆମର କର୍ମକ୍ଷେତ୍ରରେ ବଦଳିର ପ୍ରଶ୍ନ ନଥିଲା । ଏହି ଅନୁଷ୍ଠାନରେ କର୍ମ କରି ଅବସର ଗ୍ରହଣ କରିବାକୁ ହେବ । ତେଣୁ ଅନୁଷ୍ଠାନକୁ ଆନ୍ତରିକ ଭାବରେ ନିଜର ବୋଲି ଭାବିବାକୁ ସୁଯୋଗ ମିଳିଲା । ଛାତ୍ରମାନଙ୍କ ସହିତ ଅନ୍ତରଙ୍ଗ ସଂପର୍କ ସ୍ଥାପିତ ହେଲା । ସର୍ବକନିଷ୍ଠ ଅଧ୍ୟାପକ ହେଲେ ହେଁ ଖୁବ୍ ଅଳ୍ପଦିନ ମଧରେ ଛାତ୍ରସମାଜର ପ୍ରିୟ ହୋଇଗଲି । ନିଷ୍ଠାର ସହିତ କ୍ଲାସରୁମରେ ଏବଂ କଲେଜ ବାହାରେ ନିଜର ବାସଗୃହରେ ଛାତ୍ରମାନଙ୍କୁ ସାହାଯ୍ୟ କରିବାରେ ଆଦୌ କୁଣ୍ଠା ନଥିଲା ।

୧୯୫୬ ସାଲରେ ଡ଼ିସେମ୍ବର ମାସର ବଡ଼ଦିନ ଛୁଟୀ । କେତେଜଣ ଛାତ୍ର ଚିଲିକାକୁ ବୁଲି ବାହାରିଲେ । ସେମାନେ ଏହି ସର୍ବକନିଷ୍ଠ ଅଧ୍ୟାପକଙ୍କୁ ଅତ୍ୟନ୍ତ ସ୍ନେହରେ ଡ଼ାକିଲେ ସଖ୍ୟ ଦେବାପାଇଁ । ଚିଲିକାର ମାଳୁଦଠାରେ ରହଣି ଓ ଶିକାର ହେଲା । କାଳିଜାଇ ଠାକୁରାଣୀଙ୍କ ଦର୍ଶନ ସହିତ ଚିଲିକା ବକ୍ଷରେ ରମଣୀୟ ନୌକାବିହାରର ସୁଯୋଗ ମିଳିଲା । ଏହି ଛାତ୍ରଦଳରେ ଥିଲେ ବିଶିଷ୍ଟ ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ । ସେ ଥିଲେ ବୟସରେ ବଡ଼ ଏବଂ ଆମ ସାହିତ୍ୟରେ ଜଣେ ସୁପରିଚିତ ବ୍ୟକ୍ତିତ୍ୱ । ମୋର ସୌଭାଗ୍ୟ ଯେ ତାଙ୍କର ଅଧ୍ୟାପକ

ହେବାର ଗୌରବଲାଭ କରିଥିଲି । ଏକଦା ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଭଞ୍ଜକିଶୋରଙ୍କ ନାଟକ ଶତାଧିକ ରଜନୀ ଅଭିନୀତ ହୋଇ ଜନମାନସକୁ ଉଲ୍ଲସିତ କରୁଥିଲା । ସରକାରୀ ଚାକିରୀ କରି ସେ କଲେଜରେ ଉଚ୍ଚଶିକ୍ଷା ଲାଭ କରୁଥିଲେ । ଅବସର ଜୀବନରେ ତାଙ୍କ ସହିତ ସଂପର୍କ ଅଧିକ ନିବିଡ଼ ଓ ଆନ୍ତରିକ ହୋଇଥିଲା । ତାଙ୍କ ଲିଖିତ ଗୋଟିଏ ନାଟକପାଇଁ ମୋତେ ଅଗ୍ରଲେଖ ଲେଖିବାର ସୁଯୋଗ ଦେଇ ଗୌରବାନ୍ୱିତ କରିଥିଲେ ।

ଛାତ୍ରଜୀବନରୁ ଭଞ୍ଜକିଶୋରଙ୍କ ନିକଟ ସଂପର୍କରେ ଆସି ନଥିଲେ ସୁଦ୍ଧା ତାଙ୍କ ଲିଖିତ ନାଟକ ପାଠ କରିଥିଲି କଲେଜ ଛାତ୍ର ହିସାବରେ ୧୯୪୫ ରେ । ''ଦେବୀ'' ନାଟକ ଏବଂ ୧୯୪୬ରେ ''ଜହର'' ନାଟକ ଅଭିନୀତ ହୋଇ ଚହଳ ସୃଷ୍ଟି କରିଥାଏ । କଟକରେ ଏମ. ଏ. ଶ୍ରେଣୀର ଛାତ୍ର ଥିଲାବେଳେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅଭିନୀତ ହେଉଥାଏ ''ମାଣିକଯୋଡ଼ି'' ନାଟକ ୧୯୫୧ ସାଲରେ । ବନ୍ଧୁମାନଙ୍କ ସହିତ କେତେଥର ଏହି ନାଟକ ଦେଖିବାକୁ ଆସିଛି । ଜନତା ରଙ୍ଗମଞ୍ଚରେ ୧୯୬୨ରେ 'ଅଶୋକସ୍ତମ୍ଭ' ଅଭିନୀତ ହେଲାବେଳେ ଦର୍ଶକମଣ୍ଡଳୀରେ ଆନନ୍ଦର ଜୁଆର ସୃଷ୍ଟି ହେଉଥାଏ । ଅଧ୍ୟାପକ ଜୀବନରେ ନାଟକ ଆଲୋଚନା କଲାବେଳେ ପାଠ କରିଥିଲି ଭଞ୍ଜକିଶୋରଙ୍କର ଅନ୍ୟାନ୍ୟ ନାଟକ ଯଥା– ଦେବୀ, ବେନାମୀ, ଜହର, ଗରିବ, ତୋଫାନ, ଅଲୋକ, ଜୀବନଜୁଆ, ଜୟମାଲ୍ୟ, ପହିଲିରଜ, ଶିକାରୀ, ବୈରାଗୀର ସଂସାର, ସାଧବୀ ଇତ୍ୟାଦି । ଏହିପରି ଜଣେ ପ୍ରତିଷ୍ଠିତ ନାଟ୍ୟକାରଙ୍କର ଅଧ୍ୟାପକ ହେବାର ସୁଯୋଗ ପାଇ ଅଶେଷ ଆନନ୍ଦ ଲାଭ କରୁଥିଲି । ସେହିପରି ମନେପଡୁଛି ସେତେବେଳକୁ ସୁପ୍ରଚାରିତ ଔପନ୍ୟାସିକ ନରସିଂହ ସାହୁ ଓ ବିଭୂତି ପଟ୍ଟନାୟକ ଆମର ଛାତ୍ର ଥିଲେ । ସେଦିନର ଅନେକ ଛାତ୍ରନେତା ଆଜିର ବିଧାନସଭାର ସଭ୍ୟ ଏବଂ ମନ୍ତ୍ରୀ ଆସନରେ ଅଧିଷ୍ଠିତ । ଆଜି ମଧ୍ୟ ସେମାନେ ଅକସ୍ମାତ ଦେଖାହେଲେ ଆନ୍ତରିକ ଶ୍ରଦ୍ଧା ଓ ସମ୍ମାନ ଜଣାଇବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଓଡ଼ିଶାର ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟମାନଙ୍କର ଓଡ଼ିଆ ସାହିତ୍ୟ ବିଭାଗରେ ପ୍ରତିଷ୍ଠିତ ଆମର ବହୁ ଛାତ୍ର ସୁଲେଖକ ଭାବରେ ସୁପରିଚିତ ।

ସେତେବେଳେ ସରକାର ଛାତ୍ରମାନଙ୍କର ଶିକ୍ଷାଜନିତ ଭ୍ରମଣପାଇଁ ଆର୍ଥିକ ଅନୁଦାନ ପ୍ରଦାନ କରୁଥିଲେ । ଏହିପରି ଏକ ସୁଯୋଗ ଆସିଲା ଆମ ଛାତ୍ରମାନଙ୍କର ଦକ୍ଷିଣ ଭାରତ ଭ୍ରମଣରେ ଯିବାପାଇଁ । ଛାତ୍ରମାନେ ଏହି ସର୍ବକନିଷ୍ଠ ଅଧ୍ୟାପକ-ତତ୍ତ୍ୱାବଧାରକ ହୁଅନ୍ତୁ ବୋଲି ଅଧ୍ୟକ୍ଷଙ୍କ ନିକଟରେ ଦାବି କଲେ । ଏହି ଖବର ଶୁଣି ବିଚଳିତ ହୋଇପଡ଼ିଲି । କାରଣ ପୁରୀ ଓ କଟକ ବ୍ୟତୀତ ଆଉ କେଉଁଆଡ଼େ ଯାଇ ନଥିଲି । ଦକ୍ଷିଣ ଭାରତ ଭ୍ରମଣରେ ଦାୟିତ୍ୱ ନେଇ ଯିବା ମୋ ପାଇଁ ବଜ୍ରପାତ ଭଳି ଥିଲା । ମାତ୍ର ଅଧ୍ୟକ୍ଷଙ୍କର ଆଦେଶ ଅପରିବର୍ତ୍ତନୀୟ । ଚଉଦ ଜଣ ଛାତ୍ରଙ୍କ ସହିତ ସହଯାତ୍ରୀ ହେଲି । ମୋର ଅନ୍ତରଙ୍ଗ ବନ୍ଧୁ ସୁଲେଖକ ଲକ୍ଷ୍ମୀଧର ମହାନ୍ତିଙ୍କୁ ସାଙ୍ଗରେ ନେଲି ମୋତେ ସାହାଯ୍ୟ କରିବାପାଇଁ । କଲିକତା ବାଟେ ବମ୍ବେ ଗଲୁ ଏବଂ ସେଠାରୁ ମହୀଶୂର, ହାଇଦରାବାଦ ଓ ମାନ୍ଦ୍ରାଜ (ବର୍ତ୍ତମାନ ଚେନ୍ନାଇ) ର ବିଭିନ୍ନ ସ୍ଥାନ ଭ୍ରମଣ କରି ଫେରି ଆସିଲୁ । କଟକରେ ଟ୍ରେନ ଚଢ଼ିଲା ପରେ ପିଲାମାନଙ୍କୁ ଏକାଠି କରି

କେତୋଟି ବିଷୟରେ ଅନୁରୋଧ କଲି । ଏହି ପନ୍ଦରଦିନ ଆମେ ସମସ୍ତେ ଏକାଠି ରହିବା, ଏକତ୍ର ଭୋଜନ କରିବା ଏବଂ ସମସ୍ତ ପ୍ରକାର ସୁଖଦୁଃଖରେ ଭାଗୀଦାର ହେବା । ଅତି ପରିଚୟେ ଗୌରବ ନଷ୍ଟ ହୁଏ । ସେହି ଆଶଙ୍କା ଏହି ତରୁଣ ଅଧ୍ୟାପକକୁ ଶଙ୍କାକୁଳ କରିଥାଏ । କହିଲି ଏଇ ପନ୍ଦରଦିନ ମୋ ସମ୍ମୁଖରେ କେହି ଧୂମପାନ କରିବ ନାହିଁ । ଆନନ୍ଦ ଉଲ୍ଲାସରେ ଅନୁରୋଧରେ ଏପରି କିଛି ଆଚରଣ କରିବ ନାହିଁ, ଯହିଁରେ ଆମ କଲେଜ ଓ ଓଡ଼ିଶାର ସୁନାମରେ ଆଂଚ ଆସିବ । ଅନେକ ଛାତ୍ର ମୋର ସମବୟସ୍କ ଅବା ବୟସରେ ବଡ଼ ଥିଲେ । ସେମାନେ ମୋର ସମ୍ମାନ ରକ୍ଷାପାଇଁ ସମସ୍ତପ୍ରକାର ଯତ୍ନ କରିଥିଲେ ।

ମହୀଶୂର ପରିଦର୍ଶନବେଳେ ବୃନ୍ଦାବନ ଗାର୍ଡ଼ନ, ରାଜାଙ୍କର ପ୍ରାସାଦ ଏବଂ ଉପବନ ଘେରା ସହର, ଚାମଣ୍ଡି ହିଲ ପ୍ରଭୃତି ଦର୍ଶନରେ ଆଖି ଖୋସି ହୋଇଯାଏ । ହାଇଦରାବାଦର ସାଲରଜଙ୍ଗ ମିଉଜିଅମ୍, ଚାରମିନାର ଏବଂ ବେଗମ୍‌ପେଟ ସାଗର ଆଜି ମଧ୍ୟ ଆଖି ଆଗରେ ନାଚି ଉଠୁଛି । ସିକନ୍ଦରାବାଦରୁ ବସ ଯୋଗେ ପ୍ରଥମେ ଗଲୁ ଆଉରଙ୍ଗାବାଦ ଦୁର୍ଗ ଦେଖିବାପାଇଁ, ପ୍ରବଳ ପ୍ରତାପୀ ସମ୍ରାଟ ଆଉରଙ୍ଗଜେବ ନିଜର ପ୍ରିୟ ବେଗମଙ୍କର ସ୍ମୃତି ରକ୍ଷାପାଇଁ ଏଠାରେ ନିର୍ମାଣ କରିଛନ୍ତି ବିବିକାମକଓ୍ୱାରା ଅବିକଳ ତାଜମହଲ ପରି । ଅଥଚ ନିଜର ସମାଧି ରହିଛି ଅତି ସାଧାରଣ ସ୍ଥାନରେ ଅତ୍ୟନ୍ତ ଆଡ଼ମ୍ବରହୀନ ରୂପରେ । ଭଗ୍ନସ୍ତୂପରେ ପରିଣତ ଅଉରଙ୍ଗାବାଦ ଦୁର୍ଗ ମଧ୍ୟରେ ବିଛାଡ଼ି ହୋଇଛି ସେକାଳର ଅନେକ ତୋପ, ବନ୍ଧୁକ ଓ ଗୁଳିଗୁଳା ।

ଏହାପରେ ଆସେ ଦୌଲତାବାଦ ଦୁର୍ଗ । ସୁଉଚ୍ଚ ପର୍ବତ ଉପରେ ଏହି ବିଶାଳ ଦୁର୍ଗ ଯେ କୌଣସି ଦର୍ଶକକୁ ବିହ୍ୱଳିତ କରିଦେବ । ଦୁର୍ଗ ଚତୁର୍ଦ୍ଦିଗରେ ଗଡ଼ଖାଇ । ଦୁର୍ଗ ଦ୍ୱାର ଦେଶରେ ତାଳି ମାରି ଶତ୍ରୁ ଆଗମନର ସଙ୍କେତ ପ୍ରେରଣ କରାଯାଉଥିଲା, ସୁଉଚ୍ଚ ଦୁର୍ଗର ଶିଖର ଦେଶରେ ପ୍ରଧାନ ଶାସକ ଅବସ୍ଥାନ କରୁଥିଲେ । ଦୁର୍ଗର ଉପରି ଭାଗରେ ଚାରି କୋଣରେ ବିଶାଳ ଓ ସୁଦୀର୍ଘ ତୋପମାନ ଆମର ଇଞ୍ଜିନିୟରିଂ ଶିଳ୍ପ ଓ ରଣକୌଶଳର ପରିଚୟ ପ୍ରଦାନ କରିଥାଏ । ଅନ୍ୟତମ ତୋପ ହେଉଛି ମେଣ୍ଢାମୁଣ୍ଡିଆ ତୋପ । ଏତେବଡ଼ ବିଶାଳ ତୋପ ବୋଧହୁଏ ଭାରତର ଅନ୍ୟ ଦୁର୍ଗରେ ଦୁର୍ଲଭ । ଯଦି ଦୀର୍ଘଦିନ ଯୁଦ୍ଧ କରି ଶତ୍ରୁପକ୍ଷ ଦୁର୍ଗର ଶିଖର ଦେଶରେ ପହଞ୍ଚିବାର ଆଶଙ୍କା ରହିଲା, ତେବେ ସେହିଠାରୁ ମାଇଲମାଇଲ ଦୀର୍ଘ ସୁଡ଼ଙ୍ଗ ବାଟରେ ଶାସକ ପଳାୟନ କରୁଥିଲେ, ସୁଦୂରରେ ନିଘଞ୍ଚ ଜଙ୍ଗଲ ପ୍ରଦେଶକୁ । ଓଡ଼ିଶାମାଟିରେ ଏ ପ୍ରକାର ଦୁର୍ଗ କଳ୍ପନାତୀତ ।

ଦୌଲତାବାଦ ପରେ ଭାରତ ବିଖ୍ୟାତ ଏଲୋରା ଦର୍ଶନର ସୌଭାଗ୍ୟ ମିଳିଲା । ଏଲୋରାର ଇତିହାସ ଅତ୍ୟନ୍ତ ପ୍ରାଚୀନ ଓ ଗୌରବମୟ । ଭାରତୀୟ ସ୍ଥାପତ୍ୟକଳାର ଏହା ଏକ ବିସ୍ମୟକର ଦୃଷ୍ଟାନ୍ତ । ଏକ ସୁଦୀର୍ଘ ପର୍ବତଗାତ୍ରରେ ଶିଳ୍ପୀର ଲିହଣମୂନରେ ଖୋଦିତ ଶିଳ୍ପଚାତୁରୀ ଅନନ୍ୟ ସାଧାରଣ ମନେହୁଏ, ଯେପରି ଦେବଶିଳ୍ପୀମାନେ ଏହାକୁ ନିର୍ମାଣ କରିଛନ୍ତି ।

ଏହି ଅଂଚଳରେ ସପ୍ତମଠାରୁ ନବମ ଶତାବ୍ଦୀ ମଧ୍ୟରେ ରାଷ୍ଟ୍ରକୂଟ ରାଜବଂଶ ରାଜତ୍ୱ କରୁଥିଲେ । ତାଙ୍କର ରାଜଧାନୀର ନାମକରଣ ଥିଲା ଏଲାପୁର । ଏହି ନାମର ଅପଭ୍ରଂଶ

ହୋଇଛି ଏଲୋରା । ଏହି ପର୍ବତ ଗାତ୍ରରେ ସମୁଦାୟ ଚଉତିରିଶଟି ଗୁମ୍ଫା ଖୋଦିତ ହୋଇଛି । ସେଥିରେ ଖୋଦିତ କାରୁକାର୍ଯ୍ୟ ଅତ୍ୟନ୍ତ ବିସ୍ମୟକର । ପ୍ରଥମରୁ ଦ୍ୱାଦଶ ଯାଏଁ ଗୁମ୍ଫାର ଖୋଦନ ସମୟ ହୋଇଛି ଖ୍ରୀଷ୍ଟାବ୍ଦ ପ୍ରଞ୍ଚମରୁ ସପ୍ତମ ପର୍ଯ୍ୟନ୍ତ । ଏହା ହେଉଛି ବୌଦ୍ଧସ୍ଥାପତ୍ୟର ନିଦର୍ଶନ । ତ୍ରୟୋଦଶତମଠାରୁ ଊନତ୍ରିଂଶତମ ଗୁମ୍ଫା ପର୍ଯ୍ୟନ୍ତ ହିନ୍ଦୁସ୍ଥାପତ୍ୟର ପରିଚୟ ମିଳେ । ତ୍ରିଂଶତମଠାରୁ ଚତୁସ୍ତ୍ରିଂଶ ଗୁମ୍ଫାଗୁଡ଼ିକ ଜୈନଶିଳ୍ପକଳାର ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ । କେତୋଟି ଗୁମ୍ଫା ଦ୍ୱିତଳ ବିଶିଷ୍ଟ ଏବଂ ପରସ୍ପର ମଧ୍ୟରେ ଗମନାଗମନର ବ୍ୟବସ୍ଥା ରଖାଯାଇଛି । ଭଗବାନ ବୁଦ୍ଧଙ୍କର ବିଭିନ୍ନ ଧ୍ୟାନର ମୂର୍ତ୍ତି ଏଠାରେ ଶୋଭା ପାଉଛି । ଏହି ସ୍ଥାନରେ ବିଭିନ୍ନ ଧର୍ମଦର୍ଶନର ସମନ୍ୱୟ ଦେଖିବାକୁ ମିଳେ । ଶିବ, ବିଷ୍ଣୁ, ଦୁର୍ଗା, ପାର୍ବତୀ, ବ୍ରହ୍ମା, କୃଷ୍ଣ, ବଳରାମ, ସୁଭଦ୍ରା, ଜୈନଧର୍ମର ତୀର୍ଥଙ୍କରମାନଙ୍କର କମନୀୟ ମୂର୍ତ୍ତି ଖୋଦିତ ହୋଇ ଶୋଭା ପାଉଛନ୍ତି । ବୌଦ୍ଧ ଓ ଜୈନ ଧର୍ମର ସନ୍ନ୍ୟାସୀମାନେ ଏହି ଗୁମ୍ଫାମାନଙ୍କରେ ଅବସ୍ଥାନ କରି ତପସ୍ୟା କରୁଥିଲେ । ଚତୁସ୍ତ୍ରିଂଶତମ ଗୁମ୍ଫାରେ ଏକ ଶିଳାଲେଖ ଖୋଦିତ ହୋଇଅଛି ।

ସବୁଠାରୁ ବିସ୍ମୟକର ହେଉଛି ଷୋଡ଼ଶତମ ଗୁମ୍ଫାର କୈଳାସ ମନ୍ଦିର । ଚାଲୁକ୍ୟ ଓ ପଲ୍ଲମ୍ ଶିଳ୍ପକଳାର ଚରମ ପରାକାଷ୍ଠା ଏହି ଗୁମ୍ଫା । କାଞ୍ଚିନଗରର କୈଳାସ ମନ୍ଦିର ଅନୁକରଣରେ ପର୍ବତଖୋଦିତ ଏହି ମନ୍ଦିର ନିର୍ମିତ ହୋଇଅଛି । ଏହି ବର୍ଣ୍ଣନା ଅସରନ୍ତି । ବାରମ୍ବାର ଦେଖିବାକୁ ଇଚ୍ଛା ହୁଏ ।

ସମୟ ନଥିଲା ଅଜନ୍ତାର ମୂର୍ତ୍ତିକଳା ଦର୍ଶନ କରିବାପାଇଁ, ଫେରି ଆସିଲୁ ମାନ୍ଦ୍ରାଜ ସହରକୁ । ସହରର ଐଶ୍ୱର୍ଯ୍ୟ ଅପେକ୍ଷା ମାନ୍ଦ୍ରାଜର ସମୁଦ୍ରକୂଳ ଅଧିକ ଆକର୍ଷଣୀୟ । ବମ୍ବେର ଜୁହୁ ସମୁଦ୍ରକୂଳ ଦେଖି ଆସିଥିଲୁ ମାତ୍ର ମାନ୍ଦ୍ରାଜ ସମୁଦ୍ରକୂଳ ପରି ତାହା ଆଦୌ ରମଣୀୟ ନୁହେଁ । ଆମ ଓଡ଼ିଶାର ପୁରୀ ସମୁଦ୍ରକୂଳର ମନୋରମ ଶୋଭା ଏ ସମସ୍ତଙ୍କ ଉପରେ । ଛାତ୍ରମାନଙ୍କର ଆଗ୍ରହ ହେତୁ ଜେମିନି ଷ୍ଟୁଡ଼ିଓ ବୁଲିବାକୁ ଯାଇଥିଲୁ । ସେତେବେଳେ ଏକ ସୁଟିଂ ଚାଲିଥାଏ । ଚଳଚ୍ଚିତ୍ରର ଅଭିନେତା ଓ ଅଭିନେତ୍ରୀମାନଙ୍କୁ ସ୍ୱଦେହରେ ଦେଖିବାର ଆଗ୍ରହ କଳ୍ପନାତୀତ ।

କଟକ ସହର ହେଉଛି ଓଡ଼ିଆ ପୁସ୍ତକ ପ୍ରକାଶକମାନଙ୍କର ପେଣ୍ଠସ୍ଥଳ । ଏଠାରେ କର୍ମ କରିବାର ସୁଯୋଗ ମିଳିବାରୁ ସେମାନଙ୍କର ସ୍ୱତଃ ଦୃଷ୍ଟି ଆକର୍ଷଣ କରି ପାରିଥିଲି । ବାଙ୍କାବଜାରର ଜଣେ ପ୍ରକାଶକ ପ୍ରଥମେ ଏହି ତରୁଣ ଅଧ୍ୟାପକକୁ ଅନୁରୋଧ କଲେ ସଙ୍ଗୀତ କବି ବନମାଳୀଙ୍କ କବିତା ସଂକଳନ ସଂପାଦନା କରି ମୁଖବନ୍ଧ ଲେଖି ଦେବାପାଇଁ । ବହି ବଜାରରେ ଲେଖକ ଭାବରେ ପ୍ରବେଶ କରିବାର ଏହା ଥିଲା ପ୍ରଥମ ଆହ୍ୱାନ । ପରବର୍ତ୍ତୀ କାଳରେ ଅନେକ ପ୍ରତିଷ୍ଠିତ ପ୍ରକାଶକଙ୍କ ଅନୁରୋଧରେ ଚିଲିକା, ରସକଲ୍ଲୋଳ, ମଥୁରାମଙ୍ଗଳ, ରୁକ୍ମିଣୀବିଭା, ବିଦଗ୍ଧ ଚିନ୍ତାମଣି, ଲାବଣ୍ୟବତୀ ପ୍ରଭୃତି କାବ୍ୟର ଦୀର୍ଘ ମୁଖବନ୍ଧ ଲେଖିଥିଲି ଏବଂ ତାହା ଛାତ୍ର ମହଲରେ ବିଶେଷ ଆଦର ଲାଭ କରିପାରିଥିଲା ।

ଏହି ପ୍ରସଙ୍ଗରେ ଏକ ଦୁଃଖଦ ଅନୁଭୂତି ବିସ୍ମୃତ ହୋଇନାହିଁ । ଜଣେ ପ୍ରକାଶକ ବନ୍ଧୁଙ୍କ ଅନୁରୋଧରେ ଏକ ଅଭିଧାନ ପ୍ରଣୟନ ପାଇଁ ବରାଦ ପାଇଲି । ସର୍ତ୍ତ ରହିଲା ଆମ

ଦୁଇଜଣଙ୍କ ନାମରେ ତାହା ପ୍ରକାଶିତ ହେବ ଏବଂ ସେ ପ୍ରସ୍ତୁତ କରିବେ ଆଫିସିକ ଶବ୍ଦଗୁଡ଼ିକର ଓଡ଼ିଆ ରୂପ । ମୋର ଭଡ଼ାଘରେ ବିଜୁଳି ଆଲୁଅ ନଥିଲା । ଦୀର୍ଘ ଏକବର୍ଷକାଳ ଲଣ୍ଠନ ଆଲୁଅରେ ପରିଶ୍ରମ କରି ଏକ ଅଭିଧାନର ପାଣ୍ଡୁଲିପି ପ୍ରସ୍ତୁତ କଲି । ପ୍ରକାଶକ ବନ୍ଧୁ ଆଫିସିକ ଶବ୍ଦ ଯୋଡ଼ିଥିଲେ ତାହା ପୁସ୍ତକ ରୂପରେ ଜନ୍ମଗ୍ରହଣ କରିଥାଆନ୍ତା । ମାତ୍ର ଭାଗ୍ୟର ବିଡ଼ମ୍ବନା । ବର୍ଷକ ତଳର ପ୍ରତିଶ୍ରୁତି ଭଙ୍ଗ କରି ମୋତେ ଆଦେଶଦେବା ଭଙ୍ଗୀରେ କହିଲେ– ସେତକ ଆପଣ ପୂରଣ କରିଦିଅନ୍ତୁ । ମୋର ଆତ୍ମସମ୍ମାନରେ ବାଧା ଅନୁଭବ କଲି । ସମସ୍ତ ପାଣ୍ଡୁଲିପି ତାଙ୍କୁ ଫେରାଇଦେଲି ଏବଂ ଓହରି ଆସିଲି । ଆଉ କେବେହେଲେ ସେ ପ୍ରଶ୍ନ ଅଭିମାନରେ ଉଠାଇ ନାହିଁ । ପ୍ରଥମ ଯୌବନର ସେହି ପରିଶ୍ରମ ବୃଥା ହୋଇଗଲା ।

ବାଙ୍କାବଜାରରେ ନିୟାମତ ଗୁପ୍ତାଙ୍କର ଜନଶକ୍ତି ପୁସ୍ତକାଳୟ ଥିଲା । ସେ ପୁସ୍ତକ ବ୍ୟବସାୟୀ ହେଲେହେଁ ସମାଜବାଦୀ ଦଳ ସହିତ ନିବିଡ଼ ସଂପର୍କ ରଖିଥାଆନ୍ତି । ତେଣୁ ତାଙ୍କ ବହି ଦୋକାନର ବାହାର ବେଞ୍ଚରେ ଅନେକ ରାଜନେତାଙ୍କର ଆସର ଜମେ । ପ୍ରଜା ସୋସାଲିଷ୍ଟ ପାର୍ଟି ସହିତ ମୋର ପ୍ରଚ୍ଛନ୍ନ ସଂପର୍କ ଥାଏ ବିଶିଷ୍ଟ ସାମ୍ବାଦିକ ଓ ଲେଖକ ଗୋରାଚାନ୍ଦ ମିଶ୍ରଙ୍କ ଜରିଆରେ । ସେ ଥିଲେ ମୋର ଛାତ୍ର ଜୀବନର ବନ୍ଧୁ । କଟକରେ ରହୁଥିଲେ ଗଙ୍ଗା ମନ୍ଦିରର କୃଷକ ପ୍ରେସରେ । ''କୃଷକ'' ପତ୍ରିକାରେ ସଂପାଦକ ଥାଆନ୍ତି ବିଶିଷ୍ଟ ସମାଜବାଦୀ ନେତା ସୁରେନ୍ଦ୍ର ଦ୍ୱିବେଦୀ । ମାତ୍ର ପ୍ରକୃତପକ୍ଷେ ସଂପାଦକର ଦାୟିତ୍ୱ ତୁଲାଇ ଥାଆନ୍ତି ଗୋରାଚାନ୍ଦ । ବନ୍ଧୁ ଗୋରାଚାନ୍ଦ ମୋତେ ଅନୁରୋଧ କଲେ ପ୍ରତି ସପ୍ତାହରେ ''କୃଷକ''ରେ ଗୋଟିଏ ପୃଷ୍ଠା ଲେଖିବାପାଇଁ । ସେତେବେଳେ ଭାରତବର୍ଷର ବିଖ୍ୟାତ ''ବ୍ଲିଜ୍'' ସାପ୍ତାହିକର ସଂପାଦକ ଥିଲେ ବିଖ୍ୟାତ ସାମ୍ବାଦିକ ଆର.କେ. କରଞ୍ଜିଆ । ଏହି ବହୁଳ ପ୍ରଚାରିତ ଇଂରେଜୀ ସାପ୍ତାହିକ 'ବ୍ଲିଜ୍' ର "Last Page" ଅର୍ଥାତ୍ ଶେଷପୃଷ୍ଠା ଶୀର୍ଷକରେ ଧାରାବାହିକ ଲେଖୁ ଥାଆନ୍ତି ସୁଲେଖକ ଓ ଚଳଚ୍ଚିତ୍ର ନିର୍ଦ୍ଦେଶକ କେ.ଏ. ଆବାସ । ବନ୍ଧୁଙ୍କର ପ୍ରସ୍ତାବରେ ରାଜି ହେଲି ଗୋଟିଏ ସର୍ତ୍ତରେ । ରାଜନୀତିକ ଦଳର ମୁଖପତ୍ରରେ ମୁଁ ଲେଖିଲେ କର୍ମସ୍ଥଳୀରୁ ଆପତ୍ତି ହୋଇପାରେ । ତେଣୁ ମୋ ନାଁ ରହିବ ନାହିଁ । ବନ୍ଧୁ ମୋର ଛଦ୍ମ ନାଁ ଦେଲେ ''ବୃହନ୍ନଳା'' । ଅର୍ଜୁନ ଏହି ନାମ ଧାରଣ କରି ଅଜ୍ଞାତବାସରେ ରହିଥିଲେ ଏକବର୍ଷକାଳ । ମୁଁ ମଧ୍ୟ ଏକବର୍ଷ କାଳ ପ୍ରତି ସପ୍ତାହରେ କୃଷକର ଶେଷପୃଷ୍ଠା ଲେଖୁଥିଲି । ''କୃଷକ''ର ଏକ ଗୌରବମୟ ପରମ୍ପରା ରହିଥିଲା । ଏହି ପତ୍ରିକାର ଜନ୍ମଦାତକ ସହିତ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ବିନୋଦ କାନୁନଗୋ, ସାରଙ୍ଗଧର ଦାସ ପ୍ରମୁଖ ସଂପୃକ୍ତ ଥିଲେ । ସମାଜବାଦୀ ଭାବଧାରା ପ୍ରଚାର କରିବାରେ ଏହା ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ''କୃଷକ''ରୁ ଅଲଗା ହୋଇଯିବାର ଏକ ବିଚିତ୍ର ଘଟଣା ଘଟିଲା । ''ଶେଷପୃଷ୍ଠା''ର ଗୋଟିଏ ଲେଖାରେ ରାଜନୀତିକ ଦଳମାନଙ୍କର ଆଭିମୁଖ୍ୟକୁ ସମାଲୋଚନା କରିଥିଲି । ସମାଜବାଦୀ ଦଳର ପ୍ରାଦେଶିକ କାର୍ଯ୍ୟକାରୀ ସମିତିରେ ତାହା ଆଲୋଚନା ହେଲା । ଏହି ଦଳର ଚେୟାରମ୍ୟାନ୍ ଓ କୃଷକର ମୁଖ୍ୟ ସଂପାଦକ ସୁରେନ୍ଦ୍ର ଦ୍ୱିବେଦୀ ବାଧ ହେଲେ ବୃହନ୍ନଳାର

ପରିଚୟ ଦେବାପାଇଁ । କିଛିଦିନପରେ ପୁରୀ ସହରରେ ହଠାତ୍ ସାକ୍ଷାତ ହେଲା ମୋର ବନ୍ଧୁ ହରିହର ବାହିନୀପତି ସହିତ । ସେ ପ୍ରଜା ସମାଜପାର୍ଟିରେ ଏମ.ଏଲ.ଏ. ଏବଂ ଆସେମ୍ବ୍ଲିର ଉପ-ବାଚସ୍ପତି ମଧ୍ୟ ରହିଥିଲା । ମୋତେ ସ୍ନେହରେ ଗାଳି ଦେଇ କହିଲା- ''ଆମ ପାର୍ଟିର ମୁଖପତ୍ରରେ ତୁ ଲେଖୁଛୁ ଏକବର୍ଷ ହେଲା । ଅଥଚ ମୁଁ ଜାଣିଲି ନାହିଁ । କଥାଟିକୁ ମୁଁ ଅସ୍ୱୀକାର କଲି । ମୁଁ ଚାକିରୀ କରିଛି । ତୁମ ରାଜନୀତିକ ଦଳର ମୁଖପତ୍ରରେ ମୁଁ କିପରି ଲେଖିବି ?'' କାର୍ଯ୍ୟକାରୀ ସମିତିରେ ତାହା ଆଲୋଚନା ହେବା ଏବଂ ମୁଖ୍ୟ ସଂପାଦକ ମୋ ନାମଟି ପ୍ରକାଶ କରିବାର ସାକ୍ଷୀ ହେଉଛି ବାହିନୀପତି ସଭ୍ୟ ଭାବରେ । ସେ ମୋତେ ଆନନ୍ଦରେ ବଡ଼ଦାଣ୍ଡରେ କୁଣ୍ଢାଇ ପକାଇଲା ।

'ବୃହନ୍ନଳା'ର ଛଦ୍ମରୂପ ଉଦ୍‌ଘାଟିତ ହେଲାପରେ ଆଉ ଲେଖିବା ସମ୍ଭବ ହେଲା ନାହିଁ । ବନ୍ଧୁ ଗୋରାଚାନ୍ଦ 'କୃଷକ' ସଂପାଦନା ପରିତ୍ୟାଗ କରି 'ପ୍ରଜାତନ୍ତ୍ର'ରେ ଯୋଗଦେଲେ ଏବଂ ସେହିଠାରେ ଅବସର ଗ୍ରହଣ କଲେ । ଗଳ୍ପ, କବିତା ଓ ଆଧ୍ୟାତ୍ମିକ ସାହିତ୍ୟର ସେ ଥିଲେ ଅଜସ୍ରସ୍ରାବୀ ଲେଖକ ।

ବନ୍ଧୁ ଗୋରାଚାନ୍ଦଙ୍କ ସହିତ ଦିନେ 'ଜନଶକ୍ତି ପୁସ୍ତକାଳୟ' ବାହାର ବେଞ୍ଚରେ ବସିଛି ସେହି ବାଟେ ରିକ୍ସାରେ ଯାଉଥାଆନ୍ତି କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋରର ପ୍ରତିଷ୍ଠାତା ଶ୍ରୀଯୁକ୍ତ ଅନନ୍ତ ମିଶ୍ର । ଦୋକାନ ବାରଣ୍ଡାରୁ ଓହ୍ଲାଇ ଆସି ତାଙ୍କୁ ନମସ୍କାର କଲି । ସେ ହସି ହସି କହିଲେ, କ'ଣ ଖାଲି ଭାଷଣ ଚାଲିଥିବ, କିଛି ବହି ଲେଖା ହେବ ନାହିଁ ? ଦୋକାନକୁ ଆସିବାପାଇଁ କହିଗଲେ । ଏ ଥିଲା ମୋ ପରି ନୂତନ ଲେଖକ ପାଇଁ ଅହେତୁକ ସୁଯୋଗ । ସେହି ସମୟରେ ଭାରତବର୍ଷର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟର ଇତିହାସ ପ୍ରବନ୍ଧ ଆକାରରେ ଲେଖୁଥାଏ । ସାମୟିକ ପତ୍ରିକାରେ କେତୋଟି ପ୍ରକାଶଲାଭ କରିଥାଏ । ସମସ୍ତ ପାଣ୍ଡୁଲିପି ନେଇ ଅନନ୍ତବାବୁଙ୍କୁ ସାକ୍ଷାତ କଲି । ଅବିଳମ୍ବେ ତାହା ପ୍ରକାଶିତ ହେଲା ''ଭାରତୀୟ ସାହିତ୍ୟର ଭୂମିକା'' ଶୀର୍ଷକରେ । ଏହି ଶୀର୍ଷକରେ ଏହା ଥିଲା ଓଡ଼ିଶାର ପ୍ରକାଶନ ଇତିହାସର ପ୍ରଥମ ପୁସ୍ତକ । ପରବର୍ତ୍ତୀ ସମୟରେ ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଓ ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର ମଧ୍ୟ ଏହିପରି ପୁସ୍ତକ ପ୍ରଣୟନ କରିଥିଲେ । ଜଣେ ଉଦାରଚେତା ପ୍ରକାଶକର ଆଶୀର୍ବାଦ ମିଳିଲେ ନୂତନ ଲେଖକପାଇଁ ବାଟ ଖୋଲିଯାଏ । ଆଜି କଟକର ପ୍ରତ୍ୟେକ ପ୍ରତିଷ୍ଠିତ ପ୍ରକାଶକ ମୋର ପ୍ରବନ୍ଧ ଓ ସମାଲୋଚନା ବହି ଛାପିଛନ୍ତି । ଏହି ପରିଣତ ବୟସରେ ସେଦିନର ପ୍ରକାଶକଙ୍କର ଯେଉଁ ପ୍ରେରଣା ଲାଭ କରିଥିଲି, ତାହା ବିସ୍ମୃତ ହେବାର ନୁହେଁ ।

ସେ ହେଉଛି ୧୯୫୮ ମସିହାର କଥା । ଡକ୍ଟର ମାୟାଧର ମାନସିଂହ ସମ୍ବଲପୁର ଗଙ୍ଗାଧର ମେହେର କଲେଜର ଅଧକ୍ଷ ଭାବରେ ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ । କୌଣସି କାରଣରୁ ଉପରିସ୍ଥ କର୍ତ୍ତୃପକ୍ଷଙ୍କର ଅପ୍ରିୟଭାଜନ ହୋଇ ସେଠାରୁ ବିଦାୟ ନେଇ ଆସିଲେ କଟକକୁ ସାମାଜିକ ପ୍ରୌଢ଼ଶିକ୍ଷା ବିଭାଗର ନିର୍ଦ୍ଦେଶକ ଭାବରେ । ତାଙ୍କର ସହଯୋଗୀ ସହକାରୀ ଥିଲେ ପ୍ରଖ୍ୟାତ କବି ରାଧାମୋହନ ଗଡ଼ନାୟକ । ଡଃ ମାନସିଂହଙ୍କ ନେତୃତ୍ୱରେ ଏକ ଲେଖକ କର୍ମଶାଳା ଅନୁଷ୍ଠିତ ହେଲା । ଏହି କର୍ମଶାଳାରେ ମୋର ବରିଷ୍ଠ ସହକର୍ମୀ ବନ୍ଧୁ ଅଧ୍ୟାପକ

ବନମାଳୀ ମିଶ୍ରଙ୍କ ସହିତ ଯୋଗ ଦେଇଥାଏ । ବହୁ ବିଶିଷ୍ଟ ଲୋକ ନାନା ବିଷୟରେ ଆଲୋଚନା କରିବାପାଇଁ ନିମନ୍ତ୍ରିତ ହେଉଥିଲେ । ପ୍ରତ୍ୟେକଦିନ ନିର୍ଦ୍ଦେଶକ ଡକ୍ଟର ମାନସିଂହଙ୍କର ଆଲୋଚନା ଅଧିକ ବୌଦ୍ଧିକ ଏବଂ ପ୍ରଭାବଶାଳୀ ଅନୁଭୂତ ହେଉଥିଲା । ଏହି ଅନୁଷ୍ଠାନ ଆନୁକୂଲ୍ୟରେ କର୍ମଶାଳାରେ ଅଂଶଗ୍ରହଣ କରିଥିବା ଲେଖକମାନଙ୍କ ପାଇଁ ଏକ ଷଡ଼ିଟ୍ରୁର ଆୟୋଜନ ହେଲା । କବି ମାନସିଂହ ଓ କବି ଗଡ଼ନାୟକଙ୍କ ନେତୃତ୍ୱରେ ସାତକୋଶିଆ ଗଣ୍ଡ ନିକଟରେ ଏକ ଡାକବଙ୍ଗଳାରେ ବଣଭୋଜି ହେଲା । ନିଘଞ୍ଚ ଅରଣ୍ୟ ଅଞ୍ଚଳର ଜାଙ୍ଗଲିକ ସୁଷମା ଓ ଭୀମକାନ୍ତ ରୂପ ଦର୍ଶନ କରି ମନ୍ତ୍ରମୁଗ୍ଧ ହୋଇଥିଲି । ସାତକୋଶିଆ ଗଣ୍ଡରେ କେତେକ ବନ୍ଧୁ ନୌକାବିହାର କଲେ । ମଧ୍ୟାହ୍ନ ଭୋଜନ ପାଇଁ ଆୟୋଜନ ହେଉଛି, ପର୍ବତର ଉପରି ଦେଶରେ ଏକ ମହାବଳ ବାଘ ତଳଦେଶର ଆମ ରହଣି ସ୍ଥାନକୁ ଚାହିଁ ଚାହିଁ ପାରି ହୋଇଗଲା । ଆଉ ମନଖୁସିରେ ଖାଇ ପାରିଲୁ ନାହିଁ । କି ଭୟଙ୍କର ଏ ସ୍ଥାନ । ଡାକବଙ୍ଗଳାର ଜଗୁଆଳି ଜଣେ ଆଦିବାସୀ । ସେ ସଂଧ୍ୟାରେ ନିଜ ଗାଁକୁ ଚାଲିଯାଏ । ସେଦିନ ତାକୁ ବାଧ୍ୟକରି ରଖାଗଲା । ଚାରିଆଡ଼ ଦୁଆର ଝରକା ବନ୍ଦ କରି କୌଣସି ପ୍ରକାରେ ରାତ୍ରିଯାପନ କଲୁ । ସକାଳୁ ଖବର ମିଳିଲା, ଡାକବଙ୍ଗଳା ଠାରୁ ମାତ୍ର କେତେ ଫର୍ଲଙ୍ଗ ଦୂରରେ ବାଘ ଗୋଟିଏ ପୋଢୁଅ ମାରି ଛାଡ଼ି ଯାଇଛି । ମଢ଼ ଖାଇବାପାଇଁ ରାତିରେ ବାଘ ପୁନର୍ବାର ଆସିବ । ଆମର ପ୍ରସ୍ତାବ ଥିଲା, ସେହି ବଙ୍ଗଳାରେ ଆଉ ଦୁଇଟି ଦିନ ବଣଭୋଜି କରିବାପାଇଁ । ଆଉ କି ମଉଜ !! ଏଥର ସାତକୋଶିଆ ଛାଡ଼ିଲୁ ବରପାଲି ଅଭିମୁଖେ । ସେଠାରେ ଆମେରିକାର ମିଶନାରୀମାନେ ବରପାଲି ପାଇଖାନା ପ୍ରସ୍ତୁତ କରି ଲୋକ ଚଳଣିରେ ଆଦୃତ ହେବାପାଇଁ ଉଦ୍ୟମ କରୁଥାଆନ୍ତି । ବର୍ତ୍ତମାନ ଓଡ଼ିଶାର କି ସହର, କି ପଲ୍ଲୀଅଞ୍ଚଳ, ବରପାଲି ପାଇଖାନା ସର୍ବତ୍ର ଆଦରଣୀୟ ହୋଇଅଛି । ଓଡ଼ିଆ ସାହିତ୍ୟର ଦୁଇଜଣ ବରେଣ୍ୟକବିଙ୍କ ସହିତ ଏଇ କେତେଦିନର ଅନ୍ତରଙ୍ଗ ସାନ୍ନିଧ ଭୁଲିବାର ନୁହେଁ । ପରବର୍ତ୍ତୀ କାଳରେ ଏହି ସଂପର୍କ ଅଧିକ ନିକଟତର ହୋଇଥିଲା । ରାଧାମୋହନ ଗଡ଼ନାୟକ ଉତ୍କଳ ସାହିତ୍ୟ ସମାଜରେ ସଭାପତି ଥିଲାବେଳେ ତାଙ୍କର କାର୍ଯ୍ୟକାରୀ ସମିତିରେ କାର୍ଯ୍ୟକରିବାର ସୁଯୋଗ ପାଇଥିଲି । ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଉପସଭାପତି ଥିଲାବେଳେ ଅନେକ ସୁଯୋଗ ମିଳିଥିଲା ଏକାଠି ବସି ଆଲୋଚନା କରିବାପାଇଁ । ଡଃ ମାୟାଧର ମାନସିଂହଙ୍କ ସହିତ ସେହି ଉତ୍କଳ ସାହିତ୍ୟ ସମାଜ କାର୍ଯ୍ୟକାରୀ ସମିତିରେ ଏକାଠି କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା । ମାନସିଂହଙ୍କ ମୃତ୍ୟୁପରେ ପ୍ରତ୍ୟେକ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟର ବାଣିଜ୍ୟ ବିଭାଗ ଆନୁକୂଲ୍ୟରେ ମାନସିଂହ- ସାହିତ୍ୟ ପ୍ରତିଯୋଗିତା ହୋଇଥାଏ ବିଭିନ୍ନ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କ ମଧ୍ୟରେ । ପ୍ରଫେସର ସୂର୍ଯ୍ୟକାନ୍ତ ଦାସ ଥିଲେ ଏହି ଅନୁଷ୍ଠାନର ପ୍ରଧାନ ଆୟୋଜକ । ଅନେକବର୍ଷ ଏହି ପ୍ରବନ୍ଧମାନଙ୍କର ବିଚାରକ ହେବାପାଇଁ ମୋତେ ବରଣ କରୁଥିଲେ । ଏକ ମନୋଜ୍ଞ ଅଧିବେଶନରେ ପ୍ରବନ୍ଧ ଲେଖକମାନଙ୍କୁ ବିଶିଷ୍ଟ ଅତିଥିମାନଙ୍କ ହସ୍ତରେ ପୁରସ୍କାର ପ୍ରଦାନ କରାଯାଇଥାଏ ଏବଂ ମାନସିଂହଙ୍କ ଜୀବନୀ ଓ ସାହିତ୍ୟକୃତି ଉପରେ ଅତିଥିଗଣ ଭାଷଣ ପ୍ରଦାନ କରିଥାଆନ୍ତି । ଏହି ଅନୁଷ୍ଠାନରେ କେତେଥର ଅତିଥି ବକ୍ତା ହେବାର ସୁଯୋଗ ମିଳିଥିଲା ।

ଭାରତର କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଇଂରେଜୀ ଭାଷାରେ ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟର ଇତିହାସ ପ୍ରଣୟନ କରିଛନ୍ତି । ଓଡ଼ିଆ ସାହିତ୍ୟର ଇତିହାସ ଲେଖିଥିଲେ ଡଃ ମାୟାଧର ମାନସିଂହ । ଏହାର ପ୍ରଥମ ପ୍ରକାଶ କାଳ ୧୯୬୨ ମସିହା । ଆଧୁନିକ ଓଡ଼ିଆ ସମାଲୋଚନା ସାହିତ୍ୟର ଶୀର୍ଷକ ଥିଲା "Prose Critical Studies and Bells-letters" ସେଥିରେ ମୋ ପରି ତରୁଣ ଲେଖକକୁ ଆଶୀର୍ବାଦ ଜଣାଇଥିଲେ । ତାଙ୍କର ବକ୍ତବ୍ୟ ଥିଲା ଏହିପରି– "Young intellectuals like Sri Chintamani Behera, Sri Nilamani Sahu, Sri Benudhar Rout, Sri Narendra Kumar Mishra, Sri Sarbeswar Das, Sri Pathani Pattnaik and few others are contributing to true aesthetic and interpretative criticism." p-272.

ଡକ୍ଟର ମାନସିଂହଙ୍କ ପରି ସାହିତ୍ୟରଥୀଙ୍କଠାରୁ ଅହେତୁକ ଲେଖକୀୟ ସ୍ୱୀକୃତି ପାଇବା ପରମ ସୌଭାଗ୍ୟର କଥା ।

୧୯୭୩ ମସିହାରେ ଅଗଷ୍ଟ ଛଅ ତାରିଖ ଉଲ୍ଲେଖ ଥାଇ ଗୋଟିଏ ପୋଷ୍ଟକାର୍ଡ଼ ମାନସିଂହଙ୍କଠାରୁ ପାଇଥିଲି । ସେତେବେଳେ ଅଧ୍ୟାପକ ରାଧାଶ୍ୟାମ ବେହୁରା ମାନସିଂହ–ସାହିତ୍ୟ ବିଷୟରେ ଗବେଷଣା କରୁଥାଆନ୍ତି । ତାଙ୍କର ଉଦ୍ୟମରେ ଏକ ମାନସିଂହ–ସ୍ମରଣିକା ପାଇଁ ମୋତେ ଗୋଟିଏ ପ୍ରବନ୍ଧ ଲେଖିବାକୁ ପଡ଼ିଥିଲା । ତାହାକୁ ପାଠ କରି ସେ ଯେଉଁ ପୋଷ୍ଟକାର୍ଡ଼ଟି ମୋତେ ଲେଖିଥିଲେ, ତାକୁ ଆଜି ମଧ ସାଇତି ରଖିଛି । ଏଥିରେ ମାନସିଂହଙ୍କ ମନର ଅନେକ ଗୁମର କଥା ପ୍ରକାଶିତ ହୋଇଛି ବୋଲି ପାଠକମାନେ ଅନୁଭବ କରିପାରିବେ । ପୋଷ୍ଟକାର୍ଡ଼ର ପତ୍ରଲିପି ଏହିପରି–

କଟକ, ୬.୮.୭୩

ପ୍ରିୟ ପଠାଣି ବାବୁ,

ଶ୍ରୀ ରାଧାଶ୍ୟାମ ବେହୁରାଙ୍କ ଠାରୁ ଆପଣଙ୍କର ''ମାନସିଂହଙ୍କ ପ୍ରଣୟ–ଚେତନାର ଆରମ୍ଭ'' ପ୍ରବନ୍ଧଟି ପଢ଼ି ପ୍ରୀତ ହେଲି । ଥରେ ପଢ଼ିଛି, ଆଉ ଥରେ ପଢ଼ିଛି । ଭାବୁଛି, ନାମକରଣଟା କିଞ୍ଚିତ ପରିବର୍ତ୍ତନ କରିଦେବି । କାରଣ ପ୍ରଣୟ ଉପରେ ବହୁ ପ୍ରବନ୍ଧ ଆସୁଛି, ଏବଂ ଆପଣ ବରଂ ପ୍ରାଂଜଳ ଭାବରେ ମାନସିଂହଙ୍କ 'ପ୍ରତିଭା–ଚେତନା'ର ଆରମ୍ଭ ବର୍ଣ୍ଣନା କରିଛନ୍ତି । କିନ୍ତୁ ଆପଣଙ୍କ ପ୍ରବନ୍ଧର ମୁଖ୍ୟ ବିଶେଷତ୍ୱ ହେଲା ଯେ, ଆପଣ ମାନସିଂହଙ୍କୁ ପ୍ରାଚୀନ ପତ୍ରପତ୍ରିକାରୁ ଖୋଜି ବାହାର କରି ପାରିଛନ୍ତି । ଆପଣ ଏ ସବୁ କେଉଁଠୁ ପାଇଲେ ? 'ଜନ୍ମାଷ୍ଟମୀ' କବିତା ଗ୍ରନ୍ଥାବଳୀରେ ନାହିଁ । ମୋର ସନ୍ଦେହ, ଗ୍ରନ୍ଥାବଳୀରେ 'ଉପେକ୍ଷିତା' ଯାହାଂ ବାହାରିଛି ତାହା ପୂରା ନୁହେଁ । ଆପଣଙ୍କ ବର୍ଣ୍ଣନାରୁ ଆପଣ ପୂରା ଉପେକ୍ଷିତା ପଢ଼ିଲାପରି ମନେହେଲା । ପୁଣି ଅତି ଅଦ୍ଭୁତ କଥା ଯେ, ଆପଣ ଗାଳ୍ପିକ ମାନସିଂ କି ମଧ ଠଉରେଇ ପାରିଛନ୍ତି । ମୋର କବିତା ଲେଖା ଯଦି ଏତେ ତୁରନ୍ତ ପ୍ରଂଶସାର୍ଜନ କରି

ନଥାନ୍ତା, ତେବେ ହୁଏତ ମୁଁ ଓଡ଼ିଆ ସାହିତ୍ୟରେ ଏକ ତୃତୀୟ ଶ୍ରେଣୀର କବି ନ ହୋଇ ଚତୁର୍ଥ ଶ୍ରେଣୀର ଗାଳ୍ପିକ ହୋଇଥାନ୍ତି । 'ସହକାର'ରେ 'ଦୁଃଶାସନ ନାୟକ' ଛଦ୍ମ ନାମରେ ମଧ୍ୟ ମୁଁ ଦୁଇ ତିନିଟି ଗଳ୍ପ ପ୍ରକାଶ କରିଥିଲି । ମୋର ଗୋସେଇଁମା ମତେ ଏହି ନାମରେ ଡାକୁଥିଲେ । ଦୟାକରି ଦେଖନ୍ତୁ ତ, ଏହି ନାମରେ କିଛି ଲେଖା ଏବେ ବି ମିଳିପାରିବ । ସେଗୁଡ଼ିକୁ ବରଂ ଦୟାକରି, ଏକତ୍ର କରି କେଉଁ ପ୍ରକାଶକଙ୍କ ଦ୍ୱାରା ପ୍ରକାଶ କରାଇ ନିଅନ୍ତୁ । ଗ୍ରନ୍ଥମନ୍ଦିର ହିଁ ଛାପି ଦେଇପାରେ । ଆପଣଙ୍କର ମାନସିଂହ-ସଂପୃକ୍ତ ଏ ପ୍ରକାର ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ଓ ଆଲୋଚନା ପଢ଼ି ମୁଁ ପ୍ରକୃତରେ ଅତ୍ୟନ୍ତ ପ୍ରୀତ । ଆପଣଙ୍କର ଏ ପ୍ରବନ୍ଧଟି ସେହି କାରଣରୁ ମୂଲ୍ୟବାନ ହୋଇଉଠିଛି ।

ଇତି : ଶୁଭାନୁଧ୍ୟାୟୀ ମାନସିଂ

ଡଃ ମାନସିଂ ଏହି ପ୍ରସଙ୍ଗରେ ଆଉ ଗୋଟିଏ ପୋଷ୍ଟକାର୍ଡ଼ ଲେଖିଥିଲେ । ସେ ଦୁଃଖ ପ୍ରକାଶ କରିଥିଲେ ସାହିତ୍ୟ ସମାଲୋଚକ ମାନଙ୍କର ଏକ ଦେଶଦର୍ଶୀ ଆଲୋଚନା ପାଇଁ ତାଙ୍କ ସାହିତ୍ୟ ବିଚାର କଲାବେଳେ । ପ୍ରାୟ ଅଧିକାଂଶର ଗୋଟିଏ ମାତ୍ର ଅଭିମତ- ''ମାନସିଂଙ୍କର ପ୍ରେମ କବିତାକୁ ସମ୍ବଳ କରି'' । ସାହିତ୍ୟର ବିଭିନ୍ନ ବିଭାଗରେ ସେ ହାତ ଦେଇଥିଲେ । ସେ ଥିଲେ ଏକାଧାରରେ ଜଣେ ପ୍ରଭାବଶାଳୀ ପ୍ରାବନ୍ଧିକ ଓ ସାହିତ୍ୟ ସମାଲୋଚକ, ଔପନ୍ୟାସିକ, କାବ୍ୟକାର, ପ୍ରବୀଣ ଶିକ୍ଷାବିତ, ଐତିହାସିକ ଇତ୍ୟାଦି । ତାଙ୍କର କାବ୍ୟସାଧନାର ଆଭିମୁଖ୍ୟ ମଧ୍ୟ ବହୁବିଧ । ମାତ୍ର ଏହି ଦିଗପ୍ରତି ସମାଲୋଚକମାନଙ୍କର ଦୃଷ୍ଟି ନ ଫେରିବାରୁ ସେ ଦୁଃଖ ପ୍ରକାଶ କରିଥିଲେ । ଦୁଃଖର ବିଷୟ ସେହି କାର୍ଡ଼ଟି ଜଣେ ସ୍ୱର୍ଗଗାମୀ ବନ୍ଧୁ ପାଠ କରିବାକୁ ନେଇ ଆଉ ଫେରାଇ ପାରିନଲେ ନାହିଁ ।

ଆମ ସମୟର ଓଡ଼ିଶାରେ ଯେଉଁମାନେ ଭାଷଣ ସର୍ବସ୍ୱ ଜୀବନ ଅତିବାହିତ କରି ଗୌରବାନ୍ୱିତ ହେଉଛନ୍ତି, ସେମାନଙ୍କୁ ଡଃ ମାନସିଂ କଠୋର ସମାଲୋଚନା କରୁଥିଲେ । ଜଣେ ଜଣେ ବକ୍ତା ବର୍ଷତମାମ ଉପେନ୍ଦ୍ର ଭଞ୍ଜ, ରାମାୟଣ, ମହାଭାରତ, ଭାଗବତ ବିଷୟରେ ବୁଲି ବୁଲି ଭାଷଣ ଦେଇଥାଆନ୍ତି । ଏପରି ପେଶାଦାରୀ ବକ୍ତାଗଣ କେବଳ ଚର୍ବିତଚର୍ବଣ କରି ଗତାନୁଗତିକ ଧାରାରେ ଜନମାନସକୁ ପ୍ରତାରିତ କରିବା ଦୁଃଖର କଥା । ସେ ଇଂଲଣ୍ଡ ରହଣିର ଅନୁଭୂତି ବର୍ଣ୍ଣନା କରି କହୁଥିଲେ, ସେଠାରେ ଜଣେ ବକ୍ତାଙ୍କୁ ନିର୍ଦ୍ଦିଷ୍ଟ ବିଷୟରେ ପ୍ରସ୍ତୁତ ହୋଇ ଆସିବାପାଇଁ ଛଅମାସ ଆଗରୁ ନିମନ୍ତ୍ରଣ ଯାଇଥାଏ । ସେ ସେହି ବିଷୟରେ ଥରେ କହିଲା ପରେ ଆଉ ଦୁଇବର୍ଷ ପାଇଁ ପୁନରୁକ୍ତି କରିବା ଦେଖାଯାଏ ନାହିଁ । ସେପରି ଗତାନୁଗତିକ ବକ୍ତାଙ୍କୁ ସ୍ୱୀକୃତି ମିଳେ ନାହିଁ । ଇଂଲଣ୍ଡ ପ୍ରବାସ ସମୟରେ ମାନସିଂ ଧାରାବାହିକ ଭାବେ ଶ୍ରୀମତୀ ମାନସିଂଙ୍କ ନିକଟକୁ ଅନେକ ଚିଠି ଲେଖୁଥିଲେ । ଅନେକ ବ୍ୟକ୍ତିଗତ ଚିଠି ଯେ ସାହିତ୍ୟର ଅମୂଲ୍ୟ ସମ୍ପତ୍ତି, ଏହି ବିଷୟରେ ଓଡ଼ିଆ ସାହିତ୍ୟରେ ବିଶେଷ ସଂକଳନର

ପ୍ରୟାସ ହୋଇନାହିଁ । ଦୁର୍ଗାଚରଣ ରାୟ ତାଙ୍କ ଲିଖିତ ରାଧାନାଥ ଜୀବନୀରେ କତିପୟ ସାହିତ୍ୟରଥୀଙ୍କର ବ୍ୟକ୍ତିଗତ ଚିଠି ସଂକଳନ କରିଥିଲେ । ପରବର୍ତ୍ତୀ କାଳରେ ଗଙ୍ଗାଧର ମେହେରଙ୍କର କେତେକ ଚିଠି ଆତ୍ମପ୍ରକାଶ କରିଥିଲା । ସୁଲେଖକ ମୁରାରୀ ମୋହନ ଜେନା "ପ୍ରଣୟ ପତର" ଶୀର୍ଷକରେ ଜଣେ ନବୋଢ଼ା ନାରୀଙ୍କର କେତେକ ଚିଠି ଏକାଠି ପ୍ରକାଶ କରିଥିଲେ । "ହେମପତ୍ର" ଶୀର୍ଷକରେ କବି ମାନସିଂହଙ୍କର ଅନେକ ଗୁଡ଼ିଏ ଚିଠି ସଂପାଦନା କରିଛନ୍ତି ଡଃ ସୂର୍ଯ୍ୟକାନ୍ତ ଦାସ ଓ ନଟବର ଖୁଣ୍ଟିଆ । "କବି ମାନସିଂହଙ୍କ ପତ୍ର ସାହିତ୍ୟ-ଏକ ଆକଳନ"ଶୀର୍ଷକରେ ଏହି ପୁସ୍ତକର ଅଗ୍ରଲେଖ ଲେଖିବାର ସୌଭାଗ୍ୟ ଲାଭ କରିଥିଲି । ଏହି ଚିଠି ଗୁଡ଼ିକରେ ନିଛକ ବ୍ୟକ୍ତିଗତ କଥା ରହିବା ସ୍ୱାଭାବିକ । ମାତ୍ର ତତ୍କାଳୀନ ସମାଜଜୀବନର ଚିତ୍ର, ସମାଜ ଓ ଜାତିଗଠନ ଉଦ୍ଦେଶ୍ୟରେ ଲେଖକଙ୍କର ପରାମର୍ଶ ମଧ୍ୟ ଏହି ଚିଠି ଗୁଡ଼ିକରେ ପ୍ରତିଫଳିତ । କବି ମାନସିଂହଙ୍କର ସାଧନାପୂତ ଜୀବନର ଅବଧାରଣା ପାଇଁ ଏହି ଚିଠି ଗୁଡ଼ିକ ଅତ୍ୟନ୍ତ ସହାୟକ ହୋଇଥାଏ ।

କର୍ମକ୍ଷେତ୍ରରେ କଟକରେ ଅବସ୍ଥାନ କରୁଥିବାରୁ ଏଠାରେ ସାଂସ୍କୃତିକ ବାତାବରଣରେ ସୁଖୀ ହେଉଥିଲି । ଓଡ଼ିଶାର ବହୁ ବରେଣ୍ୟ ସାହିତ୍ୟସେବୀଙ୍କ ନିକଟ ସଂପର୍କରେ ଆସି ସେମାନଙ୍କର ସ୍ନେହଭାଜନ ହେବାର ଅପୂର୍ବ ସୁଯୋଗ ମିଳି ପାରିଥିଲା । ଏହି ସମୟରେ ପୁରୁଣା ସମାଜପ୍ରେସର ଅଫିସ ଓ ପ୍ରେସ ଥିଲା ନିମଚଉଡ଼ି ଛକରେ । ଏହିଠାରେ ଗୋଟିଏ ଭଡ଼ାଘରେ 'ଜ୍ଞାନମଣ୍ଡଳ' ପ୍ରଣେତା ବିନୋଦ କାନୁନଗୋ ନିଜର ପରିବାର ସହିତ ଅବସ୍ଥାନ କରୁଥାଆନ୍ତି । ସେ ଥିଲେ ଜଣେ ପ୍ରବୀଣ ସାମ୍ବାଦିକ, ଶିଶୁ-ସାହିତ୍ୟର ଲେଖକ ଏବଂ ସ୍ୱାଧୀନତା ସଂଗ୍ରାମୀ । ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର ଥାଇ ମଧ୍ୟ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ ପାଠପଢ଼ା ଅଧାରୁ । ଗତାନୁଗତିକ ଶିକ୍ଷା ଲାଭରେ ସିନା ଡ଼ୋରୀ ବନ୍ଧା ହେଲା, ଅସଲ ବିଦ୍ୟାଅର୍ଜନର ପ୍ରୟାସ ଜାରି ରହିଲା ଜେଲର କୋଠରୀ ମଧ୍ୟରେ । ପ୍ରଖ୍ୟାତ ସମ୍ବାଦପତ୍ର "ସମାଜ" ଓ ସାପ୍ତାହିକ "କୃଷକ", "ଲୋକଶାସନ" ଓ "ଗ୍ରାମସେବକ" ପତ୍ରିକାଗୁଡ଼ିକର ସଂପାଦନାରେ କିଛି କାଳ ଜଡ଼ିତ ରହିଥିଲେ । ବିଧାନସଭା ନିର୍ବାଚନରେ ବିଫଳ ହୋଇଥିଲେ । ଏହା ଥିଲା ବିଧି ନିର୍ଦ୍ଦିଷ୍ଟ । ପ୍ରତ୍ୟକ୍ଷ ରାଜନୀତିରୁ ଓହରି ଆସି ସେ ଆରମ୍ଭ କଲେ କଲମଚାଷ । ଲେଖନୀ ତାଙ୍କର ପୋଷା ମାନିଥିଲା । ଶିଶୁମାନଙ୍କ ଉଦ୍ଦେଶ୍ୟରେ ସଂପାଦନା କଲେ ୧୯୫୪ ସାଲରେ "ଶିଶୁସଂପଦ" । ଓଡ଼ିଆ ଭାଷାରେ ଲୋକପ୍ରିୟ ବିଶ୍ୱକୋଷ ସଂକଳନ ପାଇଁ ଆରମ୍ଭ ହେଲା "ଜ୍ଞାନମଣ୍ଡଳ" ଲେଖିବାର ସାଧନା । ପ୍ରତ୍ୟେକ ଦିନ ସଂଧ୍ୟାରେ ନିମଚଉଡ଼ି ଘରେ ସଖ୍ୟଲାଭ କରୁଥିଲି ବିନୋଦ କାନୁନ୍‌ଗୋଙ୍କର । ସାହିତ୍ୟ, ଜ୍ଞାନବିଜ୍ଞାନ, ରାଜନୀତି ସଂପର୍କରେ ତାଙ୍କର ଆଲୋଚନା ଶ୍ରବଣ କରି ଉପକୃତ ହେଉଥିଲି । ବହୁ ପରେ ତାଙ୍କର ଜ୍ଞାନମଣ୍ଡଳ ଅଫିସ ଉଠିଆସିଲା ବାରବାଟୀ ଷ୍ଟାଡ଼ିୟମର ଏକ ପ୍ରଶସ୍ତ କୋଠରୀକୁ । ସେଠାକୁ ମଧ୍ୟ ବର୍ଷେ ପରେ ବର୍ଷ ଯାଉଥିଲି ଆଲୋଚନା ଶୁଣିବାପାଇଁ । ଓଡ଼ିଶାର ବହୁ ବରେଣ୍ୟ ଜନନେତା ଓ ସାହିତ୍ୟସେବୀ 'ଜ୍ଞାନମଣ୍ଡଳ' ଅଫିସରେ ପାଦ ପକାଉଥିଲେ । 'ଜ୍ଞାନମଣ୍ଡଳ' ପ୍ରକାଶ କରିବାପାଇଁ ବିନୋଦବାବୁ କାବୁଲିଠାରୁ ଟଙ୍କା କରଜ କରିବାକୁ ପଛାଇ

ନଥିଲେ । ପ୍ରକାଶିତ ହେଲାପରେ ପ୍ରତ୍ୟେକ ଖଣ୍ଡର ମୁଁ ଥିଲି ଅନ୍ୟତମ ଗ୍ରାହକ । ଜଗତର ଯେ କୌଣସି କଥାକୁ ଆମେ ଓଡ଼ିଆଭାଷାରେ ଜାଣିପାରିବୁ, ଏହି ଉଦ୍ଦେଶ୍ୟରେ ଜ୍ଞାନମଣ୍ଡଳ ଜନ୍ମଗ୍ରହଣ କରିଥିଲା । ଏହି ମହାନ ସାରସ୍ୱତ ତପସ୍ୱୀଙ୍କ ଦେହାନ୍ତ ପରେ ରାଷ୍ଟ୍ରୀୟ ସମ୍ମାନରେ ଚିରବିଦାୟ ଦିଆଯାଇଥିଲା । ଏପରି ଜଣେ ଜ୍ଞାନପାଗଳ ସାରସ୍ୱତ ସାଧକଙ୍କ ଅନ୍ତରଙ୍ଗ ହେବାର ଗୌରବ ଲାଭ ଭାଗ୍ୟରେ ଥିଲେ ମିଳେ ।

ବିଂଶ ଶତାବ୍ଦୀର ଷଷ୍ଠ ଦଶକରେ ଓଡ଼ିଶା ସରକାର ପାଠ୍ୟପୁସ୍ତକର ଜାତୀୟକରଣ କଲେ । ଏଥିପାଇଁ ପାଠ୍ୟପୁସ୍ତକ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ସରକାର ପ୍ରତିଷ୍ଠା କଲେ ଜାତୀୟକରଣ ଅନୁଷ୍ଠାନ ସ୍ୱାଧୀନତା ସଂଗ୍ରାମୀ ଓ ଜାତୀୟ କବି ବୀରକିଶୋର ଦାସଙ୍କ ସଂପାଦକତ୍ୱରେ । ଏହି ଅନୁଷ୍ଠାନରେ ଆରମ୍ଭରୁ ପାଠ୍ୟପୁସ୍ତକ ପ୍ରଣୟନ କମିଟିରେ କାର୍ଯ୍ୟ କରିବାପାଇଁ ଆହୂତ ହୋଇଥିଲି ଏବଂ ଅନେକ ବର୍ଷ କାର୍ଯ୍ୟ କରିଥିଲି । ଏହି ଅବସରରେ ଏକାଠି କାର୍ଯ୍ୟ କରିବାର ସୌଭାଗ୍ୟ ହୋଇଥିଲା, ସୁଲେଖକବୃନ୍ଦ କାଳିନ୍ଦୀଚରଣ ପାଣିଗ୍ରାହୀ, ରାମକୃଷ୍ଣ ନନ୍ଦ, ଡ଼ମ୍ବୁରଧର ପରିଡ଼ା, ବେଣୁଧର ରାଉତ, ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), କୁଞ୍ଜବିହାରୀ ଦାଶ ପ୍ରଭୃତିଙ୍କ ସହିତ । ବୀରକିଶୋରଙ୍କ ପରେ ଏହି ଅନୁଷ୍ଠାନର ସଂପାଦକ ଦାୟିତ୍ୱ ନ୍ୟସ୍ତ ହେଲା କବି ଅନନ୍ତ ପଟ୍ଟନାୟକଙ୍କ ଉପରେ । ଅନନ୍ତ ବାବୁଙ୍କ ସଂପାଦନାରେ ଏହି ଅନୁଷ୍ଠାନ ପ୍ରକାଶ କଲେ ଶିଶୁ-କିଶୋରପତ୍ରିକା ''ଶିଶୁଲେଖା'' । ଏଥିରେ ମଧ୍ୟ ସାମୟିକ ଲେଖୁଥିଲି ।

ଅନନ୍ତ ବାବୁ ଥିଲେ ଅତ୍ୟନ୍ତ ଉଦାର ଓ ପ୍ରେମୀ ମଣିଷଟିଏ । ଅହଂକାର ତାଙ୍କର ପାଖ ପଶି ନଥିଲା । ବହୁବର୍ଷ ଆମେ ଏକାଠି ଉତ୍କଳ ସାହିତ୍ୟ ସମାଜର ସଂଗଠନ ଦାୟିତ୍ୱରେ ରହିଥିଲୁ ବନ୍ଧୁମାନଙ୍କ ସହିତ । ଅନନ୍ତ ବାବୁ ସଭାପତି ଥିଲାବେଳେ ତାଙ୍କ କାର୍ଯ୍ୟକାରୀ ସମିତିର ନିର୍ବାଚିତ ସଭ୍ୟ ଭାବରେ ରହିଥିଲି । ତାଙ୍କର ସଭାପତିତ୍ୱ କାଳରେ ସାହିତ୍ୟ ସମାଜ ଆନୁକୂଲ୍ୟରେ ଏକ ଭବ୍ୟ ନିଖିଳ ଓଡ଼ିଶା ସାହିତ୍ୟ ସମ୍ମେଳନର ଆୟୋଜନ କରାଯାଇଥିଲା । ମାତୃଭୂମିର ଭୂତପୂର୍ବ ସଂପାଦକ ବିଚିତ୍ରାନନ୍ଦ କର, ଅନନ୍ତ ବାବୁ ଓ ମୁଁ ବହୁବାର ଏକତ୍ର ଯାଉଥିଲୁ କଟକ ବାହାରେ ଅନୁଷ୍ଠିତ ଅନେକ ସାହିତ୍ୟ ସଭାକୁ ଅତିଥି ଭାବରେ । ସାହିତ୍ୟ ଆଲୋଚନା ଓ ଅନ୍ତରଙ୍ଗ ଆଳାପରେ ଆମେ ଏକପ୍ରକାର ମଗ୍ନ ହୋଇ ରହୁଥିଲୁ । ଅନନ୍ତ ବାବୁ କେବଳ ଜଣେ ଶକ୍ତିଶାଳୀ କବି ନଥିଲେ, ସେ ଥିଲେ ଏକାଧାରରେ ପ୍ରଗତି ଆନ୍ଦୋଳନର କବି, ସାର୍ଥକ ଅନୁବାଦକ, ଶିଶୁ ସାହିତ୍ୟର ଲେଖକ ଓ ସଂପାଦକ, ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ଶକ୍ତିଶାଳୀ ଲେଖକ ଓ ବକ୍ତା । ତାଙ୍କର ଘରେ ସର୍ବଦା ସାହିତ୍ୟର ଆସର ଜମୁଥିଲା । ତରୁଣ, ପ୍ରବୀଣ ଉଭୟ ସ୍ତରର ଲେଖକ ତାଙ୍କର ସାନ୍ନିଧ ଓ ଆତିଥ୍ୟ ଲାଭକରି ଗୌରବାନ୍ୱିତ ହେଉଥିଲେ ।

୧୯୬୪ ମସିହା ଡିସେମ୍ବର ମାସରେ ୨୯.୩୦.୩୧ ତାରିଖ ତିନିଦିନ କାଳ ପୁରୀର ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଯୁବଲେଖକ ସମ୍ମିଳନୀର ପ୍ରଥମ ଅଧିବେଶନ ଆହୂତ ହୁଏ ।

ଏହି ଅନୁଷ୍ଠାନରେ ଯୋଗଦାନ କରିଥିଲେ ସମଗ୍ର ଓଡ଼ିଶାର ତରୁଣ ଲେଖକମାନେ । ଉଦ୍‌ଘାଟନ ଉତ୍ସବରେ ଅନନ୍ତ ବାବୁଙ୍କ ସହିତ ଏହି ଲେଖକ ମଞ୍ଚାସୀନ ଥାଇ ଉଦ୍‌ବୋଧନ ଦେଇଥିଲା । ଯୁବଲେଖକ ସମ୍ମିଳନୀ ପରେ ଏକ ସାହିତ୍ୟିକ ଆନ୍ଦୋଳନରେ ରୂପାନ୍ତରିତ ହୋଇଯାଇଥିଲା ।

•••

# ଜୀବନ–ନଦୀରେ ଅସରନ୍ତି ଢେଉ

**ଶ**ତକଡ଼ା ଶହେ କୌଣସି ଛାତ୍ର ଦୁର୍ବଳ ନୁହେଁ, ଦୁର୍ଦ୍ଦଣ୍ଡ ନୁହେଁ ଅଥବା ବୁଦ୍ଧିହୀନ ନୁହେଁ । ଜୀବନର ଚଲାପଥରେ କେଉଁଠି କିପରି ସାମାନ୍ୟ ଦୋଷ ଓ ଦୁର୍ବଳତା ଜମା ହୋଇ ରହିଥାଏ ନାନା କାରଣରୁ । ଏଥିପାଇଁ ପରିବେଶ, ପରିବାର ଓ ସଂଗଦୋଷ ବହୁ ପରିମାଣରେ ଦାୟୀ । ଜଣେ ଧୈର୍ଯ୍ୟବାନ ଶିକ୍ଷକ ଅତ୍ୟନ୍ତ ଉଦାର ଭାବରେ ତାହା ଅନୁଧାନ କରି ମାର୍ଗ ଦର୍ଶନ କଲେ ଛାତ୍ରଟିର ଭବିଷ୍ୟତ କର୍ମଚଞ୍ଚଳ ଓ ଉଜ୍ଜ୍ୱଳ ହୋଇଉଠେ ।

ମନେପଡୁଛି ପୁରୀ ଏଡ୍ୱୋୟାର୍ଡ଼ ମି.ଇ. ସ୍କୁଲର ଶେଷବର୍ଷ ଶ୍ରେଣୀଶିକ୍ଷକ ଜଗନ୍ନାଥ ମିଶ୍ରଙ୍କର ଅନୁରାଗ ଭରା ଶିକ୍ଷାଦାନ । ସେତେବେଳେ ମାଇନର ଶେଷ ଶ୍ରେଣୀର ପିଲାମାନଙ୍କୁ କେନ୍ଦ୍ର ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେବାକୁ ପଡୁଥିଲା । ସେହି ବୟସରେ ଜଣେ ପିଲାର ଅମନଯୋଗୀ ଚଗଲାମିପଣ ବାପା, ଦାଦାଙ୍କର ଚିନ୍ତାର କାରଣ ହୋଇଥିଲା । ସେ ପାଠପଢ଼ାରେ ଥିଲା ଅତ୍ୟନ୍ତ ଅମନଯୋଗୀ । କେବଳ ସାହିତ୍ୟ ବିଷୟ ବାଦ୍ ଦେଲେ ଆଉ କୌଣସି ବିଷୟରେ କେନ୍ଦ୍ର ପରୀକ୍ଷାରେ ପାସ୍ କରିବା ଥିଲା କଳ୍ପନାତୀତ । ଜଗନ୍ନାଥ ସାର୍ କେବଳ ଶ୍ରେଣୀଶିକ୍ଷକ ନଥିଲେ, ସେ ସଂଧ୍ୟାବେଳେ କୋଚିଂକ୍ଲାସ୍ ଦାୟିତ୍ୱ ବହନ କରିଥିଲେ । କେବଳ ଇଂରାଜୀକୁ ବାଦ୍‌ଦେଲେ ସାହିତ୍ୟ, ଇତିହାସ, ଭୂଗୋଳ ପ୍ରଭୃତି ପ୍ରତିଟି ବିଷୟରେ ପିଲାମାନଙ୍କୁ କେନ୍ଦ୍ର ପରୀକ୍ଷା ପାଇଁ ପ୍ରସ୍ତୁତ କରିବା ଥିଲା ତାଙ୍କର ଦାୟିତ୍ୱ । କେବଳ ପ୍ରଧାନ ଶିକ୍ଷକ କୃଷ୍ଣଚନ୍ଦ୍ର ରଥ ଇଂରାଜୀ କ୍ଲାସ୍ ନେଉଥିଲେ, ଏହି ପ୍ରଧାନ ଶିକ୍ଷକ ଥିଲେ ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କର କନିଷ୍ଠ ଭ୍ରାତା । ଅନ୍ୟ ପରିବାରକୁ ପୋଷ୍ୟପୁତ୍ର ହୋଇ କୃପାସିନ୍ଧୁଙ୍କର ସାଙ୍ଗିଆ ହୋଇଥିଲା ମିଶ୍ର । କୋଚିଂ କ୍ଲାସ୍‌ରେ ପ୍ରଥମ ସଂଧ୍ୟାରେ ଜଗନ୍ନାଥ ସାର୍ ପ୍ରଶ୍ନ ପଚାରି ଜାଣିଲେ ସେହି ପିଲାର ପାଠପଢ଼ାରେ ଅମନଯୋଗିତା ଓ ଦୁର୍ବଳତା । ମାଟି ପିଣ୍ଡୁଳାକୁ କୁମ୍ଭାର ନାନା ରୂପରେ ଗଠନ କଲା ପରି ଜଗନ୍ନାଥ ସାର୍‌ଙ୍କର ଆନ୍ତରିକ ଆଶୀର୍ବାଦ ଓ ଚେଷ୍ଟାରେ ସେଦିନର ଅମନଯୋଗୀ ଓ ସବୁ ବିଷୟରେ ଦୁର୍ବଳ ଛାତ୍ର କୃତିତ୍ୱର ସହିତ ମାଇନର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲା । ଏହାର ପ୍ରଭାବ ଥିଲା ସୁଦୂରପ୍ରସାରୀ । ମାଟ୍ରିକ୍ ପରୀକ୍ଷାରେ ଚାରିବର୍ଷକାଳ ଏହି ବାଳକ ଅଙ୍କରେ ଶହେ, ଇତିହାସରେ ଅଶୀ, ଭୂଗୋଳରେ ନବେ, ସାହିତ୍ୟରେ ସତୁରୀ ସରିକି ନମ୍ବର ରଖି ନିରବଚ୍ଛିନ୍ନ ଭାବରେ ଚାରିବର୍ଷକାଳ କ୍ଲାସ୍ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରୁଥିଲା । ପରିଶେଷରେ ମାଟ୍ରିକ୍ କେନ୍ଦ୍ର ପରୀକ୍ଷାରେ ଅଳ୍ପ କେତୋଟି ନମ୍ବର

ଅଭାବ ହେବାରୁ ପ୍ରଥମଶ୍ରେଣୀ ପାଇପାରିଲା ନାହିଁ । ସେତେବେଳେ ପ୍ରଦେଶର କେନ୍ଦ୍ର ପରୀକ୍ଷାରେ ଅଙ୍ଗୁଳିମେୟ ଛାତ୍ର ପ୍ରଥମ ଶ୍ରେଣୀ ଲାଭ କରୁଥିଲେ । ଏ ପର୍ଯ୍ୟନ୍ତ ଯାହାର କଥା କହିଚାଲିଛି, ସେହି ଚଗଲା ପିଲାଟି ଥିଲା ଏହି ଲେଖକ । ସେହି ପରମପୂଜନୀୟ ଶିକ୍ଷାଗୁରୁଙ୍କୁ ଆଜୀବନ ସ୍ମରଣ କରି ନିଜକୁ ଧନ୍ୟ ମନେକରୁଅଛି । ଅଧ୍ୟାପକ ଜୀବନରେ ସେ ମୋର ଆଦର୍ଶ ହୋଇ ରହିଛନ୍ତି ।

ଅଧ୍ୟାପକ ଜୀବନକୁ ବରଣ କଲାପରେ ଏହିପରି କେତୋଟି ଅମୃତ ଅନୁଭବ ମନେପଡୁଛି । ଭଦ୍ରକ କଲେଜରେ ଅଧ୍ୟାପକ ଜୀବନ ଥିଲା ମାତ୍ର ତିନୋଟି ମାସ ୧୯୫୩ ମସିହାରେ । ପ୍ରଥମ ଦିନ ପ୍ରଥମ ବାର୍ଷିକ ଆଇ.ଏ. ଶ୍ରେଣୀରେ ମୋତେ 'ଚିଲିକା' ପଢ଼ାଇବାକୁ ପଡ଼ିଲା । ରୋଲ୍‌କଲ୍ ନ ସରୁଣୁ ଜଣେ ଛାତ୍ର କ୍ଲାସ୍ ଛାଡ଼ି ଉଠିଗଲା ମୋର ବିନା ଅନୁମତିରେ ଏବଂ ସେହି କ୍ଲାସ୍ ଆଗର ପଡ଼ିଆରେ ସାଇକେଲ୍‌ରେ ଘୂରିବାକୁ ଲାଗିଲା । ଘରେ ପଶୁପଶୁ ଚାଳି ବାଜିଲା । ବୋଧହୁଏ ଏହି କନିଷ୍ଠତମ ତରୁଣ ଅଧ୍ୟାପକକୁ ବେଖାତିର କରିପାରିବା ପଣ ଜାରି କରୁଥିଲା । ଉପସ୍ଥାନ ରେଜିଷ୍ଟରରେ ତାକୁ ଅନୁପସ୍ଥିତ ବୋଲି ଉଲ୍ଲେଖ କରି ପଢ଼ାଇ ଚାଲିଲି । ଶିକ୍ଷକମାନଙ୍କ ବିଶ୍ରାମ କକ୍ଷକୁ ଫେରି ଆସି ଅନୁସନ୍ଧାନ କଲି ସେ ପିଲାଟି କିଏ । କଲେଜରେ ପ୍ରବେଶ କରୁକରୁ ଏପରି ଅବାଧ ଆଚରଣ କାହିଁକି ? ମୋର ବରିଷ୍ଠ ସହକର୍ମୀମାନେ କହିଲେ, ''ସେ ପିଲାଟି କୌଣସି କ୍ଲାସ୍‌ରେ ବସେ ନାହିଁ । ଉପସ୍ଥାନ ପକାଇ ଉଠିଯାଏ । ସେ ହେଉଛି ଭଦ୍ରକ କଚେରୀର ଜଣେ ଖ୍ୟାତନାମା ଓକିଲଙ୍କ ପୁଅ । ବାପା କଲେଜ ପରିଚାଳନା ସମିତିର ସଭ୍ୟ ଥିବାରୁ ତାକୁ କେହି କିଛି କହିବାକୁ ସାହସ କରନ୍ତି ନାହିଁ ।'' ଘଣ୍ଟା ବାଜିଲା ତୃତୀୟ ପିରିୟଡ୍‌ର । ପ୍ରଥମ ବାର୍ଷିକ ପିଲାଙ୍କର ଗୋଟିଏ ଟିଉଟୋରିଆଲ୍ କ୍ଲାସ୍ ନେବାକୁ ପଡ଼ିଲା । କ୍ଲାସ୍‌ରେ ପ୍ରବେଶ କଲାମାତ୍ରକେ ଦେଖିଲି, ସେହି ଛାତ୍ରଜଣକ ଉପସ୍ଥିତ । ମୋତେ ଦେଖୁଦେଖୁ ଚିତ୍କାର କରି କହିଲା, ପ୍ରଥମ ପରିୟଡ୍‌ରେ କାହିଁକି ମୋତେ ଉପସ୍ଥାନ ଦେଲେ ନାହିଁ ? ଏହି ଅନାଗତ ଯୁବକ ଅଧ୍ୟାପକକୁ ସେ କାହିଁକି ପାସଙ୍ଗରେ ପକାଇବ । ଅନ୍ୟ ଛାତ୍ରଛାତ୍ରୀମାନେ ତାର ଆଚରଣରେ ବିଚଳିତ ହେଉଥାଆନ୍ତି । କାହାକୁ କିଛି ନକହି ଉପସ୍ଥାନ ଗ୍ରହଣ କଲି । ତାର ରୋଲନମ୍ବରରେ ଅନୁପସ୍ଥିତ ଛକି ମାରିଲି । ସେ ଆଉ କିଛି କହିବା ପୂର୍ବରୁ ଚିତ୍କାର କରି କହିଲି–''ବାପା ଓକିଲ ଓ ପରିଚାଳନା ସମିତି ସଭ୍ୟ ବୋଲି ତୁମେ ଏପରି ଅବାଧ ଆଚରଣ କରୁଛ ବୋଲି ଜାଣିସାରିଲିଣି । ତୁମେ କୌଣସି ସାର୍‌ଙ୍କ କ୍ଲାସ୍‌କୁ ନଯାଇ କଲେଜରେ ଆସି ଫୂର୍ତ୍ତି କରୁଛ । ଅମଣିଷ ପରି ଆଚରଣ କରୁଛ । ତୁମେ ସିନା ମନଦେଇ ପାଠ ପଢ଼ି ବାପାଙ୍କର ନାଁ ରଖନ୍ତ, କଲେଜର ସୁନାମ ବଢ଼ାନ୍ତ । ଆଜି ସଂଧ୍ୟାରେ ତୁମ ଘରକୁ ଯାଇ ତୁମର ବାପା ବୋଉଙ୍କୁ ସବୁକଥା କହିବି । ସେ ଏଠାରୁ ତୁମ ନାଁ କଟାଇନେବେ । ମନଇଚ୍ଛା ସାଳିନ୍ଦୀ ନଦୀ କୂଳରେ ବୁଲିବ, କେହି କିଛି କହିବେ ନାହିଁ ।'' ଏତିକି କହିଲା ପରେ ପିଲାଟି ଦୋଷ ସ୍ୱୀକାର କଲା ଓ ଆଉ ଏଣିକି ଏପରି କରିବ ନାହିଁ ବୋଲି କହିଲା । ବିକଳ ହୋଇ କହିଲା, ଆପଣ ମୋ ବାପା ବୋଉଙ୍କୁ କିଛି କହିବେ ନାହିଁ ।

ସାମାନ୍ୟ ହସିଦେଇ ତାର ମୁଣ୍ଡରେ ହାତ ବୁଲାଇ ଆଣିଲି । ସହପାଠୀ ପିଲାମାନେ ଆଶ୍ଚର୍ଯ୍ୟ ଚକିତ ହୋଇ ଚାହିଁଥାଆନ୍ତି । ସେହି ପିଲାଟି ଏଣିକି ପ୍ରତ୍ୟେକ ସାର୍‌ଙ୍କ କ୍ଳାସ୍‌ରେ ଶେଷ ପର୍ଯ୍ୟନ୍ତ ବସି ରହିଲା ଏବଂ ଟିଉଟୋରିଆଲ୍ ପରୀକ୍ଷାରେ ସର୍ବଦା ପ୍ରଥମ ହେଉଥିଲା । ସେ ମୋ ପ୍ରତି ଏପରି କୃତଜ୍ଞ ରହିଲା ଯେ ମାତ୍ର ତିନିମାସ ପରେ ଭାରତ ସରକାରଙ୍କ ଏକ ଚାକିରୀରେ ଯୋଗ ଦେବା ପାଇଁ ଭଦ୍ରକ କଲେଜରୁ ବିଦାୟ ନେଇ ଯେତେବେଳେ ଷ୍ଟେସନକୁ ଆସିଲି, ଅନ୍ୟକେତେଜଣ ସହପାଠୀଙ୍କ ସହିତ ମୋତେ ବିଦାୟ ଦେବାକୁ ଆସି ଅଶ୍ରୁ ଝରାଇଥିଲା । ମୋର ବିଶ୍ୱାସ ସେ ନିଶ୍ଚୟ କର୍ମକ୍ଷେତ୍ରରେ ସଫଳତା ଅର୍ଜନ କରି ସୁଖୀ ହୋଇଥିବ ।

ଖ୍ରୀଷ୍ଟ କଲେଜରେ ୧୯୫୭ ମସିହାର କଥା । ନୂଆ କରି ପରିବାର ବାନ୍ଧିଥାଏ ଏବଂ ମହମ୍ମଦିଆ ବଜାର ପାଟରାଗଳିରେ ଘରଭଡ଼ା ନେଇ ରହୁଥାଏ ହଠାତ୍ ଦିନେ ଜଣେ ଚତୁର୍ଥ ବାର୍ଷିକ ଛାତ୍ର ଯେ କି ପ୍ରାୟ ମୋରି ବୟସର, ଆସି ପହଞ୍ଚିଲେ । କଲେଜରେ ମୁଁ ଥିଲି ସର୍ବକନିଷ୍ଠ ଅଧ୍ୟାପକ ବୟସରେ, ଚାକିରୀରେ ଏବଂ ଅନୁଭୂତିରେ । ଭାବିଥିଲି, ସେହି ଛାତ୍ର ବୋଧହୁଏ କୌଣସି ପାଠପଢ଼ାଜନିତ ସନ୍ଦେହ ମୋଚନ ପାଇଁ ଆସିଛନ୍ତି । ମାତ୍ର ସେ ଆସିଥିଲେ ଏକ ପାରିବାରିକ ସମସ୍ୟା ନେଇ । ସେ ନିଜର ଦୁଃଖ କହିବାକୁ ଲାଗିଲେ । ଶିକ୍ଷିତା ଝିଅଟିଏ ବିବାହ କରିଛନ୍ତି ଏବଂ କନ୍ୟା ସନ୍ତାନର ପିତା ହୋଇ ସାରିଛନ୍ତି, କଟକରେ ଶ୍ୱଶୁରଙ୍କ ଘରେ ରହି ପାଠ ପଢୁଛନ୍ତି ସକାଳ କଲେଜରେ । ଚାକିରୀ କରୁଛନ୍ତି ଗୋଟିଏ ଘରୋଇ ଶିକ୍ଷାନୁଷ୍ଠାନରେ ଶିକ୍ଷକ ଭାବରେ । ଗାଁରେ ତାଙ୍କର ବୁଢ଼ାବୁଢ଼ୀ ବାପାବୋଉ । ସ୍କୁଲ ପଢ଼ିଲା ସାନଭାଇ ବାପାବୋଉଙ୍କ ପାଖରେ । ସ୍ୱଚ୍ଛଳ ଅବସ୍ଥା ନାହିଁ । ତେଣୁ ଘରକୁ ଏବଂ ସାନଭାଇର ପଢ଼ାଖର୍ଚ୍ଚ ପାଇଁ ଶକ୍ତି ଅନୁସାରେ ଟଙ୍କା ପଠାଇବାକୁ ହୁଏ । ଶିକ୍ଷିତା ସହଧର୍ମିଣୀ ଶାଶୁଘରକୁ ଯିବା ପାଇଁ ଆଦୌ ପ୍ରସ୍ତୁତ ନୁହେଁ । ବାପାବୋଉ କେତେ ସରାଗରେ ବୋହୂଟିଏ କରିଥିଲେ ବୁଢ଼ାବୁଢ଼ୀ ଦିନେ ସେବାଯତ୍ନ ପାଇବେ ବୋଲି । ଏହି ଦୁଃଖରେ ଛାତ୍ରଟି ଭାଂଗି ପଡୁଥାଏ । ପତ୍ନୀ ପୁନର୍ବାର କହିଲେ, ତୁମେ ଯଦି ତୁମର ବାପାବୋଉଙ୍କୁ ଓ ସାନଭାଇକୁ ଅର୍ଥ ସାହାଯ୍ୟ କରିବାକୁ ଆଗ୍ରହୀ, ମୋତେ ଛାଡ଼ପତ୍ର ଦେଇଦିଅ । ମୁଁ ସେମାନଙ୍କର ଛାଇ ମାଡ଼ିବି ନାହିଁ । ବିଚରା ଛାତ୍ରଟି ଆଗରେ ଏକ ଦୁରନ୍ତ ସମସ୍ୟାର ପାହାଡ଼ । କାହାକୁ ଛାଡ଼ିବ, କାହାକୁ ରଖିବ ? ଯେଉଁ ପିତାମାତା ନାନା କଷ୍ଟ ସହ୍ୟ କରି ତାକୁ ମଣିଷ କଲେ, ସେମାନଙ୍କୁ ପ୍ରତିପାଳନ କରିବା ତାର ପ୍ରଥମ କର୍ତ୍ତବ୍ୟ । ସାନ ଭାଇକୁ ମଣିଷ କରିବା ଦାୟିତ୍ୱ ମଧ୍ୟ ତାହାର । ଏଣେ ନିଜର ପିତାମାତାଙ୍କ କଥାରେ ପରିଚାଳିତ ତାର ଯୁବତୀ ସ୍ତ୍ରୀର ଜିଦ୍‌ଖୋର ମନୋଭାବ, ତେଣେ ନିଜର ପିତୃପରିବାର । କାହାକୁ ଛାଡ଼ିବ, କାହାକୁ ରଖିବ ? ସେ ମୋତେ ଉପାୟ ବତାଇବାକୁ ଅନୁରୋଧ କଲେ । ବଡ଼ ଅଡୁଆ ପରିସ୍ଥିତି । ମୋର ଅନୁଭୂତି କେତେ ? କିନ୍ତୁ ଛାତ୍ରଟି ବୟସ୍କ ହେଲେ ମଧ୍ୟ ଏହି ତରୁଣ ଅଧ୍ୟାପକ ଆଗରେ ମନଖୋଲି ଦୁଃଖ କହିଛି ଏବଂ ଉପାୟ ଲୋଡ଼ିଛି । କିଛି ସମୟ ଚିନ୍ତା କରି କହିଲି–ତୁମେ ଗାଁକୁ ଯାଇ ବାପା ବୋଉଙ୍କୁ

କହିବ, ପରୀକ୍ଷାରେ ବ୍ୟସ୍ତ ରହିବାରୁ ଏହି ବର୍ଷଟି ଗାଁକୁ ଆସିବି ନାହିଁ । ତୁମେ ମୋତେ ସ୍କୁଲ ଠିକଣାରେ ଚିଠିଦେବ । ବୋହୂଘର ଠିକଣାରେ ଆଦୌ ଦେବ ନାହିଁ । ସେମାନେ ଭଲ ମଣିଷ ନୁହନ୍ତି । ଭାଇକୁ ମଧ୍ୟ କହିବ, ସ୍କୁଲ ଠିକଣାରେ ସଂପର୍କ ରଖିବ । ଭୁଲ୍‌ରେ ଭାଉଜଙ୍କ ଘରକୁ ଯିବ ନାହିଁ ସାକ୍ଷାତ କରିବା ପାଇଁ । ଟଙ୍କା ପଇସା କାରବାର ହେବ ସ୍କୁଲ ଠିକଣାରେ । ଶ୍ୱଶୁରଙ୍କ ଘରେ ଯେହେତୁ ଅବସ୍ଥାନ କରୁଛ, ତାଙ୍କର ମନଖୁସି ପାଇଁ ତୁମର ବାପାବୋଉ ଓ ସାନ ଭାଇକୁ ଗାଳି ଦେଉଥିବ । ସେମାନଙ୍କ ସହିତ କୌଣସି ସଂପର୍କ ରଖିବି ନାହିଁ ବୋଲି କହୁଥିବ । ଏଥିରେ ତୁମ ସ୍ତ୍ରୀଙ୍କର ମନଖୁସୀ । ବି.ଏ. ପାସ୍ କଲାପରେ ଆଉ ଶ୍ୱଶୁରଙ୍କ ଘରେ ନରହି ଅଲଗା ଭଡ଼ାଘରଟିଏ କରି ରହିବ । ଏକାଧିକ ସନ୍ତାନ ଆସିଲେ ତାର ଝଞ୍ଜାଳ ସମ୍ଭାଳିବା ତୁମ ସ୍ତ୍ରୀଙ୍କ ପକ୍ଷରେ ଅବଶ୍ୟ ଅସୁବିଧା ହେବ । ସେତେବେଳେ ସେ ସଂକୋଚର ସହିତ ପ୍ରସ୍ତାବ ରଖିବେ, ଗାଁରୁ ବୋଉ ବାପାଙ୍କୁ ନେଇ ଆସିବା ପାଇଁ । ତାହାହେଲେ ସେମାନେ ପିଲାଙ୍କର ଝଞ୍ଜାଳ ସମ୍ଭାଳିବେ । ଏହି ଘଟଣାର ପନ୍ଦର ବର୍ଷ ପରେ ଦିନେ ଗୋଟିଏ ସାହିରେ ଯାଉଛି, ଜଣେ ଭଦ୍ରଲୋକ ତାଙ୍କର ପିଣ୍ଡାତଳକୁ ଓହ୍ଲାଇ ଆସି ମୋତେ ନମସ୍କାର କଲେ । ଚିହ୍ନିପାରିଲି ସେହି ପୁରୁଣା ଛାତ୍ର । କହିଲେ, ସାର୍, ମୋର ଘରେ ଟିକିଏ ପାଦ ପକାନ୍ତୁ । ଘର ଭିତରେ ଜଣେ ବୃଦ୍ଧା ନାତିକୁ କୋଳ କରି ଖେଳାଉଥିଲେ । ତାଙ୍କୁ ଦେଖାଇ କହିଲେ, ଏ ମୋର ବୋଉ । ବାପା ଯାଇଛନ୍ତି ବଜାର କରି । ସାନ ଭାଇ ଗୋଟିଏ ସରକାରୀ ଚାକିରୀ କରି ବାହାରେ ରହୁଛି । ଏହି ଘରଟି ମୁଁ ତିଆରି କରି ରହିଛି । ଏ ସବୁ ଆପଣଙ୍କର ଆଶୀର୍ବାଦ । ଆପଣଙ୍କ ପରାମର୍ଶ ଗ୍ରହଣ କରି କାର୍ଯ୍ୟ କଲି ଏବଂ ମୋର ଅବୁଝା ସହଧର୍ମିଣୀ ବାଟକୁ ଆସିଗଲା । ଏବେ ସେ ଶାଶୁ, ଶ୍ୱଶୁର, ଦିଅରକୁ ମୁଣ୍ଡେଇ ଧରିଛି । ମୋର ସଂସାର ହସିଉଠୁଛି ।

ଆଉ ଦିନକର କଥା । ବର୍ଷ ଆରମ୍ଭର ପ୍ରଥମ ଦିନ । ଅନର୍ସ କ୍ଲାସ୍‌ରେ 'ଶାସ୍ତି' ଉପନ୍ୟାସ ଆଲୋଚନା କରୁଥିଲି । କଥା ପ୍ରସଙ୍ଗରେ କହିଲି, ସନେଇ ଓ ଧୋବୀ ଗୋଟିଏ ଗାଁର ପୁଅଝିଅ । ବାଲ୍ୟ ଓ କୈଶୋର ଜୀବନ ବିତିଛି ନାନା ପୂଜା ପାର୍ବଣରେ ଖେଳ କୌତୁକରେ । ଯେତେବେଳେ ବୟସରେ ଯୌବନର ମହକ ଫୁଟି ଉଠୁଛି, ପରସ୍ପରର ଅଜାଣତରେ ଅହେତୁକ ଭାବରେ ଏକ ପ୍ରକାର ପ୍ରେମାନୁଭୂତିର ସ୍ୱପ୍ନରେ ମସ୍‌ଗୁଲ ହୋଇଛନ୍ତି । ଏତିକି କହିଛି, ଜଣେ ନବାଗତ ଛାତ୍ର ଠିଆ ହୋଇ ପ୍ରଶ୍ନ କଲେ, "ସାର୍, ଆପଣ କିପରି ଜାଣିଲେ । ଆପଣ କ'ଣ ପ୍ରେମ କରିଛନ୍ତି ?" ମୁଁ ଅଚାନକ ଚମକି ପଡ଼ିଲି । ଅନର୍ସ ଶ୍ରେଣୀର ଗୋଟିଏ ପିଲା ଏପରି ବ୍ୟବହାର କରିବ ବୋଲି ସ୍ୱପ୍ନରେ ସୁଦ୍ଧା ଭାବିପାରୁ ନଥିଲି । କାରଣ ବର୍ଷବର୍ଷ ଧରି ଅନର୍ସ ପିଲାମାନଙ୍କ ସହିତ ଆତ୍ମୀୟସଂପର୍କ ଗଢ଼ି ଉଠିଥାଏ । ସେମାନଙ୍କର ଶ୍ରଦ୍ଧା, ସ୍ନେହ ଓ ସମ୍ମାନ ଲାଭ କରି ସାରା ଜୀବନ ନିଜକୁ ଧନ୍ୟ ମନେକରିଛି । ଏହା କିପରି ସମ୍ଭବ ହେଲା ? ପ୍ରଥମ କ୍ଲାସ୍ ହୋଇଥିବାରୁ ପିଲାମାନଙ୍କ ସହିତ ମୋର ଆଦୌ ପରିଚୟ ହୋଇ ନଥିଲା । ସେଇଠି ପାଠପଢ଼ା ବନ୍ଦ କରି ପ୍ରତି ପିଲାଙ୍କର ପରିଚୟ ମାଗିଲି । ଯେଉଁ ପିଲାଟି ଏପରି ଅଶାଳୀନ ପ୍ରଶ୍ନଟିଏ ପଚାରିଲା, ସେ ଆସିଥିଲା ଆଇ.ଏସ୍‌ସି. ପାସ୍ କରି

କଳାଶ୍ରେଣୀକୁ ଅନ୍ୟ କଲେଜରୁ । ତେଣୁ ମୋ ବିଷୟରେ ତାର କୌଣସି ଧାରଣା ନରହିବା ସ୍ୱାଭାବିକ । ଆଲୋଚନା ପ୍ରସଙ୍ଗରେ ନାନା ପ୍ରଶ୍ନ ଉତ୍ଥାପନ କରି ତାକୁ ବିଚଳିତ କରିଦେଲି । ମୋର ପ୍ରଶ୍ନବାଣରେ ସେ କ୍ଷତବିକ୍ଷତ ହୋଇଗଲା ପରି ମନେହେଲା । ଦୀର୍ଘ ଏକମାସପରେ ଦିନେ ଆବିଷ୍କାର କଲି, ସେ ମୋର ଅନର୍ସ କ୍ଲାସ୍‌କୁ ଆସୁନାହିଁ । ପଚାରି ବୁଝିଲି, ସେ ଆଉ ଓଡ଼ିଆ ଅନର୍ସ ନେବ ନାହିଁ । କେବଳ ପାସ୍ ନେଇ ପଢ଼ିବ । ମୁଁ ବିଚଳିତ ହୋଇପଡ଼ିଲି । ଡକାଇ ପଠାଇ ଏକାନ୍ତରେ ପଚାରିଲି, କାହିଁକି ଅନର୍ସ କ୍ଲାସ୍‌କୁ ଆସୁ ନାହଁ । ସେ କହିଲା, '' ସାର୍ ମୁଁ ବିଜ୍ଞାନ ଛାତ୍ର । ଓଡ଼ିଆ ଅନର୍ସ ପାରିବି ନାହିଁ । ତାକୁ ବୁଝାଇ କହିଲି, ତୁମେ ମାଟ୍ରିକରେ ଭଲ ଛାତ୍ର ଥିଲ ବୋଲି ଆଇ.ଏସ୍‌ସି. ପଢ଼ିଲ । କିଛି ଚଗଲାମି କରିବାରୁ ଭଲ ଫଳ ଦେଇପାରିଲ ନାହିଁ । କିନ୍ତୁ ତୁମେ ଭଲ ଛାତ୍ର । ତୁମ କ୍ଲାସ୍‌ରେ ଯଦି ଅନର୍ସରେ କେହି ଭଲ କରିବ, ସେ ହେଉଛି ତୁମେ । କାଲିଠାରୁ କ୍ଲାସ୍‌ରେ ଯୋଗଦିଅ । ଦୁଇବର୍ଷର ଛାତ୍ରଜୀବନ ଥିଲା ତାର ମହିମାମଣ୍ଡିତ । ଅତ୍ୟନ୍ତ ଗୌରବର ସହିତ ସେ ଅନର୍ସ ଗ୍ରାଜୁଏଟ ହୋଇପାରିଥିଲା । ମୋର ସନ୍ତୋଷର ସୀମା ରହିଲା ନାହିଁ ।

ମନେପଡୁଛି, ସେହି ତରୁଣ ବୟସରେ ନିମନ୍ତ୍ରିତ ହୋଇଥିଲି ଖଲିକୋଟ କଲେଜରେ ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକ ଉତ୍ସବରେ ଭାଷଣ ଦେବା ପାଇଁ । ସେତେବେଳେ ସେହି କଲେଜ ସରକାରୀ ହୋଇ ନଥିଲା । ମାତ୍ର ତାହା ଥିଲା ରେଭେନ୍ସା କଲେଜ ପରେ ଦ୍ୱିତୀୟ ବୃହତ୍ତମ କଲେଜ । ଗୋଟିଏ ହୋଟେଲରେ ବିଶ୍ରାମ କରିବାର ବ୍ୟବସ୍ଥା ହୋଇଥାଏ । ମଧ୍ୟାହ୍ନ ଭୋଜନ ସାରି ଗଡ଼ପଡ଼ ହେଉଛି, କଲେଜର ଅନର୍ସ ପିଲାମାନେ ଆସି ହାଜର । ଅନୁରୋଧ କଲେ କିଛି ପାଠ ଚର୍ଚ୍ଚା କରିବା ପାଇଁ । ସେହି ହୋଟେଲର ବିଶ୍ରାମକକ୍ଷରେ ଦୀର୍ଘ ତିନିଘଣ୍ଟାକାଳ ଅନର୍ସ ପାଠ୍ୟ ବିଷୟରେ ଆଲୋଚନା କଲି । ନାନା ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଉଥିଲି । କିଛି ସମୟ ପାଇଁ ଭୁଲିଗଲି ଯେ ମୁଁ ତାଙ୍କ କଲେଜକୁ ଅତିଥି ବକ୍ତା ହୋଇଆସିଛି । ସଂଧ୍ୟାରେ ସଭାମଞ୍ଚରେ ଅପେକ୍ଷା କରିଥାଏ । ଜଣେ ବିଭାଗୀୟ ଅଧ୍ୟାପକ ସଭାପତି ଆସନରେ ଆସୀନ । ସଭା କ'ଣ ହେବ, ହଠାତ୍ ଦୁଇଦଳ ଛାତ୍ରଙ୍କ ମଧ୍ୟରେ ସଂଘର୍ଷ ଆରମ୍ଭ ହୋଇଗଲା । ବିଭାଗୀୟ ଅଧ୍ୟାପକମାନେ ଅସହାୟ ଭାବରେ ନୀରବଦ୍ରଷ୍ଟା । ଅତିଥି ଆସନରେ ନୀରବ ରହିବା ଆଉ ସମ୍ଭବ ହେଲା ନାହିଁ । ଜଣେ ଅଧ୍ୟାପକ ଆସନକୁ ଓହ୍ଲାଇ ଆସି କଠୋର ଭାଷାରେ ଆହ୍ୱାନ ଜଣାଇଲି ମୂଲ୍ୟବୋଧକୁ ସମ୍ମାନ ଦେବା ପାଇଁ । ଶୃଙ୍ଖଳା ରକ୍ଷା କରିବା ପାଇଁ । ମୋ ପରି ଜଣେ ଅତିଥିକୁ ସମ୍ମୁଖରେ ରଖି ଏପରି ବ୍ୟକ୍ତିଗତ ସଂଘର୍ଷରେ ବିଶୃଙ୍ଖଳ ଆଚରଣ କଲେଜର ସୁନାମରେ ଆଂଚ ଆଣିବ । ଘର କଳି ଘରେ ସମାହିତ ହେଉ । ବାହାର ଲୋକଙ୍କ ଆଗରେ ନୁହେଁ । ସମସ୍ତେ ସ୍ତବ୍ଧ ହୋଇଗଲେ । ସୁରୁଖୁରୁରେ ସାହିତ୍ୟ ସଭା ଶେଷ ହେଲା । ମଧ୍ୟରାତ୍ରି ପର୍ଯ୍ୟନ୍ତ ଏଇ ପିଲାମାନେ ବ୍ରହ୍ମପୁର ପ୍ଲାଟ୍‌ଫର୍ମରେ ମୋ ପାଇଁ ଅପେକ୍ଷା କରିଥିଲେ ମାଡ୍ରାସ ମେଲ୍‌ରେ ବିଦାୟ ଦେବା ପାଇଁ । ଛାତ୍ରମାନଙ୍କର ସେହି ସ୍ନେହ, ସଦିଚ୍ଛା ଓ ସହଯୋଗ ଭୁଲିପାରି ନାହିଁ ।

୧୯୬୮ ମସିହାର କଥା । ଅଧ୍ୟାପକ ଏମ୍.ଏନ୍. ରାୟ ଥାଆନ୍ତି ଆମର ଅଧ୍ୟକ୍ଷ । ପୂର୍ବଦିନ ସଂଧ୍ୟାରେ ଜଣେ ପରିଚାଳନା ସମିତି ସଭ୍ୟ ଅଧ୍ୟକ୍ଷଙ୍କୁ ଅତ୍ୟନ୍ତ ଅସମ୍ମାନ କରି ବ୍ୟବହାର କଲେ । ରାତି ଭିତରେ କଥାଟି କାନକୁ କାନ ହୋଇ ପ୍ରଚାର ହୋଇଗଲା । କଲେଜ ପୂର୍ବଗେଟ୍ ପାଖରେ ରହୁଥିବା ଏକ ଘରେ ସେହି ପରିଚାଳନା ସମିତିର ସଭ୍ୟ ସପରିବାର ରହୁଥାଆନ୍ତି । ଉତ୍ୟକ୍ତ ଛାତ୍ରମାନେ ଶତାଧିକ ସଂଖ୍ୟାରେ ରାସ୍ତା ଉପରକୁ ଓହ୍ଲାଇ ଆସିଲେ ଏବଂ ସେହି ଭଦ୍ରବ୍ୟକ୍ତିଙ୍କର ଘରବଗିଚାରେ ଭଂଗାରୁଜା ଆରମ୍ଭ କରିଦେଲେ । ପ୍ରଥମ ପିରିୟଡ୍‌ରେ ଏମ୍.ଆଇ.ଏଲ୍ କ୍ଲାସ୍ ନେଉଥାଏ । ମୋତେ ଜଣାନଥାଏ ବାହାରେ କ'ଣ ହେଉଛି । ଅଧ୍ୟକ୍ଷ ବିଚଳିତ ହୋଇ ମୋତେ ଡକାଇ ପଠାଇଲେ । କ୍ଲାସ୍ ଅଧାରୁ ଚାଲି ଆସିଲି । ଆମର ତ ସକାଳ କଲେଜ । ଅଳ୍ପ କେତେଜଣ ଅଧ୍ୟାପକ ପ୍ରଥମ ପିରିୟଡ୍ କ୍ଲାସ୍ ନେଉଥାଆନ୍ତି । ଅଧ୍ୟକ୍ଷ ଅନୁରୋଧ କଲେ ପିଲାମାନଙ୍କୁ କିପରି ହେଲେ ଶାନ୍ତ କରି ଫେରାଇ ଆଣିବା ପାଇଁ । ସେହି ଭଦ୍ରଲୋକଙ୍କ ପରିବାର ଆତଙ୍କିତ ଅବସ୍ଥାରେ ଥାଇ ବାରମ୍ବାର ଅଧ୍ୟକ୍ଷଙ୍କୁ ଫୋନ୍ କରୁଥାଆନ୍ତି । ମୋ ସହିତ ଆଉ ଅଧ୍ୟାପକ ନାହାନ୍ତି, ଏକାଟିଆ ଗଲି । ଶହଶହ ଛାତ୍ର ଏକାଠି ହୋଇ ସ୍ଲୋଗାନ ଦେଉଥାଆନ୍ତି । ରାସ୍ତର ଆରପଟେ ଲାଠିଆଳ ପୋଲିସ୍ ଅପେକ୍ଷା କରିଗଲେଣି । କିଛି ଅପ୍ରୀତିକର ଘଟଣା ଘଟିଲେ ସେମାନେ ତାଙ୍କର ଆଖିବୁଜା କାମ ଆରମ୍ଭ କରିଦେବେ । ବଡ଼ ଭୟଙ୍କର ଅବସ୍ଥା । ଅବୁଝା ପିଲାମାନଙ୍କୁ ହତା ମଧ୍ୟକୁ ଆଣିବା ଏକ କଷ୍ଟକର ବ୍ୟାପାର । ପାଚେରୀ ଉପରକୁ ଉଠିଯାଇ ଏକ ଆବେଗପୂର୍ଣ୍ଣ ଭାଷଣ ଦେଲି । ପ୍ରଥମେ ସେହି ଅସମ୍ମାନ କରିଥିବା ସଭ୍ୟଙ୍କ ବିରୁଦ୍ଧରେ ଉତ୍ତେଜନାପୂର୍ଣ୍ଣ ମନ୍ତବ୍ୟ ଦେଇଥିଲି । ଲକ୍ଷ୍ୟ କରୁଥାଏ, ପିଲାମାନଙ୍କ ମନକୁ କଥାଟା ପାଉଛି । ହଠାତ୍ କଥାଟା ବଙ୍କେଇ କହିଲି, ତାଙ୍କର ପରିବାରର ଦୋଷ କ'ଣ ? ତାଙ୍କର ସମ୍ମାନ ମଧ୍ୟ ଆମର ସମ୍ମାନ । ସେହି ଭଦ୍ରଲୋକ ସେତେବେଳକୁ ଭୟରେ ବାହାରକୁ ଖସି ପଳାଇଥାନ୍ତି । ତାଙ୍କ ସହିତ ଆସନ୍ତାକାଲି ମୁକାବିଲା କରି କୈଫିୟତ୍ ମାଗିବା । ଦୟା କରି ହତା ଭିତରକୁ ପଳାଇ ଆସ । ନଚେତ୍ ପରିଣତି ପାଇଁ କେହି ଦାୟୀ ହେବେ ନାହିଁ । ପିଲାମାନେ ଧୀରେଧୀରେ କ୍ଲାସ୍ ରୁମ୍‌ରେ ପ୍ରବେଶ କଲେ । ଆଜିର ଉଷ୍ମ କାଲିକୁ ଶୀତଳ ହୋଇଯାଇଥିଲା । ସେ ଭଦ୍ରଲୋକ ରାତି ମଧ୍ୟରେ ଘର ଛାଡ଼ି ଅନ୍ୟତ୍ର ରହିବାର ବ୍ୟବସ୍ଥା କରିଥିଲେ । ପିଲାମାନଙ୍କର ଶ୍ରଦ୍ଧା ଓ ବିଶ୍ୱାସ ଅର୍ଜନ କରିନଥିଲେ ଏହା କ'ଣ ସମ୍ଭବ ହୋଇଥାଆନ୍ତା ? ଏଥିରେ ସମସ୍ତଙ୍କର ସମ୍ମାନ ରହିଲା, କାହାର କ୍ଷତି ହେଲା ନାହିଁ ।

୧୯୫୨ ମସିହାର କଥା ସେତେବେଳେ ମୁଁ ଥାଏ ବିଖ୍ୟାତ ଦୈନିକ ସଂବାଦପତ୍ର 'ମାତୃଭୂମି'ର ସହକାରୀ ସଂପାଦକ । କଟକ ନାରୀ ସେବାସଂଘ ସଦନରେ ସଭାଟିଏ ହେଉଥାଏ । ଚୀନ୍ ଫେରନ୍ତା ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ଭାଷଣ ଦେବେ । ଚୀନ୍‌ର କୁମିନ୍‌ଟାଙ୍ଗ ସରକାରର ପତନ, କମ୍ୟୁନିଷ୍ଟଦଳର ଦୀର୍ଘ ସଂଗ୍ରାମ ପରେ ସରକାର ଗଠନ, ଦ୍ୱିତୀୟ ମହାଯୁଦ୍ଧ କାଳୀନ ଅର୍ଥନୈତିକ ଦୁର୍ଗତି ଓ ଦାରୁଣ ମୁଦ୍ରାସ୍ଫୀତି, ଚୀନ ଭାଷା ଓ ସାହିତ୍ୟ, ଭାରତ ଓ

ଚୀନଦେଶ ମଧ୍ୟରେ ସାଂସ୍କୃତିକ ସଂପର୍କ ପ୍ରଭୃତି ବିଷୟ ଥିଲା ଅଧ୍ୟାପକ ପ୍ରଧାନଙ୍କର ଭାଷଣର ସାର କଥା । ମୁଦ୍ରାସ୍ଫୀତିର ବିକଟ ପରିଣତି ଏପରି ଭୟଙ୍କର ଥିଲା ଯେ ଏକହଳ ଯୋତା କିଣିବା ପାଇଁ ଗଲେ ଦୁଇଟି ବସ୍ତା ନୋଟ ନେଇଯିବାକୁ ହେଉଥିଲା । ଅଧ୍ୟାପକ ପ୍ରଧାନ ନାନକିଂ ବିଶ୍ୱବିଦ୍ୟାଳୟରେ ଥିଲେ ସଂସ୍କୃତ ଓ ହିନ୍ଦୀ ଭାଷାର ଅଧ୍ୟାପକ । ପରେ ପିକିଂ ବିଶ୍ୱବିଦ୍ୟାଳୟରେ ଚୀନ ଓ ତିବ୍ବତ ଭାଷାରେ ଗବେଷଣା କରିଥିଲେ । ଅଧ୍ୟାପକ ପ୍ରଧାନ ଥିଲେ ଅତ୍ୟନ୍ତ ଉଚ୍ଚାଭିଳାଷୀ ଓ ଅଧ୍ୟବସାୟୀ । ଦାରିଦ୍ର୍ୟ ତାଙ୍କର ପ୍ରତିବନ୍ଧକ ହୋଇପାରି ନଥିଲା । ସେ ପୁରୀ ସଂସ୍କୃତ କଲେଜରୁ ବ୍ୟାକରଣାଚାର୍ଯ୍ୟ ଉପାଧି ହାସଲ କରି ପରେ ସଂସ୍କୃତ ଓ ଓଡ଼ିଆରେ ଏମ୍.ଏ. ଡିଗ୍ରୀ ହାସଲ କରିଥିଲେ । ପୁନଶ୍ଚ ସାହିତ୍ୟଶାସ୍ତ୍ରୀ ଓ ବେଦଶାସ୍ତ୍ରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ପାଲି, ପ୍ରାକୃତ, ଓଡ଼ିଆ, ହିନ୍ଦୀ, ବଂଗଳା ଓ ଇଂରାଜୀ ଭାଷାରେ ତାଙ୍କର ଯଥେଷ୍ଟ ପ୍ରବେଶ ଥିଲା । ଚୀନ ଭାଷା ଓ ତିବ୍ବତ ଭାଷା ଭଲ ଭାବରେ ଆୟତ୍ତ କରିଥିଲେ । ତେଣୁ ପରବର୍ତ୍ତୀ କାଳରେ, ସେ ତିବ୍ବତୀୟ ଭାଷାରୁ ସଂପାଦନା କରିଥିଲେ ଅସଙ୍ଗଙ୍କର 'ଅଭିଧର୍ମ ସମୁଚ୍ଚୟ' ଚୀନ ଓ ତିବ୍ବତ ଭାଷାର ଅନୁବାଦ ସାହାଯ୍ୟରେ । ପୁନଶ୍ଚ ସଂପାଦନା କରିଥିଲେ ବୌଦ୍ଧଗ୍ରନ୍ଥ 'ଗୁହ୍ୟସିଦ୍ଧି' ଓ ବସୁବନ୍ଧୁଙ୍କର 'ଅଭିଧର୍ମ କୋଷଭାଷ୍ୟ ।' ଅଧ୍ୟାପକ ପ୍ରଧାନ ଓଡ଼ିଆ ଭାଷାର ବିଭିନ୍ନ ସାହିତ୍ୟ ପତ୍ରିକାରେ ଧାରାବାହିକ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ପ୍ରବନ୍ଧ ପ୍ରକାଶ କରୁଥିଲେ । ଓଡ଼ିଆ ଭାଷାରେ ତାଙ୍କର କତିପୟ ଗ୍ରନ୍ଥ ହେଲା ପାଲି ଧମ୍ମପଦର ଅନୁବାଦ, ପାଲି ଧମ୍ମପଦ ଓ ପାଲିଭାଷାର କେତୋଟି ସମସ୍ୟା ଓ 'ସାହିତ୍ୟାୟନ' । ତାଙ୍କର ପାଣ୍ଡିତ୍ୟ ପାଇଁ ନିଖିଳ ଭାରତ ପ୍ରାଚ୍ୟ ସମ୍ମିଳନୀ ତାର ପାଲି ଓ ବୌଦ୍ଧଧର୍ମ ବିଭାଗ ସଭାପତି ଭାବରେ ସମ୍ମାନିତ ହୋଇଥିଲେ । ଏକଦା ନାଳନ୍ଦାରେ ଅନୁଷ୍ଠିତ ଆନ୍ତର୍ଜାତିକ ବୌଦ୍ଧ ସମ୍ମିଳନୀର ସେ ଥିଲେ ସଭାପତି ।

ଅଧ୍ୟାପକ ପ୍ରଧାନ ଉତ୍କଳ ବିଶ୍ୱବିଦ୍ୟାଳୟ ସଂସ୍କୃତ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଥିଲାବେଳେ ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ. ମଡ଼ରେସନ ବୋର୍ଡ଼ରେ ତାଙ୍କ ସହିତ କାର୍ଯ୍ୟ କରିବାର ସୌଭାଗ୍ୟ ଲାଭ କରିଥିଲି । ପୁନଶ୍ଚ ସେ ଯେତେବେଳେ ପୁରୀ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ, ସେତେବେଳେ ତାର ସିନେଟର ମନୋନୀତ ସଭ୍ୟ ଭାବରେ କୁଳପତି ପ୍ରଧାନଙ୍କର ନିକଟ ସଂପର୍କରେ ଆସିପାରିଥିଲି ।

ଅଧ୍ୟାପକ ପ୍ରଧାନ ଫକୀରମୋହନ କଲେଜରେ କିଛିକାଳ ଅଧ୍ୟକ୍ଷ ହୋଇଥିଲେ । କଲେଜ ଇଉନିଅନର ବାର୍ଷିକ ଉତ୍ସବରେ ଅତିଥି ବକ୍ତା ଭାବରେ ଯୋଗ ଦେଇ ତାଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲି । ଏହି ସଭା ମୋ ପାଇଁ ଅଧିକ ସ୍ମରଣୀୟ । କାରଣ ମଞ୍ଚାସୀନ ଥିଲାବେଳେ ଦେଖିଲି ଆଗରେ ଅଧ୍ୟାପକମାନଙ୍କ ଗହଣରେ ବସିଛନ୍ତି ତର୍କଶାସ୍ତ୍ର ଅଧ୍ୟାପକ ପ୍ରଫେସର ଦେବନାଥ । ତାଙ୍କର ତର୍କଶାସ୍ତ୍ର କ୍ଲାସ୍‌ରେ ମୁଁ ଛାତ୍ର ଥିଲି ପୁରୀ କଲେଜରେ । ଇନ୍ଦ୍ରଜାଲ ବିଦ୍ୟାରେ ମଧ୍ୟ ସେ ଥିଲେ ପାରଙ୍ଗମ । ଅନେକ ସମୟରେ କଲେଜ ହଲ୍‌ରେ ବିସ୍ମୟକର ମ୍ୟାଜିକ୍ ପ୍ରଦର୍ଶନ କରି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଦେଉଥିଲେ । ସଭାଶେଷ ହେଲାପରେ ମଞ୍ଚରୁ

ଓହ୍ଲାଇ ପ୍ରଥମେ ତାଙ୍କ ପାଖକୁ ଗଲି ଓ ନମସ୍କାର କଲି । ସେ ମୋତେ କୁଣ୍ଡାଇପକାଇଲେ । ଶତାଧିକ ପିଲାଙ୍କ ମଧ୍ୟରେ ସାର୍ ମୋତେ ଅବା କାହିଁକି ଚିହ୍ନିପାରିବେ ବୋଲି ଭାବୁଥିଲି । ସେ କହିଲେ, ମୋର ଅନୁମାନ ତେବେ ଫଳପ୍ରଦ ହେଲା । ତୁମେ କଲେଜକୁ ଅତିଥିବକ୍ତା ହୋଇ ଆସୁଛ ବୋଲି ଆଫିସିକ ବିଜ୍ଞାପନରୁ ପାଠ କରି ବିଚାରୁଥିଲି, ଏହି ନାମରେ ଜଣେ ଛାତ୍ରଙ୍କୁ ପାଇଥିଲି ପୁରୀ କଲେଜରେ । ମୋର ଅନୁମାନ ସତ୍ୟ ହେଲା । ସେଦିନର ଛାତ୍ରକୁ ଆମରି କଲେଜରେ ସମ୍ମାନିତ ହେଉଥିବା ଜାଣି ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଛି । ଭଲରେ ରହ । ଜଣେ ପ୍ରାକ୍ତନ ଅଧ୍ୟାପକର କେତେ ଆଶିଷଭରା ସ୍ନେହାଶୀର୍ବାଦ । ଚରମ ତୃପ୍ତିରେ ଆଖିରୁ ଲୁହ ବୋହି ଆସିଥିଲା । ଗୁରୁଶିଷ୍ୟଙ୍କର ଏହି ମିଳନକୁ ଅନ୍ୟ ଅଧ୍ୟାପକ ଓ ଛାତ୍ରମାନେ ଉପଭୋଗ କରୁଥିଲେ ।

୧୯୬୮ ମସିହାର କଥା । ଅଧ୍ୟାପକ ଶ୍ରୀଧର ଦାସ ଓଡ଼ିଆ ସାହିତ୍ୟ ବିଭାଗର ବିଭାଗୀୟ ମୁଖ୍ୟ ଭାବରେ ଅବସର ଗ୍ରହଣ କଲେ ମୋତେ ଦାୟିତ୍ୱ ଅର୍ପଣ କରି । ଆରମ୍ଭ ହେଲା ଆଉ ଏକ ମହନୀୟ ଦାୟିତ୍ୱ । ବିଭାଗୀୟ ସହକର୍ମୀ ମାନଙ୍କର ସ୍ନେହ, ସହାନୁଭୂତି ଓ ଆନ୍ତରିକ ସହଯୋଗ ହେଲା ମୋର ମୂଲ୍ୟବାନ ପାଥେୟ । ବିଭାଗୀୟ ସହକର୍ମୀଗଣ ହେଲେ ଅଧ୍ୟାପକ ବିଜୟଚନ୍ଦ୍ର ମହାପାତ୍ର, ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି, ଅଧ୍ୟାପକ ମୃତ୍ୟୁଞ୍ଜୟ ନାୟକ, ଅଧ୍ୟାପକ ଚନ୍ଦ୍ରଶେଖର ମହାପାତ୍ର, ଅଧ୍ୟାପକ ମହେଶ୍ୱର ମହାନ୍ତି, ଅଧ୍ୟାପକ ଭାସ୍କରଚନ୍ଦ୍ର ଖଟାଇ, ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ଦାସ ଓ ଅଧ୍ୟାପକ ପ୍ରାଣରଞ୍ଜନ ଦାସ । ଆମେ ଗୋଟିଏ ପରିବାରର ଲୋକଭଳି ଚଳୁଥିଲୁ । ପରସ୍ପରର ସୁଖଦୁଃଖରେ ଅଂଶ ଗ୍ରହଣ କରୁଥିଲୁ । ଅଧ୍ୟାପନା କ୍ଷେତ୍ରରେ ଏମାନେ ସମସ୍ତେ ଥିଲେ ଅତ୍ୟନ୍ତ ନିଷ୍ଠାପର ଓ ଶକ୍ତିଶାଳୀ । ସମସ୍ତଙ୍କଠାରୁ ଜଣେ ଜ୍ୟେଷ୍ଠଭ୍ରାତାର ସ୍ନେହ, ଶ୍ରଦ୍ଧା, ସମ୍ମାନ ଓ ଆନୁଗତ୍ୟ ଅର୍ଜନ କରି ନିଜକୁ ଭାଗ୍ୟବାନ ମନେକରୁଥିଲି । ଆମର କୁଟୁମ୍ବିତାପଣକୁ ଅନ୍ୟ ବିଭାଗର ବରିଷ୍ଠ ଓ କନିଷ୍ଠ ଅଧ୍ୟାପକଗଣ ସାଗ୍ରହରେ ଉପଭୋଗ କରୁଥିଲେ । ନିଷ୍ପତ୍ତି କଲି, ଶ୍ରେଣୀକକ୍ଷର ବାହାରେ ଅବସର ସମୟରେ ଅନର୍ସ ପିଲାମାନଙ୍କୁ ଏକାଠି କରି ସ୍ୱତନ୍ତ୍ର କ୍ଲାସ୍ କରିବା ପାଇଁ । ଅକୁଣ୍ଠ ଚିତ୍ତରେ ମୋର ବରିଷ୍ଠ ସହକର୍ମୀମାନେ ଏଥିରେ ସହଯୋଗର ହାତ ବଢ଼ାଇଦେଲେ । ବର୍ଷ ପରେ ବର୍ଷ ଆମର ଅନର୍ସ ପିଲାମାନେ ବିଶ୍ୱବିଦ୍ୟାଳୟରେ ସୁନାମ ଅର୍ଜନ କରିଚାଲିଥିଲେ । ପରବର୍ତ୍ତୀକାଳରେ ସେହି ଛାତ୍ରମାନେ ସାଧାରଣ କର୍ମକ୍ଷେତ୍ରରେ ଓ ଶିକ୍ଷାବିଭାଗରେ ସ୍ୱନାମଧନ୍ୟ ହୋଇ ଆମ ସାହିତ୍ୟର ଗୌରବ ବର୍ଦ୍ଧନ କରିଆସିଛନ୍ତି । ସେମାନଙ୍କ ମଧ୍ୟରେ କେତେଜଣଙ୍କୁ ଆଜି ଆନନ୍ଦମନରେ ସ୍ମରଣ କରୁଛି । ଆମର ଛାତ୍ର ଅବନୀ କୁମାର ବରାଳ ଆଜି ଭାରତରେ ଓ ଆନ୍ତର୍ଜାତିକ କ୍ଷେତ୍ରରେ ଶିକ୍ଷକ ନେତା ଭାବରେ ସୁପରିଚିତ । ସେ ପୁଣି ଏକାଧାରରେ ଜଣେ ଭଲ ଗଳ୍ପଲେଖକ ଓ ପ୍ରାବନ୍ଧିକ । ଶ୍ରୀ ବିଭୂତି ପଟ୍ଟନାୟକ ଓଡ଼ିଆ ସାହିତ୍ୟରେ ଜଣେ ବିଖ୍ୟାତ ଔପନ୍ୟାସିକ, ଗଳ୍ପଲେଖକ ଓ ଫିଚର ଲେଖକ ଭାବରେ ଅତ୍ୟନ୍ତ ଜଣାଶୁଣା । ଶ୍ରୀ ରତ୍ନାକର ଚଇନି ଜଣେ ବିଖ୍ୟାତ ନାଟ୍ୟକାର ଓ ସାହିତ୍ୟ ସମାଲୋଚକ । ଶ୍ରୀ ବୈଷ୍ଣବ ଚରଣ ସାମଲ ଜଣେ ଶାଙ୍ଖାଳୀ

ସାହିତ୍ୟ ସମାଲୋଚକ ଓ ସାରସ୍ୱତ ମିଳନରେ ପ୍ରବୀଣ ବକ୍ତା । ଶ୍ରୀ ଅସିତ କବି ଜଣେ ଶକ୍ତିଶାଳୀ ସାହିତ୍ୟସମାଲୋଚକ ଓ ଗୀତି କବି । ଶ୍ରୀ ସୌଭାଗ୍ୟ ମିଶ୍ର ଓଡ଼ିଆ ସାହିତ୍ୟରେ ଜଣେ ମୂର୍ଦ୍ଧଣ୍ୟ କବି ଭାବରେ ସୁପରିଚିତ । ଶ୍ରୀ ନାରାୟଣ ସାହୁ ଜଣେ ଶକ୍ତିଶାଳୀ ନାଟ୍ୟକାର ଭାବରେ ପ୍ରତିଷ୍ଠିତ ହୋଇଅଛନ୍ତି । ଶ୍ରୀ ମନୋରଞ୍ଜନ ମହାନ୍ତି ଆଧୁନିକ ସାହିତ୍ୟରେ ଅନ୍ୟତମ ଯଶସ୍ୱୀ ଲେଖକ । ଶ୍ରୀ ନୀଳାଦ୍ରି ଭୂଷଣ ହରିଚନ୍ଦନ ଏକାଧାରରେ ଜଣେ ଗବେଷକ, ନାଟ୍ୟ ସମାଲୋଚକ, କବି ତଥା ନାଟ୍ୟକାର । ଶ୍ରୀ ଗିରିଜାକୁମାର ବଳିୟାରସିଂହ ଯଶସ୍ୱୀ କବି ଭାବରେ ସୁପରିଚିତ । ଶ୍ରୀ ଦେବରାଜ ଲେଙ୍କାଙ୍କର ଓଡ଼ିଆ ଉପନ୍ୟାସ ସାହିତ୍ୟ କ୍ଷେତ୍ରରେ ସ୍ୱତନ୍ତ୍ର ସ୍ଥାନ ଅବିସମ୍ବାଦିତ । ଶ୍ରୀ ଭୋଳାନାଥ ରାଉତ ସାହିତ୍ୟ ସମାଲୋଚନା ଓ ସଂଗଠନ କ୍ଷେତ୍ରରେ ଅତ୍ୟନ୍ତ ଜଣାଶୁଣା । ଗବେଷଣା ଓ ସାହିତ୍ୟ ସମୀକ୍ଷା କ୍ଷେତ୍ରରେ ଯେଉଁ ଛାତ୍ରମାନେ ଅତ୍ୟନ୍ତ ସ୍ମରଣୀୟ ହୋଇଅଛନ୍ତି, ସେମାନେ ହେଲେ–ବିଚିତ୍ରାନନ୍ଦ ମହାନ୍ତି, କୁଳମଣି ରାଉତ, ନବକିଶୋର ପୃଷ୍ଟି, ବାସୁଦେବ ସାହୁ, ମନୋରଞ୍ଜନ ପ୍ରଧାନ, ପ୍ରସନ୍ନ କୁମାର ସ୍ୱାଇଁ, ପ୍ରଫୁଲ୍ଲ ଚନ୍ଦ୍ର ଦାସ, ପ୍ରଫୁଲ୍ଲ ମହାନ୍ତି, ବ୍ରହ୍ମାନନ୍ଦ ସିଂହ, ବଳରାମ ଦାସ, ବିଜୟାନନ୍ଦ ସିଂହ ପ୍ରଭୃତି । ଅନେକଙ୍କର ଚେହେରା ମନେଅଛି, ଅଥଚ ନାମକୁ ସ୍ମରଣ କରିପାରୁ ନାହିଁ । ଏମାନଙ୍କ ପାଇଁ ଖ୍ରୀଷ୍ଟ ମହାବିଦ୍ୟାଳୟର ଓଡ଼ିଆ ଅନର୍ସ ବିଭାଗ ଗରୀୟାନ ହୋଇଥିଲା ଏବଂ ବିଶ୍ୱବିଦ୍ୟାଳୟରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲା ।

ହଠାତ୍ ମନକୁ ଆସିଲା, ଓଡ଼ିଆ ସାହିତ୍ୟ ସମାଜ ତରଫରୁ ଏକ ସାହିତ୍ୟପତ୍ର ସଂକଳନ କରାଯାଉ । ଏହି କ୍ଷେତ୍ରରେ ମୋର ଆଦର୍ଶ ଥିଲେ ଡକ୍ଟର ମାୟାଧର ମାନସିଂହ । ସେ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଥିବା ସମୟର କଥା । ପ୍ରତ୍ୟେକ କଲେଜରେ ବର୍ଷକୁ ଥରେ ମାତ୍ର କଲେଜର ମୁଖପତ୍ର ଭାବରେ ଗୋଟିଏ ପତ୍ରିକା ପ୍ରକାଶିତ ହୋଇଥାଏ । ମାତ୍ର ସୁସାହିତ୍ୟିକ ମାନସିଂହଙ୍କ ସଂପାଦନାରେ ଏହି ମହାବିଦ୍ୟାଳୟରୁ ଏକ ମାସିକ ସାହିତ୍ୟପତ୍ର ପ୍ରକାଶିତ ହେଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲେଖକମାନେ ଏଥିରେ ଲେଖା ପ୍ରକାଶ କରୁଥିଲେ । ମାତ୍ର ଦ୍ୱାଦଶ ସଂଖ୍ୟାଟି କେବଳ କଲେଜ ମୁଖପତ୍ର ଭାବରେ ଛାତ୍ରମାନଙ୍କର ଲେଖା ବହନ କରି ଆତ୍ମପ୍ରକାଶ କରୁଥିଲା । ଦୁର୍ଭାଗ୍ୟର ବିଷୟ ଯେ ଡକ୍ଟର ମାନସିଂହ କଲେଜରୁ ଅନ୍ୟତ୍ର ବଦଳି ହୋଇଗଲା ପରେ ଏହି ପତ୍ରିକାର ଅକାଳ ମୃତ୍ୟୁ ହୋଇଯାଇଥିଲା ।

ଯାହାହେଉ, ଅଧ୍ୟକ୍ଷ ଏମ୍.ଏନ୍.ରାୟଙ୍କର ସହାନୁଭୂତି ଓ ସମର୍ଥନ ଲାଭ କଲି । ସେ ଅଳ୍ପ କିଛି ଅର୍ଥର ବ୍ୟବସ୍ଥା କଲେ । ପ୍ରଥମ ଦୁଇବର୍ଷ ବିଭିନ୍ନ ଗଳ୍ପ, କବିତା, ପ୍ରବନ୍ଧକୁ ନେଇ ଦୁଇଟି ସଂଖ୍ୟା ପ୍ରକାଶିତ ହେଲା ୧୯୭୦ ଓ ୧୯୭୧ ମସିହାରେ ''ସୃଷ୍ଟି ଓ ସମୀକ୍ଷା'' । ଏହା କେବଳ ଓଡ଼ିଆ ସାହିତ୍ୟର ଛାତ୍ରଙ୍କ ପାଇଁ ସୀମିତ ନଥିଲା । କଲେଜର ପ୍ରତ୍ୟେକ ଛାତ୍ର ଏହାକୁ ଲାଭ କରୁଥିଲେ ଅନ୍ୟ କଲେଜମାନଙ୍କରେ ଏହି ପ୍ରକାର ସାମୟିକ ପ୍ରକାଶନ କେବଳ ଓଡ଼ିଆ ସାହିତ୍ୟ ଶ୍ରେଣୀର ଛାତ୍ରମାନଙ୍କ ମଧ୍ୟରେ ସୀମିତ । ସାଧାରଣ କ୍ଷେତ୍ରରେ ଗଳ୍ପ, କବିତା, ପ୍ରବନ୍ଧର ସମନ୍ୱୟରେ ଅନେକ ସାହିତ୍ୟ ମାସିକ ଓ ସାମୟିକ ପତ୍ରିକା ଦୃଷ୍ଟିଗୋଚର ହୋଇଥାଏ ।

ତାହାର ପୁନରୁକ୍ତି କରି ଲାଭ କ'ଣ ? ନିଷ୍ପତ୍ତି କଲି, ପ୍ରତ୍ୟେକ ବର୍ଷ ସାହିତ୍ୟର ବିଭିନ୍ନ ବିଭାଗକୁ କେନ୍ଦ୍ର କରି ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶିତ ହେବ । ଏଥିରେ ଓଡ଼ିଶାର ବରେଣ୍ୟ ଅଧ୍ୟାପକମାନଙ୍କର ଲେଖା ସଂଗ୍ରହ କରାଯାଇ ସ୍ଥାନୀତ ହେଲା । ଆରମ୍ଭ ହେଲା ବିଶେଷାଙ୍କ ପର୍ବ । ୧୯୬୮ ରୁ ୧୯୮୨ ଯାଏ ବିଭାଗୀୟ-ମୁଖ୍ୟ ଭାବରେ କାର୍ଯ୍ୟ କରିଥିଲି । ସେହି ସମୟରେ ପ୍ରକାଶିତ ହେଲା- ଭଞ୍ଜ ବିଶେଷାଙ୍କ, କ୍ଷୁଦ୍ରଗଳ୍ପ ବିଶେଷାଙ୍କ, ନାଟକ ବିଶେଷାଙ୍କ, ଅଭିମନ୍ୟୁ ସାମନ୍ତସିଂହାର ବିଶେଷାଙ୍କ, ଧର୍ମ ବିଶେଷାଙ୍କ, ପୁରାଣ ବିଶେଷାଙ୍କ, ସାହିତ୍ୟରେ ବିଭିନ୍ନ ବାଦ (Ism) ବିଶେଷାଙ୍କ, ଭାଷାତତ୍ତ୍ୱ ବିଶେଷାଙ୍କ, ଭକ୍ତକବି ମଧୁସୂଦନ ବିଶେଷାଙ୍କ, ଫକୀରମୋହନ ବିଶେଷାଙ୍କ ଓ ସାରଳାଦାସ ବିଶେଷାଙ୍କ । ସମଗ୍ର ଓଡ଼ିଶା ଓ ଶାନ୍ତିନିକେତନର ଓଡ଼ିଆ ସାହିତ୍ୟ ବିଭାଗର ଅଧ୍ୟାପକ ଓ ଉଚ୍ଚଶ୍ରେଣୀର ଛାତ୍ରମାନଙ୍କର କ୍ରମେ ଏହି ପତ୍ରିକା ସଶ୍ରଦ୍ଧ ଦୃଷ୍ଟିଆକର୍ଷଣ କଲା । ଏଥିରୁ ଖଣ୍ଡିଏ ସଂଗ୍ରହ କରିବା ପାଇଁ ସେମାନେ ଉଦ୍ୟମ ଜାରି ରଖିଲେ । ବହୁକାଳପୂର୍ବେ ଉତ୍କଳ ସାହିତ୍ୟ ପତ୍ରିକା କବି ରାଧାନାଥ, ମଧୁସୂଦନ ରାଓ ଓ ଫକୀରମୋହନଙ୍କ ମୃତ୍ୟୁପରେ ସ୍ୱତନ୍ତ୍ର ସ୍ମରଣିକା ପ୍ରକାଶ କରିଥିଲେ । ପରବର୍ତ୍ତୀ କାଳରେ ''ଡଗର'' ସାହିତ୍ୟ ମାସିକ ମଧ ରାଧାନାଥ, ଗଙ୍ଗାଧର, ଆଧୁନିକ କବିତା ଓ ସମାଲୋଚନା ସାହିତ୍ୟ ବିଷୟକ ବିଶେଷାଙ୍କ ପ୍ରକାଶ କରି ନୀରବ ରହିଗଲେ । ଅବଶ୍ୟ ଆଉ ଏକ ସାହିତ୍ୟ ପତ୍ରିକା ଜୀବନରଂଗ ମଧେ ମଧେ ବିଶେଷାଙ୍କମାନ ପ୍ରକାଶ କରିଥାଆନ୍ତି ନିଜର ସୀମିତ କଳେବର ମଧରେ । ମାତ୍ର ଖ୍ରୀଷ୍ଟ ମହାବିଦ୍ୟାଳୟର ଓଡ଼ିଆ ସାହିତ୍ୟ ବିଭାଗ ଏହି କ୍ଷେତ୍ରରେ ଅନନ୍ୟସାଧାରଣ ପରଂପରା ସୃଷ୍ଟି କରି ଚାଲିଛି । ଏହି ବିଷୟକ ବିଶେଷାଙ୍କ ପୂର୍ବରୁ କେହି କଳ୍ପନା କରି ନଥିଲେ । ବହୁପରେ ଓଡ଼ିଶାର ପାଠକ ସଂସଦ ଅନେକ ବିଶେଷାଙ୍କ ପ୍ରକାଶ କରି ଗୌରବାନ୍ୱିତ । ଏକଦା ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କର କେହି ଆତ୍ମୀୟ ପୁରାଣ ବିଷୟରେ ଗବେଷଣା କରୁଥାଆନ୍ତି । ସେତେବେଳେ ଓଡ଼ିଆ ସାହିତ୍ୟରେ ଏହି ବିଷୟକ କୌଣସି ଆଲୋଚନା ପ୍ରକାଶିତ ହୋଇ ନଥିଲା । ଅଧ୍ୟାପକ ପ୍ରଧାନ ମୋତେ ଚିଠି ଲେଖି ଆମର ପୁରାଣ ବିଶେଷାଙ୍କ ଅତ୍ୟନ୍ତ ଶ୍ରଦ୍ଧାରେ ମଗାଇ ନେଇଥିଲେ ଗବେଷିକାଙ୍କର ସାହାଯ୍ୟ ପାଇଁ । ସାହିତ୍ୟ କ୍ଷେତ୍ରରେ ଗବେଷଣା କରୁଥିବା ଛାତ୍ରଛାତ୍ରୀମାନେ ଅନେକ ସମୟରେ ଏହି ବିଶେଷାଙ୍କମାନଙ୍କରୁ ଉଦ୍ଧୃତି ପ୍ରଦାନ କରିବା ଦେଖାଯାଇଥାଏ ନିଜର ଆଲୋଚନାକୁ ପ୍ରାମାଣିକ କରିବା ପାଇଁ ।

ଏହି ସ୍ମରଣିକାର ନାଁ ଦିଆଯାଇଥିଲା ''ସୃଷ୍ଟି ଓ ସମୀକ୍ଷା'' । ସୁଖର କଥା ଯେ ଓଡ଼ିଆ ବିଭାଗର୍ ପରବର୍ତ୍ତୀ ଅଧିକାରୀମାନେ ମଧ ଏହାର ଗୌରବମୟ ପରମ୍ପରା ବଜାୟ ରଖିବା ପାଇଁ ଯତ୍ନବାନ ହୋଇଅଛନ୍ତି । ''ସୃଷ୍ଟି ଓ ସମୀକ୍ଷା'' ପାଠ କରି ସେଦିନର ଜଣେ ପ୍ରତିଭାବାନ, ସାହିତ୍ୟପ୍ରାଣ ହାଇକୋର୍ଟ ବିଚାରପତି ଶ୍ରୀ ନବକୁମାର ଦାସ ଯେଉଁ ଶ୍ରଦ୍ଧାପୂର୍ଣ୍ଣ ଚିଠି ଲେଖିଥିଲେ ତାର ଅବିକଳ ପ୍ରତିଲିପି ଏହିପରି-

Justice N.K. Das
High Court
Cuttack

December 11, 1979

My dear Pathani Babu,

I am very much thankful to you for sending the magazines 'Srusti O Samikshya' published from your college. This is really a very valuable magazine depicting critical study of Oriya literature of different ages and different stages. The articles will be valuable assets in future in the field of Oriya literature. I congratulate you for this laudable attempt.

Thanking you again.

Yours sincerely
Nabakumar Das
(N.K. Das)

୧୯୮୨ ମସିହାରେ ସରକାର ମୋର ଇଚ୍ଛାବିରୁଦ୍ଧରେ ଅଧ୍ୟକ୍ଷ ଆସନରେ ବସାଇଦେଲେ । ସେ ପ୍ରସଙ୍ଗ ପରେ ଆସିବ । ଅଧ୍ୟାପକ ଭାବରେ ଯେଉଁ ସ୍ୱାଧୀନତା, ଉତ୍ସାହ ଓ ଆନନ୍ଦ ଲାଭ କରୁଥିଲି, ତାହା ସ୍ୱପ୍ନପ୍ରାୟ ହୋଇଗଲା । ମୋ ପରେ ଯାହାଙ୍କ ଉପରେ ବିଭାଗୀୟ ମୁଖ୍ୟ ହେବାର ଦାୟିତ୍ୱ ଦିଆଗଲା, କୌଣସି କାରଣରୁ "ସୃଷ୍ଟି ଓ ସମୀକ୍ଷା" ପ୍ରକାଶନ ଦିଗରେ ସେ ଆଗ୍ରହ ପ୍ରକାଶ କଲେ ନାହିଁ । ଅଧ୍ୟକ୍ଷ ଆସନରେ ବସି ମୋରି ହାତଗଢ଼ା 'ସୃଷ୍ଟି ଓ ସମୀକ୍ଷା" ର ଏପରି ଦଶା ଦେଖି ମନ ଖାଲି ଛଟପଟ ହେଉଥାଏ । ପରେ ବିଭାଗୀୟ ମୁଖ୍ୟଙ୍କୁ ଡାକି ବନ୍ଧୁଭାବରେ ଅନୁରୋଧ କଲି ଏହାର ପ୍ରକାଶନ ଚାଲୁ ରଖିବା ପାଇଁ । ତାପରେ ବର୍ଷ ପରେ ବର୍ଷ ପ୍ରକାଶିତ ହୋଇଆସିଛି– ବଳରାମ ଦାସ ବିଶେଷାଙ୍କ, ବିଜୟଚନ୍ଦ୍ର ମଜୁମଦାରଙ୍କ 'ଓଡ଼ିଆ ସାହିତ୍ୟ ସଂକଳନ' ର ଇଂରେଜୀ ମୁଖବନ୍ଧ । ଏହି ଦୁଇଟି ବିଶେଷାଙ୍କ ୧୯୮୬ ଓ ୧୯୮୭ ମସିହାରେ ପ୍ରକାଶିତ ହୋଇଥିଲା ମୋର ଅଧ୍ୟକ୍ଷ ଆସନରେ ଥାଇ ଆନ୍ତରିକ ଅନୁରୋଧ ଯୋଗୁ । ୧୯୮୮ ମସିହାରେ ଅବସର ଗ୍ରହଣ କଲି ଅଧ୍ୟକ୍ଷ ଭାବରେ । ବାହାରେ ଥାଇ ଲକ୍ଷ୍ୟ କଲି "ସୃଷ୍ଟି ଓ ସମୀକ୍ଷା"ର ଦୁର୍ଦ୍ଦଶା ୧୯୮୭ ପରେ ପୁନର୍ବାର ବିଭାଗୀୟ ଅଧ୍ୟାପକଙ୍କ ଉଦ୍ୟମରେ ତିନିବର୍ଷ ବ୍ୟବଧାନରେ ୧୯୯୦-୯୧ ରେ ଉପନ୍ୟାସ ବିଶେଷାଙ୍କ, ପୁନର୍ବାର କିଛି ବ୍ୟବଧାନରେ ୧୯୯୩-୯୪ ରେ ରାଧାନାଥ ବିଶେଷାଙ୍କ, ଏବଂ ୧୯୯୬-୯୭ ରେ ଲୋକ ସାହିତ୍ୟ ବିଶେଷାଙ୍କ ଆତ୍ମପ୍ରକାଶ କଲା । ସୁଖର କଥା ଯେ ଏହି ବର୍ଷଠାରୁ ଆଜି ପର୍ଯ୍ୟନ୍ତ ଅର୍ଥାତ୍ ୨୦୦୭ ମସିହା ପର୍ଯ୍ୟନ୍ତ ଏହାର ଧାରାବାହିକ ପ୍ରକାଶନ ବନ୍ଦ ହୋଇନାହିଁ । ଏହି ସଂଖ୍ୟାଗୁଡ଼ିକ ହେଲା ମୃତ୍ୟୁଞ୍ଜୟ ରଥଙ୍କ ଲିଖିତ ବ୍ରହ୍ମଜ୍ଞ ମଧୁସୂଦନ ଓ ସ୍ମୃତିଅର୍ଘ୍ୟ, ସାଧୁସୁନ୍ଦର ଦାସ ଓ କୁଳୀବର ପତ୍ର, ଆଧୁନିକ କବିତା ବିଶେଷାଙ୍କ, ଭକ୍ତକବି ଜଗନ୍ନାଥ ବିଶେଷାଙ୍କ, ଉତ୍କଳ ସମ୍ମିଳନୀ–ଶତବାର୍ଷିକୀ ବିଶେଷାଙ୍କ, କବିବର ରାଧାନାଥଙ୍କ ଦୁଷ୍ପ୍ରାପ୍ୟ ରଚନା ବିଶେଷାଙ୍କ, ଗୀତି କବିତା ବିଶେଷାଙ୍କ, କବିସୂର୍ଯ୍ୟ ବଳଦେବ ବିଶେଷାଙ୍କ, ଭକ୍ତକବି ଗୋପାଳକୃଷ୍ଣ ବିଶେଷାଙ୍କ । ୨୦୦୭–୨୦୦୮ ର ସୃଷ୍ଟି

ସମୀକ୍ଷା ହେଲା କବି-ଯଦୁମଣି ବିଶେଷାଙ୍କ । ଅନୁପଲବ୍ଧ ଅନେକ ମୂଲ୍ୟବାନ ଆଲୋଚନାକୁ ସୃଷ୍ଟି ଓ ସମୀକ୍ଷା ସାହିତ୍ୟସେବୀମାନଙ୍କ ଦୃଷ୍ଟିକୁ ଆଣି ଅଭିନନ୍ଦିତ ହୋଇଅଛି ।

ଅବସର ଜୀବନରେ ଅନେକ ପ୍ରଖ୍ୟାତ ମହାବିଦ୍ୟାଳୟର ଓଡ଼ିଆ ସାହିତ୍ୟ ସମାଜରେ ଅତିଥିବକ୍ତା ହେବାର ସୁଯୋଗ ପାଇଛି । ମାତ୍ର ଏହି ସଭାରେ କେବଳ ବିଭାଗୀୟ ଅଧ୍ୟାପକମାନେ ହିଁ ଉପସ୍ଥିତ ଥାଆନ୍ତି । ଅନ୍ୟ ବିଭାଗର ଅଧ୍ୟାପକମାନଙ୍କୁ ସାମିଲ କରାଯାଏ ନାହିଁ । ମାତ୍ର ବିଭାଗୀୟ ମୁଖ୍ୟ ହେଲାପରେ ୧୯୬୮ ମସିହାରୁ ୧୯୮୨ ପର୍ଯ୍ୟନ୍ତ ଦୀର୍ଘ ଚଉଦବର୍ଷକାଳ ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକ ଉତ୍ସବର ଆୟୋଜନ କରିବାର ଦାୟିତ୍ୱ ବହନ କରିଥିଲି । ଆମ ମହାବିଦ୍ୟାଳୟର ଉଭୟ କଳା ଓ ବିଜ୍ଞାନ ବିଭାଗର ପ୍ରତ୍ୟେକ ଅଧ୍ୟାପକ ଓ ଅଧ୍ୟାପିକା ଆମର ଆନ୍ତରିକ ଅନୁରୋଧ ରକ୍ଷା କରି ଏହି ସମାରୋହରେ ସହଯୋଗ କରୁଥିଲେ । ରେଭେନ୍ସା କଲେଜରୁ ନିମନ୍ତ୍ରିତ ବରିଷ୍ଠ ଅତିଥିବକ୍ତାମାନେ ଏପରି ସହଯୋଗ ଲକ୍ଷ୍ୟ କରି ଆଶ୍ଚର୍ଯ୍ୟ ହେଉଥିଲେ । କାରଣ ସେଠାରେ ସେପରି ଦୃଶ୍ୟ ଥିଲା ଅତ୍ୟନ୍ତ ଦୁର୍ଲଭ । ଏହାର ଏକମାତ୍ର କାରଣ ଥିଲା ଅନ୍ୟମାନଙ୍କୁ ଆପଣେଇବା ପାଇଁ ଆମର ଆନ୍ତରିକ ଉଦ୍ୟମ । ଏଥିରେ ଆମର ସାହିତ୍ୟ ଶ୍ରେଣୀର ଛାତ୍ରମାନଙ୍କ ସହିତ ଅନ୍ୟ ବିଭାଗର ଛାତ୍ରମାନେ ମଧ ଆକୃଷ୍ଟ ହୋଇ ଯୋଗ ଦେଉଥିଲେ ।

ମନେପଡୁଛି ଭାରତର ବିଖ୍ୟାତ ବୈଜ୍ଞାନିକ ଓ ମହାନ ଶିକ୍ଷାବିତ୍ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ କଥା । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ କଟକରେ ଅବସ୍ଥାନ କରୁଥାଏ । କୁଳପତି ଥାଆନ୍ତି ଡକ୍ଟର ପ୍ରାଣକୃଷ୍ଣ ପରିଜା । ବିଶ୍ୱବିଦ୍ୟାଳୟର କ୍ରୀଡ଼ାସଂଗଠନ ପରିଚାଳନା ସମିତି ଗଠିତ ହୋଇଥାଏ ପ୍ରତ୍ୟେକ କଲେଜର ଅଧ୍ୟାପକ ପ୍ରତିନିଧିଙ୍କୁ ନେଇ । ଅଳ୍ପ କେତୋଟି କଲେଜ କଟକରେ କାର୍ଯ୍ୟ କରୁଥାଏ । ଏହି ପରିଚାଳନା ସମିତିର ସଭାପତି ଥାଆନ୍ତି କୁଳପତି ପରିଜା ସାହେବ ।

କଲେଜରେ ଛାତ୍ର ଥିବାଦିନରୁ ଡକ୍ଟର ପରିଜାଙ୍କର ନାଁ ଶୁଣିଥାଏ । ସେତେବେଳେ ବିଲାତଫେରନ୍ତା ଦୁଇଜଣଙ୍କୁ ଅତ୍ୟନ୍ତ ସମ୍ଭ୍ରମରେ ସାହେବ ବୋଲି ସମ୍ବୋଧନ କରାଯାଉଥିଲା । ପ୍ରଥମ ଭାରତୀୟ ଡି.ପି.ଆଇ ଶ୍ୟାମସୁନ୍ଦର ତ୍ରିପାଠୀ ବା ତ୍ରିପାଠୀ ସାହେବ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ପ୍ରାଣକୃଷ୍ଣ ପରିଜା ବା ପରିଜା ସାହେବ । ଏହି ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଅସଂଖ୍ୟ ଓଡ଼ିଆ ବୁଦ୍ଧିଜୀବୀ ବିଲାତ ଦେଶକୁ ଯାଇ ଗବେଷଣା କରି ଉଚ୍ଚତମ ଡିଗ୍ରୀ ହାସଲ କରି ଫେରି ଆସିଛନ୍ତି । କିନ୍ତୁ ଆଉ କେହି ସାହେବ ଭାବରେ ସମ୍ମାନିତ ହୋଇପାରି ନାହାନ୍ତି । ଡକ୍ଟର ପରିଜା ଥିଲେ ଖ୍ରୀଷ୍ଟ ମହାବିଦ୍ୟାଳୟର ପ୍ରତିଷ୍ଠାତା ଅଧ୍ୟକ୍ଷ ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତିଙ୍କର ପରମବନ୍ଧୁ । କଲେଜ ଆରମ୍ଭ ସମୟରେ ପାରଳାଖେମୁଣ୍ଡି ମହାରାଜା ତାଙ୍କର ରାଣୀଙ୍କ ନାମକୁ ସ୍ମରଣୀୟ କରିବା ପାଇଁ କଲେଜ ପୁସ୍ତକାଳୟ ସକାଶେ ଅର୍ଥଦାନ କରିଥିଲେ । ସେଥିପାଇଁ କଲେଜ ପୁସ୍ତକାଳୟ ନଳିନୀ ଲାଇବ୍ରେରୀ ଭାବରେ ପରିଚିତ ହେଲା । ଏହି ଲାଇବ୍ରେରୀ ପାଇଁ ଡକ୍ଟର ପରିଜା ଗୋଟିଏ ଆଲମାରି ପୂର୍ଣ୍ଣ ଇଂରେଜୀ ପୁସ୍ତକ ଦାନ କରିଥିଲେ ।

ଶିକ୍ଷିତ ମହଲରେ ଡକ୍ଟର ପରିଜା ଥିଲେ ଏକ ଲିଜେଣ୍ଡ । ଅତ୍ୟନ୍ତ ଶୃଙ୍ଖଳିତ ଥିଲା ତାଙ୍କର ଜୀବନଶୈଳୀ । କର୍ତ୍ତବ୍ୟ ନିକଟରେ ବ୍ୟକ୍ତିଗତ ଭାବପ୍ରବଣତାକୁ ସେ ଆଦୌ ପ୍ରଶ୍ରୟ ଦେଉ ନଥିଲେ । ଗୋଟିଏ ଦିନର ଘଟଣା । ସେଦିନ ବିଶ୍ୱବିଦ୍ୟାଳୟରେ ପୂର୍ବାହ୍ଣରୁ ସଂଧ୍ୟା ପର୍ଯ୍ୟନ୍ତ ବିଭିନ୍ନ କମିଟି ଓ ସିଣ୍ଡିକେଟ ବୈଠକରେ ଡକ୍ଟର ପରିଜାଙ୍କର ସଭା ପରିଚାଳନା କରିବାର ଥାଏ । ପରିଣତ ବୟସରେ ସେହିଦିନ ପାହାନ୍ତାରେ ତାଙ୍କର ଜ୍ୟେଷ୍ଠକନ୍ୟା ମୃତ୍ୟୁବରଣ କରିଥାଆନ୍ତି । ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶ ଅପରାହ୍ଣରେ ବାଣୀବିହାର ଗଲେ ସିଣ୍ଡିକେଟ ବୈଠକରେ ଯୋଗଦେବା ପାଇଁ । କୁଳପତିଙ୍କ ପାରିବାରିକ ଦୁଃଖ ସଂବାଦ ସେ ଶୁଣିଥାଆନ୍ତି । ବୃଦ୍ଧ ବୟସରେ ନିଜର ବୟସ୍କା କନ୍ୟାକୁ ହରାଇ ସେ ବିଚଳିତ ହୋଇପଡ଼ିଥିବେ । ତେଣୁ ସିଣ୍ଡିକେଟ ବୈଠକ ବୋଧହୁଏ ଘୁଞ୍ଚାଇ ଦିଆଯାଇପାରେ ବୋଲି ସେ ଭାବୁଥାଆନ୍ତି । ବାଣୀବିହାରରେ ପହଞ୍ଚି ଠିକ୍ ସମୟରେ ସିଣ୍ଡିକେଟ ବୈଠକରେ ଯୋଗ ଦେଇ ଆଶ୍ଚର୍ଯ୍ୟ ହେଲେ ପରିଜା ସାହେବ ନିର୍ବେଦ ଭାବରେ ସଭା ପରିଚାଳନା କରିବା ଦେଖି । କେହି ଜାଣିପାରିବେ ନାହିଁ ଯେ ଆଜି ପରିବାରରେଏତେବଡ଼ ଦୁର୍ଘଟଣା ଘଟିଯାଇଛି ବୋଲି । ସହକର୍ମୀଙ୍କଠାରୁ ପଚାରି ଜାଣିଲେ, ସକାଳ ପହରୁ ଡକ୍ଟର ପରିଜା ବାଣୀବିହାର ଆସି ନାନା କମିଟି ବୈଠକ ପରିଚାଳନା କରିଛନ୍ତି । ବ୍ୟକ୍ତିଗତ ଦୁଃଖ ସତ୍ତ୍ୱେ କର୍ତ୍ତବ୍ୟ କରିବା ପାଇଁ କୁଣ୍ଠିତ ହୋଇନାହାନ୍ତି । ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀଙ୍କଠାରୁ ଶୁଣିଥିଲି ଆଉ ଗୋଟିଏ କଥା । ସେ ଥିଲେ ପରିଜା ସାହେବଙ୍କର ଗାଁର ଲୋକ । ଅତ୍ୟନ୍ତ ଦରିଦ୍ର । ଆସିଲେ ରେଭେନ୍ସା କଲେଜରେ ପାଠ ପଢ଼ିବା ପାଇଁ । ଦରିଦ୍ର ପିଲାଙ୍କ ସାହାଯ୍ୟ ପାଣ୍ଠି ପାଇଁ ଦରଖାସ୍ତ କଲେ । ମାତ୍ର ତାହା ମଞ୍ଜୁର ହେଲା ନାହିଁ । ଅତ୍ୟନ୍ତ ସନ୍ତର୍ପଣରେ ଅଧକ୍ଷ ପରିଜାଙ୍କୁ ସାକ୍ଷାତ କରି ନିଜକୁ ଗ୍ରାମବାସୀ ବୋଲି ପରିଚୟ ଦେଇ ଫ୍ରି-ସିପ୍ ପାଇଲେ ନାହିଁ ବୋଲି କହିଲେ । ସାହାଯ୍ୟ ନପାଇଲେ ପାଠ ପଢ଼ିବା ଅସମ୍ଭବ । ଗାଁ ଲୋକ ବୋଲି ଚିହ୍ନିପାରି କହିଲେ, ମୋର ଅଧାପକ କମିଟି ଫ୍ରି-ସିପ୍ ବିଷୟରେ ଯାହା ନିଷ୍ପତ୍ତି କରିଛନ୍ତି, ତୁମେ ଅଭାବୀ ବୋଲି ମୋର ହୃଦ୍‌ବୋଧ ହେଲେ ମଧ ମୁଁ ହସ୍ତକ୍ଷେପ କରିପାରିବି ନାହିଁ । ପିଲାଟି ମୁହଁ ଶୁଖାଇ ଫେରି ଆସିଲା । ଦରମା ଦାଖଲ ଦିନ ଦେଖିଲା, ତାର ଦରମା ଅଧକ୍ଷ ଦେଇ ସାରିଛନ୍ତି । ସାରା ବର୍ଷଟି ଅଧକ୍ଷ ତାର କଲେଜ ଦରମା ଦେଉଥିଲେ । ତାଙ୍କର ଡାହାଣ ହାତର ସାହାଯ୍ୟ ବାମହାତକୁ ଖବର ନଥିଲା । ବହୁ ଦରିଦ୍ର ଛାତ୍ରଙ୍କୁ ସେ ସାହାଯ୍ୟ କରୁଥିଲେ ଉପଯୁକ୍ତ ମଣିଷ ହେବାପାଇଁ । ପ୍ରଫେସର ବୈଦ୍ୟନାଥ ମିଶ୍ରଙ୍କଠାରୁ ଶୁଣିଥିଲି ଆଉ ଏକ ଘଟଣା । ସେତେବେଳେ ବାଲେଶ୍ୱର କଲେଜର ଅଧକ୍ଷ ଥାଆନ୍ତି ପ୍ରଫେସର ସୁନ୍ଦରମ୍ । ଅର୍ଥନୀତି ଅଧାପକ ବୈଦ୍ୟନାଥ ମିଶ୍ର । କଲେଜ ଇଉନିଅନ ସଭାରେ ଅତିଥି ହେବା ପାଇଁ ଡକ୍ଟର ପରିଜା ନିମନ୍ତ୍ରଣ ଗ୍ରହଣ କରିଥାଆନ୍ତି । ନିର୍ଦ୍ଦିଷ୍ଟ ସମୟରେ ପରିଜା କଲେଜ ହଲ୍ ନିକଟରେ କାର୍‌ରୁ ଓହ୍ଲାଇଲେ । ସ୍ୱାଗତ କଲେ ଅଧକ୍ଷ ସୁନ୍ଦରମ୍ ଓ ଇଉନିଅନ ଉପଦେଷ୍ଟା ବୈଦ୍ୟନାଥ ମିଶ୍ର । ସେ ପର୍ଯ୍ୟନ୍ତ କେହି ଛାତ୍ର ସଭାକକ୍ଷକୁ ଆସି ନଥାନ୍ତି । ଅଳ୍ପ କେତେଜଣ

ଅଧ୍ୟାପକ ଉପସ୍ଥିତ । ବିନା ବାକ୍ୟ ବ୍ୟୟରେ ପରିଜା ସାହେବ ମଞ୍ଚ ଉପରକୁ ଯାଇ ସଭା ଆରମ୍ଭ କରିବାକୁ କହିଲେ । କାହାର ସାହସ ଅଛି କହିବାକୁ ଆଉ କିଛି ସମୟ ଅପେକ୍ଷା କରିବାପାଇଁ । ସାମାନ୍ୟ ସ୍ୱାଗତ ଭାଷଣ ପରେ ଡକ୍ଟର ପରିଜା ଭାଷଣ ଆରମ୍ଭ କଲେ ଏବଂ ଶେଷ କଲେ କୋଡ଼ିଏ ମିନିଟ୍ ମଧ୍ୟରେ । ମାଇକ ଶବ୍ଦ ଶୁଣି ଧିରେଧିରେ ପିଲାମାନେ ଜମିବାକୁ ଆରମ୍ଭ କଲେ । କିନ୍ତୁ ସେତେବେଳେ ପରିଜାଙ୍କ ଗାଡ଼ି କଟକ ଅଭିମୁଖେ ଯାତ୍ରା ଆରମ୍ଭ କରିସାରିଲାଣି । ପରିଜାଙ୍କ ପରି ମହାନ ବ୍ୟକ୍ତିଙ୍କ ସହିତ ଉତ୍କଳ ସାହିତ୍ୟ ସମାଜରେ ପାଖାପାଖି ବସିବାର ସୌଭାଗ୍ୟ ପାଇଥିଲି । ପରିଜା ସାହେବ ବିଖ୍ୟାତ ବୈଜ୍ଞାନିକ ହେଲେ ହେଁ ଓଡ଼ିଆ ସାହିତ୍ୟ ଚର୍ଚ୍ଚାରୁ ବିରତ ହୋଇନଥିଲେ । ଓଡ଼ିଆରେ ମଧ୍ୟ କିଛି ଲେଖାଲେଖି କରୁଥିଲେ । ଆଳାପ ଆଲୋଚନାରେ ଜଗନ୍ନାଥ ଦାସଙ୍କ ଭାଗବତ ଓ ଅନ୍ୟାନ୍ୟ ସାହିତ୍ୟରୁ ଉଦ୍ଧାର କରିବା ଥିଲା ନିତିଦିନିଆ କଥା । ଉତ୍କଳ ସାହିତ୍ୟ ସମାଜରେ ସେ ସକ୍ରିୟ ଭୂମିକା ଗ୍ରହଣ କରିଥିବା ଜଣାଯାଏ । ୧୯୩୫ ସାଲରୁ ୧୯୩୯ ସାଲ ପର୍ଯ୍ୟନ୍ତ ସେ ଥିଲେ ଉତ୍କଳ ସାହିତ୍ୟ ସମାଜର ସଭାପତି । ତାଙ୍କ ସହିତ ଉପସଭାପତି ଥିଲେ ପ୍ରଫେସର ବିପିନବିହାରୀ ରାୟ । ସଂପାଦକ ଥିଲେ ଶଶିଭୂଷଣ ରାୟ ଓ ସହସଂପାଦକ ବିଚ୍ଛନ୍ଦଚରଣ ପଟ୍ଟନାୟକ । ଡକ୍ଟର ପରିଜା ପୁନର୍ବାର ସଭାପତି ହୋଇଥିଲେ ୧୯୫୮ ମସିହାରୁ ୧୯୬୧ ଯାଏ । ଉପସଭାପତି ଥିଲେ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ । ସଂପାଦକଦ୍ୱୟ ଥିଲେ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଓ ବିଚିତ୍ରାନନ୍ଦ କର । ମୋର ସୌଭାଗ୍ୟ ଯେ କାର୍ଯ୍ୟକାରୀ ସମିତିରେ ମୁଁ ଥିଲି ଅନ୍ୟତମ ସଭ୍ୟ । ଡକ୍ଟର ମାୟାଧର ମାନସିଂହ ମଧ୍ୟ ଏକତମ ସଭ୍ୟ ଥିଲେ । ସମୟାନୁବର୍ତ୍ତିତା, ମାପିଚୁପି ଆଲୋଚନା ସଭାପତିଙ୍କ ଶୃଙ୍ଖଳିତ ଜୀବନ ସଭ୍ୟମାନଙ୍କର ଏକ ଧାରାରେ ପଡ଼ିଯାଇଥିଲା କିଛି କାଳ ପାଇଁ ।

ମନେପଡୁଛି ସେହି ୧୯୬୮ ମସିହାର କଥା । ପରିଚାଳନା ସମିତି ସହିତ ନୀତିଗତ ସଂଘର୍ଷ କରି ପିଲାମାନେ ଉତ୍ୟକ୍ତ ହୋଇପଡ଼ିଥାନ୍ତି । କଲେଜ କୋଠା ଉପରେ ଥିବା ପବିତ୍ର କ୍ରସ୍‌କୁ କିଛି ପିଲା ଉପାଡ଼ି ଫିଙ୍ଗି ଦେଇଥିଲେ । କଟକରେ ଖ୍ରୀଷ୍ଟିଆନ ପରିବାରରେ ଚହଳ ପଡ଼ିଗଲା । ଏହା ଏକପ୍ରକାର ସାଂପ୍ରଦାୟିକ ସଂଘର୍ଷ ଆଡ଼କୁ ଗତି କରୁଥିଲା । ସରକାର ବିଚଳିତ ହୋଇପଡ଼ିଲେ । ଯୋଗକୁ ବ୍ୟାସନଗର ହାଇସ୍କୁଲ ସାଂସ୍କୃତିକ ଉତ୍ସବରେ ମୁଁ ଥାଏ ଅତିଥି ବକ୍ତା ଏବଂ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକ ଥାଆନ୍ତି ମୁଖ୍ୟ ଅତିଥି । ସଭା ସରିଲା ପରେ ମୋ ପାଇଁ ବ୍ୟବସ୍ଥା ହେଲା ଶିକ୍ଷାମନ୍ତ୍ରୀଙ୍କ ଗାଡ଼ିରେ କଟକ ଫେରି ଆସିବାପାଇଁ । ବନମାଳୀ ବାବୁଙ୍କ ସହିତ ମୋର ଅନେକ ଦିନରୁ ପରିଚୟ । ସେ ଆମ ଖୋର୍ଦ୍ଧା ଅଞ୍ଚଳର ଏମ୍.ଏଲ୍.ଏ. ଥିଲେ । ସେ ପୁନର୍ବାର ଥିଲେ ପ୍ରଜାତନ୍ତ୍ର ପରିବାରର । ମୁଁ ମଧ୍ୟ ଛାତ୍ର ଜୀବନରେ ପ୍ରଜାତନ୍ତ୍ର ଓ ଝଙ୍କାର ପତ୍ରିକାର ସଂପାଦନା ସହିତ ସଂପୃକ୍ତ ଥିଲି । ନିରାକାରପୁର କଲେଜ ଆରମ୍ଭରୁ ବହୁବର୍ଷକାଳ ବନମାଳୀ ବାବୁ ଥିଲେ ପରିଚାଳନା ସମିତିର ଉପସଭାପତି । ପ୍ରଫେସର ଗୁରୁଚରଣ ମହାନ୍ତି ଥିଲେ ସଭାପତି । ବିଖ୍ୟାତ ଆଇନଜୀବୀ ସୁରଜମଲ୍ଲ ସାହା ଓ ପ୍ରଜାତନ୍ତ୍ର

ସଂପାଦକ ଜାନକୀବଲ୍ଲଭ ପଟ୍ଟନାୟକ ଥିଲେ ସଂପାଦକ । ଏହି ପରିଚାଳନା ସମିତିରେ ମୁଁ ଥିଲି ଅନ୍ୟତମ ସଭ୍ୟ । ସେଦିନ ମଧ୍ୟରାତ୍ରିରେ ଶିକ୍ଷାମନ୍ତ୍ରୀଙ୍କ ଗାଡ଼ିରେ ମୁଁ ହେଉଛି ଏକମାତ୍ର ସହଯାତ୍ରୀ । ବନମାଳୀ ବାବୁଙ୍କର ଅଗ୍ନିବର୍ଷୀ ବାକ୍ୟବାଣ ଆରମ୍ଭ ହେଲା ଖ୍ରୀଷ୍ଟ କଲେଜ ଅଧ୍ୟାପକମାନଙ୍କ ଉପରେ ସେହି କ୍ରସ୍ ଘଟଣାଯୋଗୁ । ସେ ପ୍ରାୟ ଅଧଘଣ୍ଟାଏ ଗାଳିଦେଇ ହାଲିଆ ହୋଇଗଲେ । ମୁଁ ଚୁପ୍‌ଚାପ୍ ଶୁଣୁଥାଏ । ଖୁବ୍ ବିରକ୍ତି ପ୍ରକାଶ କରି କହିଲେ, "ମୁଁ ଏତେ କଥା କହିଲିଣି । ତୁ କିଛି କହୁନାହୁଁ ?" କହିଲି, "ମାନ୍ୟବର ଶିକ୍ଷାମନ୍ତ୍ରୀ କହୁଛନ୍ତି ଯାହା ତାଙ୍କର ମନକୁ ଆସିଲା । ମାର୍, ମାର୍ ଭଣ୍ଡାରିଆକୁ ମାର ବୋଲି କଥା ଅଛି । ମୁଁ ଜଣେ ଅତି ସାଧାରଣ ଘରୋଇ କଲେଜର ଅଧ୍ୟାପକଟିଏ । ମୋର କ'ଣ ଜବାବ ଦେବାର ଅଧିକାର ଅଛି ?" ସେ ଆହୁରି ରାଗିଯାଇ କହିଲେ, ସେପରି ବଡ଼ବଡ଼ କଥା କହନାହିଁ । ତୋତେ ଜବାବ ଦେବାକୁ ହେବ । ନିଃସଂକୋଚରେ କହିଲି– ଯଦି ବନମାଳୀ ପଟ୍ଟନାୟକ ପଠାଣିକୁ ପଚାରିବେ, ତେବେ ଉତ୍ତର ପାଇବେ । ଶିକ୍ଷାମନ୍ତ୍ରୀ କିଛି ଉତ୍ତର ପାଇବେ ନାହିଁ । ସେ ଥଣ୍ଡା ମିଜାସରେ କହିଲେ, "ହଁ କହ, ଏହାର ରହସ୍ୟ କ'ଣ ?" କହିଲି– ଆପଣ ସରକାର । ଆପଣଙ୍କ ପାଖରେ ସରକାରଙ୍କର ଦେଖାଚାହାଁ (ସି.ଆଇ.ଡ଼ି) ବିଭାଗ । ଭିତିରିଆ ଖବର ନେଉ ନାହାନ୍ତି । ସମସ୍ତଙ୍କୁ କାହିଁକି ଆଖିବୁଜି ଅଭିଯୁକ୍ତ କରୁଛନ୍ତି । ସାଂପ୍ରଦାୟିକ ଭାବନାର ଅନୁରୋଧରେ କିଛି ଖ୍ରୀଷ୍ଟିୟାନ ସମାଜର ଲୋକ ଏଥିରେ ନିଶ୍ଚିତ ଭାବରେ ଦାୟୀ । ସେହିପରି ମୁଷ୍ଟିମେୟ ଅଧ୍ୟାପକ ଓ ଛାତ୍ର ମଧ୍ୟ ଏଥିରେ ଜଡ଼ିତ ରହିବା ଅତ୍ୟନ୍ତ ସ୍ୱାଭାବିକ । ପ୍ରତ୍ୟେକ କ୍ରିୟାର ପ୍ରତିକ୍ରିୟା ଅବଶ୍ୟମ୍ଭାବୀ । ଆପଣ ସମସ୍ତଙ୍କୁ ଦୋଷୀ କରି ଠିକ୍ କରୁନାହାନ୍ତି । ଯେଉଁମାନେ ଦୋଷୀ ଉଭୟ ସଂପ୍ରଦାୟର, ସେମାନଙ୍କୁ କଠୋର ଦଣ୍ଡ ଦିଅନ୍ତୁ, କାହାର କିଛି କହିବାକୁ ନଥିବ । ଆପଣ କେବଳ ଶିକ୍ଷାମନ୍ତ୍ରୀ ନୁହନ୍ତି, ଆମ ପ୍ରଦେଶର ଜଣେ ବରେଣ୍ୟ ନେତା । ଏହାର ଉଚିତ ସମାଧାନ ଆପଣଙ୍କର ହାତରେ । ନିଆଁରେ ପାଣି ପଡ଼ିଲା ପରି ଶିକ୍ଷାମନ୍ତ୍ରୀ ଶାନ୍ତ ପଡ଼ିଗଲେ । ମୋତେ ହସିହସି କଟକରେ ବିଦାୟ ଦେଇ ବାହାରିଗଲେ ଭୁବନେଶ୍ୱର ।

ଆମ କଲେଜର ପରଂପରା ଥିଲା, ସର୍ବଦା ଜଣେ ଖ୍ରୀଷ୍ଟିଆନ ଅଧ୍ୟକ୍ଷ ରହିବେ ନଚେତ ତାଙ୍କ ଅନୁପସ୍ଥିତିରେ ସରକାରଙ୍କ ଲୋକ ଯେତେ ଜୁନିଅର ହେଉ, ସେ ହେବେ ଆମର ଅଧ୍ୟକ୍ଷ । କଲେଜର ବରିଷ୍ଠ ଅଧ୍ୟାପକମାନଙ୍କୁ କେବଳ କାମଚଳା ଅଧ୍ୟକ୍ଷ ଭାବରେ ଅବସ୍ଥାପିତ କରାଯାଏ । ଏଥିରେ କଲେଜର ଶୃଙ୍ଖଳା ବ୍ୟାହତ ହେବା ଅତ୍ୟନ୍ତ ସ୍ୱାଭାବିକ । କାମଚଳା ଅଧ୍ୟକ୍ଷମାନେ କିପରି ଅବା ସଫଳ କାର୍ଯ୍ୟବାହୀ ହୋଇପାରିବେ ?

କଲେଜରେ ଅଶାନ୍ତିର ସୀମା ନଥାଏ । ବିଶ୍ୱବିଦ୍ୟାଳୟ ପରୀକ୍ଷା ଚାଲିଥାଏ ଅତ୍ୟନ୍ତ ବିଶୃଙ୍ଖଳିତ ଭାବରେ । ସାହି ବସ୍ତିର ଦୁଷ୍ଟଲୋକଙ୍କର ଅଖଣ୍ଡ ରାଜତ୍ୱ । କାହାର ସାହସ ନଥାଏ ସେମାନଙ୍କୁ କଲେଜ ହତାରେ ଅଟକାଇବା ପାଇଁ । କିଛି ଛାତ୍ର ମଧ୍ୟ ସେମାନଙ୍କ କଥାରେ ପରିଚାଳିତ ହେଉଥାଆନ୍ତି । ନିଜର ଆତ୍ମସମ୍ମାନ ଜଗି ମୁହଁ ପୋତି କଲେଜ ମଧ୍ୟରେ

ଚଳପ୍ରଚଳ ହେବାକୁ ମଣିଷ ବାଧ ହେଉଥାଏ । ଛାତ୍ରମାନେ ଏକପ୍ରକାର ରକ୍ତମୁଖା । ଅଧ୍ୟକ୍ଷଙ୍କୁ ଅପମାନିତ ଓ ଆଘାତ କରିବା ପାଇଁ ସେମାନେ କୁଣ୍ଠିତ ହେଉନଥାନ୍ତି । ଆମର ଅଧ୍ୟାପକ କାଉନସିଲ୍ ବ୍ୟସ୍ତବିବ୍ରତ ହୋଇ ପ୍ରସ୍ତାବ ଗ୍ରହଣ କଲେ ବିଶ୍ୱବିଦ୍ୟାଳୟକୁ ପ୍ରାର୍ଥନା ଜଣାଇ–ଏଠାରୁ କିଛି ବର୍ଷ ପାଇଁ ପରୀକ୍ଷା କେନ୍ଦ୍ର ଉଠାଇ ଦିଆଯାଉ । ବିଶ୍ୱବିଦ୍ୟାଳୟ କାନ ପାରି, ନୀରବ ରହିଲେ । କାରଣ କେତେକ ପ୍ରଭାବଶାଳୀ ରାଜନେତାଙ୍କ ପିଲାମାନେ ଏପରି ଅତ୍ୟାଚାର ଜାରି ରଖିଥିଲେ । ପୋଲିସ କର୍ତ୍ତୃପକ୍ଷ ଓ ଶିକ୍ଷକ ସମାଜ ନିଜକୁ ଅସହାୟ ମନେକରିବା ସ୍ୱାଭାବିକ । ଏହିପରି ଦୁର୍ଦ୍ଦିନ ସମୟରେ ସରକାରୀ କଲେଜର ଅଧ୍ୟାପକ ମେଜର ପି.କେ. ଦାସ ଆସିଲେ ଅଧ୍ୟକ୍ଷ ଭାବରେ । ସେ ଥିଲେ ଦୁଃସାହସୀ ଓ ଉଚ୍ଚାଭିଳାଷୀ । ଅନେକ ଦିନ ପରେ କଲେଜ ଶାନ୍ତ ପଡ଼ିଗଲା । ସେ ମଧ୍ୟ ବହୁତ ଦିନ ଥୟ ହୋଇ ରହିପାରିଲେ ନାହିଁ । ଅଶାନ୍ତ ମନରେ ବିଦାୟ ନେଇଗଲେ । ସେ ଆଉଥରେ ଅଧ୍ୟକ୍ଷ ହୋଇ ଆସିଥିଲେ । ସେ ପ୍ରସଙ୍ଗ ପରେ ଆସିବ ।

ଏହି ସମୟରେ ଶିକ୍ଷାସଚିବ ରମାକାନ୍ତ ରଥଙ୍କଠାରୁ ଚିଠି ପାଇଲି ସାକ୍ଷାତ କରିବା ପାଇଁ । ଅତ୍ୟନ୍ତ ସନ୍ତର୍ପଣରେ ସାହିତ୍ୟ ଏକାଡ଼େମୀ ସଂପାଦକ କବି ବିନୋଦ ନାୟକଙ୍କ ସହିତ ସାକ୍ଷାତ କଲି ସେକ୍ରେଟାରିଏଟ୍‌ରେ । ସାହିତ୍ୟସେବୀ ଭାବରେ ଆମେ ପରସ୍ପରର ପରିଚିତ ଅନେକଦିନରୁ । କିନ୍ତୁ କ୍ଷମତାର ବଳୟରେ ସେ ଥିଲେ ଆମର ହାକିମ । ପ୍ରଥମ ସାକ୍ଷାତରେ ରମାକାନ୍ତ ବାବୁ ମୋର ସଂକୋଚ ଭାବ ଦୂର କରିଦେଲେ । ପ୍ରାୟ ଏକଘଣ୍ଟାକାଳ ସାହିତ୍ୟ ବିଷୟରେ ନାନା କଥାର ଅବତାରଣା ଚାଲିଥାଏ । ସତେ ଯେପରି କୌଣସି ସାହିତ୍ୟ ସମାରୋହରେ ଆମେ ଏକାଠି ହୋଇଛୁ । କାହିଁକି ଡାକିଥିଲେ ବୋଲି ପଚାରିଲି । ସେ କହିଲେ, ଦିଲ୍ଲୀର ନ୍ୟାସନାଲ ବୁକ୍ ଟ୍ରଷ୍ଟ ମୋତେ ପଚାରିଲେ 'ଓଡ଼ିଆ ଗଳ୍ପମାଳା' ସଂପାଦନା କରିବା ପାଇଁ କାହାର ନାଁ ସୁପାରିଶ କରିବାକୁ । ମୁଁ ଆପଣଙ୍କ ନାଁ କହିଦେଇଛି । ସେମାନେ ଆପଣଙ୍କ ସହିତ ସିଧାସଳଖ ସଂପର୍କ ସ୍ଥାପନ କରିବେ । ସ୍ୱଭାବ ବଶତଃ ମୁଁ ବିଶେଷ କାହାରି ସହିତ ଅନ୍ତରଙ୍ଗ ହେବାକୁ ଚେଷ୍ଟା କରେ ନାହିଁ । ତଥାପି ରମାକାନ୍ତ ବାବୁଙ୍କ ପରି ଜଣେ ପ୍ରଥମ ଶ୍ରେଣୀର ପ୍ରଶାସକ ଓ କବିଙ୍କର ମୋ ପ୍ରତି ଶ୍ରଦ୍ଧା ଲକ୍ଷ୍ୟ କରି ଅଭିଭୂତ ହୋଇପଡ଼ିଲି । ନ୍ୟାସନାଲ ବୁକ୍ ଟ୍ରଷ୍ଟ ଆନୁକୂଲ୍ୟରେ ମୋର ମୁଖବନ୍ଧ ସହିତ କୋଡ଼ିଏଟି ଗଳ୍ପର ସମାହାର 'ଓଡ଼ିଆ ଗଳ୍ପମାଳା' ପ୍ରକାଶିତ ହେଲାପରେ ଅନେକ ଲେଖକବନ୍ଧୁ ଯେଉଁମାନେକି ଏହି ବିଷୟରେ ଆଶାୟୀ ଥିଲେ, ଆଶ୍ଚର୍ଯ୍ୟ ହୋଇଗଲେ । ଏହି ଗଳ୍ପମାଳା ଭାରତର ପ୍ରତ୍ୟେକ ପ୍ରାଦେଶିକ ଭାଷାରେ ଅନୂଦିତ ହୋଇସାରିଛି ।

ଓଡ଼ିଆ ସାହିତ୍ୟ ବିଭାଗରେ ବିଭାଗୀୟ ମୁଖ୍ୟ ହେଲାପରେ ବିଶ୍ୱବିଦ୍ୟାଳୟର ନାନାପ୍ରକାର ଦାୟିତ୍ୱ ତୁଲାଇବାର ସୁଯୋଗ ଆସି ପହଞ୍ଚିଲା । ବିଶ୍ୱବିଦ୍ୟାଳୟ ମୋତେ ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍ (ଓଡ଼ିଆ) ର ସଭ୍ୟ ଭାବରେ ଗ୍ରହଣ କଲେ । ବୋର୍ଡ଼ର ଚେଆରମ୍ୟାନ୍ ଥିଲେ କୁଞ୍ଜବିହାରୀ ତ୍ରିପାଠୀ । ସଭ୍ୟଥିଲେ ମୋର ଗୁରୁକଳ୍ପ ଅଧ୍ୟାପକ କାହ୍ନୁଚରଣ ମିଶ୍ର, ଅଧ୍ୟାପକ ବଂଶୀଧର

ମହାନ୍ତି, ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର ପ୍ରଭୃତି । ଏହି ସମ୍ମାନ ବହୁବର୍ଷ ପର୍ଯ୍ୟନ୍ତ ମୋର ଭାଗ୍ୟରେ ଘଟିଥିଲା ନିରବଚ୍ଛିନ୍ନ ଭାବରେ । କୁଞ୍ଜବିହାରୀ ତ୍ରିପାଠୀଙ୍କ ପରବର୍ତ୍ତୀ ସମୟରେ ଅଧ୍ୟାପକ କୁଞ୍ଜବିହାରୀ ଦାଶ, ଅଧ୍ୟାପକ ଗୋଲୋକବିହାରୀ ଧଳ, ଅଧ୍ୟାପକ ବଂଶୀଧର ମହାନ୍ତି ଓ ଅଧ୍ୟାପକ କୃଷ୍ଣଚରଣ ସାହୁ ଏହି ସମିତିର ଚେଆରମ୍ୟାନ୍ ରହିବା ସମୟରେ ମୁଁ ରହୁଥିଲି ଅନ୍ୟତମ ସଭ୍ୟ ଭାବରେ । ବୋଧହୁଏ ସରକାରୀ କଲେଜର କୌଣସି ବରିଷ୍ଠ ଅଧ୍ୟାପକ ଏପରି ସୁଯୋଗ ଏତେବର୍ଷ ଲଗାତର ଭାବରେ ଭୋଗ କରିପାରି ନଥିଲେ । ଏହି ସମୟରୁ ୧୯୮୮ ରେ ଅବସର ଗ୍ରହଣ କଲା ପର୍ଯ୍ୟନ୍ତ ବିଭିନ୍ନ ପରୀକ୍ଷାରେ ମୁଖ୍ୟ ପରୀକ୍ଷକ, କଣ୍ଡକ୍ଟିଂ ବୋର୍ଡ଼ ସଭ୍ୟ ଏବଂ ମଡ଼ରେସନ ବୋର୍ଡ଼ ସଭ୍ୟ ଭାବରେ କାର୍ଯ୍ୟ କରିବା ପାଇଁ ବିଶ୍ୱବିଦ୍ୟାଳୟ ନିଯୁକ୍ତି ପ୍ରଦାନ କରୁଥିଲେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ମଧ ବହୁବାର ମଡ଼ରେସନ ବୋର୍ଡ଼ରେ କାର୍ଯ୍ୟ କରିବା ପାଇଁ ସୁଯୋଗ ପ୍ରଦାନ କରୁଥିଲେ । ବିଭିନ୍ନ ବିଶ୍ୱବିଦ୍ୟାଳୟର ଗବେଷଣା ଥେସିସ୍‌ର ମଧ ପରୀକ୍ଷକ ହେଲି । ଅବସର ଗ୍ରହଣ ପରେ ଆଉ ପରୀକ୍ଷାଖାତା ଦେଖା ଓ ପ୍ରଶ୍ନ କରିବାର ଦାୟିତ୍ୱ ଗ୍ରହଣ କଲି ନାହିଁ । କେବଳ ଆଜି ପର୍ଯ୍ୟନ୍ତ ଗବେଷଣା ଥେସିସ୍‌ର ପରୀକ୍ଷକ ଦାୟିତ୍ୱ ତୁଲାଇବାରେ କୁଣ୍ଠିତ ହୋଇ ନାହିଁ ।

ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍‌ରେ ଦୀର୍ଘକାଳର ଅନୁଭୂତିରୁ ଗୋଟିଏ ଅପ୍ରୀତିକର ପ୍ରସଙ୍ଗ ନକହି ରହିପାରୁ ନାହିଁ । ଯେଉଁ କୃତବିଦ୍ୟ ଅଧ୍ୟାପକମାନେ ସଭ୍ୟ ରୁହନ୍ତି, ସେମାନେ ବ୍ୟଗ୍ର ହୋଇ ପଡ଼ନ୍ତି ନିଜ ବହିକୁ ସିଲାବସ୍‌ରେ ଯୋଡ଼ିଦେବା ପାଇଁ । ସେମାନେ ଅବସର ନେଲାପରେ ସେ ବହି ବଦଳିଯାଏ ନବାଗତ ସଭ୍ୟଙ୍କର ସ୍ୱାର୍ଥରକ୍ଷା ପାଇଁ । ଗୋଟିଏ ଦୁଇଟି ଉଦାହରଣ ଏହିପରି । ଅଧ୍ୟାପକ କୁଞ୍ଜବିହାରୀ ଦାଶ ଚେଆରମ୍ୟାନ୍ ଥିଲାବେଳେ ତାଙ୍କ ଲିଖିତ ଲଙ୍କାଯାତ୍ରୀ ବହି ନନ୍‌ଡିଟେଲ୍ ପାଠ୍ୟ ଭାବରେ ରହିଲା । ସେ ଅବସର ନେଲାପରେ ସେ ବହି ମଧ ଉଠିଗଲା । ଆସିଲେ ଅଧ୍ୟାପକ ଧଳ ଚେଆରମ୍ୟାନ ଭାବରେ । ତାଙ୍କର ଲଣ୍ଡନ ଚିଠି ରହିଲା ଅଧିକା ପାଠ୍ୟ ଭାବରେ । ତାଙ୍କ ଅନ୍ତେ ସେ ବହି ଆଉ ରହିଲା ନାହିଁ । ଅଧ୍ୟାପକ ବଂଶୀଧର ମହାନ୍ତି ପ୍ରବର୍ତ୍ତନ କଲେ ତାଙ୍କର ଜଗନ୍ନାଥ ବହି । ଅଧ୍ୟାପକ କୃଷ୍ଣ ସାହୁଙ୍କ ଅମଳରେ ତାଙ୍କ ସଂପାଦିତ ରାମାୟଣ ପାଠ୍ୟ ହେବାର ଦେଖାଗଲା । ଏତଦ୍‌ବ୍ୟତୀତ ଏହି ସମିତିର ସଭ୍ୟମାନେ ନିଜ ସଂପାଦିତ ଗଦ୍ୟ ସଂକଳନ ଅଥବା ପଦ୍ୟ ସଂକଳନ ମଧ ପାଠ୍ୟପୁସ୍ତକ ଭାବରେ ଚଳାଇ ପାରୁଥିଲେ । ମୁଁ ସଭ୍ୟ ଥିଲାବେଳେ ଶ୍ରୀ ବେଣୁଧର ରାଉତ ଓ ମୋ ସଂପାଦିତ ପ୍ରବନ୍ଧ ସଂକଳନ ବି.ଏ. ଶ୍ରେଣୀରେ ପାଠ୍ୟ ହୋଇ ଚଳୁଥିଲା । ଏହି ପରଂପରା ଆଜି ମଧ ଅକ୍ଷୁର୍ଣ୍ଣ ରହିଆସିଛି ବୋଲି ଶୁଣିବାକୁ ପାଏ ।

ଉତ୍କଳ ବିଶ୍ୱବିଦ୍ୟାଳୟ ମୋତେ ରିଡ଼ର ଭାବରେ ସ୍ୱୀକୃତି ପ୍ରଦାନ କରିଥିଲେ । ତେଣୁ ମୁଖ୍ୟ ପରୀକ୍ଷକ ହେବା ପାଇଁ ସୁଯୋଗ ଆସି ପହଞ୍ଚିଗଲା । ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ଉଦ୍ୟମରେ କିଛି ପରେ ସରକାରୀ କଲେଜରେ ଶତକଡ଼ା ୨୦ ଅଧ୍ୟାପକ ପ୍ରମୋସନ ପାଇ ରିଡ଼ର ହେଲେ । ତେଣୁ ମୋଠାରୁ କିଛି ସିନିଅର ଅଧ୍ୟାପକ ମଧ ସରକାରୀର କଲେଜର

ରିଡ଼ର ଭାବରେ ମୋର ଜୁନିଅର ହୋଇଗଲେ । ଫାଇନାଲ ପରୀକ୍ଷାର ବି.ଏ., ଏମ୍.ଆଇ.ଏଲ୍‌ରେ ରେଭେନ୍ସା କଲେଜର ଦୁଇଜଣ ରିଡ଼ର ଓ ମୁଁ ଥିଲୁ ମୁଖ୍ୟ ପରୀକ୍ଷକ । ସପ୍ଲିମେଣ୍ଟାରୀ ପରୀକ୍ଷାରେ ଜଣେ ମାତ୍ର ମୁଖ୍ୟ ପରୀକ୍ଷକ ଆବଶ୍ୟକ ଥିବାରୁ ମୋତେ ନିଯୁକ୍ତି ପ୍ରଦାନ କରାଗଲା । ରେଭେନ୍ସାର ସେହି ବରିଷ୍ଠ ଅଧ୍ୟାପକ ଦ୍ୱୟ ପ୍ରଫେସର ଗୋଲୋକବିହାରୀ ଧଳଙ୍କ ନିକଟରେ ଅଭିଯୋଗ କଲେ ମୋ ବିରୁଦ୍ଧରେ । ସେଦିନ ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍ ସଭା କାମ ସାରି ଅଧ୍ୟାପକ ଧଳଙ୍କ ଗାଡ଼ିରେ କଟକ ଫେରୁଥାଏ । ମୋ ସହିତ ଥାଆନ୍ତି ଅଧ୍ୟାପିକା ଶାନ୍ତି ମିଶ୍ର, ଅଧ୍ୟାପକ ବେଣୁଧର ରାଉତ ଓ ଅଧ୍ୟାପକ ନଟବର ସାମନ୍ତରାୟ । ଆଗରେ ବସିଥାଆନ୍ତି ପ୍ରଫେସର ଧଳ । ଅଧ୍ୟାପକ ଧଳ ମୋର ଶିକ୍ଷକ ଥିଲେ ପୁରୀ କଲେଜରେ । ତାଙ୍କର ମୁଁ ସ୍ନେହଭାଜନ ଛାତ୍ର ଥିଲି । ସେ ମୋତେ ପଚାରିଲେ ଗାଡ଼ି ଭିତରେ, ''ମୋ କଲେଜର ବରିଷ୍ଠ ଅଧ୍ୟାପକ ବାଦ ପଡ଼ି ତୁମେ କିପରି ସପ୍ଲିମେଣ୍ଟାରୀ ପରୀକ୍ଷାରେ ମୁଖ୍ୟ ପରୀକ୍ଷକ ହୋଇପାରିଲ ?'' ମୁଁ ଅନୁଭବ କଲି, ସେହି ବରିଷ୍ଠ ଅଧ୍ୟାପକ ଦ୍ୱୟ ବିଚାରିଥିଲେ, ମୁଁ ବିଶ୍ୱବିଦ୍ୟାଳୟରେ ପ୍ରଭାବ ପକାଇ ଅଧିକାର ଛଡ଼ାଇ ଆଣିଛି । ସାର୍‌ଙ୍କୁ କହିଲି, ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ବିଶ୍ୱବିଦ୍ୟାଳୟର ବରିଷ୍ଠ ରିଡ଼ର ଭାବରେ ମୋର ନିଯୁକ୍ତି ବିଧିସମ୍ମତ । ରେଭେନ୍ସାର ସେହି ଅଧ୍ୟାପକଦ୍ୱୟ ଟୋଣ୍ଟି ପରସେଣ୍ଟ ଲିଷ୍ଟରେ ରିଡ଼ର ଏବଂ ମୋର ଜୁନିଅର ତେଣୁ ସେମାନଙ୍କର ଅଭିଯୋଗ ସ୍ୱାର୍ଥପ୍ରଣୋଦିତ । ଅଧ୍ୟାପକ ଧଳ ମୋ ପିଠିରେ ହାତ ମାରି କହିଲେ, ''ବୁଝିଲୁ ପଠାଣି ! ସେମାନେ ମୋତେ ଭୂଆଁ ବୁଲାଉଥିଲେ । ବର୍ତ୍ତମାନ ଆଉ ସନ୍ଦେହ ନାହିଁ ।''

ସରକାରୀ କଲେଜର ଅଧ୍ୟାପକମାନେ ଘରୋଇ କଲେଜର ଅଧ୍ୟାପକମାନଙ୍କୁ ସର୍ବଦା ହୀନ ଦୃଷ୍ଟିରେ ଦେଖୁଥିଲେ ଏବଂ ସର୍ବଦା ପଣ୍ଡିତମନ୍ୟ ଅହଂକାରରେ ଉବେଇଟୁବେଇ ହେଉଥିଲେ । ଅବଶ୍ୟ ଆଜି ଆଉ ସେ ଅବସ୍ଥା ନାହିଁ । ସେଥିପାଇଁ ମୁଁ ଯେତେବେଳେ ଦୀର୍ଘକାଳ ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍‌ର ସଭ୍ୟ ରହିଲି, ଆଇ.ଏ. ଠାରୁ ବି.ଏ. କଣ୍ଡକ୍ଟିଂ ବୋର୍ଡ଼ ପର୍ଯ୍ୟନ୍ତ ସହଯୋଗ କଲି, ଏହି ସୁଯୋଗରୁ ବଞ୍ଚିତ କିଛି ଈର୍ଷାକାତର ବରିଷ୍ଠ ସରକାରୀ ଅଧ୍ୟାପକ ଅସୂୟାବଶତଃ ମନ୍ତବ୍ୟ ଦେବା ଅତ୍ୟନ୍ତ ସ୍ୱାଭାବିକ ।

ଅଧ୍ୟାପକ ଧଳଙ୍କ କଥା ପୂର୍ବରୁ ଲେଖିଛି ଏବଂ ଲଣ୍ଡନରୁ ପ୍ରେରିତ ମୋ ପାଖକୁ ତାଙ୍କର ଚିଠି ମଧ ଲିପିବଦ୍ଧ କରିଛି । ଅଧ୍ୟାପକ ଧଳ ଥାଆନ୍ତି ଆମ ଓଡ଼ିଆ ଅଧ୍ୟାପକଙ୍କ ସମ୍ମିଳନୀର ସଭାପତି । ସେଦିନ ରେଭେନ୍ସା କଲେଜର କାର୍ଯ୍ୟକାରୀ ସମିତିର ବୈଠକ ଆହୂତ ହୋଇଥାଏ । ତେଣୁ କଣ୍ଡକ୍ଟିଂ ବୋର୍ଡ଼ କାମ ସାରି ସାର୍‌ଙ୍କ ଗାଡ଼ିରେ ଫେରୁଥାଏ କାର୍ଯ୍ୟକାରୀ ସମିତିରେ ଯୋଗ ଦେବା ପାଇଁ । କଲ୍ୟାଣନଗର ଏତେ ବିକଶିତ ହୋଇ ନଥାଏ । ତାଂରି ଭିତରକୁ ଗାଡ଼ି ଚାଲିଲା । ବାଟରେ ସାର୍ କହିଲେ, ମୁଁ ଗୋଟିଏ ଘର କିଣିଛି । ମୋର ଅତିପ୍ରିୟ ଲୋକଙ୍କ ବ୍ୟତୀତ ଏକଥା ଆଉ କାହାକୁ କହି ନାହିଁ । ତୁମକୁ ଆଜି ସେହି ଘର ଦେଖାଇବି । ଅରଖ ନୂଆ କୋଠାଟିଏ । ସେଇଠି କାର୍‌ରୁ ଓହ୍ଲାଇ ଭିତରକୁ ଗଲୁ ଘରଘର ବୁଲି ଦେଖିବା ପାଇଁ ।

ସାର୍ କହିଲେ, ''ଜାଣିଚ ପଠାଣି, ମୋର ଶ୍ରୀମତୀ ସବୁବେଳେ ଦୁଃଖ କଲେ ଯେ କଟକରେ ଆମର ଘରଟିଏ ନାହିଁ । ଆମ ପିଲାମାନେ କ'ଣ ଗାଁରେ ରହିବା ପାଇଁ ସୁଖ ପାଇବେ ? ତାଙ୍କରି ସନ୍ତୋଷଭାଜନ ପାଇଁ ଏ ଘର କିଣାହେଲା । କିନ୍ତୁ ଅବସର ନେଲାପରେ ମୁଁ ଯାଇ ରହିବି ମୋର ସେହି ପ୍ରିୟ ଗାଁ ''ଗଞ୍ଜେଇଡିହରେ'' । ଦୈବ ସହିଲା ନାହିଁ । ଏପରି ଜଣେ ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱ ଅବସର ଗ୍ରହଣ ପୂର୍ବରୁ ଅକାଳରେ ବିଦାୟ ନେଇଗଲେ ସେପୁରକୁ । ଯେଉଁଠାରୁ କେହି କେବେ ଫେରି ଆସନ୍ତି ନାହିଁ । ତାଙ୍କ ପରି ପ୍ରଥମ ଶ୍ରେଣୀର ଆଜୀବନ ବିଦ୍ୱାନ ଛାତ୍ର ଓ ଅଧ୍ୟାପକ ବିରଳ । ହିନ୍ଦୀ ସାହିତ୍ୟରେ ଧ୍ୱନି ବିଜ୍ଞାନ ଗ୍ରନ୍ଥର ସେ ଥିଲେ ପ୍ରଥମ ସ୍ରଷ୍ଟା । ଭାରତ ବିଖ୍ୟାତ ଭାଷାତତ୍ତ୍ୱବିତ୍ ଡକ୍ଟର ସୁନୀତି କୁମାର ଚାଟାର୍ଜୀ ଏହି ଧ୍ୱନି ବିଜ୍ଞାନ (ହିନ୍ଦୀ) ଗ୍ରନ୍ଥର ମୁଖବନ୍ଧ ଲେଖି ଭୂୟସୀ ପ୍ରଶଂସା କରିଯାଇଛନ୍ତି । ଜଣେ ସାର୍ଥକ ଭ୍ରମଣକାହାଣୀ ଲେଖକ, ପ୍ରାବନ୍ଧିକ ଓ ଅନୁବାଦକ ଭାବରେ ଓଡ଼ିଆ ସାହିତ୍ୟରେ ସେ ବହୁତଦିନ ସ୍ମରଣୀୟ ହୋଇ ରହିବେ । ଏହିପରି ଜଣେ ଶିକ୍ଷାଗୁରୁଙ୍କର ନିକଟ ସମ୍ପର୍କରେ ଆସି ତାଙ୍କର ସ୍ନେହ ଓ ଆଶିଷ ଭାଜନ ହୋଇ ନିଜକୁ ଧନ୍ୟ ମନେକରିଛି ।

✓ ଜୀବନର ଚଲାପଥରେ ଅସରନ୍ତି ମଧୁମୟ ସ୍ମୃତିର ଇନ୍ଦ୍ରଜାଲ ମନକୁ ବିହ୍ୱଳିତ କରିଥାଏ ସିନା ।

• • •

# ଅଧକ୍ଷ ଆସନରେ କଣ୍ଟାର ମୁକୁଟ

**ବି**ଭିନ୍ନ ରାଜନୀତିକ ଦଳ ତରୁଣ ଛାତ୍ରମାନଙ୍କୁ ହାତରେ ରଖିବା ପାଇଁ କଲେଜ ଇଉନିଅନ ନିର୍ବାଚନରେ ସମର୍ଥନକାରୀ ଗୋଷ୍ଠୀଙ୍କୁ ଅର୍ଥ ଯୋଗାଇଦେବାର ପରଂପରା ଆରମ୍ଭ ହେଲା । ଯଦି ସରକାରରେ ଥିବା ଦଳର ସମର୍ଥନକାରୀ ଛାତ୍ରଗୋଷ୍ଠୀ କଲେଜ ନିର୍ବାଚନ ରଣାଗଂନକୁ ଓହ୍ଲାଇ ଆସିଲେ ଏବଂ ଜୟଲାଭ କଲେ, ତାହାହେଲେ, କଲେଜର ଦୁର୍ଭାଗ୍ୟ ଆରମ୍ଭ ହେଲାବୋଲି ଆଶଙ୍କା ହୁଏ । କାରଣ ଏହି ସରକାରୀ ଦଳ ସମର୍ଥିତ ଛାତ୍ର ପ୍ରତିନିଧିମାନେ ନିଜକୁ ଆଉ ଛାତ୍ର ବୋଲି ଗ୍ରହଣ କରନ୍ତି ନାହିଁ । ସେମାନେ କଲେଜର ପରିଚାଳନାରେ ନାନା ଭାବରେ ହସ୍ତକ୍ଷେପ କରନ୍ତି ଏବଂ କଲେଜର ଶାନ୍ତିପୂର୍ଣ୍ଣ ବାତାବରଣ ନଷ୍ଟ ହୋଇଯାଏ । ଅନେକ ସମୟରେ ନିଜର ସ୍ୱାର୍ଥ ହାସଲ ପାଇଁ ଏମାନେ ନୃଶଂସ ଆଚରଣ କରନ୍ତି । କଲେଜର ସମ୍ପତ୍ତି ଧ୍ୱଂସ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଅଧକ୍ଷ ମହାଶୟ ନିଜକୁ ଅସହାୟ ମନେକରି ନୀରବରେ ଅତ୍ୟାଚାର ସହ୍ୟ କରନ୍ତି । ସରକାରୀ ଦଳର ହସ୍ତକ୍ଷେପ ଯୋଗୁ ପୋଲିସ୍ ବିଭାଗ ମଧ କଠୋର କାର୍ଯ୍ୟାନୁଷ୍ଠାନ କରିବାକୁ କୁଣ୍ଠିତ ହେଉଥାଆନ୍ତି । ମୁଷ୍ଟିମେୟ ନେତାପଦବାଚ୍ୟ ଅମନଯୋଗୀ ଛାତ୍ରଙ୍କ ଯୋଗୁ ପରୀକ୍ଷା ପରିଚାଳନାରେ ସଂକଟ ସୃଷ୍ଟି ହୁଏ, ପରୀକ୍ଷା ହଲ୍‌ରେ କଳ୍ପନାତୀତ ଦୁର୍ନୀତି କରିବାକୁ ପରୀକ୍ଷାର୍ଥୀମାନେ କୁଣ୍ଠିତ ହୁଅନ୍ତି ନାହିଁ । କଲେଜ ହତା ମଧରେ ପୋଲିସ୍ ମାନଙ୍କ ପଇନ୍ତରା ଥାଏ ଅତ୍ୟନ୍ତ ନିରର୍ଥକ । ବିଶ୍ୱବିଦ୍ୟାଳୟ ପ୍ରତିନିଧିମାନେ ପରୀକ୍ଷା ପରିଚାଳନାଗତ ବିଭ୍ରାଟ ସ୍ୱଚକ୍ଷୁରେ ଦର୍ଶନ କରି ସୁଦ୍ଧା ପରୀକ୍ଷା ବାତିଲ ପାଇଁ ରିପୋର୍ଟ ଦେବାର ସାହସ ନଥାଏ । ଯଦିବା ରିପୋର୍ଟ ଦେବେ, ବିଶ୍ୱବିଦ୍ୟାଳୟ ସବୁ ଜାଣି ସୁଦ୍ଧା ଅନେକ ସମୟରେ ଅଜଣା ରହନ୍ତି ।

୧୯୬୮ ମସିହାରେ ଆମର ଅଧକ୍ଷ ଥାନ୍ତି ପ୍ରଫେସର ଏମ୍.ଏନ୍.ରାୟ । କଲେଜରେ ଭୟଙ୍କର ଅଶାନ୍ତ ବାତାବରଣ । ସାଂପ୍ରଦାୟିକ ଶକ୍ତିମାନଙ୍କ ମଧରେ ଛକାପଞ୍ଝା ଓ ସଂଘର୍ଷ ଲାଗି ରହିଥାଏ । ଶେଷରେ ପରିଣତି ହେଲା, କଲେଜ ଅଧାପକ କାଉନ୍‌ସିଲ୍ ଅତ୍ୟନ୍ତ ବିକଳ ଭାବରେ ବିଶ୍ୱବିଦ୍ୟାଳୟକୁ ପ୍ରାର୍ଥନା କଲେ ଏକ ପ୍ରସ୍ତାବ ଜରିଆରେ–ଅନ୍ତତଃ ଦୁଇବର୍ଷ ପାଇଁ ଏହି କଲେଜରୁ ପରୀକ୍ଷାକେନ୍ଦ୍ର ଉଠାଇ ନିଆଯାଉ । ତାହାହେଲେ ଉଚ୍ଛୃଙ୍ଖଳ ଛାତ୍ରମାନଙ୍କର ଚୈତନ୍ୟୋଦୟ ହେବ । କାରଣ ଶିକ୍ଷକସମାଜର କୌଣସି ପ୍ରକାର ନୈତିକ ସାହସ ନଥାଏ, ରାଜନୀତିକୁ ପେଶା କରିଥିବା ଛାତ୍ରନେତାମାନଙ୍କୁ ନିୟନ୍ତ୍ରଣ କରି ଶୃଙ୍ଖଳିତ

ଭାବରେ ପରୀକ୍ଷା ପରିଚାଳନା କରିବା ପାଇଁ । ରାଜନୀତିକ ଦଳର ନାଲି ଆଖି ଭୟରେ ବିଶ୍ୱବିଦ୍ୟାଳୟ ମଧ କଠୋର ହୋଇପାରିଲେ ନାହିଁ । କୌଶଳକ୍ରମେ ନିଜ ମୁଣ୍ଡରୁ ଦାୟିତ୍ୱ ଖସାଇଦେଲେ । ପରିଣତି ହେଲା ଅତ୍ୟନ୍ତ ଭୟଙ୍କର ଓ ସୁଦୂର ପ୍ରସାରୀ । ଅନେକ ଅଧ୍ୟାପକ ଶ୍ରେଣୀକକ୍ଷରେ ଶାନ୍ତି ରକ୍ଷା କରି ଅଧ୍ୟାପନା କରିପାରିଲେ ନାହିଁ । ସାହିବସ୍ତିର ଅସାମାଜିକ ଯୁବକମାନେ କଲେଜ ହତାରେ ପଇନ୍ତରା ମାରି ଭୟ ପ୍ରଦର୍ଶନ କରାଉଥାଆନ୍ତି । ବିଚରା ଅଧ୍ୟାପକ ଓ ଅଧ୍ୟକ୍ଷଙ୍କ ହାତରେ କ'ଣ ଅବା କ୍ଷମତା ରହିଛି, ମାନିଲେ ଦିଅଁ, ନ ମାନିଲେ ପଥର । ଅଧିକାଂଶ ଛାତ୍ର ଏହି ପ୍ରକାର ଅବ୍ୟାପାରକୁ ସମର୍ଥନ କରୁନଥିଲେ ହେଁ ସେମାନଙ୍କର ଏକତା ନଥାଏ ଦୁଷ୍ଟବ୍ରଣମାନଙ୍କର ସମ୍ମୁଖୀନ ହେବା ପାଇଁ । ଏହି ଦୁର୍ଦ୍ଦିନରେ ପରିଚାଳନା ସମିତି ଏପରି କେତେକ ପଦକ୍ଷେପ ଗ୍ରହଣ କଲେ ସଂପ୍ରଦାୟର ସ୍ୱାର୍ଥରକ୍ଷା ଆଳରେ, ଯାହାର ପରିଣତି ହେଲା ଆହୁରି ଭୟଙ୍କର । ଅଧ୍ୟକ୍ଷଙ୍କ ସମେତ ସମସ୍ତ ଅଧ୍ୟାପକଙ୍କୁ ଚାକିରୀ ଆଉ ନାହିଁ ବୋଲି ଆଫିସିକ ପରୁଆନା ଜାରି କରାଗଲା । କଲେଜକୁ ବନ୍ଦ କରିଦେଇ ଏକ ହସ୍‌ପିଟାଲ କରିବାର ଧମକ ଦିଆଗଲା । ପ୍ରାୟ ଛଅମାସ କାଳ ଅଧ୍ୟାପକ ଓ ଷ୍ଟାଫ୍ ଦରମା ପାଇଲେ ନାହିଁ । ସେଦିନର ଦୁର୍ଗତି ଥିଲା ଅସହନୀୟ । ଅଧ୍ୟାପକମାନେ ବିନା ଦରମାରେ ଅଧ୍ୟାପନା ଜାରି ରଖିଥାଆନ୍ତି । ଏହି ପ୍ରକାର ଅଶାନ୍ତ ବାତାବରଣକୁ ଛାତ୍ର ଆନ୍ଦୋଳନ ଅଧିକ କଠୋର ହେଉଥାଏ । ପରିଚାଳନା ସମିତି ବାହାରୁ ଯେଉଁମାନଙ୍କୁ ଡାକିଆଣିଲେ ଅଧ୍ୟକ୍ଷ ହେବା ପାଇଁ, ସେମାନେ ଉତ୍ୟକ୍ତ ଛାତ୍ରମାନଙ୍କ ଦ୍ୱାରା ଅସମ୍ମାନିତ ହୋଇ ଫେରିଯାଉଥାଆନ୍ତି । ଅତ୍ୟନ୍ତ ଲଜ୍ଜାର କଥା ଯେ ଏହିପରି ଜଣେ ଅଧ୍ୟକ୍ଷ କଲେଜରେ ଆଦୌ ପ୍ରବେଶ କରିବା ପାଇଁ ସାହସ ନପାଇ ଖ୍ରୀଏଷ୍ଟ କଲିଜିଏଟ୍ ସ୍କୁଲରେ କିଛିମାସ ଅଫିସ୍ କରି ସ୍ୱକ୍ଷେତ୍ରକୁ ଫେରିଗଲେ । ପରିଶେଷରେ ସରକାରଙ୍କର ଚୈତନ୍ୟଉଦୟ ହେଲା । ଡି.ପି.ଆଇ ଅଫିସର ଜଣେ ବରିଷ୍ଠ ଅଫିସର ନିଜେ ଆସି ଷ୍ଟାଫ୍‌ଙ୍କୁ ଦରମା ଦେବାର ବ୍ୟବସ୍ଥା କଲେ ପରିଚାଳନା କର୍ତ୍ତୃପକ୍ଷଙ୍କ ଆଚରଣକୁ ଅସ୍ୱୀକାର କରି । ସେଦିନର ଶିକ୍ଷା ସଚିବ ଶ୍ରୀ ରମାକାନ୍ତ ରଥଙ୍କ ନିମନ୍ତ୍ରଣ ରକ୍ଷା କରି କେତେଜଣ ବରିଷ୍ଠ ଅଧ୍ୟାପକ ତାଙ୍କୁ ସାକ୍ଷାତ କଲେ ସେକ୍ରେଟେରୀଏଟ୍ ଅଫିସ୍‌ରେ । ସେଇଠି ପରିଚୟ କରାଇଦିଆଗଲା ସରକାରୀ କଲେଜର ଅଧ୍ୟାପକ ମେଜର ପି.କେ. ଦାସଙ୍କୁ । ସେକ୍ରେଟାରୀଙ୍କ ନିର୍ଦ୍ଦେଶରେ ମେଜର ପି.କେ. ଦାସଙ୍କୁ ଅଧ୍ୟକ୍ଷ ଭାବରେ ସ୍ୱାଗତ କରାଗଲା କଲେଜ ଅଫିସ୍‌ରେ । ଧୀରେଧୀରେ ଶାନ୍ତି ଫେରିଆସିଲା । ଅଧ୍ୟକ୍ଷ ପି.କେ. ଦାସ ୧୯୭୦-୭୨ ଦୁଇବର୍ଷ ମଧ୍ୟରେ କଠୋର ପରିଶ୍ରମ ଓ ଅସୀମ ସାହସ ପ୍ରଦର୍ଶନ କରି ଉଚ୍ଛୃଙ୍ଖଳତାର ଅବସାନ ଘଟାଇବାକୁ କ୍ଷମ ହୋଇପାରିଲେ । ନାନାକାରଣରୁ ୧୯୮୧ ମସିହାରେ ପୁନର୍ବାର ଛାତ୍ର ଅଶାନ୍ତିର ନିଆଁ ଜଳି ଉଠିଲା । ଏହାକୁ ପ୍ରଶମିତ କରିବା ପାଇଁ ସରକାର ପୁନର୍ବାର ପ୍ରେରଣ କଲେ ଅଭିଜ୍ଞ ଅଧ୍ୟକ୍ଷ ଭାବରେ ମେଜର ପି.କେ. ଦାସଙ୍କୁ । କାହିଁକି କେଜାଣି, ଏଥର ଅଶାନ୍ତ ବାତାବରଣ ଏପରି ଉତ୍କଟ ହେବାକୁ ଲାଗିଲା ଯେ ଅଧ୍ୟକ୍ଷ ଶ୍ରୀ

ଦାସ ଅଚାନକ ନିଷ୍ପତ୍ତି କଲେ କଲେଜ ଛାଡ଼ି ଚାଲିଯିବା ପାଇଁ । ବୋଧହୁଏ କିଛି ତୋଷାମଦକାରୀ ଅଧ୍ୟାପକମାନଙ୍କ ଭୁଲ ପରାମର୍ଶରେ ପରିଚାଳିତ ହୋଇ ସେ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରିପାରି ନଥିଲେ । ଅଧ୍ୟକ୍ଷ ମେଜର ଦାସ ମୋତେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ଏବଂ ଲାଇବ୍ରେରୀ ଓ ପରୀକ୍ଷା ପରିଚାଳନା ପରି ଗୁରୁଦାୟିତ୍ୱ ଅର୍ପଣ କରିଥିଲେ । କେତେଜଣ ବରିଷ୍ଠ ଅଧ୍ୟାପକ ଓ ପୂର୍ବତନ ଅଧ୍ୟକ୍ଷଙ୍କୁ ସେ ଭାବପ୍ରବଣ ଅବସ୍ଥାରେ ଆପତ୍ତିଜନକ ବ୍ୟବହାର କରିବାରୁ ଧୀରେଧୀରେ ଅସନ୍ତୋଷ କୁହୁଳି ଉଠୁଥିଲା । ମନେହେଉଥିଲା, ସତେଯେପରି ସେ ସରକାରୀ କଲେଜରୁ ଆସିଥିବାରୁ ଏଠାର ଅଧ୍ୟାପକମାନଙ୍କୁ ଦ୍ୱିତୀୟ ଶ୍ରେଣୀର ନାଗରିକ ବୋଲି ଗ୍ରହଣ କରିନେଇଥିଲେ ।

ସବୁଦିନ ସମାନ ରହେ ନାହିଁ । ମେଜର ପି.କେ ଦାସ ଅଚାନକ କଲେଜ ଦାୟିତ୍ୱ ମୋ ଉପରେ ମୋର ସମ୍ପୂର୍ଣ୍ଣ ଅଜାଣତରେ ଥୋଇ ଦେଇ ଉଭାନ ହୋଇଗଲେ । ଗଲାବେଳେ ଏକ ବ୍ୟକ୍ତିଗତ ଚିଠି ଏବଂ ଆଫିସିକ ଆଦେଶନାମା ମୋ ପାଇଁ ଥୁଆ ହୋଇଥିଲା । ମେଜର ପି. କେ. ଦାସଙ୍କର ମୋ ପାଖକୁ ବ୍ୟକ୍ତିଗତ ଚିଠି–

ପ୍ରିୟ ପଠାଣି ବାବୁ,

ମତେ କ୍ଷମା କରିବେ । ପରିସ୍ଥିତି ଦୃଷ୍ଟିରୁ ଅନନ୍ୟୋପାୟ ହୋଇ ଆପଣଙ୍କୁ ହଇରାଣ କଲି । ତେବେ ୟା ଭିତରେ ଅନ୍ୟ ବ୍ୟବସ୍ଥାରେ ଅଛି । ଯଦି ହୁଏ, ତା'ହେଲେ ଆପଣ ହଇରାଣ ହେବାକୁ ପଡ଼ିବ ନାହିଁ । ଯଦି ୟୁନିଭରସିଟି କିଛି କହେ, ତା'ହେଲେ ଆପଣ ସିଧା Centre Superintendent ହେବାକୁ ମନା କରିବେ । କହିବେ, ପ୍ରିନସ୍‌ପାଲ ସବୁକଥା ଜଣାଇଛନ୍ତି ।

ଆଜି ହସ୍ପିଟାଲରେ ଆଡ଼ମିସନ ହୋଇଛି । ପରେ ଫେରିଲେ କଥା ହେବା । ପୁଣି ଥରେ ଆପଣଙ୍କୁ ହଇରାଣ କରୁଥିବା ହେତୁ ଦୁଃଖ ପ୍ରକାଶ କରି ରହିଲି ।

ଆପଣଙ୍କର

ପ୍ରସନ୍ନ କୁମାର ଦାସ

୧୩.୩.୧୯୮୨

ଏହି ବ୍ୟକ୍ତିଗତ ଚିଠି ସହିତ ଅଧ୍ୟକ୍ଷ ମେଜର ଦାସଙ୍କର ଆଫିସିକ ଆଦେଶ ମଧ୍ୟ ମିଳିଲା । ତାହାର ହାତଲେଖା ପ୍ରତିଲିପି ଏହିପରି–

Major P.K Das

Principal

Sri Pathani Pattnaik, Head of the Dept. of Oriya will remain in charge of the principals office during the leave of Major P.K. Das from 15.3.1982 to 20-3.1982.

He is free not to take the responbility of the Centre Superintendent if he does not feel like taking.

ବ୍ୟକ୍ତିଗତ ଚିଠି ସହିତ ଏପରି ହାତଲେଖା ଆଦେଶ ପାଇ ମୁଁ ଏକପ୍ରକାର ବିଚଳିତ ହୋଇପଡ଼ିଲି । କାରଣ ଅଧ୍ୟକ୍ଷ ବିଭିନ୍ନ ଆଫିସିକ କାର୍ଯ୍ୟରେ ଅନୁପସ୍ଥିତି ରହିଲାବେଳେ କେତେଥର ମୋତେ ସାମୟିକ ଅଫିସ୍ ଦାୟିତ୍ୱ ଦେଇଥାଆନ୍ତି । ଏପରି ଚିଠିର ଶ୍ରଦ୍ଧା ନିବେଦନ ଅନ୍ତରାଳରେ ଆଉ କିଛି ରହସ୍ୟ ରହିଛି କି ? ନୀରବରେ ଦାୟିତ୍ୱ ତୁଲାଇ ଯାଉଥାଏ । ହଠାତ୍ ଆଉ ଏକ ପରୁଆନା ମିଳିଲା ଏପ୍ରିଲ ମାସ ବାର ତାରିଖରେ ଆଫିସିକ ଆଦେଶ ଆକାରରେ–

No. 336/82/ Dt. 12.4 82

Sri Pathani Patnaik, Reader and Head of Dept. of Oriya will remain in charge of office of the principal temporarily with effect from 12th April, 1982 (A N ) till new principal joins or the Governing Body makes alternate arrangements.

P.K. Das
12.4.1982
Principal

Copy closed to the Secretary, G.B. for information.

Principal

କଲେଜରେ ଅଧକ୍ଷଙ୍କ ସହିତ ସାକ୍ଷାତ ହୋଇଥିଲା । ମୋତେ ଏହାର ସାମାନ୍ୟ ସୂଚନା ମଧ୍ୟ ମିଳି ନଥିଲା । ଘରେ ଆସି ବିଶ୍ରାମ କରୁଛି ଅପରାହ୍ନ ସାଢ଼େ ଚାରିଘଣ୍ଟା ସମୟରେ ପିଅନ ଡାକ ଖାତାରୁ ଦସ୍ତଖତ କରି ଏ ଆଦେଶ ଗ୍ରହଣ କଲି ।

ହଠାତ୍ ମୋର ବୁଦ୍ଧି ବଣା ହୋଇଗଲା । ସେହି ସମୟରେ କଲେଜରେ ଅଶାନ୍ତ ବାତାବରଣ । ନାନା କାରଣରୁ ଛାତ୍ରମାନେ ଉତ୍ୟକ୍ତ ଆଚରଣ କରୁଥାଆନ୍ତି । ହଠାତ୍ ଯଦି ଅଧକ୍ଷ କଲେଜ ଛାଡ଼ିଯିବାର ନିଷ୍ପତ୍ତି କଲେ, ତାହାହେଲେ ମୋ'ଠାରୁ ସିନିୟର ଅଧାପକ ମି. ବାନାର୍ଜୀଙ୍କୁ ଏ ଦାୟିତ୍ୱ ଦେଇଯାଇପାରିଥାନ୍ତେ । ମୁଁ ଜାଣିଥିଲି, କେତେଜଣ ସରକାରୀ କଲେଜର ଅଧାପକ ଅଧକ୍ଷ ହେବାକୁ ଆସି ଦାୟିତ୍ୱ ନେଇ ନପାରି ହତାଶ ହୋଇ ଫେରିଯାଇଛନ୍ତି । ତେଣୁ ସରକାରୀ କଲେଜ ଅଧାପକମାନେ ଏଠାକୁ ଆସିବାକୁ ଭୟ କରୁଥିଲେ । ହୁଏତ ପରିଚାଳନା ସମିତି ଓ ସରକାର ଏକପ୍ରକାର ଦୋହୁଲ୍ୟମାନ ଅବସ୍ଥାରେ ପଡ଼ିଥାଇପାରନ୍ତି ।

ଖ୍ରୀଷ୍ଟ କଲେଜର ଅଧକ୍ଷ ଓ ଅଧାପକ ନିଯୁକ୍ତି ଓ ପ୍ରମୋସନ ଅଥବା ନିଷ୍କାସନରେ ସରକାରଙ୍କର କୌଣସି ଆଦେଶକୁ ଅପେକ୍ଷା କରାଯାଏ ନାହିଁ । ପରିଚାଳନା ସମିତି ଅଧାପକମାନଙ୍କୁ ନିଯୁକ୍ତି ପ୍ରଦାନ କରନ୍ତି । ମାତ୍ର ଅଧକ୍ଷ ନିଯୁକ୍ତି ସମ୍ପୂର୍ଣ୍ଣ ଭାବରେ ଖ୍ରୀଷ୍ଟିୟାନ ଏଜୁକେସନ ବୋର୍ଡ଼ ହସ୍ତରେ । ସାଧାରଣତଃ ଖ୍ରୀଷ୍ଟିଆନଧର୍ମୀ ଅଧାପକମାନଙ୍କୁ ଅଧକ୍ଷ

ଦାୟିତ୍ୱ ଦେବାର ଏକ ପରଂପରା ଥାଏ । ସେମାନଙ୍କ ଅନୁପସ୍ଥିତିରେ କଲେଜର ସ୍ଥାୟୀ ଅଧ୍ୟାପକମାନେ ଭାରପ୍ରାପ୍ତ ଅଧ୍ୟକ୍ଷ ହୋଇଥାଆନ୍ତି । ଖ୍ରୀଷ୍ଟଧର୍ମୀ ଅଧ୍ୟକ୍ଷ ଅଥବା ସରକାରୀ କଲେଜ ଅଧ୍ୟକ୍ଷ ଆସିବାର ଥିଲେ କଲେଜର ସ୍ଥାୟୀ ଅଧ୍ୟାପକମାନଙ୍କୁ ଭାରପ୍ରାପ୍ତ ଦାୟିତ୍ୱ ହସ୍ତାନ୍ତର କରିବାକୁ ହୋଇଥାଏ । ବାରମ୍ବାର ଅଧ୍ୟକ୍ଷ ପଦବୀରେ ପରିବର୍ତ୍ତନ ହେଉଥିବାରୁ କଲେଜର ଉନ୍ନୟନ କାର୍ଯ୍ୟ ବାଧାପ୍ରାପ୍ତ ହେବା ସ୍ୱାଭାବିକ । ଏହି ଅସ୍ଥାୟୀ ବହିରାଗତ ଅଧ୍ୟକ୍ଷମାନଙ୍କର କଲେଜ ପ୍ରତି ଆନୁଗତ୍ୟ ନ ରହିବା ସ୍ୱାଭାବିକ । ଆମର ପ୍ରତିଷ୍ଠାତା ଅଧ୍ୟକ୍ଷ ରେଭରେଣ୍ଡ ବ୍ରହ୍ମାନନ୍ଦ ମହାନ୍ତି ୧୯୪୪ ଠାରୁ ୧୯୬୨ ପର୍ଯ୍ୟନ୍ତ ଦାୟିତ୍ୱ ଗ୍ରହଣ କରି ଅବସର ଗ୍ରହଣ କରିଥିଲେ । ତାଙ୍କ ପରେ ଅଧ୍ୟାପକ ଏସ୍.ଆର.ମୁଖାର୍ଜୀ ମାତ୍ର ଦୁଇଟି ବର୍ଷ ଏହି ଦାୟିତ୍ୱରେ ରହିଥିଲେ । ସେ ଥିଲେ କଲେଜର ସ୍ଥାୟୀ ଅଧ୍ୟାପକ । ସମସ୍ତଙ୍କଠାରୁ ସିନିଅର । ଖ୍ରୀଷ୍ଟଧର୍ମୀ ହୋଇଥିବାରୁ ସେ ଏହି ଦାୟିତ୍ୱରେ ଦୀର୍ଘକାଳ ରହି ଅବସର ନେଇପାରିଥାନ୍ତେ । ମାତ୍ର ହଠାତ୍ ହୃଦ୍‌ରୋଗରେ ଆକ୍ରାନ୍ତ ହେବାରୁ ସେ ଦାୟିତ୍ୱରୁ ଅପସରି ଗଲେ । ତାଙ୍କ ପରେ ଅଧିକାଂଶ ସ୍ଥାୟୀ ଅଧ୍ୟାପକଗଣ ଖ୍ରୀଷ୍ଟଧର୍ମୀ ନଥିବାରୁ ଅସ୍ଥାୟୀଭାବରେ ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରୁଥିଲେ ଏବଂ ସରକାରୀ କଲେଜ ଅଧ୍ୟାପକଙ୍କୁ ଅଧ୍ୟକ୍ଷ ଭାବରେ ଅଣାଗଲେ ଦାୟିତ୍ୱ ହସ୍ତାନ୍ତର କରିଦେଉଥିଲେ । ଏଥିରେ କଲେଜରେ ଶାସନଗତ ଶୃଙ୍ଖଳା ବ୍ୟାହତ ହେବା ଥିଲା ଅବଶ୍ୟମ୍ଭାବୀ । ଅସ୍ଥାୟୀ ଭାବରେ ଦାୟିତ୍ୱ ଗ୍ରହଣ କରିବା ହେତୁ ଯାବତୀୟ ଛାତ୍ର ଅଶାନ୍ତିର ସମ୍ମୁଖୀନ ହେବା ପାଇଁ ସ୍ଥାୟୀ ଅଧ୍ୟାପକମାନେ କୁଣ୍ଠିତ ହେଉଥିଲେ ।

ଏହି ପ୍ରସଙ୍ଗରେ କଟକ ଖ୍ରୀଷ୍ଟିଆନ ଏଜୁକେସନ ବୋର୍ଡ଼ କଲେଜ ଦାୟିତ୍ୱକୁ ଅସ୍ଥାୟୀ ଭାବରେ ଗ୍ରହଣ କରିବା ପାଇଁ କେତେଜଣ ବରିଷ୍ଠ ଅଧ୍ୟାପକଙ୍କୁ ଚିଠି ଲେଖି ମତାମତ ଲୋଡ଼ିଥିଲେ । ମୋତେ ଯେଉଁ ଚିଠି ମିଳିଥିଲା ତାର ପ୍ରତିଲିପି ଏହିପରି–

**Cuttack Christian Education Board**
(Registered under Act xxi of 1860)
No.F/33/42 Cuttack the 26th May, 1980

From,
**Sri R.J. Jachuck,** President
Cuttack Christian Education Board, Jachuck Lane
Cuttack-753001

To
Sri P. Patnaik, Reader, Christ College, Cuttack

Dear Sri Patnaik,

Kindly let me know of you have any objection to officiate as the principal, Christ College until further orders

Your considered views may please be communicated to the undersigned by 5th June, 1980 for consideration of

the Cuttack Christian Education Board.

Your's Sincerely
S.D./ R.J. Jachuck
President CCEB
Jachuck Lane, Cuttack

ମୋ ଉପରେ ପାଞ୍ଚଜଣ ସିନିଅର ଅଧ୍ୟାପକ ଥାଉଁଥାଉଁ ଏପରି ଦାୟିତ୍ୱ ଗ୍ରହଣ କରିବା ପାଇଁ ଅକ୍ଷମ ବୋଲି ଉତ୍ତର ଦେଇଥିଲି । ଭବିଷ୍ୟତରେ ଏହି ଦାୟିତ୍ୱକୁ ପ୍ରମୋସନ ହିସାବରେ ଯଦି କେବେ କର୍ତ୍ତୃପକ୍ଷ ଦେବା ପାଇଁ ମନସ୍ଥ କରିବେ, ମୋର ପାରିବାରିକ ଦୁର୍ଗତି ଯୋଗୁ ଗ୍ରହଣ କରିବି ନାହିଁ ବୋଲି ବିନୀତ ଭାବରେ ଅନୁରୋଧ କରିଥିଲି ।

ଅଧ୍ୟକ୍ଷ ମେଜର ଦାସ କଲେଜର ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ଅନ୍ତର୍ଦ୍ଧାନ ହୋଇଗଲେ ଏବଂ କଟକର ଜେ. କେ. ବି. କେ କଲେଜରେ ଅଧ୍ୟକ୍ଷ ଭାବରେ ଯୋଗଦେଇ ସେହିଠାରୁ ଏକ ଆଫିସିକ ଚିଠି ପ୍ରେରଣ କଲେ ।

Dated, Cuttack the 13th April, 1982

From The Principal
J.K.B.K College, Cuttack

To
The Commissioner-cum- Secretary to Government.
Department of Education and youth Services, Orissa,
Bhubaneswar

Sub Relief of Major P.K. Das

Sir,

I humbly submit that is obedience to G.O. No. 13017 dated, 7th April, 82. I have relinquished charge of the office of Principal, Christ College on the 12th April, 1982 (A.N) Since nobody took over charge from me I have sent my relief papers to the secretary governing body, Christ College, Sri S.Behari and asked the seniormost available teacher Sri P. Patnaik, Reader and Head of the Department of Oriya to remain in charge of Principal until Sri K.C. Panda joins or the Governing Body makes alternate arrangement.

I have also joined J.K.B.K. College on the same day, the 12th April, 1982 (A N)

Principal
J.K.B.K College, Cuttack

-Copy to Director of public instruction, Orissa for kind information.
-Copy closed to Sri P.K. Mohapatra, I.A.S (Rtd) President, G.B. Christ College, 84, Suryo Nagar, BBSR-3 for information.
-Memo No. 766/dated, Cuttack the 13th April, 1982, copy closed to Sri. Bihari Secretary, Governing Body, Christ

College, Cuttack and Sri P. Patnaik, Reader and Head of the Dept., Oriya, Christ College, Cuttack for information

S.D./ P.K. Das
13 / 4. 82
Principal, J.K.B.K. College , Cuttack

ଏହି ଚିଠିଟି ପାଇଲାପରେ ସଂଗେସଂଗେ ସୂତାହାଟରେ ପରିଚାଳନା ସମିତି ସଂପାଦକ ସାଇମନ ବିହାରୀଙ୍କ ଘରେ ପହଞ୍ଚିଲି । ସେଠାରେ ସାଇମନ ବାବୁଙ୍କ ସହିତ ପରିଚାଳନା ସମିତିର ଅନ୍ୟତମ ସଭ୍ୟ ସୁଭାଷ ପାତ୍ର ଉପସ୍ଥିତ ଥିଲେ । ସେମାନଙ୍କୁ ବୁଝାଇଲି- ଅଧ୍ୟକ୍ଷ ମେଜର ପି.କେ.ଦାସ କଲେଜ କାର୍ଯ୍ୟରେ ବାହାରକୁ ଗଲେ ତାଙ୍କ ଅନୁପସ୍ଥିତିରେ ଆମ୍ଭମାନଙ୍କୁ ଦାୟିତ୍ୱ ଦେବାର ଅଧିକାର ଅଛି । ସେ ଯେତେବେଳେ ସବୁଦିନ ପାଇଁ କଲେଜ ଛାଡ଼ି ଯାଉଛନ୍ତି ଏବଂ ପରିଚାଳନା ସମିତି ତାଙ୍କୁ ରିଲିଭ କରିନାହାନ୍ତି, ସେତେବେଳେ ତାଙ୍କ ଅନୁପସ୍ଥିତିରେ କଲେଜର କିଏ ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିବେ, ଏହା ପରିଚାଳନା ସମିତି ନିଷ୍ପତ୍ତି କରିବେ । ପୁନଶ୍ଚ ଆମ କଲେଜରେ ଅଧ୍ୟକ୍ଷଙ୍କୁ ନିଯୁକ୍ତି ପ୍ରଦାନ କରିବାର ଅଧିକାର କେବଳ ଖ୍ରୀଷ୍ଟିଆନ ଏଜୁକେସନ ବୋର୍ଡ଼ଙ୍କର । ଏପରି ପିରସ୍ଥିତିରେ କଲେଜ ଦାୟିତ୍ୱ ପରିଚାଳନା ସମିତିର ସଂପାଦକ ଭାବରେ ଆପଣ ଗ୍ରହଣ କରିବେ । ଏ ଦାୟିତ୍ୱ ମୁଁ ନେବାପାଇଁ ଅକ୍ଷମ । ସାଇମନ ବାବୁ ମୋ ସହିତ ଏକମତ ହୋଇ ଏ ଦାୟିତ୍ୱ ଗ୍ରହଣ କଲେ । ମୋ ମୁଣ୍ଡରୁ ଗୋଟାଏ ବୋଝ ଖସିଗଲା । ଶାନ୍ତ ମନରେ ଘରକୁ ଫେରି ଆସିଲି ।

ଖ୍ରୀଷ୍ଟିଆନ ଏଜୁକେସନ ବୋର୍ଡ଼ ଅଥବା ପରିଚାଳନା ସମିତି ମୋର କୁଣ୍ଠିତ ଭାବ ପୂର୍ବରୁ ଅବଗତ ଥିଲେ । ତେଣୁ ସେମାନେ ମୋତେ ଆଦେଶ ଦେବାର କୌଣସି ଅବକାଶ ନଥିଲା । ତା' ଛଡ଼ା ମୋର ସିନିଅର ଅଧ୍ୟାପକ ପ୍ରଫେସର ବାନାର୍ଜୀ ଥାଉଥାଉ ମୋ ଉପରେ ଏପରି ଦାୟିତ୍ୱ ଲଦି ଦେବାର କୌଣସି ଯୁକ୍ତିଯୁକ୍ତ କାରଣ ଆଦୌ ନାହିଁ ।

ମୋର ଏ ମାନସିକ ତୃପ୍ତି ଥିଲା ଅଳ୍ପ କ୍ଷଣସ୍ଥାୟୀ । ପରିଚାଳନା ସମିତି ମୋ ଉପରେ ସନ୍ତୁଷ୍ଟ ଥିଲେ । ତେଣୁ ସେମାନେ ମୋର ଇଚ୍ଛା ବିରୁଦ୍ଧରେ କୌଣସି ଦାୟିତ୍ୱ ଲଦିଦେବେ ନାହିଁ ବୋଲି ବିଶ୍ୱାସ କରୁଥିଲି । ମାତ୍ର ଏହାରି ମଧ୍ୟରେ କଲେଜରେ ଅଶାନ୍ତ ବାତାବରଣ ଅଧିକ ଉତ୍କଟ ହୋଇଯାଉଥାଏ । ସାହି ବସ୍ତିର ଅସାମାଜିକ ପିଲାମାନେ ନିର୍ଭୟରେ କଲେଜ ହତା ମଧ୍ୟରେ ଦାଦାଗିରି କରିବାକୁ କୁଣ୍ଠିତ ହେଉ ନଥାନ୍ତି । ସେମାନଙ୍କୁ ସହଯୋଗ କରୁଥାଆନ୍ତି କେତେକ ଉଚ୍ଛୃଙ୍ଖଳ ଓ ଅମନଯୋଗୀ ଛାତ୍ର । ବାହୁବଳ ପ୍ରଦର୍ଶନ କରି ନେତୃତ୍ୱ ଜାହିର କରିବା ଥାଏ ସେମାନଙ୍କର ଏକମାତ୍ର ଅଭିଳାଷ । ଅଧ୍ୟାପକମାନେ ଅତ୍ୟନ୍ତ ଅସହାୟ ହୋଇପଡ଼ିଥାନ୍ତି । ସ୍ଥାୟୀ ଭାବରେ ଜଣେ ମୁରବୀ ନ ରହିଲେ ଯାହା ହବାର କଥା, ତାକୁ କିଏ ଅଟକାଇ ପାରିବ ? ଅଧ୍ୟୟନ ଓ ଅଧ୍ୟାପନା ଉଭୟ ଥାଏ ପ୍ରଶ୍ନବାଚୀ । ପରୀକ୍ଷାକେନ୍ଦ୍ରରେ ଅସାଧୁ ଉପାୟ ଚରମସୀମାରେ ପହଞ୍ଚିଥାଏ । କଲେଜର

ସୁନାମରେ ଯଥେଷ୍ଟ ଆଞ୍ଚ ଆସିଥାଏ । ସାଧାରଣ କ୍ଷେତ୍ରରେ କଲେଜର ଏତେ ଭୟଙ୍କର ବଦନାମ ହେଉଥାଏ ଯେ ମୁଣ୍ଡ ତଳକୁ ନଇଁପଡ଼େ । ଆମର ଅବା ଉପାୟ କ'ଣ ? ନୈତିକ ସାହସ ନଥାଏ ଏପରି ଦୁର୍ଗତିର ମୁକାବିଲା କରିବା ପାଇଁ ।

ଏହା ମଧ୍ୟରେ ପରିଚାଳନା ସମିତିର ନେତୃବୃନ୍ଦ ଚିହ୍ନା ନ ପଡ଼ି ସରକାରଙ୍କ ଶିକ୍ଷା ବିଭାଗ ସହିତ ଗୋପନରେ ପରାମର୍ଶ କରୁଥାଆନ୍ତି ସାହାଯ୍ୟ କରିବା ପାଇଁ । କାହିଁକି କେଜାଣି, ମୋ ଉପରେ ସିନିଅର ଅଧ୍ୟାପକ ମି. ବାନାର୍ଜୀ ଥାଉଁଥାଉଁ ମୋରି ମୁଣ୍ଡରେ ମାଟିଆ ଚିଲ ବସିପଡ଼ିଲା । ଶିକ୍ଷାମନ୍ତ୍ରୀ ମାନ୍ୟବର ଗଂଗାଧର ମହାପାତ୍ରଙ୍କୁ ତାଙ୍କ ବାସଭବନରେ ସାକ୍ଷାତ କରିବା ପାଇଁ ଏକ ଟେଲିଗ୍ରାମ ମୋତେ ମିଳିଲା । ଟେଲିଗ୍ରାମର ଭାଷା ଏହିପରି–

"Sri Pathani Patnaik, Reader in Oriya, Christ College, Keonjhar Colony, Tulasipur. Kindly make it convinience to meet minister education on 24th instant at nine A.M. in his Official Residence. Private Secretary, 24.6.1982.

ମୋ ମୁଣ୍ଡରେ ଚଡ଼କ ପଡ଼ିଲା, କାହିଁକି ଏପରି ଡାକରା !! ପୂର୍ବରୁ କୌଣସି ମନ୍ତ୍ରୀଙ୍କ ଘରକୁ ଯିବାର ଆବଶ୍ୟକତା ପଡ଼ିନଥିଲା । ଠିକଣା ବୁଝି ଅତ୍ୟନ୍ତ ସନ୍ତର୍ପଣରେ ଶିକ୍ଷାମନ୍ତ୍ରୀ ମାନ୍ୟବର ଗଂଗାଧର ମହାପାତ୍ରଙ୍କୁ ତାଙ୍କ କ୍ୱାର୍ଟରରେ ସାକ୍ଷାତ କଲି । ମାନ୍ୟବର ଶିକ୍ଷାମନ୍ତ୍ରୀ ଓ ମୁଁ ଉଭୟ ପୁରୀ ସହରର ବାସିନ୍ଦା । ଛାତ୍ରଜୀବନରୁ ସେ ମୋତେ ଜାଣିଥାଆନ୍ତି । କାରଣ ତାଙ୍କର କନିଷ୍ଠ ଭ୍ରାତା ଚନ୍ଦ୍ରଶେଖର ମହାପାତ୍ର ଜଣେ ଛାତ୍ରନେତା ଥିଲେ । ତାଙ୍କର ପୁରୀ ବାସଭବନରେ ପୁରୀ ଜିଲ୍ଲା ଛାତ୍ର କଂଗ୍ରେସର ଅନେକ ବୈଠକ ହେଉଥାଏ । ମୁଁ ସେଠାରେ ଯୋଗ ଦେଇଥାଏ । ଶ୍ରୀ ମହାପାତ୍ର ସମସ୍ତଙ୍କର ଗଙ୍ଗୁ ଭାଇନା । କି ବଡ଼, କି ସାନ, ସମସ୍ତେ ଏହି ନାମରେ ଡାକି ଥାଆନ୍ତି । ସେ ଆମର ଛାତ୍ରମାନଙ୍କୁ ଉତ୍ସାହିତ କରନ୍ତି ନାନା ଆଲୋଚନା ଛଳରେ । ପୁନଶ୍ଚ ଶ୍ରୀ ମହାପାତ୍ର ଥିଲେ ସ୍କୁଲ ଜୀବନରେ ମୋର ସାନ ଦାଦାଙ୍କର ସହପାଠୀ । ତେଣୁ ମୋତେ ଏହି ଛାତ୍ରଜୀବନରୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ।

ମନ୍ତ୍ରୀଙ୍କ ବାସଭବନରେ ଶ୍ରୀ ମହାପାତ୍ରଙ୍କୁ ସାକ୍ଷାତ କରୁକରୁ ସେ ମୋତେ ଅତ୍ୟନ୍ତ ଆଦରରେ କୁଣ୍ଢାଇ ପକାଇ ବୈଠକଖାନାକୁ ନେଇଗଲେ ଏବଂ ଆଦେଶ ଦେଲେ ତାଙ୍କ ସହିତ ଗୋଟିଏ ସୋଫାରେ ବସିବା ପାଇଁ । ଅତ୍ୟନ୍ତ ସଂକୋଚ ସହିତ ବସିଲି । ଛାତି ଧଡ଼ଧଡ଼ କରୁଥାଏ । କ'ଣ ପାଇଁ ଏ ଆଦର ? ମନ୍ତ୍ରୀଙ୍କୁ ଟେଲିଗ୍ରାମଟି ଦେଖାଇଲି । ସେ ତାକୁ ଦେଖୁଦେଖୁ କହିଲେ, ''ହଁ ମୁଁ ଜାଣିଛି ।'' ସହକାରୀକୁ ଚା' ପାଇଁ କହିଲେ ଏବଂ ବୈଠକ ଖାନାର ଦ୍ୱାର ବନ୍ଦ କରିଦେଲେ । ସେ ନ କହିଲା ପର୍ଯ୍ୟନ୍ତ ଆଉ କାହାକୁ ଛାଡ଼ିବ ନାହିଁ ବୋଲି ଇଙ୍ଗିତ କଲେ । ଏ ପ୍ରକାର ଅଭିନୟ ମୋର ଭୟକୁ ଦ୍ୱିଗୁଣିତ କରିଦେଲା । କହିଲି ସାର୍, ''ମୁଁ ଚା' ପିଏ ନାହିଁ ।'' ଆଦେଶ ଦେଲେ ପିଇବା ପାଇଁ । ଅନଭ୍ୟସ୍ତ ଭାବରେ ଗରମ ଚା' ପିଇଲାବେଳେ ଜିଭ ତାତିଗଲା । ତା'ପରେ ଆରମ୍ଭ ହେଲା ଅସଲ

ନାଟକୀୟ ଆଦେଶ । ମୋତେ ଏ ପର୍ଯ୍ୟନ୍ତ ଯେଉଁପରି ବ୍ୟବହାର କରୁଥିଲେ, ହଠାତ୍ ଓଲଟିଗଲେ । କହିଲେ, ମୋର ଆଦେଶ, ତୁ ଆସନ୍ତା ପହିଲାଦିନ ସକାଳେ କଲେଜର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରି ମୋତେ ତୁରନ୍ତ ଟେଲିଫୋନ କରି ଜଣାଇବୁ । ଏହା କହି ସଂଗେ ସଂଗେ ଆମ କଲେଜ ପରିଚାଳନା ସମିତିର ପ୍ରେସିଡେଣ୍ଟ ପି.କେ. ମହାପାତ୍ରଙ୍କୁ ଟେଲିଫୋନ କରି କହିଲେ–"ତୋ କଲେଜର ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କୁ ଡକାଇ ଆଣିଛି । ତାକୁ ଆଦେଶ ଦେଲି, ସେ ପହିଲା ଦିନ କଲେଜ ଦାୟିତ୍ୱ ଗ୍ରହଣ କରି ଆମ ଦୁହିଁଙ୍କୁ ଟେଲିଫୋନ କରି ଜଣାଇଦେବ । ଏଥିରେ ଅନ୍ୟଥା ହେବ ନାହିଁ ।" ମୁଁ ଭୋ ଭୋ କାନ୍ଦିବାକୁ ଲାଗିଲି । କହିଲି, "ସାର୍, ଆପଣ ମୋତେ ପିଲାଦିନରୁ ଜାଣିଛନ୍ତି । କଲେଜରେ ନିଆଁ ଜଳୁଛି । ମୋର ସିନିଅର ଅଧ୍ୟାପକ ଥାଉ ଥାଉ ମୋତେ କାହିଁକି ସେହି ନିଆଁ ଭିତରକୁ ଠେଲି ଦେଉଛନ୍ତି । ମୁଁ ଏଥିପାଇଁ ଯୋଗ୍ୟ ବୋଲି କେବେ ବିଚାରେ ନାହିଁ ।" ମୋର କାନ୍ଦିବା ଦେଖି ଛଳନା ସ୍ୱରରେ କହିଲେ, "ତୋତେ ସରକାରୀ ଆଦେଶ ପାଳନ କରିବାକୁ ହେବ । ମୁଁ ତ ଅଛି, ଭୟ କ'ଣ ?"

ନମସ୍କାର କରି ଅତ୍ୟନ୍ତ ଦୁଃଖରେ କଟକ ଫେରି ଆସିଲି । ମୁଁ ଜାଣିଥିଲି, ସରକାରଙ୍କର ଅଧିକାର ନାହିଁ ମୋତେ ଅଧ୍ୟକ୍ଷ ଆସନରେ ବସାଇଦେବା । ଏଥିପାଇଁ ଖ୍ରୀଷ୍ଟିଆନ ଏଜୁକେସନ ବୋର୍ଡ଼ର ନିଯୁକ୍ତି ପତ୍ର ଆବଶ୍ୟକ । ମୁଁ ଇଚ୍ଛା କରିଥିଲେ ମନ୍ତ୍ରୀଙ୍କ ପରାମର୍ଶ ଗ୍ରହଣ କରିନଥାନ୍ତି । ମାତ୍ର ମୋର ବିବେକ ଦଂଶନ କଲା । କଲେଜ ପିଲାମାନଙ୍କର ଚାରିଆଡ଼େ ଅତ୍ୟନ୍ତ ବଦନାମ । ମୁଁ ଅଧ୍ୟାପକ ହୋଇ ଏପରି କିଛି ଆଚରଣ କରିବା ଠିକ୍ ହେବ ନାହିଁ । ତଥାପି କଟକରେ ପହଞ୍ଚି ପରିଚାଳନା ସମିତିର ପୂର୍ବତନ ସଂପାଦକ ଇଞ୍ଜିନିୟର ମି. ପଣ୍ଡାଙ୍କୁ ତାଙ୍କ ବାସଭବନରେ ସଂଧ୍ୟାରେ ସାକ୍ଷାତ କରି ସମସ୍ତ କଥା କହିଲି । ତାଙ୍କ ସମୟରେ ମୁଁ ଥିଲି ପରିଚାଳନା ସମିତିର ଷ୍ଟାଫ୍ ପ୍ରତିନିଧି । ସେ ମୋତେ ଭଲ ଭାବରେ ଜାଣିଥିଲେ ଏବଂ ଶ୍ରଦ୍ଧା କରୁଥିଲେ । ମୋ ଉପରେ ଏହି ଦାୟିତ୍ୱ ଲଦି ଦିଆଯାଇଛି ଶୁଣି ସେ ଅତ୍ୟନ୍ତ ବ୍ୟସ୍ତ ହେଲେ । କହିଲେ, "ଆପଣଙ୍କୁ ଏ ଦୁଃଖ କିଏ ଦେଲା ଓ କାହିଁକି ?" ତାଙ୍କୁ କହିଲି, "ସାର୍, ଆପଣ ଏଜୁକେସନ ବୋର୍ଡ଼ର ଜଣେ ଟାଣୁଆ ସଭ୍ୟ । ଦୟାକରି ମୋ ବିରୁଦ୍ଧରେ ଦୁଇପଦ କହିବେ, ଏ ଦାୟିତ୍ୱ ତୁଲାଇବା ପାଇଁ ସେ ଅକ୍ଷମ ।" ଟିକିଏ ହସିଲେ । କହିଲେ, "ପଠାଣି ବାବୁ, ଏବେ ଟୋକାମାନଙ୍କର ରାଜ୍ୟ । ଆମ କଥା କିଏ ଶୁଣିବ ?" ମନମାରି ଫେରି ଆସିଲି ।

ପିଲାଦିନେ ଗପଟିଏ ଶୁଣିଥିଲି–ମେଁ କମ୍ୱଲକୋ ଛୋଡ଼ଦିଆ, ଲେକିନ୍ କମ୍ୱଲ ମୁଝେ ନହିଁ ଛୋଡ଼ା ।"

ଜୁନ୍ ମାସ ୨୮ ତାରିଖରେ ଖ୍ରୀଷ୍ଟିଆନ ଏଡୁକେସନ ବୋର୍ଡ଼ର ପରୁଆନା ମିଳିଲା । ସେଥିରେ ଆଦେଶ ଥିଲା ଏହିପରି–

Cuttack Christian Education Board
Office order

Dated the 28th June 1982

The Cuttack Christian Education Board has been pleased to appoint Sri Pathani Patnaik, Reader in Charge of Oriya Department, Christ College, Cuttack as Principal of the said College. Sri Patnaik is directed to take over charge of Principal, Christ College from Sri Simon Bihari, Principal-in- charge on 30th June, 1982 afternoon.

Sri Simon Bihari is directed to make over charge to Sri Pathani Patnaik, Principal on 30th June, 1982 afternoon and continue as Secretary of Christ College.

By decission of the C.C.E.B
A.K. Patra
Secretary. CCEB

i. Copy forwareded to Sri Pathani Patnaik/ Sri Simon Behari, President, Christ College governing body for necessary action.

ii Copy forwarded to the D.P.I. (H.E)/ Vice-Chancellor Utkal University, Bhubaneswar/ Secretary to join of Orissa Education and Youth Services Dept. for information.

୧୯୮୨ ମସିହା ଜୁଲାଇ ମାସର ସେହି ସ୍ମରଣୀୟ ପ୍ରଥମ ସକାଳ । ଅଧ୍ୟକ୍ଷ ଦାୟିତ୍ୱରେ ଥିବା ପରିଚାଳନା ସମିତିର ସଂପାଦକ ଶ୍ରୀ ସାଇମନ ବିହାରୀ ଆମର ଅଧ୍ୟାପକମାନଙ୍କ ବିଶ୍ରାମକକ୍ଷରୁ ଡାକିନେଲେ ଅଧ୍ୟକ୍ଷଙ୍କ ଅଫିସ୍‌ରୁମ୍‌କୁ ଏବଂ ମୋତେ ଅଧ୍ୟକ୍ଷଙ୍କ ଆସନ ଅଧିକାର କରିବା ପାଇଁ ଅନୁରୋଧ କଲେ । ଦାୟିତ୍ୱ ହସ୍ତାନ୍ତରର ପରୁଆନା ବଢ଼ାଇ ଦେଇ ମୋର ଦସ୍ତଖତ ଗ୍ରହଣ କଲେ । କ୍ଷମତା ହସ୍ତାନ୍ତରର ପ୍ରତିଲିପି ଥିଲା ଏହିପରି–

To :
The Secretary
Christ College Governing Body
Sir,

In response to C.C.E.B office order No. F/33-99 Dt. 28th June 1982 I have taken over charge as principal, Christ College from Sri S Behari, Secretary, Christ College today, the Ist July 1982 forenoon.

Your's Faithfully
Pathani Patnaik
Principal, Christ College, Cuttack

Made over charge of the duties of principal to Sri Pathani Patnaik, Reader in charge of Oriya Dept. This day, the Ist July 1982 fore noon.

S. Behari
1.7. 1982
Secretary-cum- Principal-in-charge, Christ College

ମୋର ଇଚ୍ଛା ବିରୁଦ୍ଧରେ ସରକାରୀ କଳ ପ୍ରୟୋଗ କରି ମୋ ଉପରେ ଅଧ୍ୟକ୍ଷ ଦାୟିତ୍ୱ ଲଦି ଦିଆଗଲା । ସେତେବେଳେ କଲେଜ ଯେଉଁ ସଂକଟ ମଧ୍ୟ ଦେଇ ଗତି କରୁଥିଲା, ତାହା ଥିଲା କଳ୍ପନାତୀତ । ସେଥିପାଇଁ ସରକାରୀ କଲେଜରୁ କେହି ଅଧ୍ୟକ୍ଷ ହୋଇ ଆସିବାକୁ ଆଗ୍ରହୀ ହେଲେ ନାହିଁ । ସରକାର ଏବଂ କଲେଜ ପରିଚାଳନା ସମିତି ବିକଟ ସମସ୍ୟାର ସମ୍ମୁଖୀନ ହେଲେ । ଏହି ସନ୍ଧିକ୍ଷଣରେ ସରକାରଙ୍କ ପ୍ରବଳ ଚାପରେ ପରିଚାଳନା କର୍ତ୍ତୃପକ୍ଷ ସେମାନଙ୍କର ପାରମ୍ପରିକ ଅଧ୍ୟକ୍ଷ ନିଯୁକ୍ତିକୁ ପରିବର୍ତ୍ତନ କରିବାକୁ ବାଧ୍ୟ ହେଲେ । ମୋରିଠାରୁ ଏକ ନୂତନ ପରମ୍ପରା ସୃଷ୍ଟି ହେଲା । କଲେଜର ଅଧ୍ୟାପକମାନେ ହିଁ ଏଣିକି ଅଧ୍ୟକ୍ଷ ଆସନ ଅଳଙ୍କୃତ କରିବେ । ବାହାରୁ କେହି ଆସିବାର ଅବକାଶ ନାହିଁ । ସରକାରୀ କଲେଜର ଅଧ୍ୟକ୍ଷମାନଙ୍କ ପରି ସମସ୍ତ ସୁବିଧା ଉପଭୋଗ କରିବେ । ଏହି ପ୍ରାଚୀନ ଘରୋଇ ମହାବିଦ୍ୟାଳୟରେ ଏହା ଥିଲା ଏକ ଯୁଗାନ୍ତକାରୀ ନିଷ୍ପତ୍ତି ।

ଦୀର୍ଘ ତିନି ଦଶନ୍ଧିକାଳ ଅଧ୍ୟାପକ ଜୀବନକୁ ଝୁରି ହେଉଥିଲି । ସମଗ୍ର ଛାତ୍ରସମାଜର ଶ୍ରଦ୍ଧା ଓ ସମ୍ମାନ ଲାଭ କରି ନିଜକୁ ଅତ୍ୟନ୍ତ ଭାଗ୍ୟବାନ ମନେ କରୁଥିଲି । କେହିଦିନେ ହେଲେ ମୋ ସମ୍ମାନର ଅଂଗୁଳି ନିର୍ଦ୍ଦେଶ କରିବା ଜଣା ନଥିଲା । କେତେ ସୁଖମୟ ଥିଲା ସେ ଅଧ୍ୟାପକୀୟ ଜୀବନ । ଅଧ୍ୟକ୍ଷ ଆସନରେ ବସିବା ସଂଗେସଂଗେ ଆରମ୍ଭ ହୋଇଗଲା ପ୍ରତିକ୍ରିୟାର ପ୍ରତିଧ୍ୱନି । କେତେ ଅନୁଶୋଚନା, କେତେ ଟେନ୍‌ସନ୍ । ରାତିରେ ଦୁଶ୍ଚିନ୍ତା ଯୋଗୁ ଭଲ ନିଦ ହୁଏ ନାହିଁ । ମନେମନେ ଭାବୁଥାଏ, ପ୍ରାରବ୍ଧଜନିତ କିଛି ପାପର ପ୍ରାୟଶ୍ଚିତ୍ତ ବୋଧହୁଏ କରିବାକୁ ହେଉଛି ।

ଦାୟିତ୍ୱ ନେଲି ବୋଲି ଛାତ୍ର ମହଲରେ ପ୍ରଚାର ହୋଇଗଲା । ଦଳଦଳ ହୋଇ ଛାତ୍ରନେତାମାନେ ଅଧ୍ୟକ୍ଷଙ୍କ ଅଫିସ୍ ଭିତରେ ଧସାଇ ପଶିଲେ ବିନା ଅନୁମତିରେ । ସତେ ଯେପରି ମୋତେ ଦମ୍ଭ ଦେଲାପରି କହିଲେ, ଆମ୍ଭେମାନେ ଖୁସି, ଆପଣଙ୍କୁ ପ୍ରିନ୍ସିପାଲ କରାଗଲା । ମୋର ପ୍ରତିକ୍ରିୟା ଥିଲା ଅତ୍ୟନ୍ତ ଅପ୍ରୀତିକର । କହିଲି ପିଲାମାନେ, ତୁମମାନଙ୍କ ଭୋଟ ପାଇ ମୁଁ ଏହି ରୁମ୍‌କୁ ଆସି ନାହିଁ । ଆଉଦିନେ ଏପରି କହିବ ନାହିଁ । ଏଣିକି ବିନା ଅନୁମତିରେ ଏ ରୁମ୍‌ରେ ପ୍ରବେଶ କରିବ ନାହିଁ ବୋଲି ଅନୁରୋଧ କରୁଛି । କିଛି ଆପତ୍ତି ଅଭିଯୋଗ ଥିଲେ ଜଣେ ଦୁଇଜଣ ଆସିଲେ ଯଥେଷ୍ଟ ହେବ । ତୁମମାନଙ୍କର ସହଯୋଗ କାମନା କରୁଛି । ମୋର ପ୍ରତିକ୍ରିୟାକୁ ଛାତ୍ରନେତାମାନେ ସୁସ୍ଥ ମନରେ ଗ୍ରହଣ କରିବା ଅବସ୍ଥାରେ ନଥିଲେ ।

ଅଳ୍ପ ସମୟ ପରେ ଆଉ ଜଣେ ଛାତ୍ରନେତା ସଦର୍ପରେ ଅଫିସରେ ପ୍ରବେଶ କଲେ । ମୁଁ ଏକାକୀ ବସି ଦୁଃସ୍ୱପ୍ନ ଦେଖୁଥାଏ । ବିନା ସଂକୋଚରେ ମୋର ଅନୁମତି ନନେଇ ଟେବୁଲରେ ଥିବା ଟେଲିଫୋନ ରିସିଭର ଧରିବାକୁ ଆଗେଇ ଆସିଲେ । ପଚାରିଲି, ହଠାତ୍ କ'ଣ ଏପରି ଆବଶ୍ୟକ ହେଲା ଟେଲିଫୋନ୍ କରିବା ପାଇଁ । ସେ କହିଲେ, "ଘରେ ଗୋଟାଏ କାମ ଅଛି ।" କହିଲି, ତୁମମାନଙ୍କର ବ୍ୟକ୍ତିଗତ କାମ ପାଇଁ କଲେଜ

ଟେଲିଫୋନ ବ୍ୟବହାର କର ନାହିଁ । ସେପରି ଅନୁମତି ଦିଆଯାଇପାରିବ ନାହିଁ । ଅତୀତରେ ଏକାଧିକ ଛାତ୍ର ପ୍ରିନ୍ସପାଲଙ୍କ ଟେବୁଲ ପାଖରେ ଏହିପରି କାରବାର କରି ଆସିଥିଲେ । ତେଣୁ ସେ ମୋ ଉପରେ ଅସନ୍ତୁଷ୍ଟ ହେବା ସ୍ୱାଭାବିକ । ତାକୁ ବୁଝାଇଲି, ଖରାପ ଭାବ ନାହିଁ । ତୁମେ ବ୍ୟକ୍ତିଗତ ଆଳାପ କରୁଥିବ, ହଠାତ୍ ସରକାରୀ ଓ ବିଶ୍ୱବିଦ୍ୟାଳୟର ଅଫିସର ଅଥବା ପିଲାଙ୍କ ମୁରବୀମାନେ ଆସି ପହଞ୍ଚିଯିବେ, ସେମାନଙ୍କର କ'ଣ ଧାରଣା ହେବ କଲେଜ ବିଷୟରେ । ତାର ସମ୍ମାନ ରକ୍ଷା କରିବା ତୁମ୍ଭମାନଙ୍କର ଦାୟିତ୍ୱ । ୧.୭.୧୯୮୨ ରେ କଲେଜ ଦାୟିତ୍ୱ ଗ୍ରହଣ କଲି । ସେହି ମାସର ୧୨ ତାରିଖ ଦିନ ପୂର୍ବାହ୍ନରେ ଷ୍ଟାଫ୍ କାଉନସିଲର ବୈଠକ ଡାକିଲି । କେଉଁ ପରିସ୍ଥିତିରେ ଏହି ଦାୟିତ୍ୱ ମୋ ଉପରେ ବାଧ କରି ସରକାର ପ୍ରଚ୍ଛନ୍ନ ଭାବରେ ରହି ଲଦିଦେଲେ, ସେ ଇତିହାସ କହିଲି ସହକର୍ମୀମାନଙ୍କୁ । ପୂର୍ବେ ଷ୍ଟାଫ୍ କାଉନ୍‌ସିଲ୍ କହିଲେ କେବଳ ଅଧ୍ୟାପକମାନଙ୍କର ବୈଠକୀକୁ ବୁଝାଉଥିଲା । ମାତ୍ର ମୁଁ ଇଚ୍ଛାକରି କଲେଜର ଲାବୋରେଟରୀ ଆସିଷ୍ଟାଣ୍ଟ, ଅଫିସ୍ କର୍ମଚାରୀ ଏବଂ ପିଅନମାନଙ୍କୁ ମଧ୍ୟ ଏହି ସଭାକୁ ନିମନ୍ତ୍ରଣ କଲି । କଲେଜ ଇତିହାସରେ ଏହା ଥିଲା ଏକ ନୂଆ କଥା । ସମସ୍ତଙ୍କର ସହଯୋଗ କାମନା କଲି । ପ୍ରାର୍ଥନା କଲି, ଆମେ ସମସ୍ତେ ଏକାଠି ହେଲେ କଲେଜର ଶାନ୍ତି ଫେରି ଆସିବ । ପ୍ରତ୍ୟେକ ସମସ୍ୟା ହେବ ଆମ ସମସ୍ତଙ୍କର ସମସ୍ୟା । ପ୍ରିନ୍ସପାଲ ମୁଣ୍ଡରେ ଅଠାବୋଳି ଦେଇ ବାହାରେ ରହି ନାଟକ ଅଭିନୟ ଉପଭୋଗ କରିବେ ନାହିଁ । ଆମର କୁଆଡ଼େ ବଦଳି ନାହିଁ । କଲେଜ ଆମର । ସମଗ୍ର ଚାକିରୀକାଳ ଏହିଠାରେ ବିତିବ । ଛାତ୍ରମାନେ ସାମୟିକ ଆସୁଥିବେ ଓ ଯାଉଥିବେ । କତିପୟ ଛାତ୍ରନେତାଙ୍କର ବିଶୃଙ୍ଖଳ ଆଚରଣ ପାଇଁ ଆଜି ଘରେ ବାହାରେ ଚାରିଆଡ଼େ କଲେଜର ବଦନାମ । ଆପଣମାନେ ଆନ୍ତରିକ ସହଯୋଗ କଲେ ଏଥିରୁ ଆମେ ମୁକ୍ତିଲାଭ କରିବାକୁ ଚେଷ୍ଟା କରିବା । ସରକାର ଭବିଷ୍ୟତରେ କଠୋର ପଦକ୍ଷେପ ନେଇପାରନ୍ତି ଯଦି ଏହି ପ୍ରକାର ଦୁରବସ୍ଥା ଲାଗି ରହେ । ଏହି ଶେଷ ଉଦ୍ୟମରେ ସଫଳ ନହେଲେ ସରକାର କଲେଜର ଦାୟିତ୍ୱ ନିଜେ ଗ୍ରହଣ କରିପାରନ୍ତି ଅଥବା ଏହି କଲେଜର ପରୀକ୍ଷା କେନ୍ଦ୍ର ବାତିଲ କରିଦେବା ଅସମ୍ଭବ ନୁହେଁ । ଏହା ଆମ ସମସ୍ତଙ୍କର ଆତ୍ମସମ୍ମାନର ପ୍ରଶ୍ନ । ଅନେକ ଅଧ୍ୟାପକ ନିର୍ଦ୍ଦିଷ୍ଟ ସମୟରେ କ୍ଲାସ୍‌କୁ ଯାଆନ୍ତି ନାହିଁ, ବିନା ଦରଖାସ୍ତରେ ଘରେ ରହିଯାଆନ୍ତି ଏବଂ ଷ୍ଟାଫ୍ କାଉନସିଲ୍‌ରେ ଯୋଗଦେବାକୁ ଭୃକ୍ଷେପ କରନ୍ତି ନାହିଁ । ଏହା ଏଣିକି ସହ୍ୟ କରାଯିବ ନାହିଁ । ତାହାର ପ୍ରଥମ ପଦକ୍ଷେପ ଆଜିଦିନରୁ ଆରମ୍ଭ ହେବ । ଯେଉଁ ଅଧ୍ୟାପକମାନେ ଆଜି ଅନୁପସ୍ଥିତ ରହିଛନ୍ତି ଅଥଚ ଛୁଟୀ ଦରଖାସ୍ତ ଦେଇ ନାହାନ୍ତି, ସେମାନେ ଦୟାକରି ଛୁଟୀ ଦରଖାସ୍ତ ଦେବେ ବୋଲି ଆଶା କରୁଛି । ଏଠାରେ ଅନୁପସ୍ଥିତି କୌଣସି ମତେ ସହ୍ୟ କରାଯିବ ନାହିଁ ।

ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ମୋର ସିନିଅର ଅଧ୍ୟାପକ ଇଂରାଜୀ ବିଭାଗର ରିଡ଼ର ଓ ମୁଖ୍ୟ କଲେଜରେ ଥାଇ ମଧ୍ୟ ଷ୍ଟାଫ୍ କାଉନସିଲ୍ ମିଟିଂକୁ ଆସି ନାହାନ୍ତି । ମୁଁ

ବଡ଼ ଅସୁବିଧାରେ ପଡ଼ିଲି । ବିରାଡ଼ି ବେକରେ ଘଣ୍ଟି ବାନ୍ଧିବ କିଏ ? କର୍ତ୍ତବ୍ୟ ନିକଟରେ କୌଣସି ସଂକୋଚ ରହିବା ଉଚିତ ନୁହେଁ । ଅଧ୍ୟାପକଙ୍କୁ ଡକାଇ ଆଣିଲି ପ୍ରିନ୍ସିପାଲ ଅଫିସ୍‌କୁ । ବିନୀତ ଭାବରେ କହିଲି, ଆପଣ ମୋର ସିନିଅର । ଆପଣଙ୍କର ଆଶୀର୍ବାଦ ଓ ସହଯୋଗ କାମନା କରୁଛି । କଲେଜରେ ଥାଇ ମଧ୍ୟ ଆପଣ ଏପରି ଏକ ଗୁରୁତ୍ୱପୂର୍ଣ୍ଣ ଷ୍ଟାଫ୍ କାଉନସିଲ୍‌ରେ ଯୋଗ ଦେବାକୁ ଉଚିତ ମନେକରି ନାହାନ୍ତି । ଆପଣ ଦୟାକରି ଛୁଟୀ ଦରଖାସ୍ତ କରନ୍ତୁ । ସେ ଥିଲେ ଜଣେ ଅତ୍ୟନ୍ତ ସମ୍ମାନିତ ଅଧ୍ୟାପକ । ପ୍ରଥମଦିନରୁ ହିଁ ମୋତେ ଏପରି ଅପ୍ରୀତିକର ନିଷ୍ପତ୍ତି ନେବାକୁ ପଡ଼ିଲା । ଅନ୍ୟ ଯେଉଁମାନେ ଅନୁପସ୍ଥିତ ଥାଇ ଆଳ ଖୋଜୁଥିଲେ, ବାଧ୍ୟ ହୋଇ ସମସ୍ତେ ଛୁଟୀ ନେଇଗଲେ । ଅଧ୍ୟାପକ ମହଲରେ ଏକ ମିଶ୍ରିତ ହଇଚଇ ସୃଷ୍ଟି ହେବା ସ୍ୱାଭାବିକ ।

ଦାୟିତ୍ୱ ନେବାର ଏହି ପ୍ରଥମ ଦିନରୁ ଅବସର ନେବା ପର୍ଯ୍ୟନ୍ତ ଛଅବର୍ଷକାଳ କଲେଜରେ ପ୍ରତ୍ୟେକଦିନ ପ୍ରଦକ୍ଷିଣ କରି କ୍ଲାସ୍ ପରିଦର୍ଶନ କରୁଥିଲି । ବିଶୃଙ୍ଖଳ ଛାତ୍ରମାନଙ୍କୁ ଅନୁରୋଧ କରୁଥିଲି କ୍ଲାସ୍‌ରୁମ୍‌ରେ ମନୋଯୋଗୀ ହେବା ପାଇଁ । ନୀତିନିୟମ ଖିଲାପ କରୁଥିବା ଅଧ୍ୟାପକ ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ତାଗିଦ କରୁଥିଲି । ଅଧ୍ୟକ୍ଷ ଆସନରେ ବସିଲାପରେ ଅନେକ ପ୍ରିନ୍ସିପାଲ କ୍ଲାସ୍ ନିଅନ୍ତି ନାହିଁ । ମାତ୍ର ଶେଷଦିନ ପର୍ଯ୍ୟନ୍ତ କ୍ଲାସ୍ ନେଉଥିଲି । ଅନୁଭବ କରୁଥିଲି, ଅଧ୍ୟକ୍ଷ ନିଜ କ୍ଲାସ୍ ନେଲେ ଶ୍ରେଣୀକକ୍ଷରେ ସମସ୍ୟା ସୃଷ୍ଟି କରୁଥିବା ଅମନଯୋଗୀ ପିଲାମାନେ ଅବା ବାଟକୁ ଆସିବେ । କାରଣ ସେମାନଙ୍କର ଦଣ୍ଡ ପାଇବାର ଭୟ ରହିବ । ସ୍ମରଣ କରୁଛି କଲେଜରେ ମୋର ଅନ୍ତିମ କାର୍ଯ୍ୟଦିବସର କଥା । ସବୁଦିନ ପରି ସେଦିନ ମଧ୍ୟ କ୍ଲାସ୍ ନେଇଥିଲି ଏବଂ ପ୍ରତ୍ୟେକ କ୍ଲାସ୍ ପରିଦର୍ଶନ କରିଥିଲି । ଦେଖିଲି, ବିଜ୍ଞାନ ଶ୍ରେଣୀର ଉଚ୍ଚତମ ପ୍ରାକ୍ଟିକାଲ ଶ୍ରେଣୀରେ ଜଣେ ବିଭାଗୀୟ ମୁଖ୍ୟ ଅନୁପସ୍ଥିତ । ସେ ଆସିଲେ ମୋତେ ସାକ୍ଷାତ କରିବେ ବୋଲି ଖବର ଦେଇ ଆସିଲି ତାଙ୍କର ସହକର୍ମୀ ଅଧ୍ୟାପକଙ୍କୁ । ପ୍ରାୟ ଦୁଇଘଣ୍ଟା ପରେ ସେ ତାଙ୍କର ସହକର୍ମୀଙ୍କଠାରୁ ମୋର ତାଗିଦା ଶୁଣି ତାଙ୍କର ବିଶ୍ରାମ କକ୍ଷରେ ପ୍ରବେଶ କଲେ । ସେଠାରେ କେତେଜଣ ସହକର୍ମୀ କହିଲେ, "ସାର୍, ଆଜି ଯମ ଯାଉଚି ।" କାରଣ ମୋତେ ବିଦାୟ ସମ୍ବର୍ଦ୍ଧନା ପାଇଁ ସନ୍ଧ୍ୟାରେ ଅଧ୍ୟାପକ କ୍ଲବ୍ ଆୟୋଜନ କରିଥାଆନ୍ତି । ବିଭାଗୀୟ ମୁଖ୍ୟ ତାଙ୍କର ବନ୍ଧୁମାନଙ୍କୁ କହିଲେ–"ନାହିଁରେ, ଆଜି ମଧ୍ୟ ଯମ ଛାଡ଼ିଲା ନାହିଁ ।"

ପରେପରେ ସେ ଆସି ମୋତେ ସାକ୍ଷାତ କଲେ । ତାଙ୍କର ସହକର୍ମୀଙ୍କୁ କହିଥିବା କଥା କହି ବିଳମ୍ବ ପାଇଁ ଦୁଃଖିତ ହେଲେ । କହିଲି, ଆଜି ମଧ୍ୟ କଲେଜରୁ ଦରମା ନେବି । ତେଣୁ ମୋର କର୍ତ୍ତବ୍ୟ କରିଛି । ଅନ୍ୟଥା ଭାବିବେ ନାହିଁ । ସେହି ବିଭାଗୀୟ ମୁଖ୍ୟ ବହୁପରେ କଲେଜର ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରି ଅବସର ନେଇଥିଲେ ।

ଘରେ ପଶୁପଶୁ ଚାଳି ବାଜିଲା । ଏ ସବୁ ବିଷୟରେ ମୁଁ ଅତ୍ୟନ୍ତ ଅନଭ୍ୟସ୍ତ । ବଡ଼ ଅଶାନ୍ତି ଭୋଗୁଥାଏ । ମୋର ପୂର୍ବତନ ଅଧ୍ୟକ୍ଷ ନୂତନ ହଷ୍ଟେଲରେ ସୁପରିଣ୍ଟେଣ୍ଡେଣ୍ଟ୍

ଥିବା ଅଧ୍ୟାପକଙ୍କୁ ମୁଁ ଦାୟିତ୍ୱ ନେବାର ପୂର୍ବ ମାସରେ ୧୯.୬.୧୯୮୨ ତାରିଖରେ ଦାୟିତ୍ୱରୁ ଅବ୍ୟାହତି ଦେଇ ଅନ୍ୟଜଣେ ଅଧ୍ୟାପକଙ୍କୁ ନିଯୁକ୍ତି ପ୍ରଦାନ କରି କଲେଜ ଛାଡ଼ି ଚାଲିଗଲେ । ହଷ୍ଟେଲରେ ଥିବା ଅଧ୍ୟାପକ ହଷ୍ଟେଲ ଛାଡ଼ିଲେ ନାହିଁ କି ପୂର୍ବତନ ଅଧକ୍ଷଙ୍କ ଆଦେଶକୁ ଭ୍ରୁକ୍ଷେପ କଲେ ନାହିଁ । ମୁଁ ଯୋଗଦେଲାପରେ ଏହି ନୂତନ ନିଯୁକ୍ତ ଅଧ୍ୟାପକ ମୋ ପାଖରେ ଆପତ୍ତି ଉଠାଇଲେ । ପୂର୍ବତନ ସୁପରିଟେଣ୍ଡେଣ୍ଟଙ୍କୁ ଡକାଇ ଅନୁରୋଧ କଲି ଦାୟିତ୍ୱ ହସ୍ତାନ୍ତର କରିବା ପାଇଁ । ମୁଁ ତ ନୂଆଲୋକ । ମୋ କଥା ଉପରେ କୌଣସି ଗୁରୁତ୍ୱ ଦେଲେ ନାହିଁ । ଯଦି ଅଧ୍ୟାପକମାନେ ଶୃଙ୍ଖଳିତ ଆଚରଣ କରିବେ ନାହିଁ, ଛାତ୍ରମାନଙ୍କଠାରୁ ଆମେ କ'ଣ ଆଶା କରିବା ? ସେହି ଅଧ୍ୟାପକଙ୍କୁ ବନ୍ଧୁ ଭାବରେ ଅନେକ ବିନତି କଲି ପୂର୍ବ ଅଧକ୍ଷଙ୍କର ଆଦେଶକୁ କାର୍ଯ୍ୟକାରୀ କରିବା ପାଇଁ । ସେ ମୋତେ ଦୟା କଲାପରି କହିଲେ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ସେ କଥା ମୁଁ ବୁଝିବି । ଅସମ୍ଭବ ଯୁକ୍ତି । ସମସ୍ୟାର ସମାଧାନ ପାଇଁ ତ ଦାୟିତ୍ୱ ମୁଣ୍ଡାଇଚି । ମୋତେ ଈଶ୍ୱର ଏକମାତ୍ର ଭରସା । ବିଜୁଳି କମ୍ପାନୀର ଏକ ବର୍ଷର ବିଲ ସେହି ଅଧ୍ୟାପକ ପୈଠ କରି ନଥିବାରୁ ହଷ୍ଟେଲକୁ ବିଜୁଳି ଯୋଗାଣ ବନ୍ଦ ହେବ ବୋଲି ଏକ ସରକାରୀ ଚିଠି ମୋର ହସ୍ତଗତ ହେଲା । ତାଙ୍କୁ ତୁରନ୍ତ ବିଲ ପୈଠ କରିବା ପାଇଁ କହିଲି । ନଚେତ ପିଲାମାନେ ହଇରାଣ ହେବେ ଏବଂ ଛାତ୍ର ଅଶାନ୍ତି ପାଇଁ ବାଟ ଖୋଲିଯିବ । ଛାତ୍ରନେତାମାନେ ଓର ଉଣ୍ଡୁଥାଆନ୍ତି, କିପରି ସୁଯୋଗ ମିଳିଲେ କିଛି ଗଣ୍ଡଗୋଳ ଆରମ୍ଭ କରି ନେତୃତ୍ୱ ଜାହିର କରିବେ । ଏଥିରେ ମଧ ଉକ୍ତ ଅଧ୍ୟାପକ ମୋତେ ଏକ ପ୍ରକାର ଖାତିର କଲେ ନାହିଁ ।

ଡି.ପି.ଆଇ. ଅଫିସରୁ କଲେଜ ଦରମା ବିଲ୍ ପୈଠ ହେଲାବେଳକୁ ବିଳମ୍ବ ହୋଇଯାଏ । ତେଣୁ କଲେଜର ସଞ୍ଚିତ ପାଣ୍ଠିରୁ କର୍ମଚାରୀମାନଙ୍କୁ ଅଗ୍ରୀମ ଦରମା ଦିଆଯାଇଥାଏ । ଏହା ଏକପ୍ରକାର ଘରୋଇ ବ୍ୟବସ୍ଥା । ଭାବିଲି, ଉକ୍ତ ଅଧ୍ୟାପକ ଯଦି ମୋ ସହିତ ସହଯୋଗ କରୁନାହାନ୍ତି, ମୁଁ କାହିଁକି ସହଯୋଗ କରିବି ? ତାଙ୍କର ଦରମା ବିଲ୍ କଲି ନାହିଁ । ଜଣେ ଅଧକ୍ଷ ଏପରି କଥା କରିବ ବୋଲି ତାହା ଥିଲା ତାଙ୍କର କଳ୍ପନାତୀତ । ମୋ ବିରୁଦ୍ଧରେ ସେ ପରିଚାଳନା ସମିତିର ସଂପାଦକଙ୍କୁ ଅଭିଯୋଗ କରି ଭଲେଇ ହେଲେ ଦରମା ନ ଦେଲେ ବାକିଆ ବିଜୁଳି ବିଲ୍ ପୈଠ କରିବି କିପରି ? ମୋ ନିଷ୍ପତ୍ତିରେ ମୁଁ ଅଟଳ ରହିଲି । କହିଲି, ଯେ କୌଣସି ଉପାୟରେ ବିଜୁଳି ବିଲ୍ ପୈଠ କରିବେ ଏବଂ ହଷ୍ଟେଲ ଦାୟିତ୍ୱ ହସ୍ତାନ୍ତର କରିବେ, ତା'ପରେ ଦରମା ବିଲ୍‌ରେ ଦସ୍ତଖତ୍ କରିବି । ତାହାହିଁ ହେଲା । ସେ ବିଜୁଳି ବିଲ୍ ପୈଠ କରିବାର ରସିଦ୍ ଏବଂ ଦାୟିତ୍ୱ ହସ୍ତାନ୍ତର କରିବାର କାଗଜ ମୋତେ ଦେଖାଇ ହଷ୍ଟେଲ ଛାଡ଼ିଲା ପରେ ଅନ୍ୟଜଣେ ଅଧ୍ୟାପକ ୨୮.୦୭.୮୨ ରେ ନୂତନ ଦାୟିତ୍ୱ ଗ୍ରହଣ କଲେ । ଏପରି ସମସ୍ୟା ସମାଧାନ ହୋଇଯିବାରୁ ମୋର ନିଜ ଉପରେ କ୍ରମଶଃ ଆସ୍ଥା ଜମିଲା । ଏହାର ପ୍ରତିକ୍ରିୟା ମଧ୍ୟ ହେଲା । ସମସ୍ତେ ଅନୁଭବ କଲେ ଯେ ଅବମାନନା କରି ନିଜସ୍ୱ ଢଂଗୀରେ ଚଳିବା ଆଉ

ନିରାପଦ ନୁହେଁ । ହୁଏତ କେତେକଙ୍କ ପାଖରେ ଅପ୍ରିୟ ହୋଇଥିବି, ମୋର ଉପାୟ କ'ଣ ଥିଲା ?

କଲେଜରେ କେତେଜଣ ସିନିଅର ଅଧ୍ୟାପକ ଅତ୍ୟନ୍ତ ପ୍ରଭାବଶାଳୀ ଥିଲେ । ଯେ କୌଣସି ଲୋକ ଅଧକ୍ଷ ହୋଇ ଆସନ୍ତୁ, ଏମାନେ ତାଙ୍କର ପାଖ ଲୋକ ଭାବରେ ନିଜର ପତିଆରା ଜାରି କରୁଥିଲେ । ସେମାନଙ୍କୁ ମୁଁ ମନେମନେ ନାଁ ଦେଇଥାଏ "ମହନ୍ତ ଅଧ୍ୟାପକ" । ସତେ ଯେପରି ସେମାନଙ୍କୁ ବାଦ ଦେଲେ କଲେଜ ଚାଲିପାରିବ ନାହିଁ । ଏମାନଙ୍କ ମଧ୍ୟରୁ କେତେଜଣ ଭିନ୍ନ ନାମରେ କଲେଜ ପାଇଁ ଜିନିଷ କ୍ରୟ କରି କମିସନି ଆକାରରେ ପ୍ରଚୁର ଲାଭବାନ ହେଉଥିଲେ । ପ୍ରଥମରୁ ଏହି ପ୍ରଥାକୁ ବନ୍ଦ କରି ଦେଇଥିଲି । ନିୟମ ଅନୁସାରେ କୋଟେସନ୍ ଆଣି ଅଫିସ୍ ଜରିଆରେ ଜିନିଷ ଆମଦାନୀ ହେବ ବୋଲି ନିର୍ଦ୍ଦେଶ ଦେଲି । କିଛି ଲୋକ ଅସନ୍ତୋଷ ପ୍ରକାଶ କଲେ ହେଁ ଆଉ ଠକେଇ ହେବାର ଆଶଙ୍କା ରହିଲା ନାହିଁ । କେତେକ ତୋଷାମଦକାରୀ ଅଧ୍ୟାପକ ପରିଚାଳନା ସମିତିର ସଂପାଦକଙ୍କୁ ପ୍ରଭାବିତ କରି ଅଧକ୍ଷଙ୍କ ଅଜାଣତରେ ଅନେକ କାର୍ଯ୍ୟ କରିପାରୁଥିଲେ । ବିଚରା ଅଧକ୍ଷ ନିଜକୁ ଅସହାୟ ମଣୁଥିଲେ । ପରିଚାଳନା ସମିତିର ସଂପାଦକ ଓ ମୋ ଭିତରେ ଉତ୍ତମ ବୁଝାମଣା ଥିଲା । କାରଣ ମୁଁ ଅନୁଭବ କରିଥିଲି ଯେ ଅତୀତରେ ଅନେକ ଅଧକ୍ଷ ଏହି ବୁଝାମଣା କରି ନପାରି ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ପରିଚାଳନା ସମିତିର ସହଯୋଗ ଓ ସମର୍ଥନ ଲାଭ କରିପାରି ନାହାନ୍ତି । ସଂପାଦକଙ୍କୁ ପ୍ରଥମରୁ ସତର୍କ କରି ଦେଇଥାଏ । ଆପଣ ନାନା ଲୋକଙ୍କ କଥା ସଂଗ୍ରହ କରିପାରନ୍ତି, ମାତ୍ର କଲେଜ ବିଷୟରେ ମୋତେ ଅତିକ୍ରମ କରି ବିଶ୍ୱାସକୁ ନ ନେଇ ଯଦି କିଛି କହିବେ, ମୁଁ ଦାୟିତ୍ୱରୁ ସେହି ମୁହୂର୍ତ୍ତରେ ଓହରି ଆସିବି । ଅଧକ୍ଷ ଆସନକୁ ଅସମ୍ମାନ କଲାଭଳି କୌଣସି କାର୍ଯ୍ୟରେ ମୁଁ ଭାଗୀଦାର ହେବି ନାହିଁ । ଦାୟିତ୍ୱ ନେବାର ପରମାସରେ ଅକ୍ଟୋବର ୧୬ ତାରିଖ ଦିନ ପରିଚାଳନା ସମିତିର ବୈଠକ ଆହୂତ ହେଲା । ପରିଚାଳନା ସମିତିରେ ଶିକ୍ଷକ ପ୍ରତିନିଧି ଥିବା ଜଣେ ପ୍ରଭାବଶାଳୀ ଅଧ୍ୟାପକ ଅଧକ୍ଷଙ୍କୁ ଅନ୍ଧାରରେ ରଖି ଜଣେ ଅଧ୍ୟାପକଙ୍କୁ ରିଡ଼ର ଭାବରେ ପ୍ରମୋସନ ଦେବା ପାଇଁ ପ୍ରସ୍ତାବ ଆଣିଲେ । ମୁଁ ଆଶ୍ଚର୍ଯ୍ୟ ହେଲି । ଜଣେ ଅଧ୍ୟାପକ ପ୍ରମୋସନ ପାଇବେ, ଏ କଥା ଅଧକ୍ଷଙ୍କ ଜ୍ଞାତସାରରେ ହେବ ନାହିଁ । ଏହି ରାଜନୀତି କରୁଥିବା ଅଧ୍ୟାପକ ବାହାଦୁରୀ ନେବେ । ପରିଚାଳନା ସମିତିକୁ ଜଣାଇଲି, ମୋର ଅଜାଣତରେ ଏପରି ପ୍ରସ୍ତାବ ଆସିଲା କିପରି ? ଏହିପରି ଏକାଧିକ ଅଧ୍ୟାପକଙ୍କ ପ୍ରମୋଶନ ବିଷୟ ବାକିଆ ରହିଛି । ସେମାନଙ୍କର ଚରିତ୍ରପଞ୍ଜି, ବିଭାଗୀୟ ମୁଖ୍ୟଙ୍କର ରିପୋର୍ଟ ବିଚାର କରି ମୁଁ ପରିଚାଳନା ସମିତିରେ ଉପସ୍ଥାପନ କରିବି ଆସନ୍ତା ବୈଠକରେ । ଅଧ୍ୟାପକ ପ୍ରତିନିଧିଙ୍କର ଏପରି ଅଧିକାର ନାହିଁ । ପରିଚାଳନା ସମିତି ମୋ ସହିତ ସହମତ ହେଲେ । ଏହି ଶିକ୍ଷକନେତା ଉତ୍‌କ୍ଷିପ୍ତ ହେଲେ ମଧ୍ୟ ନିଜର ସୀମା ମଧ୍ୟରେ ରହିବା ପାଇଁ ଏଣିକି ସଚେତନ ହେଲେ, ଅତ୍ୟନ୍ତ ବାଧ ହୋଇ । ତେବେ ତାଙ୍କ କ୍ରୋଧର ମୁଁ ଶିକାର ହୋଇଥିଲି ।

ଆଉ ଏକ ଦୁର୍ଘଟଣା । କଲେଜର ବଡ଼ଦିନ ଅବକାଶରେ ନୂଆ ହଷ୍ଟେଲ ବନ୍ଦ ଥାଏ । ଜଣେ ମହନ୍ତ ଅଧ୍ୟାପକ ଅଧ୍ୟକ୍ଷଙ୍କ ବିନା ଅନୁମତିରେ ହଷ୍ଟେଲର କେତୋଟି ଖଟ ଅଳ୍ପଦିନ ପାଇଁ କୌଣସି ସେବାକାରୀ ଅନୁଷ୍ଠାନକୁ ବ୍ୟବହାର ପାଇଁ ଦେଇଦେଲେ । ବିଚରା ହଷ୍ଟେଲ ପିଅନ ଅସହାୟ । ସେ ଏହି ପ୍ରଭାବଶାଳୀ ଅଧ୍ୟାପକଙ୍କର ଆଦେଶ ବାରମ୍ବାର ପାଳନ କରିଆସିଛି । କୌଣସି ଅଧ୍ୟକ୍ଷ ପାଟି ଫିଟାଇ ନାହାନ୍ତି । ଛୁଟୀ ଖୋଲିଲାପରେ ଏହି ଖବର ମୋର କର୍ଣ୍ଣଗୋଚର ହେଲା । ହଷ୍ଟେଲ ଦାୟିତ୍ୱରେ ଥିବା ପିଅନକୁ ଡାକି କଠୋର ଭାଷାରେ ସାବଧାନ କରିଦେଲି । ଏପରି ବେନିୟମ କାର୍ଯ୍ୟ କଲେ ଚାକିରୀ ହରାଇବାକୁ ପଡ଼ିବ । ସେହି ଅଧ୍ୟାପକଙ୍କୁ ମଧ୍ୟ ସାବଧାନ କରିଦେଲି । କଲେଜର ସମସ୍ତ ସମ୍ପତ୍ତିର ରକ୍ଷଣାବେକ୍ଷଣ ପାଇଁ ଅଧ୍ୟକ୍ଷ ହିଁ ଦାୟୀ । ତାଙ୍କର ବିନାନୁମତିରେ କୌଣସି ସମ୍ପତ୍ତିର ଅପବ୍ୟବହାର ପାଇଁ ଅନୁମତି ମିଳିବ ନାହିଁ । ବିଜ୍ଞାନ ବିଭାଗର ଗୋଟିଏ ଟେଲିଭିଜନ ସେଟ୍ ଓ ଗୋଟିଏ ଟେବୁଲ୍ ପଂଖା ବର୍ଷବର୍ଷ ଧରି କୌଣସି ଅଧ୍ୟାପକଙ୍କ ଘରେ ବ୍ୟକ୍ତିଗତ ବ୍ୟବହାରରେ ଲାଗିଥିଲା । ସମସ୍ତେ ପଛରେ କଥା ହେଲେ ମଧ୍ୟ କାହାର ସାହସ ଥିଲା ସେହି ସମ୍ପତ୍ତି ଉଦ୍ଧାର କରିବା ପାଇଁ ? ଆଫିସିକ ନିର୍ଦ୍ଦେଶ ଦ୍ୱାରା ସେ ସମ୍ପତ୍ତି କଲେଜକୁ ଫେରି ଆସିଲା ବହୁ ବର୍ଷ ପରେ ।

କଲେଜ ପାଠାଗାରର ଅନେକ ମୂଲ୍ୟବାନ ପୁସ୍ତକ ଅଧ୍ୟାପକମାନଙ୍କ ଘରେ ବହୁବର୍ଷ ଧରି ଜମା ହୋଇ ରହୁଥିଲା । ଜଣେ ଅଧ୍ୟାପକ ୨୦ ଖଣ୍ଡି ପୁସ୍ତକ ନେବେ ବୋଲି ନିୟମ ଥିଲେ ହେଁ କେତେଜଣଙ୍କ ଘରେ ଶତାଧିକ ମୂଲ୍ୟବାନ ପୁସ୍ତକ ଅଟକି ରହିଥିଲା । ଏଥିରୁ ଅନେକ ପୁସ୍ତକ ଅଧ୍ୟାପକମାନଙ୍କର ଚିହ୍ନା ପରିଚୟ ଛାତ୍ରମାନେ ନେଇ କଟକ ବାହାର କଲେଜରେ ଅଧ୍ୟୟନ କରୁଥିଲେ । ଆମର ଅନର୍ସ ପିଲାମାନେ ଖୋଜିଲେ ସେ ବହି ଆସିବ କେଉଁଠୁ ? କଲେଜ ପାଠାଗାରରେ ବହିର ଅଭାବ ଅଛି ବୋଲି ପିଲାମାନେ ବାରମ୍ବାର ଦାବୀ କରିଥାଆନ୍ତି । ତାଙ୍କ କଥା ଶୁଣୁଛି କିଏ ! ଲାଇବ୍ରେରୀ ଦାୟିତ୍ୱରେ ଥିବା ଜଣେ ସିନିଅର ଅଧ୍ୟାପକ ମୋତେ ଏହି ବିକଳ ବିବରଣୀ ପ୍ରଦାନ କଲେ । ନାନା ଅନୁରୋଧ ଓ ଶେଷରେ ଆଫିସିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବାର ଚେତାବନୀ ପରେ ମୋତେ ଦୀର୍ଘ ଛଅମାସ ଲାଗିଲା ଏହି ମୂଲ୍ୟବାନ ବହିତକ ପାଠାଗାରକୁ ଫେରାଇ ଆଣିବା ପାଇଁ ।

କଲେଜ କମ୍ପାଉଣ୍ଡ ପରିଦର୍ଶନ କରିବା ସମୟରେ ହଠାତ୍ ପ୍ରବେଶ କଲି ଛାତ୍ରୀମାନଙ୍କର ପରିସ୍ରାଗାରରେ । ମୋ ସହିତ କଲେଜ ହେଡ଼ ପିଅନ ସବୁବେଳେ ରହିଥାଏ । ଭିତରେ ଦେଖିଲି ଘର ଛାତକୁ ଲାଗି ଅସଂଖ୍ୟ ଭଂଗା ଗାଣ୍ଡୁଆ ସେ ଘରେ ଜମା ହୋଇଛି । କଳରେ ପାଣି ଆସୁ ନାହିଁ । ବେସିନ୍ ବୋଧହୁଏ କେଉଁକାଳୁ ସଫା ହେଉ ନାହିଁ । ଘର ଭିତରୁ ଦୁଆର ବନ୍ଦ କରିବା ପାଇଁ ଶିକୁଳି ଓ ହୁକ୍ ନାହିଁ । ଆଶ୍ଚର୍ଯ୍ୟର କଥା ଯେ ଏ ବିଷୟରେ କେହି ଦୃଷ୍ଟି ଦେଇ ନାହାନ୍ତି । ଅଧ୍ୟକ୍ଷମାନେ ବା କାହିଁକି ସାମାନ୍ୟ ୟୁରିନାଲ ଖବର

ରଖିବେ । ଆମର ଛାତ୍ରୀମାନଙ୍କର ସହିବା ଶକ୍ତିକୁ ଧନ୍ୟବାଦ ଦେଲି । କଲେଜ ଏହି କାର୍ଯ୍ୟ ତଦାରଖ ପାଇଁ ଲୋକ ନିଯୁକ୍ତି କରିଛି । ସେ ତାର ଦାୟିତ୍ୱ ତୁଲାଉ ନାହିଁ । କହିବାକୁ କେହି ନାହିଁ । ହେଡ଼ ପିଅନକୁ କହିଲି, କାଲି ସକାଳେ ଆସିବା ପୂର୍ବରୁ ଏ ଭଂଗା ଗାଣ୍ଡୁଆତକ କଢ଼ାଯାଇ ବାହାରେ ନିଆଁ ଲଗାଇ ଦିଆଯିବ । ଏ ଘର ପାଣି ଓ ଫିନାଇଲ ପକାଇ ଭଲ କରି ଧୂଆ ହେବ । ବଢ଼େଇ ଡାକି ତୁରନ୍ତ ଶିକୁଳି ଓ ହୁକ ଲଗାଯିବ । ମିସ୍ତ୍ରୀକୁ ଡାକି ପାଣିକଳକୁ ସଜଡ଼ା ଯିବ । ସୁଖର କଥା ମାତ୍ର ଦୁଇଦିନ ମଧ୍ୟରେ ସେ ଘର ହସି ଉଠିଲା ଏବଂ ଛାତ୍ରୀମାନେ ଅତ୍ୟନ୍ତ ସୁଖୀ ହେଲେ ।

ମୋତେ ଜଣେ ଅଧାପକ ବନ୍ଧୁ କୌତୁକରେ ପଚାରିଲେ, ଆପଣ ସବୁଦିନ ରାଉଣ୍ଡରେ ଯାଆନ୍ତି କାହିଁକି ? କହିଲି, ଠିକ୍ ସମୟରେ କ୍ଲାସ୍ ହେଉଛି କି ନାହିଁ ଜାଣିବା ପାଇଁ । ପିଲାମାନଙ୍କର ମନ କ୍ଲାସ୍ ପଢ଼ାରେ ଲାଗିଗଲେ ଚଗଲା ହେବା ପାଇଁ ସୁଯୋଗ ପାଇବେ ନାହିଁ । ବାହାରୁ ଆସୁଥିବା ଅସାମାଜିକ ଲୋକ ମଧ୍ୟ ପଇନ୍ତରା ମାରିବାକୁ ସାହସ କରିବେ ନାହିଁ । ଯଦି କୌଣସି କ୍ଲାସ୍‌ରେ ଶିକ୍ଷକ କୌଣସି କାରଣରୁ ଅନୁପସ୍ଥିତ, ତାହାହେଲେ ପିଲାମାନଙ୍କୁ ବିଶ୍ରାମ କକ୍ଷକୁ ଯିବା ପାଇଁ ତାଗିଦା କଲେ କଲେଜ ବାରଣ୍ଡାରେ ଅଯଥା କୋଳାହଳ ହୋଇ ଅନ୍ୟ ଶିକ୍ଷକମାନଙ୍କ ଶିକ୍ଷାଦାନରେ ବାଧା ଉପୁଜିବ ନାହିଁ । କେବଳ ସେତିକି ନୁହେଁ, ଅନେକ ସମୟରେ କୌତୁକ କରିବା ପାଇଁ କଲେଜ କାନ୍ଥବାଡ଼ରେ କେହି କେହି ଆପତ୍ତିଜନକ ଶବ୍ଦ ଲେଖିଥିବା ଦେଖାଯାଏ । ତାକୁ ଦେଖିଲେ ଅନ୍ୟମାନେ ମଧ୍ୟ ଆଗ୍ରହୀ ହୁଅନ୍ତି ଆଉ ପଦେ ଯୋଡ଼ି ଦେବାପାଇଁ । ରାଉଣ୍ଡବେଳେ ଯଦି ତାହା ନଜରରେ ପଡ଼ିଲା, ସଙ୍ଗେ ସଙ୍ଗେ ଲିଭାଇ ଦେବାର ବ୍ୟବସ୍ଥା କରାଯାଏ । ଓଡ଼ିଶାର ଅନେକ ବଡ଼ସ୍ଥାନ ମହାବିଦ୍ୟାଳୟ ଓ ପ୍ରତିଟି ବିଶ୍ୱବିଦ୍ୟାଳୟକୁ ସାଂସ୍କୃତିକ ଉତ୍ସବରେ ନିମନ୍ତ୍ରିତ ହୋଇ ଯୋଗଦାନ କରିବାର ସୁଯୋଗ ପାଇଥିଲି । କଲେଜ ନିର୍ବାଚନ ଜନିତ ନାନା ଲେଖା କାନ୍ଥବାଡ଼କୁ ସର୍ବତ୍ର ବିକୃତ କରିଥାଏ । ମୁଁ ଦାୟିତ୍ୱ ନେବାବେଳେ ଆମ କଲେଜର କାନ୍ଥବାଡ଼ ଓ ଶ୍ରେଣୀ କକ୍ଷର କାନ୍ଥରେ ମଧ୍ୟ ଅସଂଖ୍ୟ ବିଜ୍ଞାପନର ବିକୃତି ରାଜପଣ କରୁଥିଲା । ଲାଲ ରଙ୍ଗରେ ସମଗ୍ର ବିଲ୍‌ଡ଼ିଂକୁ ଧଉଳି ଦେଇ ଛାତ୍ରନେତାମାନଙ୍କୁ ବିଶ୍ୱାସକୁ ନେଇଥିଲି । ମୋ ଅମଳରେ ବର୍ଷ ପରେ ବର୍ଷ ଛାତ୍ରମାନେ ନିର୍ବାଚନରେ ଅଂଶଗ୍ରହଣ କରିଥିଲେ ହେଁ ଏକ ବର୍ଗଇଞ୍ଚ କାନ୍ଥକୁ ସେମାନେ ଅସୁନ୍ଦର କରିବାକୁ ଆଗ୍ରହୀ ହୋଇ ନଥିଲେ । ମୋର ବିଶ୍ୱାସ ହେଲା, ଥରେ ଛାତ୍ରମାନଙ୍କୁ ଆପଣାର କରି ବିଶ୍ୱାସକୁ ନେଇ ପାରିଲେ ଅସମ୍ଭବ ମଧ୍ୟ ସମ୍ଭବ ହୋଇ ପାରିବ କଲେଜର ସୁନାମ ଓ ଇଜ୍ଜତ ରକ୍ଷାପାଇଁ ।

ଅନେକ ସମୟରେ କତିପୟ ସହକର୍ମୀ ଅଧାପକ ଅଧ୍ୟକ୍ଷଙ୍କୁ ଅସୁବିଧାରେ ପକାଇ ମଜା ଦେଖନ୍ତି । ସେମାନେ ଏକପ୍ରକାର ସାଡ଼ିଷ୍ଟ । କିଛି ଛାତ୍ରନେତାଙ୍କୁ ହାତବାରିଶି କରି ସେମାନେ ଯାବତୀୟ ଅନର୍ଥର କାରଣ ହୋଇଥାଆନ୍ତି । ଅଥଚ ନିଜର କର୍ତ୍ତବ୍ୟ ସାଧନରେ ଅମନଯୋଗୀ ହେବା ଏବଂ ଚେଷ୍ଟା କରି କୌଣସି ପ୍ରକାର ଅଧ୍ୟକ୍ଷଙ୍କୁ ଅପଦସ୍ତ କରିବାଥାଏ

ସେମାନଙ୍କର ହୀନ ପ୍ରଚେଷ୍ଟା । ଅସହିଷ୍ଣୁ ନ ହୋଇ ସେମାନଙ୍କୁ ଦାୟିତ୍ୱ ଅର୍ପଣ କରି ଆପଣାର କରିବାପାଇଁ ଉଦ୍ୟମ କଲେ । ମାତ୍ର ସେମାନଙ୍କ ପ୍ରତି ତୀକ୍ଷ୍ଣ ନଜର ରଖିବାକୁ ହୁଏ ଗୋପନରେ । କର୍ତ୍ତବ୍ୟରେ ଖିଲାପ କଲେ କିମ୍ବା କିଛି ମନ୍ଦ ଉଦ୍ଦେଶ୍ୟ ରଖି କାର୍ଯ୍ୟସାଧନ କଲେ ସେମାନେ ନିଜେ ହିଁ ସମସ୍ତଙ୍କ ଚକ୍ଷୁରେ ଅପଦସ୍ତ ହେବାର ଆଶଙ୍କା ଥାଏ । ଗୋଟିଏ ଘଟଣା ମନେପଡୁଛି । ଅଧ୍ୟକ୍ଷ ଆସନରେ ଅଳ୍ପଦିନର ଅବସ୍ଥିତି । ଲକ୍ଷ୍ୟକଲି, ଅଫିସ ବାରଣ୍ଡାରେ ଜଣେ ପୁସ୍ତକ ପ୍ରକାଶକ ମନମାରି ପଦଚାରଣ କରୁଛନ୍ତି । ତାଙ୍କୁ ଡକାଇ ଆଣି ଆସିବାର ଉଦ୍ଦେଶ୍ୟ ପଚାରିଲି । ସେ କହିଲେ- ଏକବର୍ଷ ପୂର୍ବେ ସେ କଲେଜ ପାଠାଗାରକୁ କିଛି ବହି ଯୋଗାଇ ଦେଇଥିଲି । ବାରମ୍ବାର ଦଉଡ଼ି ଦଉଡ଼ି ନିରାଶ ହେଉଛି । ମୋର ବିଲ୍ ପୈଠ ହେଉନାହିଁ । ଆକାଉଣ୍ଟାଟ୍‌ଙ୍କୁ ପଚାରିବାରୁ ସେ କହିଲେ, ଏ ଫାଇଲ ବର୍‌ସାର୍‌ଙ୍କ ପାଖରେ । ସେ ବିଲ ଦସ୍ତଖତ କଲେ ସିନା ଆମେ ଦେୟ ଟଙ୍କାର ଚେକ ଲେଖିବୁ । ବାରସାର୍‌ଙ୍କୁ ଖବର ଦେଲି ସାକ୍ଷାତ କରିବାପାଇଁ । ସେ ଇଚ୍ଛାକରି ମୋତେ କରଛଡ଼ା ଦେଉ ଥାଆନ୍ତି । ଆସୁ ନାହାନ୍ତି କି ଫାଇଲ ଦେଉନାହାନ୍ତି । ଏହିପରି ତିନିଦିନ ଅପେକ୍ଷା କଲି । ଚତୁର୍ଥଦିନ ବର୍‌ସାର୍‌ଙ୍କ ଆଲମାରି ଚାବି ଭାଙ୍ଗି ଫାଇଲ କାଢ଼ିଲି । ଅଫିସ ଫାଇଲ ପାଇ କହିଲା ଯେ ପ୍ରକାଶକ ନିୟମ ଅନୁସାରେ ବିଲ୍‌ର ଦୁଇ କପି ଦେଇନାହାନ୍ତି । ଆମ ଅଫିସର ସମ୍ମାନ ରକ୍ଷା କରି ପ୍ରକାଶକଙ୍କୁ କହିଲି, ଭୁଲ ଆପଣଙ୍କ ପାଖରେ । ସେ କହିଲେ, ଏହା କହିଥିଲେ ମୁଁ ତୁରନ୍ତ ପୈଠ କରିପାରିଥାଆନ୍ତି । ବର୍ତ୍ତମାନ ଦୋକାନକୁ ଯାଇ ବିଲ୍‌ର କପି ଆଣି ଦେଉଛି । ଏହି ଆଳରେ ଏକବର୍ଷ ଜଣକୁ ହଇରାଣ କରିବାକୁ ବର୍‌ସାର୍ କୁଣ୍ଠିତ ହେଲେ ନାହିଁ । ଏହାଦ୍ୱାରା କଲେଜ ଯେ ଅପଦସ୍ତ ହେଉଛି ସେ ବିଷୟରେ ସେ ସଚେତନ ନଥିଲେ । ବିଲ୍‌ଟି ପାସ୍ କରି ତୁରନ୍ତ ଚେକ୍ ଲେଖିଲି ଏବଂ ବର୍‌ସାର୍‌ଙ୍କୁ ସାବଧାନ କରିଦେଲି । କିଛିଦିନ ପରେ ତାଙ୍କୁ ସେହି ଦାୟିତ୍ୱରୁ ଅନ୍ତର କରାଗଲା ପରିଚାଳନା ସମିତିର ପରାମର୍ଶରେ ।

ଆଉଜଣେ ପ୍ରଭାବଶାଳୀ ଅଧ୍ୟାପକଙ୍କ କୀର୍ତ୍ତି ମନେପଡୁଛି । ସେ ଉପରେ ପଡ଼ି ଅଫିସର ଅନେକ କାର୍ଯ୍ୟ କରି ଦିଅନ୍ତି । ତେଣୁ ଅଫିସ ଉପରେ ଅଧ୍ୟକ୍ଷଙ୍କ ଅପେକ୍ଷା ତାଙ୍କର ଭିତିରିଆ ପ୍ରଭାବ ସର୍ବଦା କାମ କରୁଥାଏ । ଅଧ୍ୟକ୍ଷ କୌଣସି ବିଶୃଙ୍ଖଳ କର୍ମଚାରୀକୁ କୈଫିୟତ ମାଗିଲେ ସେ ସେମାନଙ୍କର ଓକିଲ ସାଜି ତାଙ୍କ ସପକ୍ଷରେ ଅଭିଯୋଗର ଉତ୍ତର ଡାକି ଦିଅନ୍ତି । ଅଥଚ ଏଣେ ଲୋକ ଦେଖାଣିଆ ଭାବରେ ଅଧ୍ୟକ୍ଷଙ୍କ ପାଖ ଲୋକ ଭାବରେ ତାଙ୍କର ପରିଚୟ ଥାଏ । ବହୁ ବିଳମ୍ବରେ ଏହି ମହାତ୍ମାଙ୍କର ଅସଲ ପରିଚୟ ଲାଭ କଲି । ସେ ଭୂତ ହୋଇ ଲାଗନ୍ତି, ପୁନଶ୍ଚ ଗୁଣିଆ ହୋଇ ଉଦ୍ଧାର କରନ୍ତି । ତେଣୁ ବିଶୃଙ୍ଖଳ କର୍ମଚାରୀମାନଙ୍କୁ ସୁଧାରିବା କଷ୍ଟକର ବ୍ୟାପାର । ବିଚରା ଅଧ୍ୟକ୍ଷ କେବଳ କଳବଲ ହେଉଥାଏ । ଜଣେ ପିଅନ ପ୍ରତ୍ୟେକ ଦିନ ମଦ୍ୟପାନ କରି କଲେଜରେ ବିଚରଣ କରେ । ଅଶାଳୀନ ବ୍ୟବହାର କରୁଥାଏ । ତାକୁ ସାହସ କରି କେହି କାମ ବରାଦ କରନ୍ତି

ନାହିଁ, ମନଇଚ୍ଛା ଆସେ । ନଚେତ୍ ଅନେକ ଦିନ ବିନା ଦରଖାସ୍ତରେ ଘରେ ରହିଯାଏ । ଧିରେଧିରେ ଏହି ବିଷୟ ମୋ କାନକୁ ଆସିଲା । ଏହି ମହନ୍ତ ଅଧ୍ୟାପକଙ୍କ ପରାମର୍ଶ ଲୋଡ଼ିଲି । ସେ କୈଫିୟତ ମାଗିବାପାଇଁ କହିଲେ, ତାହାହିଁ ହେଲା । କୈଫିୟତ ଉତ୍ତର ମଧ୍ୟ ସେ ତାରି ପାଇଁ ଲେଖିଦେଲେ । ତିନିଥର କ୍ଷମା କରିବା ପରେ ତାକୁ ସସ୍ପେଣ୍ଡ କରି ଦିଆଗଲା । ପରିଚାଳନା ସମିତି ତାକୁ ଚାକିରିରୁ ବାହାର କରିଦେଲେ । ସେ ଥିଲା ତଫସିଲଭୁକ୍ତ ଜାତିର ଲୋକ । ତାକୁ ମାଗଣାରେ ସରକାରୀ ଓକିଲ ସାହାଯ୍ୟ କରିବାର ବ୍ୟବସ୍ଥା ଥିବାରୁ ସେ ଅଧ୍ୟକ୍ଷଙ୍କ ନାମରେ ମକଦ୍ଦମା କଲେ । ସେ କୋର୍ଟରେ ପ୍ରମାଣ କରିଦେଲା ଯେ ଅଧ୍ୟକ୍ଷ ନିଜେ ମଦ ନ ଖାଉଥିଲେ ମୁଁ ମଦ ଖାଉଛି ବୋଲି ଜାଣିଲେ କିପରି ? ଆମର ପରିଚାଳନାଗତ କାଗଜ ଠିକ୍ ନଥିବାରୁ କୋର୍ଟ ଆଦେଶ ଦେଲେ ତାକୁ ଚାକିରିରେ ଅବସ୍ଥାପିତ କରିବାପାଇଁ । ପୁନର୍ବାର ତାର ପୂର୍ବ ଆଚରଣ ଅଧିକ ଭୟଙ୍କର ହେଲା । ଏକ ରଡ଼ ଧରି ମଦ୍ୟପ ଅବସ୍ଥାରେ କଲେଜ ପଡ଼ିଆରେ ପଇଁତରା ମାରିଲା, ଅଧ୍ୟକ୍ଷଙ୍କୁ ଆଘାତ କରିବାପାଇଁ । ସୁଯୋଗ କ୍ରମେ ପୋଲିସ ଆସି ତାକୁ ଧରିନେଲେ ଏବଂ ତାର ସମସ୍ତ ଆଚରଣ ପ୍ରମାଣିତ ହୋଇଗଲା ଏବଂ ପରିଶେଷରେ କୋର୍ଟକୁ ଯାଇ ମଧ୍ୟ ସେ ଆଉ ଚାକିରି ପାଇଲା ନାହିଁ । ମୋର ଧାରଣା ହେଲା, ଏହି ଗରିବ ପିଅନକୁ ତାର ସମସ୍ତ ଅପକର୍ମକୁ ଉତ୍ସାହିତ ଓ ସମର୍ଥନ କରି ତାର ଚାକିରି ହରାଇବାର କାରଣ ହେଲେ ଏହି କ୍ଷମତାଲୋଭୀ ଅଧ୍ୟାପକ ।

ଶେଷରେ ଏହି ଅଧ୍ୟାପକଙ୍କୁ ସମସ୍ତ ଦାୟିତ୍ୱରୁ ବିଦାୟ ନେବାପାଇଁ ବାଧ୍ୟ କରାଗଲା । ସେ କଲେଜ ଦାୟିତ୍ୱ ଆଳରେ ଅଫିସରେ ଦାଦାଗିରି କରିବାପାଇଁ ଆଉ ସୁଯୋଗ ପାଇଲେ ନାହିଁ ।

ଆଉ ଜଣେ ଅଧ୍ୟାପକ ରାଜନୀତି ବିଜ୍ଞାନ ବିଭାଗର । ତାଙ୍କର ସବୁଦିନ ସଂଘର୍ଷ ବିଭାଗୀୟ ମୁଖ୍ୟଙ୍କ ସହିତ । ନାନା ଅଭିଯୋଗ ନେଇ ସେ ଅଧ୍ୟକ୍ଷଙ୍କୁ କଲବଲ କରନ୍ତି । କୌଣସି କଥା ଶୁଣିବାପାଇଁ ତାଙ୍କର ଧୈର୍ଯ୍ୟ ନାହିଁ । ଠିକ୍ ସମୟରେ କ୍ଲାସ ନେବେ ନାହିଁ, ଅନୁପସ୍ଥିତ ରହି ଛୁଟୀ ଦରଖାସ୍ତ ଦେବେ ନାହିଁ ତ, କ୍ଲାସ ପରୀକ୍ଷା ଖାତା ନ ଦେଖି ଶେଷ ମୁହୂର୍ତ୍ତରେ ଫେରାଇଦେବେ, ସାଧାରଣ କ୍ଲାସରେ ନିଜ ପାଠ୍ୟ ବହିର୍ଭୂତ ବିଷୟରେ ଭାଷଣ ପ୍ରଦାନ କରି ପିଲାମାନଙ୍କର ବିରକ୍ତିଭାଜନ ହେଉଥିବେ । ବାରମ୍ବାର ତାଙ୍କ ବିରୁଦ୍ଧରେ ଅଭିଯୋଗ ଶୁଣିଶୁଣି ଅଧ୍ୟକ୍ଷଙ୍କର କାନ ବଧିର ହୋଇଯାଏ । ଅସରନ୍ତି ଏ ଦୁଃଖ । ଆଉ ଏକ ସମସ୍ୟାର ସମ୍ମୁଖୀନ ହେଲି । କେତେକ ଅଧ୍ୟାପକ ଅଯଥାରେ ଆସି ଅଧ୍ୟକ୍ଷଙ୍କ ରୁମ୍‌ରେ ଗପ ଜମାନ୍ତି । ଧିରେଧିରେ ନିରୁତ୍ସାହିତ କଲି । ଛାତ୍ର ହୁଅନ୍ତୁ ବା ଅଧ୍ୟାପକ ହୁଅନ୍ତୁ, ଏକାଧିକ ଲୋକ ଏକ ସମୟରେ ସାକ୍ଷାତ କରିବେ ନାହିଁ । କୌଣସି କାର୍ଯ୍ୟ ନଥିଲେ ଦୟାକରି ଅଫିସକୁ ଆଳାପ କରିବାକୁ ଆସିବେ ନାହିଁ । ସେମାନେ ଅଯଥାରେ ଆସି ପରସ୍ପର ବିରୁଦ୍ଧରେ ଅଧ୍ୟକ୍ଷଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ଏହା ଏକପ୍ରକାର ଅସ୍ୱାସ୍ଥ୍ୟକର

ମନୋଭାବ । ଧିରେ ଧିରେ ତାହା ମଧ ବାଟକୁ ଆସିଗଲା । କେହି ସାହସ କଲେ ନାହିଁ ଅଧ୍ୟକ୍ଷଙ୍କ ରୁମର ଅପବ୍ୟବହାର କରିବାପାଇଁ । ଏହିମାନେ ହିଁ ପ୍ରଚାର କଲେ ''ଅଧ୍ୟକ୍ଷଙ୍କୁ ମଣିଷ ଗନ୍ଧାଉଛନ୍ତି ।''

ଅସରନ୍ତି ଏ ଦୁଃଖ । ଆଗକୁ ଆହୁରି ଅନେକ ତିକ୍ତ ଅନୁଭୂତି ରହିଛି ।

•••

# ସବୁ ରାତିର ସକାଳ ଅଛି

**ଦୀ**ର୍ଘ ଦଶ ବର୍ଷକାଳ କଲେଜରେ ଅଶାନ୍ତ ବାତାବରଣ ଲାଗି ରହିଥାଏ । ଅଧକ୍ଷ ଓ ଅଧ୍ୟାପକମାନେ ନିଜକୁ ଅସହାୟ ମନେ କରୁଥାଆନ୍ତି । କେତେଜଣ ଅମନଯୋଗୀ ଛାତ୍ରନେତାଙ୍କ ପ୍ରରୋଚନାରେ ସାହିବସ୍ତିର ଅଣଛାତ୍ରମାନେ କଲେଜ ହତା ମଧ୍ୟରେ ଦାଦାଗିରି ପ୍ରଦର୍ଶନ କରି ବାହାଦୁରୀ କରିବା ଥାଏ ସାଧାରଣ କଥା । ମୁହଁପୋତି କେବଳ ନୀରବରେ କ୍ଲାସ୍ ନେବା ବ୍ୟତୀତ ଅନ୍ୟ ଉପାୟ ନଥାଏ । ଏହି ସୁଯୋଗରେ ଅନେକ ଅଧ୍ୟାପକ କ୍ଲାସ୍ ନେବା ପାଇଁ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ବିଶ୍ୱବିଦ୍ୟାଳୟ ପରୀକ୍ଷା ଏକପ୍ରକାର ଫାର୍ସରେ ପରିଣତ ହୋଇଥାଏ । ପରୀକ୍ଷାର୍ଥୀମାନଙ୍କର ସେହି ଅସାଧୁ କ୍ରିୟାକର୍ମ ଗାତ୍ରଦାହ କରୁଥିଲେ ହେଁ କୌଣସି ଉପାୟ ନଥାଏ । ସତେ ଯେପରି ନୈତିକତାର କବର ହୋଇଯାଇଛି । ବିଶ୍ୱବିଦ୍ୟାଳୟରୁ ଯେଉଁ ପରିଦର୍ଶକମାନେ ଆସନ୍ତି, ସେମାନେ କୌଣସି ପଦକ୍ଷେପ ନେବା ପାଇଁ ସାହସ କରୁନଥିଲେ । ଏହି ଦୁର୍ଦ୍ଦିନରେ ଭଲ ଛାତ୍ରମାନେ ହିଁ ଅଧିକ କଷ୍ଟ ଭୋଗ କରୁଥିଲେ ।

ଦାୟିତ୍ୱ ନେଲାପରେ ପ୍ରଥମ କାମ ହେଲା, କିପରି ଶୃଙ୍ଖଳାର ସହିତ ଶ୍ରେଣୀକକ୍ଷରେ ଅଧ୍ୟାପନା ହେବ । ପ୍ରତ୍ୟେକ ଅଧ୍ୟାପକ ଠିକ୍ ସମୟରେ ଦାୟିତ୍ୱ ତୁଲାଇବେ ଏବଂ ବାହାର ବାରଣ୍ଡାରେ କୌଣସି ପ୍ରକାର ବିଶୃଙ୍ଖଳିତ ଆଚରଣକୁ ଉତ୍ସାହିତ କରାଯିବ ନାହିଁ । ଦୀର୍ଘ ଚାରିମାସକାଳ କେତେଜଣ ବରିଷ୍ଠ ସହକର୍ମୀଙ୍କ ସହିତ କଲେଜ ବାରଣ୍ଡାରେ ମୋତେ ଚୌକିଦାରୀ କରିବାକୁ ପଡ଼ିଲା । ଅଣଛାତ୍ରମାନେ ଆଉ ପୈଶାଚିକ ଖେଳ ପ୍ରଦର୍ଶନର ସୁଯୋଗ ପାଇଲେ ନାହିଁ । ସେମାନେ ଧୀରେଧୀରେ ଅପସରି ଗଲେ । ଅମନଯୋଗୀ ଉଚ୍ଛୃଙ୍ଖଳ ଛାତ୍ରମାନେ ବାଧହୋଇ ଶ୍ରେଣୀକକ୍ଷରେ ଉପସ୍ଥିତ ହେଲେ । ଏତିକିରେ ନାଟକ ସରିଲା ନାହିଁ । କେତେଜଣ ଅଧ୍ୟାପକଙ୍କର ଅଭ୍ୟାସରେ ପଡ଼ିଯାଇଥିଲା, ଯେ କୌଣସି ଆଳରେ କ୍ଲାସ୍ ନନେବା ଅଥବା ଅଳ୍ପ ସମୟ ପରେ ପିଲାମାନଙ୍କୁ ବିଦାୟ ଦେବା । ଏହାଦ୍ୱାରା ବିଶୃଙ୍ଖଳ ପରିବେଶ ସୃଷ୍ଟି ହେବା ସ୍ୱାଭାବିକ । ଏହି ଅମନଯୋଗୀ ସହକର୍ମୀମାନଙ୍କୁ ବିନୀତ ଭାବରେ ଅନୁରୋଧ କଲି ନିଜ କର୍ତ୍ତବ୍ୟରେ ଅବହେଳା ନ କରିବା ପାଇଁ । ଧୀରେଧୀରେ ସେମାନେ ମଧ୍ୟ ଆନ୍ତରିକ ସହଯୋଗ କଲେ ।

ମୁଁ ଅନୁଭବ କରୁଥିଲି ଯେ ଅନେକ ଛାତ୍ର ଟିଉଟୋରିଆଲ କ୍ଲାସ୍‌ରେ ଯୋଗ ନ ଦେଇ ବାହାରେ ଆଡ୍ଡା ମାରିବା ଏକ ସଉକି ଥିଲା । ଅଧ୍ୟାପକମାନେ ମଧ୍ୟ ସେମାନଙ୍କ ପ୍ରତି ବିମୁଖ

ଥିଲେ । ହତା ମଧ୍ୟରେ ବିଶୃଙ୍ଖଳାର ଏହା ଥିଲା ଅନ୍ୟତମ କାରଣ । ଘରୁ ଟଙ୍କାଆଣି କେତେକ ଛାତ୍ର ଅପବ୍ୟୟ କରୁଥିଲେ ଅଥଚ ଠିକ୍ ସମୟରେ କଲେଜର ଦେୟ ଦେଉ ନଥିଲେ । ସେହି ନାଁ ଗୁଡ଼ିକ ସଂଗ୍ରହ କରି ପିଲାମାନଙ୍କର ମୁରବୀମାନଙ୍କୁ ଚିଠି ଲେଖିଲି । ଏଥିରେ ଅନେକ ଉତ୍‌କ୍ଷିପ୍ତ ହୋଇ ମୋତେ ଧମକ ଦେଉଥାଆନ୍ତି । କିନ୍ତୁ ନିଜର ଅନିୟମିତ ଆଚରଣ ପାଇଁ ମୁରବୀମାନଙ୍କ ପାଖରେ ଧରାପଡ଼ିବା ଯୋଗୁ ଧୀରେଧୀରେ ଏ କ୍ଷେତ୍ରରେ ମଧ୍ୟ ସୁଫଳ ମିଳିଲା । ଅନେକ ପିଲା ପୋଷ୍ଟମ୍ୟାନ୍‌ଙ୍କୁ ହାତ କଲେ କଲେଜ ଚିଠି ହସ୍ତଗତ କରିବା ପାଇଁ । ସେମାନଙ୍କର ଅପକର୍ମ ଘରେ କେହି ନ ଜାଣନ୍ତୁ । ବିଳମ୍ବରେ ହେଲେ ମଧ୍ୟ ଏହାର ସୁଫଳ ମିଳିଲା । ଏହି ପ୍ରସଙ୍ଗରେ ଗୋଟିଏ ଘଟଣା ମନେପଡୁଛି । ଜଣେ ଭୂତପୂର୍ବ ଗଡ଼ଜାତ ରାଜାଙ୍କର ପୁଅ ଆମର ଛାତ୍ର ଥାଏ । ଚିଠି ଗଲା, ସେ କଲେଜ ଦେୟ ଦେଉ ନାହିଁ ବୋଲି । ରାଜା ସାହେବ ନିଜେ ଆସି ଅଫିସରେ ହାଜର । କହିଲେ, ମୁଁ ନିୟମିତ ତାର ଦେୟ ପଠାଇ ଦେଉଛି । ଅଫିସ୍ କାଗଜ ପରୀକ୍ଷା କରାଗଲା । ସେ ଦେୟ ପୈଠ କରିଛି ବୋଲି କୌଣସି ରସିଦ ଦେଖାଇ ପାରିଲା ନାହିଁ । ରାଜା ସାହେବ ଲଜ୍ଜିତ ହେଲେ । ତାଙ୍କୁ କହିଲି, କୁସଙ୍ଗରେ ପଡ଼ି ପିଲାମାନେ ଘରୁ ଟଙ୍କା ଆଣି ଅପବ୍ୟୟ କରିବାର ଆଶଙ୍କା ରହିଛି । ଆପଣ ରସିଦ୍ ତଲବ କରିବା କଥା ।

ଶସ୍ତା ନେତୃତ୍ୱ ନେବା ପାଇଁ ଅଯଥାରେ କିଛି ଦାବୀ ଉପସ୍ଥାପିତ କରିବା ଥାଏ ଛାତ୍ରନେତାମାନଙ୍କର ଏକ ଅଭ୍ୟାସ । ସେଥିରେ ସେମାନଙ୍କର ଆନ୍ତରିକତା ନଥାଏ । ଗୋଳିଆ ପାଣିରେ ମାଛ ମାରିବାର ଏହା ଏକ କୌଶଳ । କେତେଜଣ ଆସି ଦାବୀପତ୍ର ଦେଲେ କଲେଜର ଅନେକ ଅଭାବ ଅସୁବିଧା ବିଷୟରେ । ସେଥିରେ ଗୋଟିଏ ଦାବୀ ଥିଲା ଲାଇବ୍ରେରୀରେ ବହି ନାହିଁ । କେତେଜଣ ଅଧ୍ୟାପକ ନିୟମିତ କ୍ଲାସ୍ ନେଉନାହାନ୍ତି । ସେମାନଙ୍କର ରୋଲ ନମ୍ବର ଟିପି ରଖି ଆସନ୍ତା ଦିନ ଆଲୋଚନା କରିବି ବୋଲି କହିଲି । ପରଦିନ ସେମାନଙ୍କୁ ଡକାଇ ପଠାଇଲି । ଏହା ମଧ୍ୟରେ ସେମାନଙ୍କ ବିଷୟରେ ଶ୍ରେଣୀରେ ଉପସ୍ଥାନ ଏବଂ ଲାଇବ୍ରେରୀରୁ ବହି ଆଣିବା ଖବର ସଂଗ୍ରହ କରିସାରିଥାଏ । ବୀରଦର୍ପରେ ସେମାନେ ପ୍ରବେଶ କଲେ ଅଧ୍ୟକ୍ଷଙ୍କ ଅଫିସ କକ୍ଷରେ । ସତେ ଯେପରି ସେମାନଙ୍କ ଅଙ୍ଗୁଳି ଚାଳନାରେ କଲେଜ ଚାଲିଚି । କହିଲି, ତୁମେ କେହି କ୍ଲାସ୍‌ରେ ଯୋଗ ନଦେଇ ହତା ମଧ୍ୟରେ ଟହଲ ମାରୁଛ ବୋଲି ଉପସ୍ଥାନ ରେଜିଷ୍ଟର ପ୍ରମାଣ ଦେଉଛି । ତୁମର କି ନୈତିକ ଅଧିକାର ଅଛି କ୍ଲାସ୍ ବିଷୟରେ କହିବା ପାଇଁ । ତୁମମାନଙ୍କ ନାମରେ ଖଣ୍ଡିଏ ମଧ୍ୟ ଲାଇବ୍ରେରୀ ବହି ଇସ୍ୟୁ ହୋଇନାହିଁ । ଅଥଚ ଲାଇବ୍ରେରୀରେ ବହି ନାହିଁ ବୋଲି ତୁମେ ଅଭିଯୋଗ କରିବ ! ଆଉ ଏଣିକି ଏପରି ମିଥ୍ୟା ଅଭିଯୋଗ ବରଦାସ୍ତ କରାଯିବ ନାହିଁ । ଯଦି ଏଠାରେ ପାଠ ପଢ଼ିବା ପାଇଁ ଇଚ୍ଛା ନାହିଁ, ତୁମେ ଅନ୍ୟତ୍ର ଟି.ସି. ନେଇଗଲେ ଆମର ଆପତ୍ତି ରହିବ ନାହିଁ । ତୁମ ମୁରବୀମାନଙ୍କର ଦୃଷ୍ଟି ଆକର୍ଷଣ କରି ଚିଠି ଲେଖିବି । ଚିଠି ନ ଲେଖିବା ପାଇଁ ସେମାନେ ପ୍ରାର୍ଥନା କଲେ । ଧୀରେଧୀରେ ଏ ବାତାବରଣ ମଧ୍ୟ ପ୍ରଶମିତ ହୋଇଗଲା ।

କଲେଜରେ ଶାନ୍ତି ପ୍ରତିଷ୍ଠାର ପ୍ରମାଣ ହେଲା, ସୁରୁଖୁରୁରେ ଆଡ଼ମିସନ୍, କଲେଜ ଇଲେକ୍‌ସନ୍ ଏବଂ ବିଶ୍ୱବିଦ୍ୟାଳୟ ଏକ୍‌ଜାମିନେସନ୍ । ଏହି ତିନିଗୋଟି ସ୍ତରରେ କଲେଜରେ ଅଶାନ୍ତି ଲାଗି ରହିଥାଏ । ବିଚରା ଅଧକ୍ଷ ଓ ଅଧ୍ୟାପକମାନେ ନିରୁତ୍ସାହିତ ଅବସ୍ଥାରେ ଥାଆନ୍ତି । ମୋର ପୂର୍ବବର୍ତ୍ତୀ ଜଣେ ଅଧକ୍ଷ ବାଧ ହୋଇ କଲେଜ ପାଇଁ ନିରୂପିତ ଛାତ୍ର ସଂଖ୍ୟା ବ୍ୟତୀତ ଅଧିକ ପିଲାଙ୍କୁ ବେନିୟମ ଭାବରେ ନାମ ଲେଖାଇଥିଲେ । ଏଥିପାଇଁ ବିଶ୍ୱବିଦ୍ୟାଳୟକୁ ମୋରି ହାତରେ ତିନିହଜାର ଟଙ୍କା ଜୋରିମାନା ଦେବାକୁ ପଡ଼ିଲା । ଆମର ଅମଡ଼ାପଥତାକୁ କୁଳପତି ଘେନା କଲେ ନାହିଁ । ପରିଚାଳନା ସମିତିଙ୍କ ବିଶ୍ୱାସକୁ ନେଇ ନିଷ୍ପତ୍ତି କଲି, ନାମଲେଖା କ୍ଷେତ୍ରରେ କଠୋର ହେବା ପାଇଁ । ଯେତେ ବାହ୍ୟ ପ୍ରଭାବ ଓ ହସ୍ତକ୍ଷେପ ଆସିଲେ ମଧ ତାହାର ପ୍ରତିରୋଧ କରିବି । ପୁନଶ୍ଚ ନାଁ ଲେଖା ପରେ ଅନ୍ୟ କଲେଜରେ ସୁବିଧା ମିଳିଲେ କେତେକ ଛାତ୍ର ଚାଲିଯାଆନ୍ତି । ସେମାନଙ୍କ ପାଇଁ ଖାଲି ସ୍ଥାନରେ ଅନ୍ୟ କଲେଜରୁ ଅନେକ ଅବାଞ୍ଛିତ ଛାତ୍ର ଆସିଯାଆନ୍ତି ନାଁ ଲେଖାଇବା ପାଇଁ । ସେମାନେ କେବେହେଲେ ଅଧୟନ ମନସ୍କ ନଥାନ୍ତି । କଲେଜ ଛାତ୍ରର ମୋହର ମାରି, ନାନାପ୍ରକାର ବାହ୍ୟ ମାମଲତକାରୀରେ ସମୟ ବିନିଯୋଗ କରନ୍ତି । ଏହିମାନେ ହିଁ କଲେଜ ମଧରେ ଅଶାନ୍ତିର ହୁଅନ୍ତି ମୁଖ୍ୟ କାରଣ । ଏଥିପାଇଁ ପ୍ରତ୍ୟେକ ବିଭାଗରୁ ପ୍ରବଳ ପ୍ରତିରୋଧର ସ୍ୱର ଉଠିଲା । ଯେଉଁମାନେ ଏହି ସୁଯୋଗର ଅପବ୍ୟବହାର କରୁଥିଲେ, ସେମାନେ ହେଲେ ପୋଲିସ୍ ଅଫିସର, ବ୍ୟାଙ୍କ କର୍ମଚାରୀ, ମନ୍ତ୍ରୀ ଏବଂ ତାଙ୍କ ପାଖ ଲୋକ, ସହରର କିଛି ପ୍ରଭାବଶାଳୀ ବ୍ୟକ୍ତି ଏବଂ କେତେଜଣ ଧନ୍ଦାଭିତ୍ତିକ କଲେଜ କର୍ମଚାରୀ । ଚତୁର୍ଦ୍ଦିଗରୁ ଷଣ୍ଢଆସି ଆକ୍ରମଣ । ବଡ଼ ଅସହ୍ୟ ହେଉଥାଏ । ତେବେ ମୋତେ ଏକମାତ୍ର ନୈତିକ ସମର୍ଥନ ମିଳୁଥାଏ ପରିଚାଳନା ସମିତିର ସଂପାଦକ ଏବଂ ସଭାପତିଙ୍କଠାରୁ । ଏହା ବ୍ୟତୀତ ସାହିବସ୍ତିର ଅସାମାଜିକ ଲୋକଙ୍କର ଧମକ ଥାଏ ନିତିଦିନିଆ କଥା । ଏହିପ୍ରକାର ବିକଳ ପରିବେଶରେ ବିଚରା ଅଭିମନ୍ୟୁକୁ ସପ୍ତରଥୀ ଧ୍ୱଂସ କଲାପରି ସବୁ ସ୍ତରରୁ ପ୍ରବଳ ଚାପ ପଡୁଥାଏ । ବାହାର ପ୍ରତିରୋଧ ଯେତିକି ହେଉଥାଏ, ମୋର ମାନସିକତା ସେତିକି ବଢ଼ି ଯାଉଥାଏ । ହିତାକାଂକ୍ଷୀ ଅଧ୍ୟାପକବନ୍ଧୁ ପରାମର୍ଶ ଦେଉଥାନ୍ତି ଓହରି ଆସିବା ପାଇଁ ଏପରି ନିଷ୍ପତ୍ତିରୁ । ଜଣେ ତ କେହି ବିରାଡ଼ି ବେକରେ ଘଣ୍ଟି ବାନ୍ଧିବ !! ଦାୟିତ୍ୱ ମୁଣ୍ଡେଇଚି ଯେତେବେଳେ, ପରିଣାମ ପାଇଁ ପ୍ରସ୍ତୁତ ହେବା ଆବଶ୍ୟକ । ଏହି ପ୍ରସଙ୍ଗରେ କେତୋଟି ଦୁର୍ଘଟଣା ଉଲ୍ଲେଖ କରୁଛି । ହାଇକୋର୍ଟର ଜଣେ ବରିଷ୍ଠ ଅଫିସର ଆସିଲେ ତାଙ୍କ ପୁଅକୁ ଅନ୍ୟ କଲେଜରୁ ଆଣି ଏଠାରେ ଭର୍ତ୍ତି କରିବା ପାଇଁ । ଟି.ସି. ନାମଲେଖା ବନ୍ଦ ଅଛି ବୋଲି ବୁଝାଇଲି । ସେ ମୋତେ ମକଦ୍ଦମାର ଧମକ ଦେଲେ । କହିଲି, ଗତକାଲି ପର୍ଯ୍ୟନ୍ତ ଆପଣ ଆମ କଲେଜକୁ ଘୃଣା କରି ପୁଅକୁ ଅନ୍ୟ କଲେଜରେ ଭର୍ତ୍ତି କଲେ । ଆମେ ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିବାକୁ ଯାଉଥିବାବେଳେ ଆପଣ ଆବୋରି ପଡ଼ିବା କ'ଣ ଠିକ୍ ହେବ ? ଆମକୁ ସୁଯୋଗ ଦିଅନ୍ତୁ ଶୃଙ୍ଖଳିତ ବାତାବରଣ ଫେରାଇ ଆଣିବା ପାଇଁ । ମକଦ୍ଦମା କଥା ଯାହା କହିଲେ, ମାନୁଛି, ହାଇକୋର୍ଟ ନିଶ୍ଚୟ କହିବେ, ସିଟ୍ ଖାଲି ଥିଲେ ନାଁ ଲେଖା

ହେବା ବିଧିସମ୍ମତ । ମାତ୍ର ସେ କେବେ କହିବେ ନାହିଁ, ଆପଣଙ୍କ ପୁଅର ନାଁ ଲେଖା ହେବ । ଯାହାର ପୁରବୀ କଲେଜରେ ପ୍ରବେଶପୂର୍ବରୁ ନାଲିକୋଠାର ଧମକ ଦେଲେଣି, ତାଙ୍କର ପୁତ୍ର ଏଠାରେ ପ୍ରବେଶ କରିବା ପାଇଁ ଅଯୋଗ୍ୟ । ବିଚରା ଭଦ୍ରଲୋକ, ମୁହଁ ଶୁଖାଇ ଫେରିଗଲେ ।

ଆଉ ଗୋଟିଏ ଘଟଣା । କଟକ ବାହାରେ ଜିଲ୍ଲା କଲେକ୍ଟର ଥିବା ଜଣେ ପ୍ରଭାବଶାଳୀ ଭଦ୍ରଲୋକ ଟି.ସି. ଆଣି ତାଙ୍କ ପୁଅର ନାଁ ଲେଖାଇବା ପାଇଁ ଦୀର୍ଘ ଦୁଇମାସ କାଳ ମୋତେ ପ୍ରଭାବିତ କଲେ । ଏଥିରେ ସହରର କେତେଜଣ ଶକ୍ତିଶାଳୀ ଭଦ୍ରଲୋକ ମଧ୍ୟ ହସ୍ତକ୍ଷେପ କଲେ । ନାନା ଅପ୍ରୀତିକର ପରିସ୍ଥିତି ମଧ୍ୟରେ ଅଟଳ ରହିଥାଏ । ବଡ଼ଲୋକଙ୍କୁ ଉତ୍ତର ନାହିଁ । କାହିଁକି କଲେଜ ଏହି ନୀତି ଗ୍ରହଣ କରିଛି, ସେ କଥା ବୁଝିବାକୁ କାହାରି ଆଗ୍ରହ ନାହିଁ । କଲେଜ ରସାତଳକୁ ଯାଉ, କିନ୍ତୁ ନିଜ ସ୍ୱାର୍ଥ ହାସଲ ହେଉ । କଲେଜ ବଦନାମ ହେଉଥିଲାବେଳେ ସମସ୍ତେ ମୁହଁ ଆଡ଼େଇ ଚାଲିଯାଉଥିଲେ । ଆଜି ବହୁ ଚେଷ୍ଟାରେ ଶାନ୍ତି ଫେରି ଆସୁଥିବାବେଳେ ଆରମ୍ଭ ହୋଇଗଲା ହୀନସ୍ୱାର୍ଥର ଖେଳ । ପରିଚାଳନା ସମିତିର ସଭାପତି ମଧ୍ୟ ସାତ କଥାରେ ସତୀ ଭୁଲିଲା ପରି ବ୍ୟବହାର କଲେ । ମୋର ସୌଭାଗ୍ୟ, ତାଙ୍କୁ ବୁଝାଇ ସମର୍ଥନ ଆଦାୟ କଲି ।

ଏହି ସମୟରେ ସ୍ୱୟଂ ଶିକ୍ଷାବିଭାଗର ନିର୍ଦ୍ଦେଶକ ପରିଚାଳନା ସମିତିର ସଭାପତିଙ୍କୁ ଅନୁରୋଧ କଲେ ତାଙ୍କର କୌଣସି ଆତ୍ମୀୟର ଟି.ସି.ରେ ନାମ ଲେଖା ପାଇଁ । ଶିକ୍ଷା ବିଭାଗ ନିର୍ଦ୍ଦେଶକଙ୍କୁ ନିରାଶ କଲେ କଲେଜର ଦୁର୍ବିପାକ ଆସିଯିବ । ସେହି ଭୟରେ ସଭାପତି ମୋତେ ନିର୍ଦ୍ଦେଶ ଦେଲେ ନାଁ ଲେଖାଇଦେବା ପାଇଁ । ରାତିରେ ଡି.ପି.ଆଇ. ଙ୍କ ଘରକୁ ଫୋନ୍ କରି କଲେଜର ସ୍ଥିତି ବର୍ଣ୍ଣନା କଲି । ଏଇ ଗୋଟିଏ ନାଁ ଲେଖାର ଅନୁମତି ଦେଲେ ଆଗାମୀ ଦିନରେ ଅସୁମାରୀ ଉଚ୍ଛୃଙ୍ଖଳ ଛାତ୍ରଙ୍କୁ ଅନୁମତି ଦେବାକୁ ବାଧ୍ୟ ହେବୁ । ଆପଣ ରକ୍ଷା କରନ୍ତୁ । ଡି.ପି. ଆଇ. ମୋର ପ୍ରାର୍ଥନା ହୃଦୟଙ୍ଗମ କଲେ ଏବଂ ନିଜର ଅନୁରୋଧ ଫେରାଇନେଲେ । ପରିଚାଳନା ସମିତିର ସଭାପତି ଶାନ୍ତିରେ ନିଃଶ୍ୱାସ ମାରିଲେ । ଏ କାହାଣୀ ଅସରନ୍ତି । କିପରି ସରକାରୀ କଳର ଅପବ୍ୟବହାର କରି ନ୍ୟସ୍ତସ୍ୱାର୍ଥ ଲୋକେ ବିଚରା ଅଧ୍ୟକ୍ଷଙ୍କୁ ନ୍ୟାୟପଥରେ ଚଲାଇଦିଅନ୍ତି ନାହିଁ, ନିମ୍ନରେ ତାର କେତୋଟି ଉଦାହରଣ ଏହିପରି ।

କଲେଜରେ ନାମଲେଖାର ଏକ ବିଧି ରହିଛି । ବରିଷ୍ଠ ଅଧ୍ୟାପକ କେତେଜଣଙ୍କୁ ନେଇ ଏକ କମିଟି ଗଠିତ ହୁଏ । ସେମାନେ ପ୍ରାର୍ଥୀ ଛାତ୍ରମାନଙ୍କର ଦରଖାସ୍ତ ଯାଞ୍ଚ କରି ଯୋଗ୍ୟତା ଅନୁସାରେ ନାମ ଲେଖାଇବା ପାଇଁ ଆଦେଶ ଦିଅନ୍ତି । ଯଦି ମନ୍ତ୍ରୀ ଓ ପ୍ରଶାସକମାନଙ୍କ ନାମକୁ ବ୍ୟବହାର କରି ଅଯୋଗ୍ୟ ପ୍ରାର୍ଥୀମାନେ ଅଧ୍ୟକ୍ଷଙ୍କ ଉପରେ ଚାପ ପକାଇବେ, ସେ ବିଚରା କ'ଣ କରିପାରିବ ? ପୁନଶ୍ଚ ଘରୋଇ କଲେଜରେ ଅନେକ ଅଭାବ ଅସୁବିଧା ରହିଛି । ସେମାନଙ୍କୁ ସନ୍ତୁଷ୍ଟ କରି କାର୍ଯ୍ୟ ହାସଲ କରିବାକୁ ହୁଏ । ତଥାପି ପାରୁ ପର୍ଯ୍ୟନ୍ତ ଏହି ଅବାଞ୍ଛିତ ହସ୍ତକ୍ଷେପ ବିରୁଦ୍ଧରେ ପ୍ରତିରୋଧ କରାଯାଇଥିଲା ଏବଂ ଚରମ ସଫଳତା ମିଳିଥିଲା । ମୁଖ୍ୟମନ୍ତ୍ରୀଙ୍କ ଦପ୍ତରର ଗୋଠିଏ ଚିଠି ଦେଖନ୍ତୁ–

ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟ, ଓଡ଼ିଶା

ପତ୍ର ସଂ...୬୪୩୯/ମୁ.ମ (ମା)　　　　　　ତା. ୯-୮-୮୪

ପ୍ରେରକ : ଶ୍ରୀ ସି.ବି. ଏସ୍. ରାମଚନ୍ଦ୍ର ରାଓ

ମୁଖ୍ୟମନ୍ତ୍ରୀଙ୍କ ଉପସଚିବ

ପ୍ରାପ୍ତେଷୁ :

**ଅଧକ୍ଷ, ଖ୍ରୀଏଷ୍ଟ କଲେଜ, କଟକ**

ବିଷୟ :ଶ୍ରୀ ସଂଜୀବ କୁମାର ନାୟକଙ୍କର ନାମ ଲେଖାଇବା ସଂପର୍କରେ ।

ମହାଶୟ,

ମୁଁ ନିର୍ଦ୍ଦେଶକ୍ରମେ ଶ୍ରୀ ସଂଜୀବ କୁମାର ନାୟକଙ୍କର ଉପରୋକ୍ତ ବିଷୟବସ୍ତୁ ଉପରେ ଆଧାରିତ ଦରଖାସ୍ତଟିକୁ ଆପଣଙ୍କ ସହାନୁଭୂତି ସହ ବିଚାର ଓ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ନିମନ୍ତେ ପଠାଉଛି । ଶ୍ରୀ ନାୟକଙ୍କର ଦରଖାସ୍ତଟି ସ୍ୱତଃ ପ୍ରାଂଜଳ ।

ଏ ବିଷୟରେ ଗହଣ କରାଯାଇଥିବା କାର୍ଯ୍ୟାନୁଷ୍ଠାନର ସର୍ବଶେଷ ବିବରଣୀ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଅବଗତି ନିମନ୍ତେ ତୁରନ୍ତ କାର୍ଯ୍ୟାଳୟକୁ ପଠାଇବାକୁ ଅନୁରୋଧ ।

ଆପଣଙ୍କର ବିଶ୍ୱସ୍ତ

ରାମଚନ୍ଦ୍ର ରାଓ

ମୁଖ୍ୟମନ୍ତ୍ରୀଙ୍କ ଉପସଚିବ

ଜ୍ଞାପକ ସଂ..../ ମୁଁ : ମ ତା

ଏହାର ଏକକିତା ନକଲ ଦରଖାସ୍ତକାରୀଙ୍କ ଅବଗତି ନିମନ୍ତେ ପଠାଯାଉଛି ।

ସ୍ୱା/-

ମୁଖ୍ୟମନ୍ତ୍ରୀଙ୍କ ଉପସଚିବ

ଆଉ ଏକ ଆଫିସିକ ଚିଠି ଦେଖନ୍ତୁ ।-

କଲେଜରେ ନାଁ ଲେଖାପାଇଁ ମନ୍ତ୍ରୀଙ୍କ ଅଫିସ୍‌ର ସୁପାରିଶ ପତ୍ର ।

To :

The Hon'ble Minister of State
Community Development and Moral Reconstruction

Sir,

With due respect and humble submission I beg to say the following lines for your kind consideration and favourable orders.

That I have been admitted in the +2 first year Arts

class of Christ College, Cuttack. But I am keen interested in going through science studeis. It is learnt that some science seats have fallen vacant due to the transfer certificate of certain students and I have also applied for science seats. I have secured 371 marks (excluding extra optional subject) which have been neared the last selection marks.

Therefore I pray your kind honour to recommend my poor case for admission into the said college in science and for act of your kindness I shall ever grateful to you.

Yours faithfully,
**Manoranjan Dash**
Vill. Sahukheta
Po. Totapada, Dist. Cuttack

Principal, Christ College, Cuttack For consideration
(ପ୍ରାଇଭେଟ ସେକ୍ରେଟାରୀଙ୍କ ଦସ୍ତଖତ)

୧୭.୮.୮୫
(ଆଫିସିକ ମୋହର)

P.S. to Minister of State Community Development and Rural Reconstrucation, Orissa

ଜଣେ ମନ୍ତ୍ରୀଙ୍କ ଅଫିସ କିପରି କ୍ଷମତାରେ ଅନ୍ଧିଭୂତ ହୋଇ ଅବ୍ୟାପାର କରିବା ପାଇଁ କୁଣ୍ଠିତ ହୁଅନ୍ତି ନାହିଁ, ଏ ଦୁଇଟି ଆଫିସିକ ପତ୍ର ତାର ନମୁନା ମାତ୍ର । ଅଥଚ ବ୍ୟକ୍ତିଗତ ଚିଠିତ ଗଣି ହେବ ନାହିଁ । ସ୍ୱୟଂ ଶିକ୍ଷାମନ୍ତ୍ରୀ, ଉଚ୍ଚପଦସ୍ଥ ପୋଲିସ ଅଫିସରଗଣ, ଜିଲ୍ଲା ଅଫିସର ଉଚ୍ଚ ଅଫିସରଗଣ, ଟ୍ରେଜେରୀ ଅଫିସର, ବିଭିନ୍ନ ଥାନାର ଇନ୍ସପେକ୍ଟରଗଣ, ଏମ୍.ଏଲ୍.ଏ ଓ ପରିଚାଳନା ସମିତିର ପ୍ରଭାବଶାଳୀ ସଭ୍ୟ, ଶିକ୍ଷା ବିଭାଗର ପଦସ୍ଥ ବ୍ୟକ୍ତିମାନେ ମଧ୍ୟ ଏହି ବ୍ୟକ୍ତିଗତ ଲିଷ୍ଟର ଅନ୍ତର୍ଗତ । ବ୍ୟକ୍ତିଗତ ଚିଠି ହୋଇଥିବାରୁ ତାହା ପ୍ରକାଶଯୋଗ୍ୟ ନୁହେଁ । ଏହି ପ୍ରକାର ବାତାବରଣ ମଧ୍ୟରେ ଜଣେ ଅଧ୍ୟକ୍ଷ ସିଧାବାଟରେ ଚାଲିବା କେତେ କଷ୍ଟକର । ଦାୟିତ୍ୱସମ୍ପନ୍ନ କର୍ମଚାରୀମାନେ ଏହାଦ୍ୱାରା ମନ୍ତ୍ରୀମାନଙ୍କର ବଦନାମକୁ ଡାକି ଆଣନ୍ତି । କଲେଜ ବଦନାମ ହେଲେ ସେହିମାନେ ମାଡ଼ିବସନ୍ତି କ୍ଷମତାର ଆଟୋପ ସୃଷ୍ଟି କରି ।

ଅଧ୍ୟକ୍ଷ ଦାୟିତ୍ୱ ନେବାର ମାତ୍ର ଦୁଇମାସ ହୋଇନାହିଁ । ସେ ହେଉଛି ଅଗଷ୍ଟ ମାସ ପଚିଶ ତାରିଖ ୧୯୮୨ । ମେରିଟ୍ ଅନୁସାରେ ନାଁ ଲେଖା ସରି ଆସିଥାଏ । ନାଁ ଲେଖାରୁ ବଞ୍ଚିତା ଗୋଟିଏ ଝିଅର ଅସାମାଜିକ ଭାଇ, ତିନିଜଣ ଅସାମାଜିକ ଲୋକଙ୍କୁ ମଦ ପିଆଇ ଅଫିସ୍‌ରେ ହାଜର । ସେମାନଙ୍କର ଆଖି ଲାଲ୍ ପଡ଼ିଯାଇଥାଏ । ବାଚାଳ ଭାବରେ କଥା ହେଉଥାଆନ୍ତି । ମୋତେ ଭୟ ପ୍ରଦର୍ଶନ କରିବା ପାଇଁ ଅନେକ ଆପତ୍ତିଜନକ ଶବ୍ଦ ମଧ୍ୟ ଉଚ୍ଚାରଣ ହେଉଥାଏ । ସେମାନଙ୍କର ଦାବୀ, ସେ ଝିଅର ଅଲବତ ନାଁ ଲେଖାହେବ । ଏହା

ଆଦୌ ସମ୍ଭବ ନୁହେଁ । ନାଁ ଲେଖା ଶେଷ ହୋଇଯାଇଛି । ଆମେ ଅଧିକ ନାଁ ଲେଖାଇପାରିବୁ ନାହିଁ । ସେମାନେ ଶୁଣିବା ଅବସ୍ଥାରେ ନଥାନ୍ତି । ଭୟରେ ଥରୁଥାଏ । ହୁଏତ ଆକ୍ରମଣ କରିପାରନ୍ତି । ଏ ନାଟକ ଚାଲିଲା ଅଧଘଣ୍ଟାଏ କାଳ । ମୁଁ ଇଚ୍ଛା କରି ଏକାଟିଆ ରହିବା ପାଇଁ ଅଫିସ୍ ପିଅନକୁ କହିଥାଏ । କାରଣ ମୋର ଅପମାନିତ ଅବସ୍ଥା ଅନ୍ୟ ସହକର୍ମୀ ଓ କର୍ମଚାରୀ ଦେଖିବେ କାହିଁକି ? ଶେଷରେ ଠିଆହୋଇ ହାତଯୋଡ଼ି ସେହି ଦଳର ମୁଖିଆକୁ କହିଲି– ମୋତେ ଦୟାକର । ପରିଚାଳନା ସମିତିକୁ କହି ଏ ଦାୟିତ୍ୱରୁ ମୋତେ ଅବ୍ୟାହତି ଦିଅ । ମରିଯିବି ପଛକେ, ବାଧ୍ୟବାଧକତାରେ, ବଳପ୍ରୟୋଗରେ କୌଣସି କାର୍ଯ୍ୟ କରିବି ନାହିଁ । ସେହି ଝିଅର ଅସାମାଜିକ ଭାଇ ମୋ ପ୍ରତି ଅଶ୍ଳୀଳ ଶବ୍ଦ ପ୍ରୟୋଗ କରୁଥାଏ । ମୋତେ ସୁଯୋଗ ମିଳିଲା । କାନ୍ଦକାନ୍ଦ ହୋଇ ସେହି ମଦ୍ୟପ ନେତାକୁ କହିଲି– ଯାହାର ଭାଇ ଏହି ପ୍ରକାର ଖରାପ ବ୍ୟବହାର କରୁଛି, ତୁମମାନଙ୍କୁ ଠିଆ କରାଇ, ତା'ର ଘରର ପିଲା କ'ଣ ଏଠାରେ ବସିବା ପାଇଁ ଯୋଗ୍ୟ । ଗୁଣ୍ଡାଲୋକଙ୍କର ମଧ୍ୟ ହୃଦୟ ଅଛି । ତାର ମନକୁ ମୋର କଥାଟି ଘେନିଲା । ସେ ମୋରି ଆଗରେ ତାକୁ ଏକ ଶକ୍ତ ଧକ୍କା ଦେଇ କହିଲା– ''ପ୍ରିନ୍ସପାଲ, ମୁଁ କହୁଛି, କେବେ ନାଁ ଲେଖାଇବୁ ନାହିଁ । କିଏ କ'ଣ କରିବ ? ଆମେ ଅଛୁ ।'' ମୁହୂର୍ତ୍ତକ ମଧ୍ୟରେ କଳାବାଦଲ ଅପସରି ଗଲା । ଧମକ ଦେଇ ପ୍ରଭାବ ପକାଇ କାମ ହାସଲ କରିବା ଆଉ ସମ୍ଭବ ହୋଇନାହିଁ । କାହାରି ପାଖରେ ମୁଣ୍ଡ ନୁଆଇଁବାର ପ୍ରଶ୍ନ ହିଁ ଉଠି ନାହିଁ । ଏଣିକି ବର୍ଷ ପରେ ବର୍ଷ ଆଡ଼ମିସନ୍ ଚାଲିଲା ସୁରୁଖୁରୁରେ ।

ଶୁଣିଥିଲି, ଦାୟିତ୍ୱ ଶକ୍ତି ଉତ୍ପନ୍ନ କରେ । କୌଣସି ସାଧାରଣ ସୁଯୋଗ ମନୁଷ୍ୟର ପ୍ରଚ୍ଛନ୍ନ ଶକ୍ତିକୁ ଜାଗ୍ରତ କରିପାରେ ନାହିଁ । ଏଥିପାଇଁ ଆବଶ୍ୟକ ହୁଏ ଆକସ୍ମିକ କିଛି ଅସମ୍ଭାବିତ ଘଟଣା ଓ ଦୁର୍ଘଟଣା । ଧୀରେ ଧୀରେ ମନକୁ ବୁଝାଇବାକୁ ଆରମ୍ଭ କଲି । ନାନା ଦହଗଞ୍ଜ ଓ ଟେନ୍‌ସନ୍ ମଧ୍ୟରେ ଅନ୍ତତଃ ଗୋଟିଏ ବିକୃତ ଅନିଚ୍ଛାକୃତ ପରମ୍ପରା ଧୋଇ ହୋଇଗଲା । ସହକର୍ମୀମାନେ ଅକୁଣ୍ଠଭାବରେ ସହଯୋଗ ଓ ସଦିଚ୍ଛାର ହାତ ବଢ଼ାଇଦେଲେ ।

ଆଡ଼ମିସନ୍ ପରେ ଦ୍ୱିତୀୟ ସଂକଟ ହେଲା ଏକ୍‌ଜାମିନେସନ୍ । ଏହି କ୍ଷେତ୍ରରେ କଲେଜର ବଦନାମ ଚାରିଆଡ଼େ । କଳ୍ପନାତୀତ କପି ଓ ଅସାଧୁ ଉପାୟ । ଆମେ ଅଧ୍ୟାପକଗୋଷ୍ଠୀ ଅସହାୟ ଓ ତ୍ରସ୍ତକାତର । ପବ୍ଲିକ୍, ସରକାରୀକଳ ଅଥବା ଛାତ୍ରମାନଙ୍କର ମୁରବୀ କେହି ଆମ ପଛରେ ଠିଆ ହେଲେ ନାହିଁ । ଏଠାରୁ କିଛିଦିନ ପାଇଁ ପରୀକ୍ଷାକେନ୍ଦ୍ର ଉଠାଇଦେବାକୁ ପ୍ରସ୍ତାବ ଗ୍ରହଣ କରି ବିଶ୍ୱବିଦ୍ୟାଳୟକୁ ପ୍ରାର୍ଥନା କଲୁ । ତାହା ମଧ୍ୟ ଘେନା ହେଲା ନାହିଁ ।

ଅଧକ୍ଷ ଦାୟିତ୍ୱ ନେବା ଅବ୍ୟବହିତ ପରେ ଆସିଲା ବିଶ୍ୱବିଦ୍ୟାଳୟ ପରୀକ୍ଷା । ଅସାମାଜିକ ଛାତ୍ର କେତେଜଣ ମୋର ଯିବା ଆସିବା ବାଟରେ ଶୁଣାଇ ଶୁଣାଇ ଚେତାବନୀ ଦେଉଥାଆନ୍ତି, ଅଲବତ କପି କରିବୁ । ବାଧାଦେଲେ ଛୁରୀ ପେଲିଦେବୁ । ମୁହଁପୋତି ଚାଲିଆସେ । ଗତ କେତେବର୍ଷ ଧରି ଏହା ତ ଆମର ଦେହସୁହା ହୋଇଗଲାଣି । ହତା

ମଧ୍ୟରେ ପୋଲିସ୍ ଗାଡ଼ି ଥାଇ ସୁଦ୍ଧା ସେମାନେ ନିର୍ଭୟରେ କପି ଯୋଗାଇ ଆସିଥାଆନ୍ତି । ପରୀକ୍ଷା ଏକପ୍ରକାର ଫାର୍ସ । ଭଲପିଲାମାନେ ହିଁ ଅନିଭୋଗ ଭୋଗନ୍ତି । ବିଶ୍ୱବିଦ୍ୟାଳୟରୁ ଏକ ଟାଣୁଆ ପ୍ରତିନିଧିଦଳ ପ୍ରଥମଦିନ ପରୀକ୍ଷା ପରିଦର୍ଶନ ପାଇଁ ଆସିଲେ । ସେମାନେ ଗଣ୍ଡିଲିପୂର୍ଣ୍ଣ କପି କାଗଜ ସଂଗ୍ରହ କଲେ । ସେମାନଙ୍କୁ ଚା'ରେ ଆପ୍ୟାୟିତ କରି ଆମର ଅସହାୟତା ପ୍ରକାଶ କଲି । ଚାରିଆଡ଼େ ଅସାମାଜିକ ଲୋକଙ୍କ ପଇଁତରା, ଆମର ଜୀବନ ସଂକଟ । ରକ୍ଷା କରିବାକୁ କେହି ନାହିଁ । ବିନୀତ ଭାବରେ ପ୍ରାର୍ଥନା କଲି, ଆପଣମାନେ ଏଠାର ପରୀକ୍ଷା କେନ୍ଦ୍ର ବାତିଲ ପାଇଁ କଠୋର ଭାବରେ ସୁପାରିଶ କରନ୍ତୁ । ସେମାନେ କହିଲେ, ଅନେକ କଲେଜ ଆମେ ପରିଦର୍ଶନରେ ଯାଇଛୁ । ଅଧିକାଂଶ ଅଧ୍ୟକ୍ଷ କଲେଜର କଳଙ୍କକୁ ଘଣ୍ଟ ଘୋଡ଼ାଇଥାଆନ୍ତି । ଆପଣ ଏ କ୍ଷେତ୍ରରେ ଏକ ବ୍ୟତିକ୍ରମ । ଆମେ ସିଣ୍ଡିକେଟର ଦୃଷ୍ଟିକୁ ନିଶ୍ଚୟ ଆଣିବୁ । ମାତ୍ର କିଏ କାହିଁକି ବିପତ୍ତିକୁ ଡାକି ଆଣିବ ? ଆମ ଉଚ୍ଛୃଙ୍ଖଳ ପିଲାମାନେ କ'ଣ ଶାନ୍ତିରେ ରଖାଇଦେବେ । ତାହା ଏକ ଆନ୍ଦୋଳନର ରୂପ ନେଇପାରେ ।

ଯାହାହେଉ, ସମୟ ଗଡ଼ି ଚାଲିଲା । ଆସିଲା ସପ୍ଲିମେଣ୍ଟାରୀ ପରୀକ୍ଷା । ସହକର୍ମୀ ଅଧ୍ୟାପକ ଓ ଅଣଅଧ୍ୟାପକମାନଙ୍କର ଏକ ବୈଠକ ଡାକି ବିଶ୍ୱାସକୁ ନେଲି । କହିଲି, ଆମେ ସମସ୍ତେ ଏକାଠି ହେଲେ ଏ କଳଙ୍କରୁ ଉଦ୍ଧାର ପାଇପାରିବା । କେହି ବାହାର ଶକ୍ତି ସାହାଯ୍ୟ କରିବା ଅବସ୍ଥାରେ ନାହାନ୍ତି । ତାହାହିଁ ହେଲା । ଯେ କୌଣସି ପ୍ରକାରେ କଠୋର ଭାବରେ ପରୀକ୍ଷା ହଲ୍‌ରେ ଅସାଧୁ ଉପାୟ ଅବଲମ୍ବନ ପାଇଁ ସୁଯୋଗ ଦିଆଯିବ ନାହିଁ । ମୋର ସହକର୍ମୀମାନଙ୍କର ଅକୁଣ୍ଠ ସହଯୋଗ ଓ ପ୍ରେରଣା ମୋତେ ଏଭଳି ପଦକ୍ଷେପ ନେବା ପାଇଁ ସାହସ ଦେଉଥାଏ । ପରୀକ୍ଷା ଆରମ୍ଭ ହୋଇ ପ୍ରଶ୍ନପତ୍ର ବଣ୍ଟା ହେବା ପରେ ପୂର୍ବ ଅଭ୍ୟାସ ମୁତାବକ ପରୀକ୍ଷାର୍ଥୀମାନେ କପି କାଗଜ ବାହାର କଲେ । ଭାବିଥିଲେ, ସେମାନଙ୍କୁ ଅଟକାଇବାକୁ କାହାର ସାହସ ହେବ ? ସବୁ କଳ୍ପନା ଓଲଟପାଲଟ ହୋଇଗଲା । ଅଧ୍ୟାପକମାନଙ୍କର ଦୃଢ଼ ପଦକ୍ଷେପ ଯୋଗୁ ଅସାଧୁ ଉପାୟ ଅବଲମ୍ବନ କରିବା ପାଇଁ ଆସିଥିବା ପରୀକ୍ଷାର୍ଥୀଗଣ ହାତ ବାନ୍ଧି ବସିଲେ । ସତେ ଯେପରି ଲଙ୍କାରେ ନିଆଁ ଲାଗିଗଲା । ଅଧିକାଂଶ ପରୀକ୍ଷାର୍ଥୀ ପୂର୍ବରୁ ପ୍ରସ୍ତୁତ ହେଲାପରି ଏକପ୍ରକାର ରକ୍ତମୁଖା ଆକ୍ରମଣ କଲେ ଅଧ୍ୟାପକମାନଙ୍କ ଉପରେ । ଅଧ୍ୟାପକମାନେ ପୂର୍ବପରି ପଛଘୁଞ୍ଚା ନଦେଇ ଦୃଢ଼ତାର ସହିତ ସେମାନଙ୍କର ହିଂସାକାଣ୍ଡର ସମ୍ମୁଖୀନ ହେଲେ । ଆମର ପରମ ସୌଭାଗ୍ୟ, ତତ୍କାଳୀନ କଟକର ଏସ୍.ପି ସାହେବ ଖବର ପାଇ ଧାଇଁ ଆସିଲେ । ସେ ନିଜେ ନଅଜଣ ହିଂସାମୁଖୀ ଛାତ୍ରଙ୍କୁ ଆରେଷ୍ଟ କରି ନେଇଗଲେ । ସତରଜଣ ଛାତ୍ରଙ୍କ ନାମରେ ମକଦ୍ଦମା ଦାୟର୍ କଲେ । ଅସାଧୁ ଓ ଉଚ୍ଛୃଙ୍ଖଳ ଛାତ୍ରମାନଙ୍କ ପାଇଁ ଏହା ଥିଲା ସ୍ୱପ୍ନପ୍ରାୟ ଓ କଳ୍ପନାତୀତ । ସାଧାରଣ ଅବସ୍ଥାରେ ପୋଲିସ୍ ଉଚ୍ଛୃଙ୍ଖଳ ଛାତ୍ରମାନଙ୍କୁ ଧରିନେଇ ଖଲାସ୍ କରିଦିଅନ୍ତି । ସେମାନେ ବୀରଦର୍ପରେ ପୁନର୍ବାର ଫେରି ଆସନ୍ତି ଦାଦାଗିରି କରିବା ପାଇଁ । ଏଥର ଏପରି ସୁଯୋଗ ନ ଦେବା ପାଇଁ ଅଧ୍ୟକ୍ଷ ଭାବରେ କଟକ ପୋଲିସ୍ ସାହେବଙ୍କୁ ଲିଖିତ ପ୍ରାର୍ଥନା କଲି । ମୋର ଚିଠିର ଅବିକଳ

ନକଲ ଏହିପରି–

To :

The Superintendent of Police
Cuttack Sadar.

Sir,

This is to inform you that today, second I.Sc. English Paper-1 Examination (University) was to be held from 2 pm to 5 pm in the Christ College, Cuttack. The first sitting Examination held from 10 am to 1 pm and we were strict in holding the Examination. So malpractice cases were detected. Since we strict in holding the examination, a group of students numbering about forty formed an unlawful assembly under the leadership of some students (names not mentioned here) threw brickbats at the college staff and the principal's office, abused the principal and the staff in the filthy language, did not allow the science students who had come to appear at the examination in the second sitting forcibly dragged out the examines of the second sitting from inside the Examination rooms, put the teaching staff of the college under criminal intimidation, created large scale violence in the college campus and on the public road in front of the college seriously disturbing peace and tranquility both in side and outside the college and successfully stopped the second sitting of the examination in the pressure of the police officer and men.

From among them xxx disconnected the telephone line of the principal's office as reported by the staff. The following students were members of the unlawful assembly.

(ଏଠାରେ ସତରଜଣ ପିଲାଙ୍କ ନାମ ଦିଆଯାଇଛି)

It is apprehended that they will indulge in further violence during examination days from 4th August to 2nd September 1983 and will not allow us to nuk the University examination, thereby affecting the career of hundreds of students. They have also threatened me and my staff to do physical harm.

It is therefore requested that necessary legal action may be taken against them.

Your's faithfully
Pathani Pattnaik

ଏତିକି ଲେଖିଦେଇ ନୀରବ ହେଲି ନାହିଁ । କଲେକ୍ଟର, ଶିକ୍ଷା ବିଭାଗ ନିର୍ଦ୍ଦେଶକଙ୍କୁ ଏହି ଦୁଃସମ୍ବାଦ ଜଣାଇଦେଲି ଏବଂ ସେମାନଙ୍କର ଆଶୀର୍ବାଦ କାମନା କଲି । ଯେଉଁ ଛାତ୍ରମାନେ ହିଂସାତ୍ମକ କାର୍ଯ୍ୟରେ ଲିପ୍ତ ଥିଲେ, ସେମାନଙ୍କ ବିଷୟ ଆଇନ ତା' ବାଟରେ ବିଚାର କରିବ । ମାତ୍ର ପରିଚାଳନା ସମିତିରେ ଆଲୋଚନା ହେଲାପରେ ସେମାନଙ୍କ ମୁରବୀମାନଙ୍କୁ ତୁରନ୍ତ

ଟି.ସି. ନେଇ ଯିବା ପାଇଁ ନିର୍ଦ୍ଦେଶ ଦିଆଗଲା । ସେମାନେ କୌଣସିମତେ ଏହି ଅନୁଷ୍ଠାନରେ ଛାତ୍ର ହୋଇପାରିବେ ନାହିଁ । ଏକକାଳୀନ ସତରଜଣ ଛାତ୍ରଙ୍କୁ ବାଧ କରି ଟି.ସି. ଦେବା ଥିଲା ଏକପ୍ରକାର ଅସାଧାରଣ ସାହସିକ ପଦକ୍ଷେପ ଏବଂ ଅନନ୍ୟ ସାଧାରଣ ଘଟଣା । ଏହାର ପ୍ରତିକ୍ରିୟା ଥିଲା ସୁଦୂରପ୍ରସାରୀ । ଏହି ଘଟଣାର ତିନିଦିନ ପରେ ଅଗଷ୍ଟ ଛଅ ତାରିଖରେ ଏହି ଉଚ୍ଛୃଙ୍ଖଳ ଛାତ୍ରମାନେ ବିଭିନ୍ନ ସଂବାଦପତ୍ର ଅଫିସକୁ ଯାଇ କଲେଜ ନାମରେ ମିଥ୍ୟା ପ୍ରଚାର ଆରମ୍ଭ କରିଦେଲେ । ଶୋଭାଯାତ୍ରାରେ ଯାଇ କଚେରୀଠାରେ ଅଧକ୍ଷଙ୍କର କୁଶପୁତ୍ତଳିକା ଦାହ କରାଗଲା । ଦାବୀ ହେଲା– ଅଧକ୍ଷ ଇସ୍ତଫା ଦିଅନ୍ତୁ । ସଂପୃକ୍ତ ଅଧାପକମାନଙ୍କୁ ଗିରଫ କରାଯାଉ । ସରକାର କଲେଜକୁ ହାତକୁ ନେଇଯାଆନ୍ତୁ । ଛାତ୍ରମାନେ ପରୀକ୍ଷା ବର୍ଜନ କରନ୍ତୁ । କଲେଜ ହତାରୁ ପୋଲିସଙ୍କୁ ଉଠାଇ ନିଆଯାଉ । ଏହି ମୁଷ୍ଟିମେୟ ଉଚ୍ଛୃଙ୍ଖଳ ଛାତ୍ରମାନେ ହିଁ ସମସ୍ତ ଅଶାନ୍ତିର କାରଣ ହେଉଥିଲେ । ସତେ ଯେପରି ସେମାନେ କଲେଜକୁ ଆସିଥିଲେ ନେତୃତ୍ୱ ଜାହିର କରି ଅରାଜକତା ସୃଷ୍ଟି କରିବା ପାଇଁ । ସରକାର ଓ ଆଇନ-ଶୃଙ୍ଖଳା ରକ୍ଷା କର୍ତ୍ତୃପକ୍ଷ ଏବଂ ସର୍ବୋପରି କଲେଜ ପରିଚାଳନା ସମିତି କଠୋର ପଦକ୍ଷେପ ନେବା ଯୋଗୁ ଦୀର୍ଘଦିନର ଅବସାଦ ଧୀରେ ଧୀରେ ଘୁଞ୍ଚି ଆସିଲା । ପରୀକ୍ଷା ଚାଲିଲା ଅତ୍ୟନ୍ତ ଶୃଙ୍ଖଳିତ ଭାବରେ । ବହୁବର୍ଷ ଧରି ଏହା ଥିଲା କଳ୍ପନାତୀତ ଏବଂ ସରକାର, ବିଶ୍ୱବିଦ୍ୟାଳୟ ଏବଂ ଅଧାପକ ସମାଜର ଭୟଙ୍କର ମୁଣ୍ଡବ୍ୟଥାର କାରଣ । ସମସ୍ତେ ସ୍ୱସ୍ତିରେ ନିଃଶ୍ୱାସ ମାରିଲେ ।

ମୋର ଅଭିଯୋଗ ଅନୁସାରେ ଘଟଣାର ପ୍ରତ୍ୟକ୍ଷଦର୍ଶୀ ଏସ୍.ପି. ସାହେବ ଏହି ଅସାମାଜିକ ଛାତ୍ରମାନଙ୍କ ନାମରେ ମକଦ୍ଦମା ଦାୟର କରିଦେଲେ । ସେମାନେ ଏପରି ପରିଣାମ ଆଶଙ୍କା କରିନଥିଲେ । ପରେପରେ ପ୍ରଭାବଶାଳୀ ମୁରବୀ ଓ ପରିଚାଳନା ସମିତିର କିଛି ସଭ୍ୟଙ୍କୁ ପ୍ରଭାବିତ କଲେ ମକଦ୍ଦମା ଉଠାଇ ଆଣିବା ପାଇଁ ଏବଂ କଲେଜରେ ପୁନର୍ବାର ଛାତ୍ର ଭାବରେ ଗ୍ରହଣ କରିବା ପାଇଁ । ଆରମ୍ଭ ହେଲା ଆଉ ଏକ ନାଟକ । ଯେଉଁମାନେ ଗତକାଲି ଏପରି କଠୋର ପଦକ୍ଷେପକୁ ସ୍ୱାଗତ କରୁଥିଲେ, ସେମାନେ ହଠାତ୍ ଓଲଟି ପଡ଼ିଲେ । ବକ୍ତବ୍ୟ ହେଲା–ପିଲାମାନେ ଏଇମିତି ଭାବପ୍ରବଣତାର ବଶବର୍ତ୍ତୀ ହୋଇ କରିଥାଆନ୍ତି । ଏହା କେଉଁ ନୂଆ କଥା । ସବୁ କଲେଜରେ ଅଳ୍ପବହୁତେ ଏହି ଦୃଶ୍ୟ ଦେଖିବାକୁ ମିଳୁଛି । ଏହିମାନେ ହିଁ ଗତକାଲି ପର୍ଯ୍ୟନ୍ତ କଲେଜର ଅସ୍ଥିର ବାତାବରଣ ପାଇଁ ନାକ ଟେକୁଥିଲେ । ମୋ ନିଷ୍ପତ୍ତିରେ ମୁଁ ଦୃଢ଼ ରହିଲି ଏବଂ ମୋର ସହକର୍ମୀ ଅଧାପକଗଣ ମୋତେ ଅକୁଣ୍ଠ ଭାବରେ ସମର୍ଥନ କରୁଥିଲେ । କହିଲି, ମୋତେ ଅଧକ୍ଷ ଦାୟିତ୍ୱରୁ ମୁକ୍ତି ଦିଆଯାଉ । ଏହି ଅସାମାଜିକ ଛାତ୍ରମାନେ ଫେରି ଆସନ୍ତୁ । ମୋର ଆପତ୍ତି କରିବାର କ'ଣ ଅଛି ? ଯେଉଁମାନେ ଗତକାଲି ଆମମାନଙ୍କୁ ହାତ ଉଠାଇଲେ, ବେଇଜ୍ଜତ୍ କଲେ, ହିଂସା ପ୍ରୟୋଗ କଲେ, କେଉଁ ଭରସାରେ ସେମାନଙ୍କର ଅଧକ୍ଷ ହୋଇ ଦାୟିତ୍ୱ ଗ୍ରହଣ କରିପାରିବି ? ଏହି ପିଲାମାନେ ମୋ ବିରୁଦ୍ଧରେ ମକଦ୍ଦମା କରିବା ପାଇଁ ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶଙ୍କର ଦ୍ୱାରସ୍ଥ ହେଲେ । ସେତେବେଳେ ସେ କଟକ କଚେରୀରେ ବିଖ୍ୟାତ ଓକିଲ । ପୁରୀ କଲେଜର ଅର୍ଥନୀତି

ଅନର୍ସ ଶ୍ରେଣୀରେ ମୁଁ ସାର୍‌ଙ୍କର ଛାତ୍ର ଥିଲି । ମୋର ସାହିତ୍ୟ ସାଧନା ପ୍ରତି ସାର୍‌ଙ୍କର ଅମାପ ଆଶୀର୍ବାଦ ଥିଲା । ସେ ଏହି ଛାତ୍ରମାନଙ୍କୁ କହିଲେ– ଆଉ କେହି ଅଧ୍ୟକ୍ଷ ହୋଇଥିଲେ ମୁଁ ହାତକୁ ମକଦ୍ଦମା ନେଇଥାଆନ୍ତି । ପଠାଣି ବିରୁଦ୍ଧରେ ମୁଁ ଯିବି ନାହିଁ । ଯେଉଁଦିନ ଏହି ପଦକ ଶୁଣିଲି, ମୋର ଆଖିରୁ ଅପୂର୍ବ ପ୍ରାଣପୂର୍ତ୍ତିରେ ଲୁହ ଗଡ଼ିପଡ଼ିଲା । ସାର୍‌ଙ୍କର ଆଶୀର୍ବାଦ ଲାଭକରି ମୁଁ ଧନ୍ୟ ହୋଇଛି ।

ଏହି ଛାତ୍ରମାନେ ସବୁସ୍ତରରୁ ହତାଶ ହେଲେ । ସେମାନଙ୍କ ମନରେ ପ୍ରତିଶୋଧର ନିଆଁ ଜଳିଉଠିଲା । କେତେକ ସୁବିଧାବାଦୀ ନ୍ୟସ୍ତସ୍ୱାର୍ଥକାମୀ, ଶସ୍ତା ଲୋକପ୍ରିୟତା ପାଇଁ ବ୍ୟାକୁଳ ଅଧ୍ୟାପକ ସୂଚନା ଦେଲେ–ମୋତେ ଶାରୀରିକ ଆଘାତ କରିବା ପାଇଁ । ତାହାହେଲେ ମୁଁ ବାଧ୍ୟହୋଇ ଅଧ୍ୟକ୍ଷ ଦାୟିତ୍ୱ ଛାଡ଼ିଦେବି । ସେମାନଙ୍କର ତେଣିକି କଚେପୁଅବାର । ତାହାହିଁ ହେଲା । ସେଦିନ ହେଉଛି ଚଉଦ ତାରିଖ ସେପ୍ଟେମ୍ବର ୧୯୮୩ । କଲେଜରୁ ଫେରି ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ କରୁଛି । ଏତିକିବେଳେ କଲିଂବେଲ୍ ବାଜିଲା । ଦୁଆର ଖୋଲିଲାମାତ୍ରେ ଜଣେ ଗୁଣ୍ଡାଲୋକ ମୋତେ ଆକ୍ରମଣ କରି ମୋର କପାଳରେ କଠୋର ଆଘାତ କଲା । ଗୋଟିଏ କାଠ ଚୌକୀ ଟେକି ମୋ ମୁଣ୍ଡ ଉପରେ ପ୍ରହାର କରିବା ପୂର୍ବରୁ ପଛକୁ ଫେରିଆସି ମରଣଯନ୍ତ୍ରଣାରୁ ରକ୍ଷା ପାଇଗଲି । ଖୁବ୍ ଜୋର୍‌ରେ ଚିତ୍କାର କରି ତାକୁ ଧରିବାକୁ ଯିବାପୂର୍ବରୁ ସେ ଆଖି ପିଛୁଳାକେ ପଳାୟନ କଲା । ଦାଣ୍ଡପିଣ୍ଡାକୁ ଆସି ଦେଖିଲି, ଅଳ୍ପଦୂରରେ ଏହି ଅସାମାଜିକ ଛାତ୍ରମାନେ ଠିଆ ହୋଇଥିଲେ । ମୋତେ ଦେଖି ସେମାନେ ମଧ୍ୟ ପଳାୟନ କଲେ । ଖବର ପାଇ ଥାନା ଇନ୍‌ସ୍‌ପେକ୍ଟର, ପରିଚାଳନା ସମିତିର ସଂପାଦକ, କେତେଜଣ ଅଧ୍ୟାପକ ଘରକୁ ଆସିଲେ । ପୋଲିସ୍ ଗାଡ଼ିରେ ମୋତେ ଡାକ୍ତରଖାନାକୁ ନିଆଗଲା ପରୀକ୍ଷା କରିବା ପାଇଁ । ମାଡ଼ ଖାଇଲା ପରେ ମୋର ଧାରଣା ହେଲା, ଏହି ପିଲାମାନେ ସଂବାଦପତ୍ରକୁ ଯାଇ ସଂବାଦ ପ୍ରକାଶ କରି ବାହାଦୂରୀ ନେବେ ଏବଂ ଆମ୍ଭମାନଙ୍କୁ ନୈତିକତା ଦୃଷ୍ଟିର କାବୁ କରିଦେବେ ।

ସଂଗେସଂଗେ–''ସମାଜ''ର ବାର୍ତ୍ତା ସଂପାଦକ ସୁସାହିତ୍ୟିକ ଉଦୟନାଥ ଷଡଙ୍ଗୀକୁ ଏହି ଖବର ଜଣାଇ ଆଦୌ ପ୍ରକାଶ କରିବେ ନାହିଁ ବୋଲି ପ୍ରାର୍ଥନା କଲି । ସେ ମୋତେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ଆମେ ଉଭୟ ଅନେକଦିନ ଏକାଠି ଉତ୍କଳ ସାହିତ୍ୟ ସମାଜ କାର୍ଯ୍ୟକାରୀ ସମିତିରେ ଥିଲୁ । ସେ ଏହି ଖବର ଶୁଣି କ୍ରୋଧରେ ଅନ୍ଧ ହୋଇଗଲେ । କହିଲେ, କେବଳ ଛାପିବି ନାହିଁ, ସଂପାଦକୀୟ ଲେଖିବି ଏହି ପିଲାଙ୍କ ବିରୁଦ୍ଧରେ । କହିଲି, କାହାର ଲାଭ ହେବ ? ପୁନର୍ବାର ମୋର କଲେଜ ବଦନାମ ହେବ ଯେ ଅଧ୍ୟକ୍ଷ ମାଡ଼ ଖାଇଲେ । ପିଲାମାନେ ବାହାଦୂରୀ ନେବେ ନେତୃତ୍ୱ ଜାହିର କରି । ମୋର ଅନୁରୋଧ ରକ୍ଷା ହେଲା, ''ସମାଜ'' ଓ ''ମାତୃଭୂମି''ରେ ଏହି ସଂବାଦକୁ ପ୍ରକାଶ କରାଗଲା ନାହିଁ । ଏହି ମର୍ମରେ ମାତୃଭୂମିର ସଂପାଦକ, ମୋର ଅନ୍ତରଙ୍ଗ ବନ୍ଧୁ ବିଚିତ୍ରାନନ୍ଦ କରଙ୍କୁ ମଧ୍ୟ ପ୍ରାର୍ଥନା କରିଥିଲି ଛପା ନ ହେଉ ବୋଲି । ଏହି ଦୁଷ୍ଟ ପିଲାମାନଙ୍କର ଏତେବଡ଼ କୀର୍ତ୍ତି ପ୍ରଚାରିତ ହେଲା ନାହିଁ ।

ତେବେ ସେମାନେ ଭାବିଥିଲେ, ଏହାପରେ ମୁଁ ଇସ୍ତଫା ଦେଇ ଚାଲିଆସିବି । ମାତ୍ର ଘଟଣା ଓଲଟି ଗଲା । ତା' ଆରଦିନ ସକାଳେ ଅଧ୍ୟାପକମାନଙ୍କର ଏକ ସଭା ଆହୂତ କରି ପରୀକ୍ଷା ପରିଚାଳନାରେ କୌଣସି ଖିଲାପ ନ କରିବା ପାଇଁ ଶପଥ କରାଇନେଲି । ଏସ୍.ପି. ସାହେବଙ୍କ କଠୋର ପଦକ୍ଷେପ ଯୋଗୁ ଏହି ଅସାମାଜିକ ଛାତ୍ର ଓ ଅଣଛାତ୍ର ଆଉ ସାହସ କଲେ ନାହିଁ କଲେଜ ହତା ମଧ୍ୟରେ ପଇନ୍ତରା ମାରିବା ପାଇଁ ବା ଧମକ ଦେବା ପାଇଁ । ଖବର ଛପି ରହିଲା ନାହିଁ । ଚାରିଆଡୁ ଶୁଭେଚ୍ଛା ଓ ସନ୍ତୋଷର ବାଣୀ ଝରି ଆସିଲା । ଆମେ ଅଧ୍ୟାପକ ଗୋଷ୍ଠୀ ଅତ୍ୟନ୍ତ ସ୍ୱାଭିମାନ ଓ ସମ୍ମାନର ସହିତ କର୍ମକ୍ଷେତ୍ରରେ ଚଲାଫେରା କରିବାରେ କୌଣସି ସଂକୋଚ ରହିଲା ନାହିଁ । ପରୀକ୍ଷା ସମସ୍ୟା ବହୁବର୍ଷ ପରେ ଏପରି ସୁରୁଖୁରୁରେ ସମାଧାନ ହୋଇଯିବାରୁ ସ୍ୱୟଂ କୁଳପତି ପ୍ରଫେସର ମନ୍ମଥନାଥ ଦାସ ମୋତେ ଆନ୍ତରିକ ଶୁଭେଚ୍ଛା ଜଣାଇ ଯେଉଁ ଆଫିସିକ ଚିଠି ଲେଖିଥିଲେ, ତାହା ଏହିପରି–

Dr. M.N. Das
Vice-Chancellor
D.O.No. VC-9479/83

Utkal University
Vani Vihar
Bhubaneswar-751004
September 21,1983

My Dear Pathani Babu

I as vice-chanceller must feel proud of you as the principal of a famous college. I very much appreciate your strength of mind, noble courage and able decisions. I am requesting the Controller of Examinations to go through all the points you have raised and in due course we should try to implement your suggestions. I have appreciated them very much. I seek your healty co-operation. With my best wishes and kindest regards.

Your's Sincerely,
M.N. Das
21.09.83

Sri Pathani Pattnaik
Principal
Christ College, Cuttack

କୁଳପତିଙ୍କ ଚିଠିଟି ପାଇ ଗୁଣ୍ଡାଙ୍କ ହାତରୁ ମାଡ଼ ଖାଇବାର ସମସ୍ତ ଦୁଃଖ ଭୁଲିଗଲି । ଏହି ଅସାମାଜିକ ପିଲାମାନେ ଏବଂ କେତେଜଣ ଅସହିଷ୍ଣୁ ସହକର୍ମୀ, ଯେଉଁ ସଜମାଛରେ ପୋକ ପକାଇ ଆନନ୍ଦ ପାଆନ୍ତି, ସେମାନଙ୍କର ଷଡଯନ୍ତ୍ର ଫସର ଫାଟିଗଲା । ଅଧିକାଂଶ ସହକର୍ମୀ ଅଧ୍ୟାପକ ଓ ଅଣଅଧ୍ୟାପକମାନେ ଆଗେଇ ଆସିଲେ ଦୃଢ଼ତାର ସହିତ କଲେଜରେ ଶାନ୍ତି ଫେରାଇ ଆଣିବା ପାଇଁ । ଅନୁଭବ କଲି, କଲେଜର ସ୍ୱାର୍ଥ ପାଇଁ ମୋତେ କୌଣସି ପ୍ରଚ୍ଛନ୍ନଶକ୍ତି ବ୍ୟବହାର କରୁଛନ୍ତି । ନଚେତ୍ ମୁଁ ତ ଇସ୍ତଫା ଦେଇ ଦାୟିତ୍ୱରୁ ଓହରି ଆସିବା କଥା । ସରକାରୀ କଳ, ପୋଲିସ୍ ଉଚ୍ଚ କର୍ମକର୍ତ୍ତା, ସହରର ମୁରବୀ ଅଭିଭାବକଗଣ ଏବଂ

ସର୍ବୋପରି ଛାତ୍ରମାନଙ୍କର ଅକୁଣ୍ଠ ସମର୍ଥନ ସମ୍ଭବ କରିଥିଲା ଏହି ଦୁର୍ନୀତି ଓ ଅନୀତିର ଅନ୍ଧକାର ଅପସାରଣ କରିବା ପାଇଁ ।

ଅଧ୍ୟାପକମାନଙ୍କ ସହିତ ଏଭଳି ସାହସିକ ପଦକ୍ଷେପ ନେବାର ଅନ୍ତରାଳରେ ଏକ ଗୁରୁତ୍ୱପୂର୍ଣ୍ଣ ଅପ୍ରୀତିକର ଅନୁଭୂତି ରହିଛି । ସେ ହେଉଛି ଜୁନ୍ ମାସ ଆଠ ତାରିଖ ୧୯୮୩ ମସିହା । ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ନିର୍ଦ୍ଦେଶ ମିଳିଲା ସଂଧ୍ୟାରେ ସେକ୍ରେଟାରୀଏଟ୍‌ରେ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ । ଆଲୋଚ୍ୟ ବିଷୟ-ଛାତ୍ର ବିଶୃଙ୍ଖଳାର କାରଣ ଓ ନିରାକରଣ । ସେକ୍ରେଟାରୀଏଟ୍‌ରେ ପହଞ୍ଚିବା ପାଇଁ କଟକ କଲେକ୍ଟର ଏକ ଗାଡ଼ି ପଠାଇଦେଲେ । ଠିକ୍ ସମୟରେ ପହଞ୍ଚିଲି ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକଙ୍କ ଅଫିସ କକ୍ଷରେ । ମୋ ସହିତ ଥିଲେ ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ର ଓ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଡକ୍ଟର ମହେନ୍ଦ୍ର ରାଉତ । ମୁଖ୍ୟମନ୍ତ୍ରୀ ପଚାରିଲେ, ଛାତ୍ର ବିଶୃଙ୍ଖଳାର କାରଣ କ'ଣ ? କୁଳପତି ଡଃ ରାଉତ ଅତ୍ୟନ୍ତ ପ୍ରଗଳ୍ଭ ଭାବରେ ଆମ କଲେଜର ନିନ୍ଦା କରିବାକୁ ଲାଗିଲେ । ତାଙ୍କ ମତ ହେଲା ଯେଉଁ କଲେଜରେ ଯୋଗ୍ୟ ଅଧ୍ୟାପକ ଥିବେ, ଭଲ ପଢାପଢ଼ି ହେଉଥିବ, ସେଠାରେ ଛାତ୍ର ଅଶାନ୍ତି ହେବ କାହିଁକି ? ଅଥଚ ସେହି ସମୟରେ ଓଡ଼ିଶାର ଅନେକ କଲେଜରେ ଛାତ୍ର ଅଶାନ୍ତି ଲାଗି ରହିଥାଏ । ଏହା ଏକ ଜାତୀୟ ସମସ୍ୟା । ଶିକ୍ଷାମନ୍ତ୍ରୀ ମଧ୍ୟ ଅନ୍ଧଭାବରେ କୁଳପତିଙ୍କ ମନ୍ତବ୍ୟକୁ ସମର୍ଥନ କରୁଥାଆନ୍ତି । ଏହି ବଡ଼ଲୋକଙ୍କ ଗହଣରେ ନିଜକୁ ଅପମାନିତ ମନେକଲେ ମଧ୍ୟ ନୀରବରେ ବସି ରହିଥାଏ । ମୁଖ୍ୟମନ୍ତ୍ରୀ ଜାନକୀବାବୁ ମୋର ମତ ଜାଣିବାକୁ ଇଚ୍ଛା କଲେ । କୁଳପତିଙ୍କ ଅଶାଳୀନ ମନ୍ତବ୍ୟ ମୋର ମନରେ ଭୟଙ୍କର ପ୍ରତିକ୍ରିୟା ସୃଷ୍ଟି କରିଥାଏ । ଅତ୍ୟନ୍ତ ନମ୍ରତାର ସହିତ ଉତ୍ତର ଦେଲି- କୁଳପତି ଓ ମାନ୍ୟବର ଶିକ୍ଷାମନ୍ତ୍ରୀଙ୍କ ସହିତ ମୁଁ ଆଦୌ ଏକମତ ନୁହେଁ । ୧୯୪୪ରେ ପ୍ରତିଷ୍ଠିତ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଭାରତର ବିଭିନ୍ନ ଅଞ୍ଚଳରୁ ଅନେକ ସୁଯୋଗ୍ୟ ଅଧ୍ୟାପକ ଆସି କାର୍ଯ୍ୟ କରୁଥାଆନ୍ତି । ସେମାନଙ୍କର ନିଷ୍ଠା ଓ ବିଦ୍ୱତ୍ତା ବିଷୟରେ ପ୍ରଶ୍ନ କରିବାର କୌଣସି କାରଣ ନାହିଁ । କେବଳ ଓଡ଼ିଆ ସାହିତ୍ୟ ବିଭାଗକୁ ପରିପୁଷ୍ଟ କରିଛନ୍ତି ସ୍ୱନାମଧନ୍ୟ ଅଧ୍ୟାପକ ବାନାମ୍ବର ଆଚାର୍ଯ୍ୟ, ଗୌରୀକୁମାର ବ୍ରହ୍ମା, ଶ୍ରୀଧର ଦାସ, ଗଗନବିହାରୀ ମହାନ୍ତି ଓ ଅନ୍ୟ କେତେଜଣ । ବିଗତ ବହୁବର୍ଷଧରି ଧାରାବାହିକ ଭାବରେ ଖ୍ରୀଷ୍ଟ କଲେଜର ଓଡ଼ିଆ ଅନର୍ସ ପିଲାମାନେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ସର୍ବୋଚ୍ଚ ଆସନ ଅଧିକାର କରିଆସିଛନ୍ତି । ଏପରି ଗୌରବ ରେଭେନ୍ସା କଲେଜ ମଧ୍ୟ ପାଇନାହିଁ । ଆମ କଲେଜର ବଟାନି ଅନର୍ସ, ଫିଲୋସଫି ଅନର୍ସ ଓ ଫିଜିକ୍ସ ଅନର୍ସର ପିଲାମାନେ ମଧ୍ୟ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ବାରମ୍ବାର ଗୌରବ ଅର୍ଜନ କରିଛନ୍ତି । ଯଦି ଯୁକ୍ତି ସ୍ୱରୂପ ଗ୍ରହଣ କରାଯିବ ଯେ ଅଯୋଗ୍ୟ ଅଧ୍ୟାପକ ଓ ତ୍ରୁଟିପୂର୍ଣ୍ଣ ଅଧ୍ୟାପନା ହିଁ ଛାତ୍ର ଅଶାନ୍ତିର ମୂଳ କାରଣ ତେବେ ବନାରସ ବିଶ୍ୱବିଦ୍ୟାଳୟ, ଆଲାହାବାଦ ବିଶ୍ୱବିଦ୍ୟାଳୟ ଓ କଲିକତା ପ୍ରେସିଡେନ୍ସି କଲେଜରେ ଯେଉଁ ଅଶାନ୍ତ ପରିବେଶର ଖବର ଆସୁଛି, ତାର କାରଣ କ'ଣ ? ଭାରତ ବିଖ୍ୟାତ ଜେ.ଏନ୍.ୟୁ ର ଅତ୍ୟନ୍ତ ଅପ୍ରୀତିକର ଖବର ପ୍ରକାଶ ପାଇଥାଏ ।

ସେଥିପ୍ରତି ମଧ ଦୃଷ୍ଟି ଆକର୍ଷଣ କଲି । ମୋର ବିନୀତ ମତ, ଛାତ୍ର ଅଶାନ୍ତିର ପ୍ରଧାନ କାରଣ ରାଜନୈତିକ ହସ୍ତକ୍ଷେପ ଏବଂ ଛାତ୍ରନେତାମାନଙ୍କୁ ରାଜନେତାଙ୍କର ହୀନସ୍ୱାର୍ଥ ପାଇଁ ଅପବ୍ୟବହାର । ଏହି ଛାତ୍ରମାନେ ନିଜକୁ ମୁରବୀ ସାଜି ଯାବତୀୟ ଅଶାନ୍ତିର କାରଣ ହୁଅନ୍ତି । ରାଜନେତାଙ୍କର ଆଶୀର୍ବାଦ ଯୋଗୁ ସେମାନେ ବେପରୁଆ । ଅଧ୍ୟକ୍ଷ, ଅଧ୍ୟାପକ ଓ ପୋଲିସ ବିଭାଗ ସେଠାରେ ଅତ୍ୟନ୍ତ ଅସହାୟ । କଲେଜ ନିର୍ବାଚନ ଏବଂ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଏହି ବିଷମଞ୍ଜି ସମସ୍ତ ବାତାବରଣକୁ କଳୁଷିତ କରିଆସିଛି ବୋଲି ଆମେ ଅନୁଭବ କରୁଛୁ । ଆଲୋଚନା ଏତିକିରେ ଶେଷ ହେଲା । ଆମେ ବିଦାୟ ନେବାକୁ ବାହାରିଲୁ । ସେତେବେଳେ ରାତି ଆଠଟା । ମୁଖ୍ୟମନ୍ତ୍ରୀ ଜାନକୀବାବୁ ବିଶ୍ରାମ କକ୍ଷରେ ମୋତେ ଅପେକ୍ଷା କରିବାକୁ କହି ଜଣେ କମିସନରଙ୍କୁ ଡାକିଲେ ମାତ୍ର ପାଞ୍ଚମିନିଟ୍ ପାଇଁ । ମୁଁ ଲକ୍ଷ୍ୟ କଲି, ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ଦୁଇଜଣ ମନ୍ତ୍ରୀ ଓ ଦୁଇଜଣ ପଦସ୍ଥ ଅଫିସର ଅପେକ୍ଷାରତ । ପାଞ୍ଚମିନିଟ୍ ପରେ ମୋତେ ଡକରା ଆସିଲା । ସହକାରୀଙ୍କୁ ନିର୍ଦ୍ଦେଶ ହେଲା, ସେ ନ କହିଲା ପର୍ଯ୍ୟନ୍ତ ଆମ ଆଲୋଚନାରେ ବାଧା ଦିଆଯିବ ନାହିଁ । ପ୍ରାୟ ଦୁଇଘଣ୍ଟାକାଳ ଜାନକୀବାବୁଙ୍କ ସହିତ ନାନା ବିଷୟରେ ଆଲୋଚନା ହେଉଥାଏ । ସେଥିରେ ସାଂପ୍ରତିକ ରାଜନୀତି, ସରକାରୀ କାର୍ଯ୍ୟ ଏବଂ ଜନମତର ପ୍ରତିକ୍ରିୟା ସଂପର୍କରେ ସେ ଜାଣିବାକୁ ଇଚ୍ଛା କରୁଥାଆନ୍ତି । ସେପରି ଅନ୍ତରଙ୍ଗ ଆଳାପ ଅବିସ୍ମରଣୀୟ । ମୁଁ ନିଃସଙ୍କୋଚ ମନରେ ନିଜର ମନୋଭାବ ବ୍ୟକ୍ତ କରିଚାଲିଥାଏ । ପ୍ରସଙ୍ଗକ୍ରମେ ମୋତେ ନିର୍ଭର ଆଶ୍ୱାସନା ଦେଲେ–ଆପଣ ନିଶ୍ଚିନ୍ତ ମନରେ କାର୍ଯ୍ୟ କରନ୍ତୁ । ରାତି ଦଶଟାପରେ ଭୁବନେଶ୍ୱର ଛାଡ଼ିଲି ।

ଆମର ପରିଶ୍ରମ ସାର୍ଥକ ହେଲା । ଦୀର୍ଘବର୍ଷର କଳଙ୍କ କାଳିମା ଚାହୁଁଚାହୁଁ ପୋଛି ହୋଇଗଲା । ପିଲାମାନେ ଏକପ୍ରକାର ବିସ୍ମୃତ ହୋଇଗଲେ ଯେ ଏଠାରେ ପରୀକ୍ଷାବୈତରଣୀ ପାରିହେବା ପାଇଁ ଅନୀତି କାର୍ଯ୍ୟର ଆଶ୍ରୟ ନିଃସଂକୋଚରେ ଗ୍ରହଣ କରାଯାଇପାରେ ।

କର୍ମକ୍ଷେତ୍ରରୁ ମୁଁ ଅବସର ଗ୍ରହଣ କଲି ୧୯୮୮ ମସିହା ସେପ୍ଟେମ୍ବର ମାସ ଶେଷରେ । ଏହି ଦୀର୍ଘକାଳ ପରୀକ୍ଷା ପରିଚାଳନାରେ ଥିଲା ଆମ କଲେଜରେ ଅମୃତ ଅନୁଭବ । ଅଥଚ ସେହି ସମୟରେ ଭାରତର ଅନ୍ୟ ପ୍ରଦେଶରେ ଓ ଓଡ଼ିଶାର ବିଭିନ୍ନ କଲେଜ ତଥା ବିଶ୍ୱବିଦ୍ୟାଳୟରେ ଅଶାନ୍ତ ବାତାବରଣ ରାଜପଣ କରୁଥାଏ । ଏହି ବିଷୟରେ ସେଦିନର ସଂବାଦପତ୍ର ହେଉଛନ୍ତି ମୂକସାକ୍ଷୀ । ଏଠାରେ କେତେକ ସଂବାଦ ଉଦ୍ଧାର କରାଯାଉଛି ।

''ସମାଜ'' ୧୩.୪.୧୯୮୬– 'କପି' ଧରାକୁ କେନ୍ଦ୍ରକରି ଚୌଦ୍ୱାର କଲେଜରେ ଜଣେ ଘରୋଇ ପରୀକ୍ଷାର୍ଥୀ ଜନୈକ ଅଧ୍ୟାପକଙ୍କୁ ମାଡ଼ ମାରିଥିଲେ ।

**Times of India-(New-Delhi) 13.4:1986**

April 11 (P+1) The Patna University campus has of late, witnessed a spate of untoward incidents of violence and murders, mostly sleaming from the strict attitude of the authorite against use of unfaire means in the intermidiate examinations, now underway.

Tension continued to prevail on the campus even today following the killing of an examination clerk of B.N. College inside the campus on wednesday. The Colleges under the Patna University wore a deserted look with the employees of the University going on an idefinite strike in protest against the incident.

x x x x x

Only few days back as many as six teachers of B.N. College were assulted by some intermediate examines when they were prevented from using unfair means

x x x x x

According to the police, the attempt on the life of the principal of a high school here recently was due to explusion of an examine caught while adopting unfair means."

**Times of India (New Delhi) - 18.01.1986-**

Four BHU Students expelled for violence.

**Times of India (New Delhi)- 26.11.1987**

"Dons being harassed in Betul. xxx According to the teachers, the police started acting vindictively after the son of a superintendent of police was caught copying during B.Sc examinations held in April. xxx The teachers complained that some students had threatented them and absued them publicly after the mass-copying case. Some women teachers sought transfer when they were threatended that their faces would be disfigured. As the police failed to offer their protection, the principal recommended their transfer."

**Times of India- (New Delhi)- 27.05. 1988**

'Copying faver' rages on U.P. campuses". Lucknow. May-25. "Mass copying in examinations have become institutionalised in the state Universities. Reports from faizbad, Lucknow, Allahabad, Kanpur and Gorakhpur Universities point to a xerox between students and managements of associated colleges which blantly organise 'mass copying camps' during examinations.

ଏହି ଦୀର୍ଘ ସଂବାଦରେ ଉତ୍ତର ପ୍ରଦେଶର ଲକ୍ଷ୍ନୌ, ଗୋରଖପୁର, ଫୈଜାବାଦ, କାନପୁର, ଆଲାହାବାଦ ପ୍ରଭୃତି ବିଶ୍ୱବିଦ୍ୟାଳୟର ଦାରୁଣ ପରୀକ୍ଷା ବିପର୍ଯ୍ୟୟ ବିଷୟରେ ଆଲୋଚନା କରାଯାଇଛି ।

ଓଡ଼ିଶାର ବିଭିନ୍ନ କଲେଜ ଓ ବିଶ୍ୱବିଦ୍ୟାଳୟରେ ଏପରି କିଛି ବିଶୃଙ୍ଖଳିତ ଆଚରଣ ବିଷୟରେ ସଂବାଦ ପ୍ରକାଶ ପାଉଥାଏ । ମାତ୍ର ସୁଖର କଥା, ଯେ ଆମର ଛାତ୍ରମାନେ ଏକମନରେ ସହଯୋଗ କରୁଥାଆନ୍ତି ଅଧ୍ୟାପକମାନଙ୍କ ସହିତ କଲେଜରେ ଶାନ୍ତ ବାତାବରଣ ଫେରାଇଆଣିବା ପାଇଁ ।

କଲେଜ ସିନା ଶାନ୍ତ ହୋଇଗଲା, ମାତ୍ର ମୋର ଅଶାନ୍ତିର ସୀମା ରହିଲା ନାହିଁ । ଯେଉଁ ଅସାମାଜିକ ଛାତ୍ରମାନଙ୍କୁ ବାଧ କରାଯାଇଥିଲା ଟି.ସି. ନେଇ କଲେଜ ଛାଡ଼ିଯିବା ପାଇଁ ଏବଂ ଯେଉଁମାନଙ୍କ ନାମରେ ପୋଲିସ୍ ମକଦ୍ଦମା ଦାୟର କରିଥିଲେ, ସେମାନେ କେବଳ ଗୁଣ୍ଡା ଲଗାଇ ମାଡ଼ ମାରିଲେ ନାହିଁ, ମୋତେ ନାନା ଭାବରେ ପ୍ରତ୍ୟେକ ରାତିରେ ଫୋନ୍ ଯୋଗେ ଧମକ ଦେଉଥିଲେ । କେତେଜଣଙ୍କର ସଂପର୍କୀୟ ଥିଲେ କଟକର ଶକ୍ତିଶାଳୀ ନାଗରିକ । ସେମାନେ ମଧ୍ୟ ନାନା ପ୍ରଭାବ ପକାଇ ମୋତେ ହନ୍ତସନ୍ତ କରୁଥିଲେ । ଏ ଦୁଃଖ କାହାକୁ କହିବି ? ସମସ୍ତେ ସୁଖର ସାଥୀ । ଅସଲ ଦୁଃଖବେଳେ କେହି ପିଠିରେ ପଡ଼ିବେ ନାହିଁ । ରାତିରେ ଟେନ୍ସନ୍ ଯୋଗୁ ଭଲ ନିଦ ହୁଏ ନାହିଁ । ମୋର ହନ୍ତସନ୍ତ ଅନୁଭୂତି ପରିବାର ଲୋକେ ମଧ୍ୟ ଜାଣନ୍ତି ନାହିଁ । ଦିନେ ନିଷ୍ପତ୍ତି କଲି, ଯେଉଁ ଦାୟିତ୍ୱ ଦିଆଯାଇଥିଲା, ତାହା କୌଣସି ମତେ ସୁରୁଖୁରୁରେ ସମାଧାନ ହୋଇଗଲା । ଆଉ ଏ ଟେନ୍ସନ୍ କାହିଁକି ? ଅଧ୍ୟାପକ ଭାବରେ କେତେ ଶାନ୍ତିରେ ଥିଲି ଏବଂ ପିଲାମାନଙ୍କର ସ୍ନେହ, ଶ୍ରଦ୍ଧାର ଭାଗୀଦାର ହେଉଥିଲି । ମନେହେଲା, ଅଭିଶପ୍ତ ନହେଲେ କେହି ଏପରି ଅଧ୍ୟକ୍ଷ ଆସନରେ ଆସୀନ ହୁଏ ନାହିଁ । ଅଧ୍ୟକ୍ଷ ଦାୟିତ୍ୱରୁ ବିଦାୟ ମାଗିଲି ପରିଚାଳନା ସମିତି ନିକଟରେ ।

ମୁଁ ସିନା ଦାୟିତ୍ୱରୁ ମୁକ୍ତି କାମନା କରୁଥିଲି । ମାତ୍ର ଦୈବ ମୋତେ ହାତଠାରି ହସୁଥିଲା ମୁରୁକି ମୁରୁକି ।

•••

# ଲେକିନ୍ କମ୍ବଲ୍ ମୁଝେ ନହିଁ ଛୋଡ଼ା

**ସେ**ତେବେଳର ମାନସିକ ଅବସ୍ଥାକୁ ଚିନ୍ତାକରି କାହାଣୀଟିଏ ମନେପଡୁଛି । ଏକ ନଦୀକୂଳରେ ଦୁଇଜଣ ସନ୍ୟାସୀ ସ୍ନାନ କରୁଥିଲେ । ହଠାତ୍ ଦେଖାଗଲା, ନଦୀସ୍ରୋତରେ ଗାଢ଼ କଳାରଙ୍ଗର କିଛି ଗୋଟାଏ ଭାସିଯାଉଛି । ଜଣେ ସନ୍ୟାସୀ ଭାବିଲେ, ଏହା ନିଶ୍ଚୟ କଳା କମ୍ବଳଟିଏ କେଉଁଠାରୁ ଭାସି ଆସୁଛି । ପାଣିରୁ ଉଦ୍ଧାର କଲେ କାମରେ ଆସିବ । ଏହା ବିଚାରି ସେ ତୁରନ୍ତ ପାଣିକୁ ଡେଇଁପଡ଼ିଲେ । ପହଁରି ଯାଇ କମ୍ବଳ ରୂପି କଳା ଜିନିଷକୁ ଧରିବାମାତ୍ରକେ ସେ ବାବାଜୀକୁ ଖୁବ୍ ଜୋର୍‌ରେ ଧରିପକାଇଲା । ବାବାଜୀଙ୍କର ମୁକୁଳିବାର ଉପାୟ ନଥିଲା । ଧୀରେ ଧୀରେ ଭାସି ଯାଉଯାଉ ସାଥୀ ବାବାଜୀକୁ ଆତଙ୍କରେ ଶୁଣାଇ ଶୁଣାଇ କହୁଥାଆନ୍ତି– "କମ୍ବଳକୁ ମୁଁ ଛାଡ଼ି ଦେଲିଣି । ମାତ୍ର ମୋତେ ସେ ଛାଡ଼ିବା ପାଇଁ ନାରାଜ ।" ସାଥୀ ବାବାଜୀଜଣଙ୍କ ଯେ ଗୋଟିଏ ଭାସମାନ ଭାଲୁ କବଜାରେ ବନ୍ଦୀ ହୋଇଯାଇଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏହି ବିଚରା କମ୍ବଳ–ବନ୍ଦୀ ବାବାଜୀ ପରି ମୋର ଅବସ୍ଥା ହେଲା । କିପରି ଏହି ଅଧକ୍ଷ ଦାୟିତ୍ୱରୁ ମୁକ୍ତି ମିଳିବ ? ଜଣେ ଡାକ୍ତରଙ୍କ ସାର୍ଟିଫିକେଟ ଯୋଗାଡ଼ କଲି । ସେ ଦୃଢ଼ଭାବରେ ସୁପାରିଶ କରିଦେଲେ ମୋର ପୂର୍ଣ୍ଣ ବିଶ୍ରାମ ପାଇଁ । ସେହି ଡାକ୍ତରୀ ସାର୍ଟିଫିକେଟ ସହିତ କଟକ ଖ୍ରୀଷ୍ଟିଆନ ଏଡୁକେଶନ ବୋର୍ଡ଼ ସଭାପତିଙ୍କୁ ଦରଖାସ୍ତଟିଏ ଲେଖିଲି । କାରଣ ଖ୍ରୀଷ୍ଟିଆନ ଏଡୁକେଶନ ବୋର୍ଡ଼ ହେଉଛନ୍ତି ଅଧକ୍ଷଙ୍କର ନିଯୁକ୍ତିଦାତା, ଚିଠିଟିର ଅବିକଳ ନକଲ ଏହିପରି–

**Christ College, Cuttack-8**

Pathani Pattnaik, M.A
Principal 9.11.83

To
The president
Cuttack Christian Education Board, Cuttack

Sir,

As per the decision and orders of the C.C.E.B communicated to me by memo No. F/33-99 dated the 28th June 1982, I took over charge as the principal of Christ College on the Ist July 1982.

I have tried to discharge my duties so long to the best of my ability Though the post does not suit my nature, temperament and habit, I carried on so long with a will and determination to do what is expected of me by my authorities. But this has seriously affected me both physically and mentally. I feel now that I cannot work on as the principal of the college as efficiently as before because of my health conditions My consulting physician advises me to take rest and avoid worries.

I therefore request you to kindly relieve me from my responsibilities as the principal of the college and place me in my former post as the Reader and Head of the Department of Oriya at an early date.

With grateful thanks.

Your's faithfully
Pathani Pattnaik

**N.B.**- Copy to Sj Simon Bihari, M.A., Secretary, Christ College G.B. for information and with a request to circulate it amongst the members of the G.B.

-Copy to President, G.B.

ମୋର ଦରଖାସ୍ତ ପାଇବାର ପାଞ୍ଚଦିନ ପରେ ଖ୍ରୀଷ୍ଟିଆନ ଏଡୁକେଶ ବୋର୍ଡ଼ର ପ୍ରେସିଡେଣ୍ଟ ଶ୍ରୀ ଜେ.ବି. ସିଂହ, ଆଇ.ଏ.ଏସ୍‌ଙ୍କଠାରୁ ଚିଠିଟିଏ ପାଇଲି । ସେ ଲେଖିଥିଲେ ଏହିପରି–

**Cuttack Christian Education Board**
(Estd-1925)
(Registered under the Act xxi of 1860)

Sri J.B. Singh, I.A.S, (Rtd) Dt. 14.11.1983

Dear Sri Pattnaik

I am much grieved to receive your letter requesting the C.C.E. Board to relieve you from the principalship on health ground. I have observed that you have discharged the responsibility devolved on you as principal for the last one and half year quite efficiently and your sincere service deserves much appreciation. Your letter will be duly considered by the C.C.E. Board very shortly and you would request you to await the decision of the Board.

I am earnestly praying to God for your speedy recovery.

Your's sincerely
Sd/-
(J.B. Singh)

ସେହି ମାସର ୨୯ ତାରିଖରେ ଖ୍ରୀଷ୍ଟିଆନ ଏଡୁକେଶନ ବୋର୍ଡ଼ର ସେକ୍ରେଟାରୀ ମୋତେ ଗୋଟିଏ ଚିଠି ସହିତ ବୋର୍ଡ଼ରେ ଗୃହୀତ ପ୍ରସ୍ତାବର ଏକ ପ୍ରତିଲିପି ପ୍ରେରଣ କଲେ ।

ତାହାର ନକଲ ଏହିପରି-

29th November 1983

To

Sri P. Pattnaik, M.A.
Principal, Christ College
Cuttack

Dear Sri Pattnaik

Enclosed herewith extract of the minutes of the Emergent meeting of the executive committee of the cuttack Christian Education Board on 28.11.1983 for your information and necessary action.

The Board appreciates the good work done by you as principal of Christ College. May god bless you and give you strength and wisdom to carry on the work of principal.

With best wishes.

Your's sincerely
A.K. Patra
Secretary : C.C.E.B

Copy to the Secretary, Governing Body Christ College Cuttack for information and necessary action.

Sd/-
A.K. Patra
Secretary : C.C.E.B

ନଭେମ୍ବର ୨୮ ତାରିଖ ଖ୍ରୀଷ୍ଟିଆନ ଏଡୁକେଶନ ବୋର୍ଡ଼ ମୋର ଦରଖାସ୍ତ ଉପରେ ଯେଉଁ ପ୍ରସ୍ତାବ ଗ୍ରହଣ କରି ମୋତେ ଅଧକ୍ଷ ଦାୟିତ୍ୱରୁ ଓହରି ନ ଯିବା ପାଇଁ ଆନ୍ତରିକ ଅନୁରୋଧ କରିଥିଲେ, ତାହାର ପ୍ରତିଲିପି ନିମ୍ନରେ ପ୍ରଦତ୍ତ ହେଲା ।

1. Letter dated 9.11.1983 received from the principal, Christ College, Cuttack read and discussed.

Sri P. Pattnaik, Principal, Christ College has addressed a letter dated 9.11.83 to the president, Cuttack Christian Education Board stating that he has done his duties to the best of his ability, though the post does not suit his nature temperament and habit. But this is seriously affected him, both physically and mentally and that he cannot now work as principal of the college as efficiently as before because of his health conditions. His consulting physician has advised him to take rest and avoid worries. Sri Pattnaik has therefore requested to relive him from the responsibility of the principal of the college and revert him to his former post of reader and Head of the Department Oriya of the college.

The Secretary Governing Body and the representative members of the C.C.E.B. Board in the Governing Body reported that Sri Pattnaik as principal has restored discipline study atmosphere and regular attendance in the college. He has bravely faced the staff, students

and their guardians and with the help of the secretary has implemented the decisions of the Governing Body. Therefore this juncture when order and discipline have been established out of chaos, indiscipline, it is difficult to relieve the present principal.
The secretary further reported that in order to give some relief to the present principal some of his duties have been assigned to the vice-principal and he has agreed to attend to it in consultation with the principal where necessary. In this circumstances Sri Pattnaik may be requested to continue to remain as the principal of the college so that the good work done may continue and thereby the good name of the college may be preserved.
Resolved : That in the circumstances considering the improvement made during the short tenure of the principal, there is every reason to believe that the continuance of the present principal will be of immense help guarantee to ensure and further the good work done so far. Therefore in the interest of the college and to foster education in a befitting study atmosphere Sri P. Pattnaik be requested to reconsider and continue as principal of the college.

ନଭେମ୍ବର ମାସ ନଅ ତାରିଖରେ କଟକ ଖ୍ରୀଷ୍ଟିଆନ ଏଡୁକେସନ୍ ବୋର୍ଡ଼ର ସଭାପତି ମି. ଜେ.ବି. ସିଂହ, ଆଇ.ଏ.ଏସ୍ (ଅବସରପ୍ରାପ୍ତ)ଙ୍କୁ ଦାୟିତ୍ୱରୁ ଅବ୍ୟାହତି ନେବା ପାଇଁ ପ୍ରାର୍ଥନା କରି ଦରଖାସ୍ତ ପ୍ରେରଣ କରିଥିଲି । ଏହାରି ମଧ୍ୟରେ ପରିଚାଳନା ସମିତି ଆଦୌ ଚିହ୍ନା ନ ପଡ଼ି ସରକାରୀ କଳର ପ୍ରଭାବ ପକାଇବା ପାଇଁ ଉଦ୍ୟମ କଲେ ବୋଲି ପରେ ଅନୁଭବ କଲି । ସେଦିନ ଥିଲା ୧୯୮୩ ନଭେମ୍ବର ମାସ ଚବିଶ ତାରିଖ । ଓଡ଼ିଶା ସରକାରଙ୍କର ଶିକ୍ଷାବିଭାଗ ସଚିବ ସୀତାକାନ୍ତ ମହାପାତ୍ରଙ୍କଠାରୁ ଆଫିସିକ ଆଦେଶ ମିଳିଲା ସେକ୍ରେଟେରିଏଟ୍‌ରେ ସାକ୍ଷାତ କରିବା ପାଇଁ । ଅନେକ ସନ୍ତର୍ପଣରେ ଭୁବନେଶ୍ୱର ଗଲି । ମୋ ସହିତ ରହିଥିଲେ ପରିଚାଳନା ସମିତିର ସଭାପତି ମି. ମହାପାତ୍ର ଓ ସଂପାଦକ ସାଇମନ ବିହାରୀ । ଭାବୁଥାଏ, ସୀତାକାନ୍ତ ବାବୁ ଆମର ସାଂପ୍ରତିକ ସାହିତ୍ୟରେ ଜଣେ ଶକ୍ତିଶାଳୀ କବି । ତାଙ୍କର କବିତ୍ୱର ସିଦ୍ଧି ରୂପାୟିତ ହୋଇଛି ଦୀପ୍ତି ଓ ଦ୍ୟୁତି ଅଷ୍ଟପଦୀ, ଚିତ୍ରନଦୀ, ଶବ୍ଦର ଆକାଶ, ସମୁଦ୍ର, ସମୟର ଶେଷ ନାମ, କପଟପଶା, ଆରଦୃଶ୍ୟ, ଫେରିଆସିବାର ବେଳ, କାହାକୁ ପୁଛିବା କୁହ, ଚଢ଼େଇ ତୁ କି ଜାଣୁ, ପଦଚିହ୍ନ, ବର୍ଷା ସକାଳ ଇତ୍ୟାଦି । ଭ୍ରମଣ କାହାଣୀ 'ଅନେକ ଶରତ' । ସୀତାକାନ୍ତ ପ୍ରଶାସକ ହେବା ପୂର୍ବରୁ ରେଭେନ୍ସା ମହାବିଦ୍ୟାଳୟରେ ଅଳ୍ପକାଳ ଅଧ୍ୟାପନା କରିଥିଲେ । ଭାବୁଥିଲି, ମୋ ପରି ଜଣେ ସାହିତ୍ୟସେବୀ ଅଧ୍ୟାପକ ଆଉଜଣେ ପ୍ରସିଦ୍ଧ ସାହିତ୍ୟରଥୀ ଓ ଭୂତପୂର୍ବ ଅଧ୍ୟାପକଙ୍କର ସହାନୁଭୂତି ଲାଭ କରିବ ଏବଂ ସରକାର ନିଶ୍ଚୟ କିଛି ଭିନ୍ନ ବ୍ୟବସ୍ଥା କରିବେ କଲେଜ ପାଇଁ ।

ଓଡ଼ିଆରେ ଢଗଟିଏ ଅଛି । 'ମା' ଝିଅ ଦେଉଳକୁ ଗଲେ, ଯେଝା ସୁଖ ଯେ ମନାସିଲେ ।' ମୋ କପାଳରେ ତାହାହିଁ ଘଟିଲା । ଶିକ୍ଷାସଚିବ ପ୍ରଥମ ସାକ୍ଷାତରେ କିଛି ସମୟ ଆନ୍ତରିକ ସହାନୁଭୂତି ପ୍ରଦର୍ଶନ କଲେ । କିନ୍ତୁ ହଠାତ୍ ରୂପ ବଦଳିଗଲା । ପଦୁଟିଏ

ମାତ୍ର ଅନ୍ତିମବାଣୀ ଶୁଣାଇଦେଲେ– "The govenment is not in a mind to spare you." ନୀରବରେ ଆଦେଶ ପାଳିବି ବୋଲି ନିଷ୍ପତ୍ତି କଲି । କାରଣ ସରକାରଙ୍କ ନଜରରେ ଅଧ୍ୟକ୍ଷ ଅବାଧ ହେଲେ କଲେଜର ହିଁ ବଦନାମ ହେବ । ତେବେ ଶିକ୍ଷାସଚିବ କଟକର ପୋଲିସ ସାହେବ, କଲେକ୍ଟର ଏବଂ ଉଚ୍ଚ ପୋଲିସ୍ କର୍ତ୍ତୃପକ୍ଷଙ୍କୁ ମୋରି ସାମ୍‌ନାରେ ଟେଲିଫୋନ କରି ଆମ କଲେଜର ସମସ୍ୟା ବିଷୟରେ ମୋର ସହାୟକ ହେବା ପାଇଁ ଅନୁରୋଧ କଲେ । ତେଣୁ ଫେରି ଆସିବାର ଚାରିଦିନ ପରେ ଖ୍ରୀଷ୍ଟିଆନ ଏଡୁକେସନ ବୋର୍ଡ଼ ମୋତେ ଅନୁରୋଧ କରି ପ୍ରସ୍ତାବ ଗ୍ରହଣ କଲେ ବୋଲି ଉଲ୍ଲେଖ କରିଛି ।

ଯେଉଁ ଡାଳକୁ ଆଶ୍ରା କଲି, ସେ ଡାଳଟି ଛିଡ଼ିପଡ଼ିଲା । ତଥାପି ମୁଁ ଆଶା ହରାଇ ନଥାଏ । ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କର ଏକତମ ଘରୋଇ ସହକାରୀ ମୋର ଅନ୍ତରଙ୍ଗ ପାରିବାରିକ ବନ୍ଧୁ । ହଠାତ୍ ଦିନେ ତାଙ୍କର ଏକନମ୍ବର ୟୁନିଟ ବାସଭବନରେ ପହଞ୍ଚିଲି । ତାଙ୍କୁ ଅନୁରୋଧ କଲି, ମୋତେ ମୁଖ୍ୟମନ୍ତ୍ରୀଙ୍କ ସହିତ ସାକ୍ଷାତ କରିବାର ସୁବିଧା କରିଦେବା ପାଇଁ । ସେ କାରଣ ପଚାରିଲେ । ମୁଁ କହିଲି, ମୋର ଆଉ ଅଧ୍ୟକ୍ଷ ଝଞ୍ଜାଳ ମୁଣ୍ଡାଇବା ପାଇଁ ମାନସିକତା ନାହିଁ । ଅଶାନ୍ତିରେ ଦିନ କାଟୁଛି । ଶିକ୍ଷାସଚିବ, ପରିଚାଳନା ସମିତି, ଖ୍ରୀଷ୍ଟିଆନ ଏଡୁକେଶନ ବୋର୍ଡ଼ ସମସ୍ତେ ଏକାଠି ହୋଇଛନ୍ତି ମୋତେ ଅବ୍ୟାହତି ନ ଦେବା ପାଇଁ । ଏକମାତ୍ର ଭରସା ମୁଖ୍ୟମନ୍ତ୍ରୀ । ସେ ଇଚ୍ଛା କଲେ ସବୁ ଓଲଟପାଲଟ ହୋଇଯିବ । ମୋର ବନ୍ଧୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ନ ଯିବା ପାଇଁ ପରାମର୍ଶ ଦେଲେ । କହିଲେ, ମୁଖ୍ୟମନ୍ତ୍ରୀ ନ୍ ଜାଣି କ'ଣ ଏସବୁ ହେଉଛି । ସେ ତୁମକୁ ଭଲପାଆନ୍ତି । ଯଦି ସେ କହିବେ, ''ମୋର ଅନୁରୋଧ, ଦାୟିତ୍ୱରୁ ଓହରି ଆସନାହିଁ । କାରଣ ବହୁବର୍ଷ ଧରି କଲେଜରେ ଅଶାନ୍ତି ସରକାରଙ୍କର ମୁଣ୍ଡବ୍ୟଥାର କାରଣ ହୋଇଛି । ତୁମେ କ'ଣ ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧକୁ ଟାଳିପାରିବ ? ବରଂ ନିଶ୍ଚିନ୍ତ ରୁହ, ତାଙ୍କର ସହାନୁଭୂତି ଓ ସମର୍ଥନ ତୁମ ପାଇଁ ସବୁବେଳେ ରହିଛି ।'' ବନ୍ଧୁଙ୍କର ପରାମର୍ଶକୁ ଘେନା କରି ଫେରିଆସିଲି ସମସ୍ତ ମାନସିକ ଦ୍ୱନ୍ଦ୍ୱକୁ ପରିହାର କରି ।

ଆରମ୍ଭ ହେଲା, କଲେଜ ସଂସ୍କାରର ଆଉ ଏକ ଅଧ୍ୟାୟ । ପୂର୍ବରୁ କହିଛି, ସୁରୁଖୁରୁରେ ଆଡ଼ମିସନ୍ ଓ ଏକ୍‌ଜାମିନେସନ୍ ତପ୍ତ ବୈତରଣୀ ପାରି ହୋଇ ଆସିଲୁ । ଆଉ ରହିଲା କଲେଜ ଇଲେକ୍‌ସନ୍ ।

ପୂର୍ବରୁ ନିର୍ବାଚନ ମାନଙ୍କରେ ପ୍ରଚାର କରିବା ପାଇଁ କଲେଜର କାନ୍ଥବାଡ଼କୁ ବିବର୍ଣ୍ଣ କରିଦିଆଯାଇଥାଏ । କେବଳ କାଗଜ ପ୍ରଚାରର ପତ୍ର ନୁହେଁ, ବିଭିନ୍ନ ପ୍ରକାର ଅଠାପରି ରଙ୍ଗଲେଖାରେ କଲେଜ ବିବର୍ଣ୍ଣ ଦିଶୁଥାଏ । ସମଗ୍ର ପ୍ରଦେଶର ଶିକ୍ଷାନୁଷ୍ଠାନରେ ଅନ୍ବେବହୁତେ ତାହାହିଁ ଅବସ୍ଥା । ନିର୍ବାଚନ ଲଢ଼ିବା ନାମରେ କଲେଜକୁ ହତଶ୍ରୀ କରିବାକୁ କେହି କୁଣ୍ଠିତ ହୁଅନ୍ତି ନାହିଁ । କାନ୍ଥ ବାରଣ୍ଡା ଓ ପାହାଚ ମଧ୍ୟ ଏଥିରୁ ତ୍ରାହି ପାଏ ନାହିଁ । ପ୍ରଥମେ ପ୍ରଚୁର ଅର୍ଥ ବ୍ୟୟ କରି ସମଗ୍ର କୋଠାକୁ ଭିତର ବାହାର ରଂଗ କରିଦିଆଗଲା । କାନ୍ଥବାଡ଼ ଯୁଆଡ଼େ ଚାହିଁଲେ ବଡ଼ ଶାନ୍ତି ଅନୁଭବ ହେଉଥାଏ । ବିଭିନ୍ନ ଦଳର ଛାତ୍ରନେତାଙ୍କୁ ଏକାଠି କଲି ।

ସେମାନଙ୍କୁ ପ୍ରଥମେ ବିଶ୍ୱାସକୁ ନେଇ ନାନା ପ୍ରକାର ଆଲୋଚନା କଲି । ଅନୁରୋଧ କଲି ଏ କଲେଜ ତୁମର । ତୁମରି ମୁରବୀମାନେ ଏ କଲେଜ ତିଆରି କରିଛନ୍ତି ତୁମମାନଙ୍କର ଶିକ୍ଷାର ପ୍ରସାର ପାଇଁ । ଆମର ଏ ନିଜର ଅନୁଷ୍ଠାନ । ଏହାର ଶ୍ରୀସମ୍ପଦ ରକ୍ଷା କରିବା ଆମର ପରମ କର୍ତ୍ତବ୍ୟ । ତୁମେ କିଛି ବର୍ଷ ଅଧ୍ୟୟନ କରି କଲେଜ ଛାଡ଼ିବ । ମାତ୍ର ତୁମର ଏ ସହଯୋଗ ସବୁଦିନ ପାଇଁ ମନେରହିବ । କୌଣସି ପ୍ରକାର ପ୍ରଚାରପତ୍ର ଓ ରଙ୍ଗଲେଖାରେ କଲେଜ ବିଲିଡିଂକୁ ହତଶ୍ରୀ କରାଯିବ ନାହିଁ । ଏହି କାର୍ଯ୍ୟଟି ସୁରୁଖୁରୁରେ କରିପାରିଲେ ତୁମର ପ୍ରକୃତ ନେତୃତ୍ୱ ଅଛି ବୋଲି ପ୍ରମାଣିତ ହେବ । ମୋର ପରମ ସୌଭାଗ୍ୟ, ଛାତ୍ରନେତାଗଣ ସମ୍ମତି ଜଣାଇଲେ ଏବଂ ସେହି ଅନୁସାରେ କାର୍ଯ୍ୟ କଲେ । ପ୍ରଚାର କରିବା ପାଇଁ ଅନ୍ୟବ୍ୟବସ୍ଥା କରାଯାଇଥିଲା । ଅତ୍ୟନ୍ତ ସୁରୁଖୁରୁରେ ନିର୍ବାଚନ ବିଧିକୁ ପିଲାମାନେ ମୋର ପ୍ରାୟ ସାତବର୍ଷ ରହଣି କାଳରେ ଅକୁଣ୍ଠଚିତ୍ତରେ ପାଳନ କରିଥିଲେ । କଲେଜ କାନ୍ଥର ଗୋଟିଏ ବର୍ଗ ଇଞ୍ଚ ମଧ୍ୟ ଅସୁନ୍ଦର କରିବାକୁ ସେମାନେ ସୁଯୋଗ ଦେଇ ନଥିଲେ । ଥରେ ପିଲାମାନଙ୍କୁ ବିଶ୍ୱାସକୁ ନେଇଗଲେ ଅସମ୍ଭବ କାର୍ଯ୍ୟ ମଧ୍ୟ ସମ୍ଭବ ହୋଇପାରେ ବୋଲି ଅନୁଭବ କଲି । ଛାତ୍ରନେତାମାନଙ୍କୁ ଆଉ ଗୋଟିଏ ବିଷୟରେ ମନେଇ ପାରିଥିଲି । କହିଲି- ଏ କଲେଜ ତୁମର । ଏହି ହତା ମଧ୍ୟରେ ତୁମେ ସଭାସମିତି କରିବାରେ କାହାରି ଆପତ୍ତି କରିବାର ନାହିଁ । ମାତ୍ର ବାହାର କଲେଜର ଛାତ୍ରନେତାମାନେ ତୁମ କଲେଜରେ ଦାଦାଗିରି କରିବା ତୁମର ସମ୍ମାନରେ ଆଞ୍ଚ ଆଣିବ ନାହିଁକି ? ତୁମ୍ଭେମାନେ ଏହି ବାହାର ହସ୍ତକ୍ଷେପକୁ ଉତ୍ସାହିତ କରିବ ନାହିଁ । ପରିଣାମରେ କଲେଜ ବାହାର ପିଲାମାନଙ୍କର ପ୍ରାଦୁର୍ଭାବ ମଧ୍ୟ ରହିଲା ନାହିଁ । ମୋର ବିଶ୍ୱାସ ଥିଲା, ଯଦି ନିୟମିତ ଅଧ୍ୟାପନା ଜାରି ରହିବ, ପିଲାମାନେ ସନ୍ତୁଷ୍ଟ ରହିବେ, ଛାତ୍ର ଅଶାନ୍ତି ଅନେକ ପରିମାଣରେ କମିଯିବ । ଏଣିକି ମୋର କାମ ହେଲା ପ୍ରତ୍ୟେକଦିନ କଲେଜ କମ୍ପାଉଣ୍ଡରେ ଘୂରିଆସିବା । ଏହାଦ୍ୱାରା ଗୋଟିଏ ଲାଭ ହେଲା- ଅମନଯୋଗୀ ପିଲାମାନେ ଆଉ କ୍ଲାସ୍ ବାହାରେ ଜମା ହୋଇ କୋଳାହଳ କଲେ ନାହିଁ । ସାହିବସ୍ତିର ଅଣଛାତ୍ରପିଲାମାନେ ସାହସ କଲେ ନାହିଁ କଲେଜ ହତାରେ ଆଡ଼ା ଜମାଇବା ପାଇଁ । ଯେଉଁ କେତେଜଣ ସହକର୍ମୀ ଅଧ୍ୟାପକ କ୍ଲାସ୍ ନେବାରେ ଅବହେଳା କରୁଥିଲେ, ତାହା ଧୀରେ ଧୀରେ ସୁଧୁରିଗଲା । ଅଧ୍ୟାପକ କ୍ଲାସ୍‌ନେବା ସମୟରେ କ୍ଲାସ୍‌ରୁମ୍‌ରେ ଯଦି କୌଣସି ଛାତ୍ର ଇଚ୍ଛାକୃତ ବିଶୃଙ୍ଖଳିତ ଆଚରଣ ପ୍ରଦର୍ଶନ କରୁଥିଲେ ସେମାନଙ୍କୁ ଡାକିଆଣି ସତର୍କ କରିଦେଉଥିଲି । ସେଥିରେ ଯଦି ସଫଳତା ନମିଳିଲା, ତେବେ ସେମାନଙ୍କ ମୁରବୀମାନଙ୍କୁ ଡକାଇ ଆଣି ସମସ୍ତ ବିଷୟ କହିବି ବୋଲି ଧମକ ଦେଉଥିଲି । ତେଣୁ ଆପେଆପେ ସେହି ଚିତ୍ତଚାଞ୍ଚଲ୍ୟ ପିଲାମାନେ ସୁଧୀର ହୋଇଯାଉଥିଲେ । ଏହି ପ୍ରସଙ୍ଗରେ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ଗ୍ରହଣ କରାଗଲା । ଯେଉଁ ପିଲାମାନେ କଲେଜକୁ ଆସି ମଧ୍ୟ କ୍ଲାସ୍‌ରୁମ୍‌ରେ ଅନୁପସ୍ଥିତ ରହୁଥିଲେ, ସେମାନଙ୍କ ମୁରବୀମାନଙ୍କୁ ଚିଠି ଦ୍ୱାରା ଜଣାଇଦେଲି । ଯେଉଁମାନେ ଘରୁ ଟଙ୍କା ଆଣି ମଧ୍ୟ କଲେଜ ଦରମା ଦେଉନଥିଲେ କିମ୍ବା କ୍ଲାସ୍ ପରୀକ୍ଷାରେ ଅନୁପସ୍ଥିତ ରହୁଥିଲେ, ସେମାନଙ୍କ ମୁରବୀମାନେ ପ୍ରଥମଥର ପାଇଁ ଅବଗତ ହେଲେ । ଏହି ଉପାୟ ମଧ୍ୟ ଚମତ୍କାର ଭାବରେ

ଫଳପ୍ରସୂ ହେଲା । ଆମର ମୁରବୀମାନେ ସାଧାରଣତଃ ସେମାନଙ୍କ ପୁଅଝିଅଙ୍କୁ କଲେଜରେ ନାଁ ଲେଖାଇ ନିଶ୍ଚିନ୍ତ । ତାଙ୍କ ବିଷୟରେ କୌଣସି ଖବର ନିଅନ୍ତି ନାହିଁ । କଲେଜ ମଧ୍ୟ ସେମାନଙ୍କୁ କିଛି ଜଣାଏ ନାହିଁ ।

ଗୋଟିଏ ଘଟଣା ମନେପଡୁଛି । ଏକ ନିର୍ଦ୍ଦିଷ୍ଟ ସାହିର ଜଣେ ଛାତ୍ରକୁ ସେହି ଅଞ୍ଚଳର କେତେଜଣ ଅଣଛାତ୍ର ଦିନେ କଲେଜ ପରିସରରେ ଛୁରୀ ମାରିବା ପାଇଁ ଆକ୍ରମଣ କଲେ । ହୁଏତ ସାହି ଭିତରେ ସେମାନଙ୍କର କିଛି ପାରସ୍ପରିକ ଉପଦ୍ରବ ରହିଥିବ । ଅନ୍ୟପିଲାମାନେ ଏକାଠି ହୋଇ ସେହି ଛାତ୍ରକୁ ରକ୍ଷା କଲେ ଏବଂ ଅପରାଧ କରିବାକୁ ଆସିଥିବା ପିଲାମାନେ ଧମକ ଦେଇ ବିଦାୟ ନେଲେ । ମୋ କାନକୁ ଏହି ଘଟଣାଟି ଆସିଲା । ତୁରନ୍ତ ସେହି ପିଲାର ବାପାଙ୍କୁ ଡକାଇ ଆଣିଲି । ସେ ଜଣେ ସାଧାରଣ କର୍ମଜୀବୀ ଦରିଦ୍ର ଲୋକ । ତାଙ୍କୁ କହିଲି– ଆପଣଙ୍କ ପୁଅ ସାହି କଳିକୁ ନିମନ୍ତ୍ରଣ କରିଆଣିଛି କଲେଜ ହତା ଭିତରକୁ । ଯଦି ଛୁରୀ ଆଘାତରେ ଆପଣଙ୍କ ପୁଅର କିଛି ଅଘଟଣ ଘଟିଥାନ୍ତା, ଆପଣ ଆମକୁ ଦାୟୀ କରିଥାନ୍ତେ । କଲେଜ ବଦନାମ ହୋଇଥାନ୍ତା । କଲେଜ ହତାରେ ଏପରି ହଣାକଟା ପାଲା ଲାଗିଲେ କେଉଁ ମୁରବୀ ସେମାନଙ୍କର ପୁଅଝିଅକୁ ଏଠାକୁ ପଠାଇବେ । ତାଙ୍କୁ ଅନୁରୋଧ କଲି, ତାଙ୍କ ପୁଅକୁ ଏହି କଲେଜରୁ ଅନ୍ୟତ୍ର ନେବା ପାଇଁ । ସେ ଅତ୍ୟନ୍ତ କାକୁସ୍ଥ ହୋଇ ନୀରବରେ ବିଦାୟ ନେଲେ । ତା' ପରଦିନ ଉକ୍ତ ସାହିର ପ୍ରାୟ ଆଠଜଣ ମୁରବୀ ଶ୍ରେଣୀର ଭଦ୍ରଲୋକ ସେହି ଛାତ୍ରର ବାପାଙ୍କୁ ସାଙ୍ଗରେ ଧରି ମୋ' ସାମ୍ନାରେ ହାଜର ହେଲେ । ସମସ୍ତେ ବିନୀତ ଭାବରେ ପ୍ରାର୍ଥନା କଲେ, ଆପଣ ନିଶ୍ଚିନ୍ତ ରହନ୍ତୁ । ଆମେ ସାହି ତରଫରୁ ନିର୍ଭର ପ୍ରତିଶ୍ରୁତି ଦେଉଛୁ, ଆଉ ଏପରି ଅଘଟଣ ଘଟିବ ନାହିଁ । ଯଦି ହୁଏ, ତେବେ ଆପଣ ସେହି ପିଲାକୁ କଲେଜରୁ ବାହାର କରିଦେବେ । ସାହି ମୁରବୀମାନଙ୍କର ଅକୁଣ୍ଠ ସମର୍ଥନ ମିଳିଲେ ସେ ଅଞ୍ଚଳରେ କିଛି ଉଚ୍ଛୃଙ୍ଖଳ ଯୁବକ କେବେହେଲେ ସାହସ କରିବେ ନାହିଁ କଲେଜ ହତା ମଧ୍ୟରେ ବାହାଦୁର ହେବା ପାଇଁ ।

ଏକଦା ହତା ପ୍ରଦକ୍ଷିଣ କରିବା ସମୟରେ ଉଦ୍‌ଭିଦ ବିଜ୍ଞାନ କୋଠାର ଛାତ ଉପରେ ଜଣେ କେହି ଗଞ୍ଜେଇ ଟାଣୁଥିବାର ନଜରରେ ପଡ଼ିଲା । ସମୟ ହେଉଛି ସକାଳ ଆଠଟା । କେହି ଅଧ୍ୟାପକ ଆସି ନାହାନ୍ତି । କ୍ଲାସ୍ ଆରମ୍ଭ ହୋଇନାହିଁ । ସେପଟ ଅଞ୍ଚଳଟି ଏକପ୍ରକାର ନିର୍ଜନ । ଲାବୋରଟୋରୀରେ କାମ କରୁଥିବା ଗୋଟିଏ ପିଅନକୁ ପଚାରିଲି ସେହି ଲୋକ ବିଷୟରେ । ସେ ଅତ୍ୟନ୍ତ ସନ୍ତର୍ପଣରେ କହିଲା, ସାର୍ ସେ ଅଞ୍ଚଳକୁ ଯାଆନ୍ତୁ ନାହିଁ । ସେ ଜଣେ ଦୁର୍ଦ୍ଧାନ୍ତ ଅପରାଧୀ । ସମଗ୍ର ଦିନଟି ଏହି ଛାତ ଉପରେ ଏକାଟିଆ ରହେ । ତା' ପାଇଁ ଖାଇବା ଚାଲିଆସେ । ବେଳେବେଳେ ମଦ୍ୟପାନ ମଧ୍ୟ କରେ । ରାତିରେ ବାହାରିଯାଏ ଚୋରୀ ଡକାୟତି କରିବା ପାଇଁ । ସମସ୍ତେ ତାକୁ ଦେଖି ମଧ୍ୟ ନ ଦେଖିଲାପରି ବ୍ୟବହାର କରନ୍ତି । କାହାର ନିଜ ଜୀବନକୁ ଭୟ ନାହିଁ । ସେ ବିନା ସଂକୋଚରେ ଛୁରୀ ପେଲିଦେବ । କଲେଜ ଛାତରେ ଆଶ୍ରୟ ନେଲେ ପୋଲିସ୍‌ର ଭୟ ନାହିଁ, କାରଣ କଲେଜ ହତାକୁ ପୋଲିସ୍ ଆସିବେ କାହିଁକି ?

ନୀରବରେ ଫେରିଆସିଲି । ମନଟା ଖଟା ହୋଇଗଲା । କଲେଜ ହତାରେ ଏତେବଡ଼ ନାଟକ ଚାଲିଛି । ଅଥଚ ସମସ୍ତେ ଅସହାୟ, ଭୟରେ ତ୍ରସ୍ତ ଓ କାତର । ସଂଧ୍ୟାରେ କ୍ୟାଣ୍ଟନମେଣ୍ଟ୍‌ରୋଡ଼ରେ ଏସ୍.ପି ସାହେବଙ୍କୁ ସାକ୍ଷାତ କରି ସମସ୍ତ କଥା କହିଲି । ସେ ସାଂଗେସାଂଗେ କହିଲେ, କାଲି ସକାଳୁ ସିପେଇ ପଠାଇ ତାକୁ ଧରିଆଣିବି । ମୁଁ ବାରଣ କଲି । କହିଲି, ସାର୍, ଆପଣ ଧରି ଆଣିବେ, ସେ ଜାମିନିରେ ଯାଇ ପ୍ରଥମେ ମୋତେ ହତ୍ୟା କରିବ । ଆପଣ କ'ଣ ମୋତେ ରକ୍ଷା କରିପାରିବେ ? ମୋର ଏକ ବିନୀତ ପ୍ରସ୍ତାବ । ଆପଣ ନିର୍ଦ୍ଦେଶ ଦିଅନ୍ତୁ । ଥାନା ଅଫିସର ସକାଳେ ଓ ସଞ୍ଜରେ ଦୁଇଥର ଜିପ୍‌ରେ କଲେଜ ହତାରେ କେବଳ ଘେରାଏ ବୁଲି ଆସିବେ ମାତ୍ର ଆଠଦିନ ପାଇଁ । ମୁଁ ଜାଣେ, ଛାତ୍ରନେତାମାନେ କଲେଜ ହତାକୁ କାହିଁକି ପୋଲିସ୍ ଆସିଛି ବୋଲି ଆପତ୍ତି କରିବେ । ମୁଁ ସେମାନଙ୍କୁ ବୁଝାଇଦେବି । ଆମେ କାହିଁକି ପୋଲିସ୍‌କୁ ଡାକିବା ? ଆମର ତ ଚାରିଆଡ଼େ ଶାନ୍ତି ଓ ଶୃଙ୍ଖଳା ରାଜପଣ କରୁଛି, ପୋଲିସ୍ ବୋଧହୁଏ କେଉଁ ଅପରାଧୀର ଗନ୍ଧବାରି ଘୂରି ବୁଲୁଛି । ଏସ୍.ପି. ସାହେବ ମୋର ଏ ପ୍ରସ୍ତାବରେ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କଲେ ।  ଆଠଦିନ ପରେ ଦେଖାଗଲା, ସେହି ଦୁର୍ଦ୍ଦାନ୍ତ ଅପରାଧୀ କଲେଜ ହତାରୁ ଅନ୍ତର୍ଦ୍ଧାନ ହୋଇଯାଇଛି । ବର୍ଷବର୍ଷ ଧରି ତାର ଏ ହତା ଥିଲା ଚରାଭୂଇଁ । ଏ କଥା କେହି ଜାଣିଲେ ନାହିଁ । ଅଥଚ ସୁରୁଖୁରୁରେ ଦୀର୍ଘଦିନର ଏକ ସ୍ପର୍ଶକାତର ସମସ୍ୟା ସମାଧାନ ହୋଇଗଲା ।

ପୂର୍ବରୁ ଲେଖିଛି, ଅର୍ଥନୀତିର ଜଣେ ଅଧ୍ୟାପକ ନୂତନ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ । (ପୂର୍ବତନ ଅଧ୍ୟକ୍ଷ ତାଙ୍କ ସ୍ଥାନରେ ବିଜ୍ଞାନ ବିଭାଗର ଜଣେ ଅଧ୍ୟାପକଙ୍କୁ ସେହି ନିଯୁକ୍ତି ପ୍ରଦାନ କରି କଲେଜରୁ ବିଦାୟ ନେଇଥିଲେ । ମୁଁ ଦାୟିତ୍ୱ ନେଲାପରେ ସେ ତାଙ୍କର ନିଯୁକ୍ତି ଆଦେଶ ଦେଖାଇଲେ । ମାତ୍ର ହଷ୍ଟେଲରେ ସୁପରିଣ୍ଟେଣ୍ଡେଣ୍ଟ୍ ଥିବା ଅଧ୍ୟାପକ ଏହି ଆଦେଶକୁ ଖାତିର କରୁନାହାନ୍ତି । ମୁଁ ବଡ଼ ଅସୁବିଧାରେ ପଡ଼ିଲି । ସେହି ଅଧ୍ୟାପକଙ୍କୁ ଅନୁରୋଧ କଲି ଦାୟିତ୍ୱ ହସ୍ତାନ୍ତର କରିବା ପାଇଁ । ସେ ଭ୍ରୂକ୍ଷେପ କଲେ ନାହିଁ । ବଡ଼ ହନ୍ତସନ୍ତ ହେଉଥାଏ । ଅପମାନିତ  ବାଧ କରୁଥାଏ । ହଠାତ୍ ଏକ ସୁଯୋଗ ଆସି ପହଞ୍ଚିଲା । ସେହି ଅଧ୍ୟାପକ ହଷ୍ଟେଲର ଓ ତାଙ୍କ କ୍ୱାଟର୍ରର ଏକବର୍ଷର ବିଜୁଳି ବିଲ୍ ପୈଠ କରିନାହାନ୍ତି । ବିଜୁଳି ଲାଇନ କଟାଯିବ ବୋଲି ଆଫିସିକ ଚିଠି ମିଳିଲା । ଏପରି ହେଲେ ହଷ୍ଟେଲର ଅନ୍ତେବାସୀ ହଇରାଣ ହେବେ । ହରତାଳ କରିବେ । ପୁନର୍ବାର କଲେଜ ବାତାବରଣ ବିଷାକ୍ତ ହୋଇଉଠିବ । ମୋତେ ସାହାଯ୍ୟ କରିବାକୁ କେହି ନାହିଁ । ହଠାତ୍ ମନକୁ ଆସିଲା । ସେହି ଅଧ୍ୟାପକଙ୍କର ଦରମା ବିଲ କଲି ନାହିଁ । ବିଲ୍ ପୈଠ ନକଲେ ଏବଂ ଦାୟିତ୍ୱ ହସ୍ତାନ୍ତର ନହେଲେ ମୋ ହାତରୁ ଦରମା ମିଳିବ ନାହିଁ । କଲେଜର ଶୃଙ୍ଖଳା ରକ୍ଷା ନକଲେ କେଉଁ ନୈତିକ ଅଧିକାରରେ ଦରମା ଦାବୀ କରିବେ । ମୋ ନିଷ୍ପତ୍ତିରେ ଟଳିବାର ପ୍ରଶ୍ନ ଉଠିଲା ନାହିଁ । ଅନେକ ସହକର୍ମୀ ବାହାରି ପଡ଼ିଲେ ତାଙ୍କ ପାଇଁ ଓକିଲାତି କରିବା ପାଇଁ । ଅଥଚ ତାଙ୍କର ବିଶୃଙ୍ଖଳ ଆଚରଣ ବିଷୟରେ ସମସ୍ତେ ନୀରବ ରହିଲେ । ଶେଷରେ ସେ ବାଧ୍ୟ ହୋଇ ହଷ୍ଟେଲ ଦାୟିତ୍ୱ ହସ୍ତାନ୍ତର

କଲେ । ଏବଂ ବିଜୁଳି ବିଲ୍ ବର୍ଷକର ପୈଠ କରି ଦରମା ପାଇଲେ । ସେହି ଅଧ୍ୟାପକ କ୍ଲାସ୍‌କୁ ନ ଯାଇ ବୈଠକ ରୁମ୍‌ରେ ଆଳାପ ଜମାଇଥାଆନ୍ତି । ରାଉଣ୍ଡ କଲାବେଳେ ଦେଖିଲି, ତାଙ୍କର ଅନର୍ସ ପିଲାମାନେ ବାହାରେ ବୁଲୁଛନ୍ତି, ସେହି ଅଧ୍ୟାପକ ଆଳାପରେ ବ୍ୟସ୍ତ । ତାଙ୍କୁ ଅନୁରୋଧ କଲି କ୍ଲାସ୍‌କୁ ଯିବା ପାଇଁ । ପିଲାମାନେ ଆସୁ ନାହାନ୍ତି ବୋଲି ସେ ମୋତେ ମିଥ୍ୟା କହିଥିଲେ । ବର୍ତ୍ତମାନ ଅତ୍ୟନ୍ତ କୁଣ୍ଠିତ ହୋଇ କ୍ଲାସ୍‌କୁ ଗଲେ । ଏହି ପ୍ରକାର ଅଶୋଭନୀୟ ଆଚରଣ ଧୀରେଧୀରେ ବଦଳିବାକୁ ଲାଗିଲା । ମୁଁ ସେଥିପାଇଁ ଅପ୍ରିୟ ହୋଇଯାଉଥିଲି । ଆଉ ଏକ ଦୁଃଖଦ ଘଟଣା । ଆଇନ ଅମାନ୍ୟ କରିବା ଯେପରି ଏହି ଅଧ୍ୟାପକଙ୍କର ଏକ ଚିରନ୍ତନ ଅଭ୍ୟାସ । ସେଦିନ ଥାଏ ବିଶ୍ୱବିଦ୍ୟାଳୟ ପରୀକ୍ଷାର ପ୍ରଥମ ଦିନ । ତାଙ୍କର ଉପସ୍ଥିତି କାମ୍ୟ ଥିବା ସତ୍ତ୍ୱେ ସେ ଅନୁପସ୍ଥିତ । ପରୀକ୍ଷା ଦାୟିତ୍ୱରେ ଥିବା ଅଧ୍ୟାପକ ତାଙ୍କର ଅନୁପସ୍ଥିତି ସଂପର୍କରେ ମୋତେ ଆପତ୍ତି ଜଣାଇଲେ ଲିଖିତ ଆକାରରେ । ତା'ପରଦିନ ତାଙ୍କୁ ଡାକି କହିଲି, ଆପଣ ବିନା ଦରଖାସ୍ତରେ ଅନୁପସ୍ଥିତ ଅଛନ୍ତି । ପୁନଶ୍ଚ ପରୀକ୍ଷା ଡିଉଟିକୁ ମଧ୍ୟ ଆପଣ ଭ୍ରୂକ୍ଷେପ କରିନାହାନ୍ତି । ଆପଣଙ୍କ ବିରୁଦ୍ଧରେ ଆପତ୍ତି ଦରଖାସ୍ତ ପାଇଛି । ମୁଁ କ'ଣ କରିବି ? ଆପଣ ଛୁଟି ଦରଖାସ୍ତ ଦେଇଦିଅନ୍ତୁ । ସବୁ ସମାଧାନ ହୋଇଯିବ । ସେ ଦରଖାସ୍ତ ତ ଦେଲେ ନାହିଁ, ପରୀକ୍ଷା ପରିଚାଳକଙ୍କୁ ଅସମ୍ମାନଜନକ ବ୍ୟବହାର କଲେ । ବିଚରା ଅଧ୍ୟକ୍ଷ କେଉଁ କୂଳକୁ ହେବ ? କାହାର ସାହାଯ୍ୟ ନେଇ କାର୍ଯ୍ୟ କରିବ ? ଏହି ବିଷୟରେ ଉପଯୁକ୍ତ ନିର୍ଦ୍ଦେଶ ଦେବା ପାଇଁ ପରିଚାଳନା ସମିତିକୁ ଅନୁରୋଧ କଲି । ପରିଚାଳନା ସମିତି ତାଙ୍କୁ ସସ୍‌ପେଣ୍ଡ୍ କରି ଏହି ପ୍ରସଙ୍ଗରେ ପ୍ରକୃତ ଘଟଣା ଜାଣିବା ପାଇଁ ଅନୁସନ୍ଧାନ କରିବା ପାଇଁ ପ୍ରସ୍ତାବ କଲେ । ଏହି ଘଟଣା ଘଟିଲା ୨୮ ତାରିଖ ମାର୍ଚ୍ଚ ୧୯୮୩ ମସିହାରେ । ସେ କଲେଜ ବିରୁଦ୍ଧରେ ମିଥ୍ୟା ଅଭିଯୋଗ କରି ମୋକଦ୍ଦମା ଦାୟର କଲେ । ତେୟାଅସୀ ମସିହାରୁ ଅଠାଅସୀ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ମକଦ୍ଦମା ଚାଲୁ ରହିଲା ଏବଂ ଶେଷରେ ବିଚାରାଳୟରେ ଦୋଷ ସ୍ୱୀକାର କରିବାରୁ ତାଙ୍କୁ ପୁନଃନିଯୁକ୍ତି ମିଳିଲା ମୁଁ ଅବସର ନେଲାପରେ । ସସ୍‌ପେଣ୍ଡ୍ ହେବା କଲେଜ ଇତିହାସରେ ଏକ ନୂଆକଥା । ମାତ୍ର ଏହି ଦୁର୍ଘଟଣା ଅନ୍ୟକେତେକ ଉଚ୍ଛୃଙ୍ଖଳ ଅଧ୍ୟାପକଙ୍କୁ ବାଟକୁ ଆଣିବାରେ ସହାୟକ ହୋଇଥିଲା ।

ପିଲାମାନଙ୍କ ଦାବି ପୂରଣ ପାଇଁ କେତୋଟି ନୂଆ ବିଜୁଳି ପଙ୍ଖା କ୍ଲାସ୍ ରୁମରେ ମାତ୍ର ଚାରିଦିନ ପୂର୍ବେ ଲଗାଯାଇଥିଲା । ଅଥଚ ୨୧ ତାରିଖ ଫେବୃୟାରୀ ୧୯୮୪ ମସିହାରେ ଗୋଟିଏ କ୍ଲାସ୍ ରୁମ୍‌ରୁ ପଙ୍ଖାଟିଏ ଚୋରି ହୋଇଯାଇଛି ବୋଲି କଲେଜର ଭାରପ୍ରାପ୍ତ ଜଗୁଆଳି ଆସି ମୋତେ ଖବର ଦେଲେ । ମୁଁ ବିଚଳିତ ହୋଇପଡ଼ିଲି । ପୁନର୍ବାର ପିଲାମାନେ ଉତ୍ୟକ୍ତ ହୋଇପଡ଼ିବେ । ଚୋରର ମଧ୍ୟ ସାମାନ୍ୟ ଦୟା ନାହିଁ । ଜଗୁଆଳି ବାହାଦୁରକୁ ଡାକି କହିଲି, ତୁମର ଦରମାରୁ କାଟି ପୁନର୍ବାର ନୂଆ ପଂଖା ଲଗାଇବି । ଯଦି ଚୋରିଯାଉଛି, ତେବେ ତୁମେ ଆଉ ରହିବ କାହିଁକି ? ଏତିକିରେ ନୀରବ ହେଲି ନାହିଁ । ଥାନା ଅଫିସରଙ୍କୁ ଡାକି ଆପତ୍ତି ଜଣାଇଲି । ପ୍ରାର୍ଥନା କଲି, ଜଗୁଆଳିକୁ ଆପଣ କୌଣସି ପ୍ରକାର ଶାରୀରିକ ଦଣ୍ଡ

ଦେବେ ନାହିଁ । ତାକୁ କେବଳ ସକାଳୁ ସଞ୍ଜଯାଏ ଥାନା ବାରଣ୍ଡାରେ ବସାଇ ରଖିବେ । ମୋର ବିଶ୍ୱାସ, ଆମର ଜିନିଷ ମିଳିଯିବ । ସମଗ୍ର ଦିନଟି ଭୋକ ଉପାସରେ ଥାନାବାବୁଙ୍କ ମୌଖିକ ଧମକ ଖାଇ ସଂଧ୍ୟାରେ ଜଗୁଆଳି ଯେତେବେଳେ ଫେରିଆସିଲା, ତାର ଅବସ୍ଥା ବାରଗଣ୍ଡା ଦି'କଡ଼ା । ପୁନର୍ବାର ତା' ଆରଦିନ ମଧ୍ୟ ସେହିପ୍ରକାର ଥାନା ବାରଣ୍ଡାରେ ବସିବାକୁ ହେବ ପଙ୍ଖା ନ ମିଳିଲା ପର୍ଯ୍ୟନ୍ତ । ପରଦିନ ସକାଳେ ଜଗୁଆଳି ଆସି ଆମଘରେ ହାଜର । ପଚାରିଲି ଏତେ ସକାଳୁ କୁଆଡ଼େ ? କହିଲା, ସାର୍ ! ପଙ୍ଖା ମିଳିଗଲା । ସକାଳେ କ୍ଲାସ୍‌ରୁମ୍ ଚାବି ଖୋଲି ପକା ଉପରକୁ ଯାଇଥିଲି । ଦେଖିଲି, ସେଠାରେ ଗୋଟିଏ ବ୍ୟାଗ୍‌ରେ ପଙ୍ଖାର ବିଭିନ୍ନ ଅଂଶ ଖୋଲାଯାଇ ରଖାଯାଇଛି । କଲେଜକୁ ଆସି ଥାନାକୁ ଖବର ଦେଲି । ଥାନାବାବୁ ଏକଥା ଶୁଣି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ମୋର ଅଭିଯୋଗ ଉଠାଇ ଆଣିଲି । ଯେଉଁ କେତେଜଣ ଏହି ପ୍ରକାର ଅପରାଧ କରି ଖସିଯାଉଥିଲେ; ସେମାନେ ମୋର କାର୍ଯ୍ୟକାଳ ମଧ୍ୟରେ ଆଉ ସାହସ କରି ନଥିଲେ କିଛି ଅଘଟଣ କରିବା ପାଇଁ ।

ପୁନରୁକ୍ତି କରୁଛି, କଲେଜ ବିଶୃଙ୍ଖଳାର ଆଉ ଏକ ଉତ୍କଟ ଉଦାହରଣ । ଜଣେ ପିଅନ ପ୍ରଚୁର ମଦ୍ୟପାନ କରେ । ସେ ଦରମା ନେବାଦିନ ହିଁ କେବଳ କଲେଜକୁ ଆସିଥାଏ । ଗୋଟିଏ ସପ୍ତାହ ପରେ ଆଉଦିନେ ଆସେ କିଛି ଅଗ୍ରୀମ ଟଙ୍କା ନେବା ପାଇଁ । ଏ ଥିଲା ମୋ ପାଇଁ ସଂପୂର୍ଣ୍ଣ ଅଭିନବ ଘଟଣା । କେତେ ଅଧ୍ୟକ୍ଷ ଗଲେଣି । ତାର ଏପରି ଆଚରଣକୁ ସମସ୍ତେ ଆଖି ବୁଜି ଦିଅନ୍ତି । କିଛି କହିଲେ ସେ ମଦ ପିଇ ଆସି କଲେଜ ବାରଣ୍ଡାରେ ହେଙ୍ଗାମ କରିବ । ମହୁଆଲୋକର ଲଗା ଅଛି ନା ପଘା ଅଛି । ସେ ପୁଣି ତଥାକଥିତ ପଛୁଆବର୍ଗର ଲୋକ । ତା' ପାଇଁ ଚାରିଖୁଣ ମାଫ୍ । ଯଦି ତାକୁ ବାଟକୁ ଅଣାଯାଉ ନାହିଁ, କର୍ତ୍ତୃପକ୍ଷଙ୍କର କି ନୈତିକ ଅଧିକାର ରହିବ ଅନ୍ୟ ଆଇନ୍ ଲଂଘନକାରୀମାନଙ୍କୁ ତାଗିଦ କରିବା ପାଇଁ । ଯାହାହେଉ, ନିଷ୍ପତ୍ତି କଲି, କିଛି କଠୋର କାର୍ଯ୍ୟପନ୍ଥା ଗ୍ରହଣ କରାଯିବ । ତାକୁ ତିନିଥର କୈଫିୟତ ମାଗିଲି । ଜଣେ ପ୍ରଭାବଶାଳୀ ଅଧ୍ୟାପକ ତା' ପାଇଁ ଉତ୍ତର ଡାକି ଦେଉଥିଲେ । ତେଣୁ ବାଧ୍ୟ ହୋଇ ତାକୁ ମାଫ୍ କରାଯାଉଥିଲା । ତିନିଥରରେ ଧର୍ମଛାଡ଼ । ଏଥର ପରିଚାଳନା ସମିତିର ଦୃଷ୍ଟିକୁ ଆଣିଲି ତା' ବିଷୟରେ । ସେମାନେ ସସ୍‌ପେଣ୍ଡ କରିଦେଲେ । ତା'ପରେ ସେହି ମଦ୍ୟପ ପିଅନ ଏକପ୍ରକାର ନଗ୍ନ ଅବସ୍ଥାରେ ମଦ୍ୟପାନ କରି ମୋତେ ଅଫିସ୍ ମଧ୍ୟରେ ବେଜିତ କରିବାକୁ ଲାଗିଲା । କିଁଛି ହତାଶ(ସ୍ୟାଡିଷ୍ଟ) ଅଧ୍ୟାପକ ସୁଖୀ ହେଉଥାଆନ୍ତି ମୋର ଏପରି ଅବସ୍ଥା ଲକ୍ଷ୍ୟ କରି । ମୋ ନିଷ୍ପତ୍ତିରେ ଅଟଳ ରହିଥାଏ । ସେ ଅଦାଲତରେ ମୋ ନାମରେ ମିଥ୍ୟା ମକଦ୍ଦମା କଲା । ଅନେକଦିନ ପର୍ଯ୍ୟନ୍ତ ମକଦ୍ଦମା ଚାଲୁଥାଏ । ଯେଉଁଦିନ ମଦଖାଇ ଏକ ଲୁହାରଡ଼ ଧରି ସେ ମୋତେ ଆଘାତ କରିବାକୁ ଅଫିସ କକ୍ଷରେ ପ୍ରବେଶ କଲା, ପୋଲିସ୍ ହାତରେ ଧରାପଡ଼ିଲା । ଏଣିକି ତା' ନାଁରେ ପୋଲିସ୍ ମକଦ୍ଦମା ହେଲା ଏବଂ ସେ ସବୁଦିନ ପାଇଁ ଚାକିରୀ ହରାଇଲା । ତାକୁ ଦେଖାଦେଖି ଆଉ କେତେଜଣ ଅବାଧ ଆଚରଣ କରୁଥିଲେ ବୋଲି ଶୁଣିବାକୁ ପାଇଲି । ମାତ୍ର ସେମାନେ ଆପେ ଆପେ ସାବଧାନ ହୋଇଗଲେ ।

ଆଉ ଏକ ଘଟଣା । ୧୯୮୬ ମସିହା ଜୁଲାଇ ଏଗାର ତାରିଖ । କଲେଜରୁ ଫେରି ସଂଧ୍ୟାରେ ଘରେ ବିଶ୍ରାମ କରୁଥାଏ । ଜଣେ ଦୁର୍ଦ୍ଦାନ୍ତ ଅପରାଧପ୍ରବଣ ଛାତ୍ର ଅନେକଦିନ ଅପେକ୍ଷା କରି ନିଷ୍ପତ୍ତି କରିଥାଏ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବା ପାଇଁ । ସେ ପ୍ରଥମେ ଜଣଜଣ କରି କଲେଜର କେତେଜଣ ପ୍ରଭାବଶାଳୀ ଅଧ୍ୟାପକଙ୍କୁ ସାକ୍ଷାତ କରି ନିଜର ମନୋଭାବ ବ୍ୟକ୍ତ କଲା । ମାତ୍ରକୁ ମହାଦେବଙ୍କ ଡର । ତାର ନୃଶଂସ ପ୍ରକୃତି ସମସ୍ତେ ଜାଣନ୍ତି । ତେଣୁ ନିଜ ମୁଣ୍ଡରୁ ଦାୟିତ୍ୱ ନ ନେଇ କହିଦେଲେ– ଆମର କ'ଣ କରିବାର ଅଛି । ପ୍ରିନ୍ସିପାଲ ହେଲେ ପରୀକ୍ଷାର ପରିଚାଳକ । ତୁମର ଭଲମନ୍ଦ ଆଚରଣକୁ ସହ୍ୟ କରିବାର ଅଧିକାର ତାଙ୍କର । ସେହି ଦୁର୍ଦ୍ଦାନ୍ତ ଛାତ୍ରଜଣକ ମୁହଁ ଅନ୍ଧାର ସଂଧ୍ୟାରେ ଆସି ଆମ ଘରେ ହାଜର । କହିଲା, ମୁଁ ନିଷ୍ପତ୍ତି କରିଛି ଏଥର ପରୀକ୍ଷା ଦେବାକୁ ଫର୍ମପୂରଣ କରିବି । ଆପଣ ଜାଣନ୍ତି, ମୁଁ ପଢ଼ାପଢ଼ି କରେ ନାହିଁ । ଅଲବତ୍ କପି କରିବି । କଲେଜରେ ବହୁ ଅଧ୍ୟାପକଙ୍କୁ ପଚାରିଲି । ସେମାନଙ୍କର ଆପତ୍ତି ନାହିଁ । ଆପଣ ଯଦି ମୋର ଆଗରେ ବାଡ଼ ହୋଇ ଠିଆ ହେବେ, ତେବେ ମୁଁ ସିଧା ଆପଣଙ୍କ ପେଟରେ ଛୁରି ପେଲିଦେବି । ମୋର ଜେଲ ଯିବା ପାଇଁ ଭୟ ନାହିଁ । ତାର ବାଚାଳ ଓ ହିଂସ୍ର କଥାବାର୍ତ୍ତାରେ ମୁଁ ଥରୁଥାଏ । ତାକୁ ବୁଝାଇ କହିଲି, ବିଗତ ଚାରିବର୍ଷକାଳ କଲେଜରେ କପି ହୋଇନାହିଁ ପିଲାମାନଙ୍କର ଅକୁଣ୍ଠ ସହଯୋଗ ଯୋଗୁ । କଲେଜର ପୂର୍ବ ସୁନାମ ଫେରି ଆସୁଛି । ତୁମେ ଏପରି ଆଚରଣ କର ନାହିଁ । ଯଦି ସୁବିଧା ହେଉଛି, ଅନ୍ୟ କେଉଁ ପରୀକ୍ଷା କେନ୍ଦ୍ରକୁ ଯାଇପାର, ଯେଉଁଠାରେ ତୁମର ସୁବିଧା ହେଉଛି । ମୋତେ ହତ୍ୟା କରିପାର । ମାତ୍ର ମୋର ଦାୟିତ୍ୱରୁ ଆଦୌ ଓହରି ଆସିବି ନାହିଁ । ମନେରଖ ! ମୁଁ ମୃତ୍ୟୁବରଣ କଲେ ମୋର ଆତ୍ମା ତୁମକୁ ଉପଯୁକ୍ତ ଉତ୍ତର ଦେବ ।

ସେଦିନ ରାତିରେ ଶୋଇପାରିଲି ନାହିଁ । କତିପୟ ସ୍ୱାର୍ଥସର୍ବସ୍ୱ, ବ୍ୟକ୍ତିମନସ୍କ ଅଧ୍ୟାପକ ପ୍ରକାରାନ୍ତରେ ଅସହଯୋଗ କରି ସୁଖ ଅନୁଭବ କରୁଥାଆନ୍ତି । ପରଦିନ ସକାଳେ ଅଧ୍ୟାପକମାନଙ୍କର ଏକ ସଭା ଆହ୍ୱାନ କରି ଏହି ପ୍ରସଙ୍ଗ ଆଲୋଚନା କଲି । କୌଣସି ଅଧ୍ୟାପକଙ୍କର ନାମ ଉଚ୍ଚାରଣ ନକରି ସେମାନେ କିପରି ମୁଣ୍ଡରୁ ଦାୟିତ୍ୱ ଖସାଇ ଅଧକ୍ଷଙ୍କ ମୁଣ୍ଡରେ ଅଠା ବୋଳୁଛନ୍ତି, ତାହା ମଧ୍ୟ ପ୍ରକାଶ କଲି ଅତ୍ୟନ୍ତ ଦୁଃଖରେ । ସେହି ଅଧ୍ୟାପକମାନଙ୍କ ମଧ୍ୟରେ ଯେ ଅଧିକ ମୁରବିପଣ ଦେଖାନ୍ତି, ପ୍ରସ୍ତାବ କଲେ ଉକ୍ତ ଛାତ୍ରକୁ ପରୀକ୍ଷା ହଲ୍‌ରେ ପ୍ରଥମରୁ ଅନୁମତି ନ ଦେବା ପାଇଁ । କହିଲି, ତା' ବିରୁଦ୍ଧରେ କୌଣସି ଲିଖିତ ପ୍ରମାଣ ନାହିଁ । ତାର ପ୍ରାର୍ଥୀତ୍ୱ ନାକଚ କରିବା ଆଇନବିରୁଦ୍ଧ । ଏତେବର୍ଷ ହେଲା ଆମେ ସମସ୍ତେ ଏକମନରେ କାର୍ଯ୍ୟ କରିଥିବାରୁ ଆଜି ଅପୂର୍ବ ଶାନ୍ତି ରାଜପଣ କରୁଛି । କଲେଜକୁ ପୋଲିସ୍ ଆସିବା ଆବଶ୍ୟକ ହେଉନାହିଁ । ଏ ବର୍ଷ ମଧ ତାହାହିଁ ହେବ । ଯେଉଁମାନେ ପ୍ରକାରାନ୍ତରେ କରଛଡ଼ା ଦେଉଛନ୍ତି ସେମାନଙ୍କୁ ବାଧ କରାଯିବ ନାହିଁ ।

ଏତିକିରେ ଚୁପ୍ ରହିଲି ନାହିଁ । ଯେଉଁ ରୁମ୍‌ରେ ସେହି ପିଲାର ପରୀକ୍ଷା ଦେବାର ବ୍ୟବସ୍ଥା ହୋଇଥାଏ, ସେହି ଶ୍ରେଣୀରେ ଦକ୍ଷ ଅଧ୍ୟାପକମାନଙ୍କୁ ପରୀକ୍ଷା-ରକ୍ଷକ ଭାବରେ

ନିଯୁକ୍ତି ଦିଆଗଲା । ସେମାନଙ୍କୁ ବିଶ୍ୱାସକୁ ନେଇ ଏପରି ବ୍ୟବସ୍ଥା କରିଥାଏ । ସଂଧ୍ୟାରେ ପୋଲିସ୍ ସାହେବଙ୍କ ବାସଭବନରେ ଏକାନ୍ତରେ ସାକ୍ଷାତ କରି ଏହି ପରୀକ୍ଷାର୍ଥୀର ଆଚରଣ ବିଷୟରେ ଆଲୋଚନା କଲି । ବିଗତ କେତେବର୍ଷ ହେଲା ଆମ କଲେଜ ପରୀକ୍ଷା ପାଇଁ ଆଉ କାହାର ମୁଣ୍ଡବ୍ୟଥାର କାରଣ ନଥାଏ । ପୁନର୍ବାର ଅଶାନ୍ତିର ଆଶଙ୍କା କରି ଏସ୍.ପି. ସାହେବ କହିଲେ–"ତାକୁ ବାନ୍ଧି ଆଣିବା । ହତାମଧ୍ୟରେ ପ୍ରଚୁର ପୋଲିସ୍ ମୁତୟନ କରିବା ।" କହିଲି– ଏହା ସମସ୍ୟାର ସମାଧାନ କରିବ ନାହିଁ । ହତା ମଧ୍ୟରେ ପୋଲିସ୍ ଥାଇ ସୁଦ୍ଧା ପରୀକ୍ଷା ହଲ୍‌ରେ କପି ହେଉଥିଲା । ବାନ୍ଧି ଆଣିଲେ ଏକ ଉତ୍ୟକ୍ତ ବାତାବରଣ ସୃଷ୍ଟି ହେବ । ଯେଉଁମାନେ ପାଣିକୁ ଗୋଳିଆ କରିବାକୁ ଇଚ୍ଛା କରୁଛନ୍ତି, ସେମାନେ ସୁଯୋଗ ପାଇବେ । ମୋର ପ୍ରସ୍ତାବ ହେଲା– ଆପଣ ସେ ପରୀକ୍ଷାର୍ଥୀକୁ ଡକାଇ ଆଣିବେ ଏବଂ ସମ୍ମାନର ସହିତ ଆଳାପ କରିବେ । ପ୍ରଚ୍ଛନ୍ନ ଧମକ ଦେଇ କହିବେ, ଯଦି କଲେଜରେ କୌଣସି ପ୍ରକାର ଅଶାନ୍ତି ହୁଏ, ତେବେ ବରଦାସ୍ତ କରାଯିବ ନାହିଁ । କୌଣସି ପ୍ରକାର ବାହ୍ୟ ହସ୍ତକ୍ଷେପକୁ ଆମେ ଭ୍ରୂକ୍ଷେପ କରିବୁ ନାହିଁ ।

ପୋଲିସ୍ ସାହେବ ଅନୁରୂପ ପରାମର୍ଶ ଗ୍ରହଣ କରି ସେହି ପରୀକ୍ଷାର୍ଥୀଙ୍କୁ ଡକାଇ ନେଇ ଚେତାବନୀ ଦେଲେ । ସେଦିନ ଥାଏ ରବିବାର । ସେହି ପିଲାଟି ପୁନର୍ବାର ମୋତେ ସାକ୍ଷାତ କଲା ସଂଧ୍ୟା ସମୟରେ । କହିଲା, ଆପଣ ମୋ ବିଷୟରେ ପୋଲିସ୍ ସାହେବଙ୍କୁ କହିଦେଲେ । କହିଲି– ମୁଁ କାହିଁକି କହିବି ? କଲେଜକୁ ମୁଁ କ'ଣ ଏକା ମୁଣ୍ଡେଇ ବୁଲୁଛି । ତୁମେ ଯେତେବେଳେ ସେହି ବରିଷ୍ଠ ଅଧ୍ୟାପକ କେତେଜଣଙ୍କ ସହିତ କଠୋର ଭାଷାରେ କଥା ହେଉଥିଲ, ପାଖରେ ସରକାରଙ୍କ ଦେଖାଚାହାଁ ବିଭାଗର (ସି.ଆଇ.ଡ଼ି) କେହି ଶୁଣିପାରିଥିବେ । ତା'ର ରିପୋର୍ଟର ଏ ପରିଣତି । ଯେଉଁମାନେ ତମକୁ କପି କରିବା ପାଇଁ ଉତ୍ସାହିତ କରୁଥିଲେ, ସେମାନେ ଆମ ଷ୍ଟାଫ୍ କାଉନସିଲ୍‌ରେ ତୁମର ପ୍ରାର୍ଥୀତ୍ୱ ନାକଚ୍ କରିବା ପାଇଁ ପ୍ରସ୍ତାବ କରୁଥିଲେ । ମୁଁ ରାଜିହେଲି ନାହିଁ । ସେ କହିଲା–"ସେ ଖବର ମୁଁ ପାଇଚି ।" ମୋର ଏକାନ୍ତ ଅନୁରୋଧ, ଏ କଲେଜ ତୁମମାନଙ୍କର । ତୁମେ ଶାନ୍ତିରେ ପରୀକ୍ଷା ଦିଅ । ତୁମେ ବୁଦ୍ଧିମାନ ପିଲା । ନିଶ୍ଚୟ ପାସ୍ କରିବ ।

ପରୀକ୍ଷା ଆରମ୍ଭ ହେଲା । ତା'ରି ପାଇଁ କଲେଜରେ ଅଧ୍ୟାପକ ଓ ଛାତ୍ରମହଲରେ ନାନା ଗୁଞ୍ଜରଣ । ସେ କିନ୍ତୁ ଦୁଇଘଣ୍ଟା ପରୀକ୍ଷା ଲେଖି ଖାତା ଦାଖଲ କରି ଆସିଲା ମୋ ପାଖକୁ । ମୁଁ ଏକାକୀ ବସିଥାଏ । ମୋ ପାଖରେ ସାଦା ପୋଷାକରେ ଜଣେ ମାତ୍ର ପୋଲିସ ଅଫିସର ବସିଥାଆନ୍ତି । ହତା ମଧ୍ୟରେ ପୋଲିସ ଆଦୌ ନାହାନ୍ତି । ସେହି ପିଲାଟି ଆସି ମୋର ପାଦଛୁଇଁ ନମସ୍କାର କଲା । କହିଲା– ଆପଣଙ୍କ କହିବା ଅନୁସାରେ ଯାହା ଆସିଲା, ଲେଖି ଦେଇ ଚାଲିଆସିଲି । କହିଲି, ବର୍ତ୍ତମାନ ଘରକୁ ଫେରିଯାଇ ମନଦେଇ ପଢ଼ାପଢ଼ି କର । ଅବଶ୍ୟ ସଫଳତା ଅର୍ଜନ କରିବ । ବାସ୍ତବିକ ମୋର ପ୍ରସ୍ତାବ ସତ୍ୟ ହେଲା । ସୁରୁଖୁରୁରେ ପୂର୍ବପରି ପରୀକ୍ଷା ଚାଲିଲା । ଏବଂ ଶେଷରେ ସେହି ପିଲାଟି ଗ୍ରାଜୁଏଟ୍ ଡିଗ୍ରୀ ହାସଲ କରି ବର୍ତ୍ତମାନ ଗୋଟିଏ ବ୍ୟାଙ୍କରେ କର୍ମଚାରୀ । ବାଟରେ ଦେଖିଲେ କୃତଜ୍ଞତାରେ ପ୍ରଣାମ ଜଣାଏ ।

ମୁକ୍ତକଣ୍ଠରେ କହେ– ''ଆପଣ ମୋତେ ଅବାଟରୁ ଫେରାଇ ଆଣିଲେ । ମୁଁ ଅମଣିଷ ହୋଇଯାଇଥିଲି ।''

ଘଟଣା ତ ଅସୁମାରୀ । ତେବେ କଲେଜ ବିଲ୍ଡିଂ ଉପରେ ପୁନର୍ବାର 'କ୍ରସ୍' ପୋତା ହେବା ଏବଂ ତାକୁ ଛାତ୍ରମାନେ ଉତ୍ପାଟନ କରିବାର ତିକ୍ତ ଅନୁଭୂତି ଭୁଲି ହେବ ନାହିଁ । ୧୯୬୮ ମସିହାରେ ଆମର ଅଧ୍ୟକ୍ଷ ଥିଲେ ପ୍ରଫେସର ଏମ୍.ଏନ୍.ରାୟ । କେତେଜଣ ଉଦ୍‌ଭ୍ରାନ୍ତ ଛାତ୍ର କଲେଜ ବିଲ୍ଡିଂ ଉପରେ ଥିବା କ୍ରସ୍‌କୁ କାଟି ଫିଙ୍ଗିଦେଲେ । କଟକରେ ଭୟଙ୍କର ସାଂପ୍ରଦାୟିକ ଅଶାନ୍ତି ସୃଷ୍ଟି ହୋଇଥିଲା । କଲେଜର ଚାରିଆଡ଼େ ବଦନାମ । ଅଯଥାରେ ଓ ବିନାକାରଣରେ ଅଧିକାଂଶ ଛାତ୍ର ଓ ଅଧ୍ୟାପକ ଗୋଷ୍ଠୀ ନିନ୍ଦିତ ହୋଇଥିଲେ । ଯାହାହେଉ ଧୀରେଧୀରେ ଶାନ୍ତି ଫେରି ଆସିଲା । ହିନ୍ଦୁତ୍ୱବାଦୀ କେତେଜଣ ଛାତ୍ରଙ୍କର ଉତ୍ୟକ୍ତ ହେବାର କାରଣ ହେଲା, ଏମ୍.କେ. ପାତ୍ର ନାମରେ ଜଣେ ଖ୍ରୀଷ୍ଟଧର୍ମୀ ଅଧ୍ୟକ୍ଷ ପରୁଆନା ଜାରି କଲେ ଯେ ପୂର୍ବାହ୍ନରେ ଏକ ଖେଳଛୁଟିରେ ସମସ୍ତ ଖ୍ରୀଷ୍ଟଧର୍ମୀ କର୍ମଚାରୀ ଗୋଟିଏ କକ୍ଷରେ ଏକାଠି ହୋଇ ପ୍ରାର୍ଥନା କରିବେ । ଏ ବ୍ୟବସ୍ଥା କଲେଜର ଇତିହାସରେ କେବେହେଲେ ଶୁଣା ନଥିଲା । ଆମର ପ୍ରତିଷ୍ଠାତା ଅଧ୍ୟକ୍ଷ ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତି ମଧ୍ୟ ଏପରି ବ୍ୟବସ୍ଥା କରି ନଥିଲେ । ପରିଣାମ ହେଲା କତିପୟ ହିନ୍ଦୁତ୍ୱବାଦୀ ଛାତ୍ର ଉତ୍ୟକ୍ତ ହେବା ଏବଂ ପ୍ରତିଶୋଧ ପରାୟଣ ହୋଇ କ୍ରସ କାଟିବା । ନଚେତ୍ ସେ ପର୍ଯ୍ୟନ୍ତ କେହି କେବେହେଲେ କ୍ରସର ବିରୁଦ୍ଧରେ ସାମାନ୍ୟତମ ଚିନ୍ତା ମଧ୍ୟ କରିନଥିଲେ । ସେ ଯାହାହେଉ, ସମୟକ୍ରମେ ସମସ୍ତେ ବିସ୍ମୃତ ହୋଇଗଲେ ।

ଏ ହେଉଛି ୧୯୮୬ ମସିହା ଅକ୍ଟୋବର ମାସର କଥା । ପରିଚାଳନା ସମିତି ପ୍ରସ୍ତାବ କଲେ, କଲେଜ ବିଲିଡ଼ିଂରେ ପୁନର୍ବାର କ୍ରସ୍ ଲଗାଯିବ । ମୁଁ ବିନୀତ ଭାବରେ ପ୍ରାର୍ଥନା କଲି– ଖ୍ରୀଷ୍ଟିୟାନ ଏଜୁକେସନ ବୋର୍ଡ଼ ଏ କଲେଜର ସମ୍ପୂର୍ଣ୍ଣ ପରିଚାଳକ । କଲେଜର ନାମ ମଧ୍ୟ ଖ୍ରୀଷ୍ଟ ମହାବିଦ୍ୟାଳୟ । ଏଠାରେ ସବୁ ଧର୍ମର ଛାତ୍ରଛାତ୍ରୀ ଅଧ୍ୟୟନ କରୁଛନ୍ତି, କର୍ମଚାରୀ ଅଛନ୍ତି । କ୍ରସ୍ ଲଗାଇଲେ ପୁନର୍ବାର ସାଂପ୍ରଦାୟିକ ଗୋଷ୍ଠୀ ସୁଯୋଗ ଗ୍ରହଣ କରିବେ ଅଶାନ୍ତି କରିବା ପାଇଁ । ଏ ଦାୟିତ୍ୱ ଦୟାକରି ମୋତେ ଦିଅନ୍ତୁ ନାହିଁ । ଏହାଦ୍ୱାରା ମୁଁ ସମସ୍ତଙ୍କର ଆସ୍ଥା ଓ ବିଶ୍ୱାସ ହରାଇବି । କଲେଜ କାର୍ଯ୍ୟ ସୁରୁଖୁରୁରେ ଚାଲିପାରିବ ନାହିଁ । ମୋ କଥା ରହିଲା ନାହିଁ । ସେଠାରେ ଧର୍ମବିଶ୍ୱାସର ଭାବପ୍ରବଣତା ପ୍ରଭାବ ବିସ୍ତାର କଲା, ଯାହାହେଉ, ପରିଚାଳନା ସମିତିର ଚେଆରମ୍ୟାନ ମୋ ପ୍ରତି ସହାନୁଭୂତିଶୀଳ ଥିଲେ । ସେ ପ୍ରସ୍ତାବ କଲେ, ଏ ଦାୟିତ୍ୱ ପରିଚାଳନା ସମିତି ସଂପାଦକଙ୍କ ଦାୟିତ୍ୱରେ କରାଯିବ । ଅଧ୍ୟକ୍ଷ ବ୍ୟସ୍ତ ହେବାର କିଛି କାରଣ ନାହିଁ । ତାହାହିଁ ହେଲା । ସେହି ଜ୍ୱାଳାମୁଖୀ ଦିନଟି ହେଉଛି ଅକ୍ଟୋବର ମାସ ପନ୍ଦର ତାରିଖ । ପରିଚାଳନା ସମିତିର ସଂପାଦକ ନିଜ ଦାୟିତ୍ୱରେ କ୍ରସ୍ ଲଗାଇଦେଇ ଆତ୍ମସନ୍ତୋଷ ଲାଭ କଲେ । ମନେମନେ ଗୌରବ ନେଉଥାଆନ୍ତି, ସେ କାର୍ଯ୍ୟଟି କରିପାରିଲେ ବୋଲି । ମାତ୍ର ଏହାର କୁପରିଣତି ବିଷୟରେ ସେ ଆଦୌ ସଚେତନ ହେଲେ ନାହିଁ ।

ଆରମ୍ଭ ହେଲା ଛାତ୍ରସମାଜ ମଧ୍ୟରେ ଭୟଙ୍କର ପ୍ରତିକ୍ରିୟା । ଧୀରେଧୀରେ ଜନସାଧାରଣଙ୍କ ମଧ୍ୟରେ ଅପ୍ରୀତିକର ଆଲୋଚନାର ଗୁଞ୍ଜରଣ ସରକାରଙ୍କ କାନରେ ପଡୁଥାଏ । କେଉଁ ମୁହୂର୍ତ୍ତରେ କ'ଣ ଘଟିବ, କଳ୍ପନା କରାଯାଇ ପାରୁ ନଥିଲା । ମୋର ଏହି କାର୍ଯ୍ୟରେ କୌଣସି ଦାୟିତ୍ୱ ନଥିବାରୁ ସମଗ୍ର ଛାତ୍ର ସମାଜ ମୋ ପ୍ରତି ଅକୁଣ୍ଠ ସହଯୋଗ କରୁଥାଆନ୍ତି । କଲେଜର ଅଧ୍ୟୟନ ଅଧ୍ୟାପନାରେ କୌଣସି ଆଞ୍ଚ ଆସୁ ନଥାଏ । ମୋ ଜାଣିବାରେ କଲେଜ ହତା ମଧ୍ୟରେ ବାରମ୍ବାର ସି.ଆଇ.ଡ଼ିମାନେ ପଇନ୍ତରା କରୁଥାଆନ୍ତି । ମୁଁ ପଚାରିବାରେ କୌଣସି ଉତ୍ତର ନାହିଁ । ଅକ୍ଟୋବର ମାସ ୨୭ ତାରିଖଦିନ କଟକ କଲେକ୍ଟର ମୋତେ ଏବଂ ପରିଚାଳନା ସମିତି ସଂପାଦକଙ୍କୁ ଆଦେଶ ଦେଲେ ସଂଧ୍ୟାରେ ତାଙ୍କର ବାସଭବନ ଅଫିସ କକ୍ଷରେ ସାକ୍ଷାତ କରିବା ପାଇଁ । ଆମେ ଦୁହେଁ ସେଠାରେ ପହଞ୍ଚି ଦେଖିଲୁ, କଲେକ୍ଟରଙ୍କ ସହିତ ଅଫିସ୍ କକ୍ଷରେ ତିନିଜଣ ଏ.ଡ଼ି.ଏମ୍. ଏବଂ ସ୍ୱୟଂ ପୋଲିସ୍ ସାହେବ ଉପସ୍ଥିତ ଅଛନ୍ତି । ପ୍ରଥମେ ମୋତେ ପ୍ରଶ୍ନ ହେଲା– ସରକାରଙ୍କୁ ନ ଜଣାଇ ଏ କାର୍ଯ୍ୟ କିପରି କରାଗଲା ? ମୁଁ ପ୍ରଥମରୁ ମୋର କୌଣସି ଦାୟିତ୍ୱ ନାହିଁ ବୋଲି ବୁଝାଇଦେଲି । ପରିଚାଳନା ସମିତି ନିଜ ଦାୟିତ୍ୱରେ ଏ କାର୍ଯ୍ୟଟି କରାଇଛନ୍ତି ସଂପାଦକଙ୍କ ଜରିଆରେ । ମୋତେ ଆଉ ପ୍ରଶ୍ନ ହେଲା ନାହିଁ । ନାନା ପ୍ରଶ୍ନବାଣରେ ସଂପାଦକ ଅତିଷ୍ଠ ହୋଇଯାଉଥାଆନ୍ତି । ଭାବପ୍ରବଣତାର ପରିଣତି କ'ଣ ହେବ କହିହେବ ନାହିଁ । କଟକରେ ଖ୍ରୀଷ୍ଟିୟାନ ଏବଂ ହିନ୍ଦୁ ସାଂପ୍ରଦାୟିକ ଅଶାନ୍ତି ସୃଷ୍ଟି ହେଲେ ମିଶା ଆଇନ ବଳରେ ସେ ବନ୍ଦୀ ହେବାର ଆଶଙ୍କା ହେଉଥାଏ । ସତର୍କ ରହିବା ପାଇଁ କଲେକ୍ଟର ଚେତାବନୀ ଦେଇ ବିଦାୟ ଦେଲେ । ଦେଖିଲି, ସେହି ଅଫିସ ଆଗ ରାସ୍ତାରେ ଦଳଦଳ କଲେଜ ଛାତ୍ର ପଇଁତରା ମାରୁଛନ୍ତି । ନାନା ଆଶଙ୍କାରେ ମୋର ଛାତି ଥରୁଥାଏ । ଏତେ ନିଷ୍ଠା ଓ ପରିଶ୍ରମ ଶେଷକୁ ମାଟିରେ ମିଶିଯିବ । ପୁନର୍ବାର କଲେଜ ହେବ ଥରହର ଛାତ୍ର ଆନ୍ଦୋଳନକୁ ନେଇ । ଅକ୍ଟୋବର ୩୦ ତାରିଖର ସେହି ଦୁର୍ଦ୍ଦିନ । ପ୍ରବଳ ତୋଫାନ ପୂର୍ବରୁ ବାୟୁମଣ୍ଡଳରେ ପ୍ରଶାନ୍ତି ରାଜପଣ କରୁଥାଏ ବୋଲି ପ୍ରବାଦ ଅଛି । ଠିକ୍ ସେହିପରି ପୂର୍ବାହ୍ନ ଦଶଟା ପର୍ଯ୍ୟନ୍ତ ସୁରୁଖୁରୁରେ କ୍ଲାସ୍ ଚାଲିଥାଏ । କୌଣସିଠାରେ କିଛି ଅଘଟଣ ଘଟିବ ବୋଲି ଆଦୌ ଆଶଙ୍କା ନଥାଏ । ସେଦିନ ମୋ ପରିଚାଳନା ସମିତିର ସଂପାଦକ ପୂର୍ବାହ୍ନ ଦଶଟା ପର୍ଯ୍ୟନ୍ତ ବସିଥିଲେ । ସେ ହଠାତ୍ ଚାଲିଗଲେ । ଠିକ୍ ପରେ ପରେ ୩୦/୪୦ ଛାତ୍ର ରକ୍ତମୁଖା ହୋଇ ଅଫିସ୍ ମଧ୍ୟରେ ତାଙ୍କୁ ଖୋଜିଲେ ଏବଂ ନପାଇ ଫେରିଗଲେ । ସେ ଥିଲେ ହୁଏତ ପରିଣତି ଭୟଙ୍କର ହୋଇଥାଆନ୍ତା । ମାତ୍ର ତେଣେ ଆରମ୍ଭ ହୋଇଗଲା କ୍ରସ୍ ଉତ୍ପାଟନ ପ୍ରକ୍ରିୟା । ବାହାରକୁ ଅନାଇ ଦେଖିଲି, କଲେଜ ପାଚେରୀ ଚତୁର୍ଦ୍ଦିଗରେ ପୋଲିସବାହିନୀ ଜାଗ୍ରତ ହୋଇ ରହିଛନ୍ତି । ଚାହୁଁ ଚାହୁଁ କ୍ରସ୍ କାଢ଼ି ନିଆଗଲା । ମାତ୍ର ତା'ପରେ ପୁନର୍ବାର ପ୍ରଶାନ୍ତି ରାଜପଣ କଲା । ସତେ ଯେପରି କିଛି ଅଘଟଣ ଘଟି ନାହିଁ । ପଢ଼ାପଢ଼ି ରୀତିମତ ଚାଲିଲା । ପରିଚାଳନା ସମିତି ଧର୍ମବିଶ୍ୱାସଜନିତ ଭାବପ୍ରବଣତାର ଏପରି ବିକଳ ପରିଣତି ହେବ ବୋଲି ବୋଧହୁଏ କଳ୍ପନା କରିପାରି ନଥିଲେ । ଭାଗ୍ୟବଳରେ ଏହି ବିପତ୍ତିରୁ ରକ୍ଷା ପାଇଗଲି ।

ମୋର କାର୍ଯ୍ୟକାଳ ମଧ୍ୟରେ କଲେଜରେ ଦୁଇଟି ସମ୍ମିଳନୀ ଅତ୍ୟନ୍ତ ସ୍ମରଣୀୟ । ପ୍ରଥମଟି ହେଲା ନିଖିଳ ଓଡ଼ିଶା ଉଦ୍ଭିଦ ବିଜ୍ଞାନ ସମ୍ମିଳନୀ ଓ ଅନ୍ୟଟି ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ । ଉଦ୍ଭିଦ ବିଜ୍ଞାନ ସମ୍ମିଳନୀରେ ସମଗ୍ର ଓଡ଼ିଶାର ଉଦ୍ଭିଦବିଜ୍ଞାନୀ ଅଧ୍ୟାପକ ଓ ଅଧ୍ୟାପିକା ସମେତ ବହୁ ଅବସରପ୍ରାପ୍ତ ପ୍ରସିଦ୍ଧ ଉଦ୍ଭିଦ ବିଜ୍ଞାନୀ ପ୍ରଶାସକ ଓ ଲେଖକ ଯୋଗ ଦେଇଥିଲେ । ଦୁଇଦିନ କାଳ ବୌଦ୍ଧିକ ଆଲୋଚନା ଓ ଗବେଷଣା ସନ୍ଦର୍ଭ ପାଠ କରାଯାଇଥିଲା । ଆମ ମହାବିଦ୍ୟାଳୟର ଆୟୋଜନ ଓ ଭବ୍ୟ ଅତିଥି ସତ୍କାର ପାଇଁ ସମବେତ ପ୍ରତିନିଧିମଣ୍ଡଳୀ ଭୂୟସୀ ପ୍ରଶଂସା କରିଥିଲେ ଏବଂ ସ୍ୱୀକାର କରିଥିଲେ ଯେ ଏଠାର ସମ୍ମିଳନୀର ସାଫଲ୍ୟ କ୍ୱଚିତ୍ ଦେଖିବାକୁ ମିଳିଥାଏ ।

ସେହିପରି ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମିଳନୀରେ ସମଗ୍ର ଓଡ଼ିଶାର ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ପ୍ରତିନିଧି ଯୋଗଦେବା ସହିତ ରାଞ୍ଚି, ଶାନ୍ତିନିକେତନ ଏବଂ ଆନ୍ଧ୍ରପ୍ରଦେଶରେ କାର୍ଯ୍ୟରତ ଓଡ଼ିଆ ଅଧ୍ୟାପକମାନେ ଅଂଶଗ୍ରହଣ କରିଥିଲେ । ଆମ ମହାବିଦ୍ୟାଳୟର ଏକଦା ଛାତ୍ରଥିବା ପ୍ରବୀଣଶିକ୍ଷକ ନେତା ଅଧ୍ୟାପକ ଅବନୀକୁମାର ବରାଳ ଥିଲେ ପ୍ରଧାନ ପୁରୋଧା । ଆମ କଲେଜର ଅଧ୍ୟାପକମାନଙ୍କର ଅକୁଣ୍ଠ ସହଯୋଗ ଓ ନେତୃତ୍ୱ ବାରି ହୋଇପଡୁଥିଲା । ଏ ପ୍ରକାର ସମ୍ମିଳନୀର ଆୟୋଜନ ଆଉ କ୍ୱଚିତ୍ ଦେଖିବାକୁ ମିଳୁଛି ।

ଅଧ୍ୟକ୍ଷ ଜୀବନର କାର୍ଯ୍ୟକାଳ ମଧ୍ୟରେ କେତୋଟି ମରଣଲୀଳାର ଦୁଃଖଦ ଅନୁଭୂତି ମନେପଡୁଛି । ୧୯୮୪ ମସିହା ଅଗଷ୍ଟ ଏକୋଇଶି ତାରିଖ ଦିନ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଇତିହାସ ପ୍ରଫେସର ଭାବରେ କାର୍ଯ୍ୟରତ ଡକ୍ଟର ଶରତଚନ୍ଦ୍ର ବେହେରା ଅପରିଣତ ବୟସରେ ଇହଲୀଳା ସମ୍ବରଣ କଲେ । ଡକ୍ଟର ବେହେରା ଏମ୍.ଏ. ପାସ୍ କରି ପ୍ରଥମେ ଆମ କଲେଜରେ ଅଧ୍ୟାପନା ଆରମ୍ଭ କଲେ । କଠୋର ପରିଶ୍ରମ କରି ଅଳ୍ପଦିନ ମଧ୍ୟରେ ସେ ଜଣେ କୃତି ଅଧ୍ୟାପକ ଭାବରେ ଅତ୍ୟନ୍ତ ଛାତ୍ରପ୍ରିୟ ହୋଇଉଠିଲେ । ଏଇଠି ଆରମ୍ଭ ହେଲା ଗବେଷଣା । ସେତେବେଳେ ଭୁବନେଶ୍ୱରକୁ ଯାତ୍ରୀବାହି ମଟର ସର୍ଭିସ୍ ଆରମ୍ଭ ହୋଇନଥାଏ । ସକାଳ କଲେଜ କାର୍ଯ୍ୟ ସାରି ସେ ପ୍ରତ୍ୟେକ ଦିନ ମଧ୍ୟାହ୍ନରେ ରେଳଗାଡ଼ି ଯୋଗେ ଭୁବନେଶ୍ୱର ଯାଉଥିଲେ ମିଉଜିଅମ୍ ପାଠାଗାରରେ ଅଧ୍ୟୟନ କରିବା ପାଇଁ । ପୁନର୍ବାର ସଂଧ୍ୟାରେ ଫେରିଆସି କଲେଜ ପାଠ ପାଇଁ ପ୍ରସ୍ତୁତ ହେଉଥିଲେ । ପ୍ରକୃତରେ ସେ ଥିଲେ ଜ୍ଞାନତପସ୍ୱୀ । ଭୌମକର ରାଜବଂଶ ବିଷୟରେ ବହୁପୂର୍ବରୁ ପଣ୍ଡିତ ବିନାୟକ ମିଶ୍ର ଅଳ୍ପକିଛି ଆଲୋକପାତ କରିଥିଲେ । ଶରତବାବୁ ଏହି କ୍ଷେତ୍ରରେ ଗବେଷଣା କରି ପି.ଏଚ୍.ଡ଼ି. ଉପାଧିରେ ଭୂଷିତ ହେଲେ । ବିଶ୍ୱବିଖ୍ୟାତ ପଞ୍ଚତନ୍ତ୍ରର ଲେଖକ ବିଷ୍ଣୁଶର୍ମା ଓଡ଼ିଶାର ଅଧିବାସୀ ବୋଲି ଡକ୍ଟର ବେହେରା ଭାରତୀୟ ଇତିହାସ କଂଗ୍ରେସରେ ପ୍ରବନ୍ଧ ପାଠ କରି ପ୍ରମାଣ କରିଥିଲେ । ସେ ଥିଲେ ସ୍ୱାମୀ ଚିଦାନନ୍ଦଙ୍କର ପରମଭକ୍ତ । ତାଙ୍କ ସଂପର୍କରେ ଲିଖିତ ଡକ୍ଟର ବେହେରାଙ୍କ ଇଂରେଜୀ ଗ୍ରନ୍ଥ ସମଗ୍ର ଭାରତରେ ସୁପ୍ରଚାରିତ । ଏହିପରି ଜଣେ ଯୋଗଜନ୍ମା ଅନ୍ତରଙ୍ଗ ସହକର୍ମୀଙ୍କର ଅକାଳମୃତ୍ୟୁ ମୋତେ ବ୍ୟଥିତ କରିଥିଲା ।

ସେହିପରି ଆଉ ଗୋଟିଏ ଦୁଃଖଦ ଘଟଣାର ପୁନରାବୃତ୍ତି ଶୁଣିବାକୁ ମିଳିଲା ୧୯୮୪ ମସିହା ଅକ୍ଟୋବର ଏକତିରିଶ ତାରିଖ ଦିନ । କଲେଜରେ ନିଜ ଅଫିସ କକ୍ଷରେ ଏକାକୀ ବସିଥାଏ । ଜଣେ ଅଧ୍ୟାପିକା ଅତ୍ୟନ୍ତ ବିଚଳିତ ଅବସ୍ଥାରେ ଅଫିସ୍‌କୁ ପ୍ରବେଶ କରି କହିଲେ, ''ସାର୍ ! ଗୋଟିଏ କଥା ଆପଣଙ୍କୁ କହିବାକୁ ଆସିଛି । କାହାକୁ କହିବେ ନାହିଁ ।'' ମୁଁ କହିଲି, ଯଦି ସେତିକି ଭରସା ନାହିଁ, ତାହାହେଲେ କହ ନାହିଁ । ସେ ନିଜର ଭାବପ୍ରବଣତା ରୋକି ପାରିଲେ ନାହିଁ । କହିଲେ, ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କୁ ତାଙ୍କର ଦେହରକ୍ଷୀମାନେ ହତ୍ୟା କରିଛନ୍ତି । ସରକାରୀ ସ୍ତରରେ ଏହା ଘୋଷଣା ନହେଲା ପର୍ଯ୍ୟନ୍ତ ଦେଶବାସୀ କିଛି ଜାଣିବେ ନାହିଁ । ପଚାରିଲି–''ଆପଣ କେଉଁଠାରୁ ଏ ସଂବାଦ ସଂଗ୍ରହ କଲେ ।'' ସେ କହିଲେ–''ମୋର ସ୍ୱାମୀ ସରକାରଙ୍କ ଦେଖାଚାହାଁ ବିଭାଗର ବରିଷ୍ଠ କର୍ମଚାରୀ । ତାଙ୍କଠାରୁ ଶୁଣିଲି ।'' କିଛିକ୍ଷଣ ପାଇଁ ସ୍ତବ୍ଧ ହୋଇଗଲି । ଅଧ୍ୟାପିକା ବିଦାୟ ନେଲେ । ଭାବୁଥାଏ, ଏହାର ପ୍ରତିକ୍ରିୟା ଅତ୍ୟନ୍ତ ଭୟଙ୍କର ହେବ । ଦିଲ୍ଲୀ ରାଜଧାନୀରେ ଅରାଜକତା ରାଜପଣ କରିପାରେ । ଜନସାଧାରଣ ଉତ୍ୟକ୍ତ ହୋଇ ଯେ କୌଣସି ଅଘଟଣ ଘଟାଇ ପାରନ୍ତି । ମୋର ଅନୁମାନ ସତ୍ୟ ହେଲା । ଦିଲ୍ଲୀ ରାଜଧାନୀରେ ଶିଖ୍ ଅଧିବାସୀମାନେ ଭୟଙ୍କର ବିପଦର ସମ୍ମୁଖୀନ ହେଲେ । କେତେ ପୋଡ଼ାଜଳା ଓ ନରସଂହାର ଚାଲିଲା । କଂଗ୍ରେସ ଦଳ ଇନ୍ଦିରାଗାନ୍ଧୀଙ୍କ ପୁଅ ରାଜୀବଗାନ୍ଧୀଙ୍କୁ ଡାକି ଆଣି ପ୍ରଧାନମନ୍ତ୍ରୀ ଆସନରେ ବସାଇଦେଲେ । ତା'ପରେ ସରକାରୀ ଭାବରେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କର ମୃତ୍ୟୁ ସମ୍ବାଦ ଘୋଷଣା କରାଯାଇ ଅନ୍ତ୍ୟେଷ୍ଟିକ୍ରିୟାର ବ୍ୟବସ୍ଥା କରାଗଲା । ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ସନ୍ତ୍ରାସବାଦୀଙ୍କୁ ନିକାଲିବା ପାଇଁ ଶିଖ୍‌ମାନଙ୍କର ଆରାଧ୍ୟସ୍ଥାନ ସ୍ୱର୍ଣ୍ଣମନ୍ଦିର ମଧ୍ୟରେ ସାମରିକ କାର୍ଯ୍ୟାନୁଷ୍ଠାନ କରିବାରୁ ଧର୍ମାନ୍ଧ ଶିଖ ଦେହରକ୍ଷୀ ଏହି ପ୍ରକାର ଅପକର୍ମ କରିବାକୁ କୁଣ୍ଠିତ ହେଲେ ନାହିଁ । ସେହିଦିନ ରାତି ସାଢ଼େ ନଅଟାରେ ଅନ୍ୟ କେତେଜଣ ବିଶିଷ୍ଟ ନାଗରିକଙ୍କ ସହିତ ମୋର ପ୍ରତିକ୍ରିୟା କଟକ ଆକାଶବାଣୀ ପ୍ରଚାର କରିଥିଲେ ।

ଅଧ୍ୟକ୍ଷ ଜୀବନରେ ଆଉ ଏକ ଘଟଣା ଭୁଲିପାରି ନାହିଁ । କଲେଜର ପ୍ରତିଷ୍ଠାତା ଅଧ୍ୟକ୍ଷ ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତି ୧୯୮୫ ସାଲ ଜୁଲାଇମାସ ଏକତିରିଶ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ରେଭରେଣ୍ଡ ମହାନ୍ତିଙ୍କ ପରି ନିଷ୍ଠାପର ଓ ଆଧ୍ୟାତ୍ମିକ ପ୍ରାଣ ଅଧ୍ୟାପକ ଓ ଅଧ୍ୟକ୍ଷ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ରେଭରେଣ୍ଡ ମହାନ୍ତି ପ୍ରଥମ ଜୀବନରେ ଆଇନଜୀବୀ ଭାବରେ କିଛିକାଳ କାର୍ଯ୍ୟ କରିଥିଲେ । ନୈଷ୍ଠିକ ଖ୍ରୀଷ୍ଟଧର୍ମୀ ଭାବରେ ଧର୍ମପ୍ରଚାର କାର୍ଯ୍ୟରେ କିଛିଦିନ ନିଯୁକ୍ତ ଥିଲେ । ଓଡ଼ିଶା ବିଧାନସଭାର ଏକଦା ବାଚସ୍ପତି ଗଞ୍ଜାମର ଲାଲମୋହନ ପଟ୍ଟନାୟକଙ୍କୁ ସେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରିଥିଲେ । ଉଭୟ ଥିଲେ ଅନ୍ତରଙ୍ଗ ବନ୍ଧୁ । ପରବର୍ତ୍ତୀ କାଳରେ ରେଭରେଣ୍ଡ ମହାନ୍ତି କଟକ ଯାଚକ ଲେନ୍‌ରେ ସ୍ଥାୟୀ ଭାବରେ ଅବସ୍ଥାନ କଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବାରୁ ଖ୍ରୀଷ୍ଟ ମହାବିଦ୍ୟାଳୟ, ଖ୍ରୀଷ୍ଟିୟାନ କଲେଜ ଭାବରେ ଜନ୍ମ ଗ୍ରହଣ କଲା ରେଭରେଣ୍ଡ ମହାନ୍ତିଙ୍କର ଅଧ୍ୟକ୍ଷତାରେ । ଏହି

ଅନୁଷ୍ଠାନର ପରିଚାଳନା ସମିତିର ଚେଆରମ୍ୟାନ୍ ହେଲେ ବିଧାନସଭାର ବାଚସ୍ପତି ଲାଲମୋହନ ପଟ୍ଟନାୟକ । ରେଭରେଣ୍ଡ ମହାନ୍ତି ଥିଲେ ଅଜାତଶତ୍ରୁ । ଛାତ୍ର, ଅଧ୍ୟାପକ ଓ କର୍ମଚାରୀମାନଙ୍କର ସେ ଥିଲେ ଅତ୍ୟନ୍ତ ଆପଣାର ହିତାକାଂକ୍ଷୀ । କୌଣସି ପ୍ରକାର ଅନୀତି ଆଚରଣକୁ ସେ ଆଦୌ ବରଦାସ୍ତ କରୁନଥିଲେ । କଲେଜ କକ୍ଷରେ ତାଙ୍କର ଉପସ୍ଥିତି ହିଁ ଏକ ପ୍ରଶାନ୍ତିର ବାତାବରଣ ସୃଷ୍ଟି କରୁଥିଲା । ଜଣେ ନୈଷ୍ଠିକ ଖ୍ରୀଷ୍ଟିଆନ ଭାବରେ ସେ ସର୍ବଦା କ୍ଷମା ଆଚରଣ କରୁଥିଲେ । ତାଙ୍କର ଶ୍ରଦ୍ଧା ଓ ଆଶୀର୍ବାଦ ଲାଭ କରି ମୁଁ ଧନ୍ୟ ହୋଇଥିଲି । ମୋ ଉପରେ ତାଙ୍କର ଗଭୀର ଆସ୍ଥା ଥିଲା । ତେଣୁ କଲେଜର ଅନେକ ଦାୟିତ୍ୱ ମୋ ପରି ଜଣେ କନିଷ୍ଠ ଅଧ୍ୟାପକ ଉପରେ ପ୍ରଦାନ କରି ସେ ନିଶ୍ଚିନ୍ତ ରହୁଥିଲେ । ସେହି ମହାନ ବ୍ୟକ୍ତିଙ୍କର ଏକ ସଶ୍ରଦ୍ଧ ଉପହାର ଆଜି ମଧ୍ୟ ସାଇତି ରଖିଛି । ତାହା ହେଲା The living New Testament ର ଲୋକପ୍ରିୟ ସଂସ୍କରଣ "The greatest is love" ଏଥିରେ ରେଭରେଣ୍ଡ ମହାନ୍ତି ମୋ ଉଦ୍ଦେଶ୍ୟରେ ଲେଖିଥିଲେ– "To Sri Pathani Pattnaik. For careful Reading and reverant study.".From Brojananda Mohanty. 6.9.72.

ଏ ବହିଟି ବାରମ୍ବାର ପଢ଼ିଛି ଏବଂ ଯଥେଷ୍ଟ ପ୍ରେରଣା ଲାଭ କରିଛି । ସେତେବେଳେ ମନେପଡ଼ନ୍ତି ମୋର ଆଦ୍ୟ ପ୍ରେରଣାଦାତା ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତି ।

ଜୀବନର ଚଲାପଥରେ କେତେ ଘଟଣାର ସମ୍ମୁଖୀନ ହେବା ଅତ୍ୟନ୍ତ ସ୍ୱାଭାବିକ । ସବୁ କଥା ମନରେ ରେଖାପାତ କରେ ନାହିଁ । ଯେଉଁ କେତେକ ଅନୁଭୂତି ମଣିଷକୁ ଆଲୋଡ଼ିତ କରୁଥାଏ, ତାହା ବିସ୍ମୃତ ହେବା ସହଜ ହୁଏ ନାହିଁ । ସେହିପରି ଏକ ଘଟଣା ମନେପଡୁଛି । ତାହାହେଲା ୧୯୮୭ ମସିହା ଜାନୁୟାରୀ ମାସ ଦୁଇ ତାରିଖ । କଲେଜ ଅଫିସରେ କାର୍ଯ୍ୟରତ ରହିଥାଏ । ହଠାତ୍ ଟେଲିଫୋନ୍‌ରେ ପ୍ରଜାତନ୍ତ୍ରରୁ ଖବର ଆସିଲା–''ଉତ୍କଳକେଶରୀ ହରେକୃଷ୍ଣ ମହତାବ ଚିରବିଦାୟ ନେଇଛନ୍ତି ।'' ଆଉ କି କାମରେ ମନ ଲାଗେ । କେତେ କାଳର ସଂପର୍କ । କେତେ ସ୍ନେହ, କେତେ ଆଶୀର୍ବାଦ । ସେ ସବୁ ଅଭୁଲା ଓ ଅଲିଭା ସ୍ମୃତି ହୋଇ ରହିଛି । ସଂଗେ ସଂଗେ ବାହାରି ପଡ଼ିଲି ପ୍ରଜାତନ୍ତ୍ର କାର୍ଯ୍ୟାଳୟକୁ । ହଜାର ହଜାର ଲୋକ ଜମା ହୋଇଗଲେଣି । ଜନସ୍ରୋତ ଅଟକିବାକୁ ନାହିଁ । ଭୁବନେଶ୍ୱର ମହତାବ ନିବାସରୁ ମରଶରୀରକୁ ଏକ ଶୋଭାଯାତ୍ରାରେ ଅଣାଯାଇଛି କଟକ । ଏଠାରେ ଶବାଧାରରେ ଅସୁମାରୀ ପୁଷ୍ପତୋଡ଼ା । ତା'ପରେ ଶବଶୋଭାଯାତ୍ରା ଚାଲିଲା ଭଦ୍ରକ ଅଗରପଡ଼ାକୁ । ନିଜ ଜନ୍ମସ୍ଥଳୀରେ ଶେଷସଂସ୍କାର କରାଗଲା ବହୁଗଣ୍ୟମାନ୍ୟ ଲୋକମାନଙ୍କ ଗହଣରେ ।

ପରାଧୀନ ଭାରତର ଜଣେ ସର୍ବମାନ୍ୟ ସର୍ବଭାରତୀୟ ସଂଗ୍ରାମୀ ନେତା ସ୍ୱାଧୀନ ଭାରତରେ ବିଶାଳ ଓଡ଼ିଶାର ନିର୍ମାତା ଭାବରେ ଚିରସ୍ମରଣୀୟ ହୋଇ ରହିବେ । ରାଜନୀତି, ସାହିତ୍ୟ, ସଂସ୍କୃତି ଓ ଇତିହାସ କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ । ସେ ଥିଲେ ବାସ୍ତବିକ ଲୋକନେତା । ସମାଜର ସବୁ ଶ୍ରେଣୀର ଲୋକଙ୍କ ସହିତ ତାଙ୍କର ଥିଲା ଅନ୍ତରଙ୍ଗ ସଂପର୍କ । ଆଧୁନିକ ଓଡ଼ିଆ ସାହିତ୍ୟ ଆନ୍ଦୋଳନରେ ସେ ଥିଲେ ଜଣେ ପ୍ରଭାବଶାଳୀ କର୍ଣ୍ଣଧାର । ଛାତ୍ରଜୀବନରେ ତାଙ୍କର ଆଶୀର୍ବାଦ ଲାଭ କରି ରବିବାର ସାହିତ୍ୟ ବିଭାଗ ପ୍ରଜାତନ୍ତ୍ର ଓ

ଝଙ୍କାର ମାସିକ ସାହିତ୍ୟ ପତ୍ରିକାର ସଂପାଦନା ଦାୟିତ୍ୱ କିଛିକାଳ ବହନ କରିବାର ସୌଭାଗ୍ୟ ଲାଭ କରିଥିଲି । ମୋର ବିଚାର ଓ ଆଲୋଚନା ସଂପର୍କରେ ତାଙ୍କର ଗଭୀର ଆସ୍ଥା ଥିବାର ଅନୁଭବ କରିଛି । ତାଙ୍କର ଅନ୍ତିମ ଜୀବନର ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରୁଛି । ମୃତ୍ୟୁର କେତେମାସ ପୂର୍ବରୁ ଇଂରେଜୀ ଭାଷାରେ ସେ ଲେଖିଥିଲେ–"While serving my Nation." ଏଥିରେ ପଣ୍ଡିତ ଜବାହରଲାଲଙ୍କ ବିଷୟରେ କିଛି ସମାଲୋଚନା ରହିଥିଲା । ତେଣୁ ତତ୍କାଳୀନ ଭାରତର ରାଷ୍ଟ୍ରପତି ଜୈଲ ସିଂହ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ଭୟରେ ଦିଲ୍ଲୀ ନଗରୀରେ ଏହି ପୁସ୍ତକର ଉଦ୍‌ଘାଟନ କରିବା ପାଇଁ ଅକ୍ଷମତା ପ୍ରକାଶ କଲେ । କିନ୍ତୁ ଉପରାଷ୍ଟ୍ରପତି ଶଙ୍କର ଦୟାଳ ଶର୍ମା ଯେ କି ପରେ ରାଷ୍ଟ୍ରପତି ଆସନ ଅଳଙ୍କୃତ କରିଥିଲେ, ସେ ହେଲେ ଏହି ପୁସ୍ତକର ଉଦ୍‌ଘାଟନ ଉତ୍ସବରେ ଅତିଥି । ପ୍ରଜାତନ୍ତ୍ରର ତତ୍‌କାଳୀନ ବରିଷ୍ଠ ସହସଂପାଦକ ଗୋରାଚାନ୍ଦ ମିଶ୍ର ମୋତେ ଦୂରଭାଷ ଯୋଗେ ଅନୁରୋଧ କଲେ ଏହି ପୁସ୍ତକର ସମୀକ୍ଷା କରିବା ପାଇଁ । ଗୋରାଚାନ୍ଦ ମୋର ଅନେକ ଦିନର ବନ୍ଧୁ । ଏକଦା ସେ 'କୃଷକ' ପତ୍ରିକାର ସଂପାଦନା ଦାୟିତ୍ୱରେ ଥିଲାବେଳେ ତାଙ୍କ ଅନୁରୋଧରେ 'ବୃହନ୍ନଳା' ଛଦ୍ମନାମରେ ଦୀର୍ଘକାଳ ଲେଖି ଚାଲିଥିଲି । ଗୋରାଚାନ୍ଦ କେବଳ ଜଣେ ବରିଷ୍ଠ ସାମ୍ବାଦିକ ଓ ସଂପାଦକ ନ ଥିଲେ, ସେ ଥିଲେ ଅଜସ୍ରସ୍ରାବୀ ଲେଖକ । ସାହିତ୍ୟର ବିଭିନ୍ନ ବିଭାଗରେ । ଅନୁବାଦ ସାହିତ୍ୟରେ ତାଙ୍କର ପଦଚିହ୍ନ ବାରି ହୋଇପଡୁଥିଲା । ତାଙ୍କୁ ଅତ୍ୟନ୍ତ ନମ୍ର ଭାବରେ ବାରଣ କଲି ଏହି ପୁସ୍ତକର ସମୀକ୍ଷା କରିବା ପାଇଁ । କଲେଜ ଜଞ୍ଜାଳରେ ଏପରି ଭାରାକ୍ରାନ୍ତ ଥାଏ ଯେ ଲେଖାପଢ଼ା ଦିଗରେ ଧ୍ୟାନ ଦେଇପାରୁ ନଥାଏ । ଅଳ୍ପ ସମୟ ପରେ ଶ୍ରୀ ମହତାବଙ୍କ ସୁପୁତ୍ର ଭର୍ତ୍ତୃହରି ବାବୁ ମୋତେ ଫୋନ୍ କରି କହିଲେ–''ସାର ଆପଣ ମନା କରନ୍ତୁ ନାହିଁ । ବାପୁଜୀଙ୍କର ଇଚ୍ଛା, ଆପଣଙ୍କ ହାତରେ ସେ ବହିର ସମୀକ୍ଷା ହେବ ।'' ଏକଥା ଶୁଣି ମୁଁ ତଟସ୍ଥ ହୋଇଗଲି । ମୋ ଉପରେ ମହତାବଜୀଙ୍କର ଆଶୀର୍ବାଦ ସତେ ଅବା ଝରି ଆସିଲା । ଅରାଜି ହେବାର ଅବକାଶ ନଥିଲା । ଗୋଟିଏ ଚିଠି ଲେଖି ଭର୍ତ୍ତୃହରି ବାବୁ ବହିଟି ପଠାଇଥିଲେ । ଚିଠିର ପ୍ରତିଲିପି ଏହିପରି–

୧୯.୦୯.୮୬

ମାନନୀୟ ପଠାଣିବାବୁ,

ଆପଣଙ୍କ ଲାଗି ବାବାଙ୍କ ଲିଖିତ While serving my Nation ପୁସ୍ତକଟି ପଠାଇଲି । ତାହା ପଢ଼ି ଏକ ସମୀକ୍ଷା ଲେଖି ପଠାଇଲେ ସୁନ୍ଦର ହୁଅନ୍ତା । ପ୍ରଜାତନ୍ତ୍ରରେ ଆପଣଙ୍କ ସମୀକ୍ଷାଟି ପ୍ରକାଶ କରିବାକୁ ଆମର ଇଚ୍ଛା । ଆଶାକରେ, ବିଭିନ୍ନ ଦାୟିତ୍ୱରେ ଥାଇ ମଧ୍ୟ ଏ କାର୍ଯ୍ୟଟି ମଧ୍ୟ ଆପଣ ଆମ ପାଇଁ କରିପାରିବେ ।

ଇତି ସ୍ନେହର

ଭର୍ତ୍ତୃହରି

ମୋର ଏକ ଦୀର୍ଘ ଲେଖା ପ୍ରଜାତନ୍ତ୍ର ପ୍ରକାଶ କରିଥିଲେ ।

ମୋର ପରମ ସୌଭାଗ୍ୟ ଯେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଏବଂ ଅଧ୍ୟାପକ ଶ୍ରୀଧର ଦାସଙ୍କ ଅଧୀନରେ ଅଧ୍ୟାପକ ଜୀବନ ଆରମ୍ଭ କରିଥିଲି ତରୁଣ ବୟସରେ । ବାନାମ୍ବର ବାବୁ ଅନ୍ୟ ସଂସ୍ଥାନରେ ଯୋଗଦେଇ କଲେଜ ଛାଡ଼ିଲେ । ଶ୍ରୀଧର ବାବୁ ଥିଲେ ଆମର ବିଭାଗୀୟ ମୁଖ୍ୟ । ସେ ଥିଲେ ପିତୃପ୍ରତିମ ପଣ୍ଡିତ ଅଧ୍ୟାପକ । ଆଳସ୍ୟ ତାଙ୍କ ପାଖରେ ପ୍ରବେଶ କରିପାରି ନଥିଲା । ମୋ ଉପରେ ତାଙ୍କର ଗଭୀର ଆସ୍ଥା ଓ ବିଶ୍ୱାସ ଅବସର ଗ୍ରହଣ କଲାପର୍ଯ୍ୟନ୍ତ ଅତୁଟ ରହିଥିଲା । ଶତାଧିକ ପୁସ୍ତକ ସେ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି । ଭାରତୀୟ ଓ ବିଶ୍ୱ ସାହିତ୍ୟର ଅନେକ ପ୍ରସିଦ୍ଧ ଗ୍ରନ୍ଥର ସେ ମର୍ମାନୁବାଦ କରିଛନ୍ତି । ଜଣେ ପ୍ରବୀଣ ଶିକ୍ଷାବିତ୍ ଭାବରେ କାର୍ଯ୍ୟକରି ୧୯୬୮ ମସିହାରେ ସେ ଅବସର ଗ୍ରହଣ କଲେ ବିଭାଗୀୟ ମୁଖ୍ୟ ଦାୟିତ୍ୱ ମୋତେ ଅର୍ପଣ କରି । ଏହି ଜ୍ଞାନଯୋଗୀ ୧୯୮୮ ମସିହା ଏପ୍ରିଲ ଚବିଶ ତାରିଖରେ ଇହଲୀଳା ସମ୍ବରଣ କଲେ । ଅଧକ୍ଷ ଜୀବନର ଶେଷ ଅଧ୍ୟାୟରେ ଏହି ଘଟଣା ଶ୍ରବଣ କରି ମର୍ମାହତ ହୋଇପଡ଼ିଥିଲି ।

ଅବସର ତାରିଖଟି ପାଖେଇ ଆସୁଥାଏ । ସେତେବେଳକୁ ଛଅଟି ବର୍ଷ ଚାହୁଁଚାହୁଁ ଅପସରି ଯାଇଥାଏ । ଦିନେ ଭୁବନେଶ୍ୱରରୁ କଲେଜ ପରିଚାଳନା ସମିତିର ଚେଆରମ୍ୟାନ ଶ୍ରୀ ପି.କେ. ମହାପାତ୍ର ଦୂରଭାଷ ଯୋଗେ ପ୍ରସ୍ତାବ କଲେ– ସମ୍ମତି ଦେଲେ ଆଉ ଦୁଇବର୍ଷ ତୋର କାର୍ଯ୍ୟକାଳ ବୃଦ୍ଧି କରିବା ପାଇଁ ପରିଚାଳନା ସମିତିରେ ପ୍ରସ୍ତାବ କରିବି । କଲେଜ ତ ସୁରୁଖୁରୁରେ ଚାଲିଛି । ଆଉ ବିଶେଷ ଝଞ୍ଜାଳ ନାହିଁ । ଗୋଟିଏ ଘଟଣା ମନେପଡ଼ିଲା । ଭାରତରେ ସବୁଜବିପ୍ଲବର ସ୍ମରଣୀୟ ମୁଖ୍ୟ ସଂଚାଳକ ଏମ୍.ଏସ୍. ସ୍ୱାମୀନାଥନ୍ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କର ଅନୁମତି ମାଗିଲେ ୧୯୮୧ ମସିହାରେ ଆନ୍ତର୍ଜାତିକ ଧାନ ଗବେଷଣା କେନ୍ଦ୍ର ''ମାନିଲା''ରେ ଯୋଗଦେବା ପାଇଁ । ପ୍ରଧାନମନ୍ତ୍ରୀ କହିଲେ– ତୁମେ ଆମ ପାଇଁ ଅତ୍ୟନ୍ତ ଆବଶ୍ୟକ । ବିଦାୟ ଦେବାର ପ୍ରଶ୍ନ ଉଠୁନାହିଁ । ସ୍ୱାମୀନାଥନ ସଂଗେ ସଂଗେ ଇସ୍ତଫା ପ୍ରଦାନ କଲେ । ପ୍ରଧାନମନ୍ତ୍ରୀ ପଚାରିଲେ, ''ତୁମେ କ'ଣ ମୋ କଥାରେ ଅପମାନିତ ବୋଧ କଲ । ସ୍ୱାମୀନାଥନ କହିଲେ– "It is better to leave when you are wanted, than to be asked to leave when you are unwanted." ଅତୀତରେ କେତେଜଣ ଅଧକ୍ଷଙ୍କର ଏହିପ୍ରକାର ଦୁର୍ଭାଗ୍ୟ ଲକ୍ଷ୍ୟ କରିଥିଲି । କହିଲି, ସାର, ମୋତେ କ୍ଷମା କରନ୍ତୁ । ଆପଣଙ୍କର ଅକୁଣ୍ଠ ସମର୍ଥନ ଓ ଆଶୀର୍ବାଦ ପାଇ ଏହି ତପ୍ତବୈତରଣୀ ପାରି ହୋଇ ଆସିଲିଣି । ଯେଉଁ ତାରିଖରେ ଅବସର ନେବାର ନିର୍ଦ୍ଦିଷ୍ଟ ରହିଛି, ଗୋଟିଏ ମୁହୂର୍ତ୍ତ ମଧ୍ୟ ଏହି ମାୟାଜାଲରେ ଆଉ ପଡ଼ିବି ନାହିଁ ।

ଏହିପରି ଜଣେ ବରିଷ୍ଠ ପ୍ରଶାସକଙ୍କର ଦେହାନ୍ତ ହୋଇଗଲା ତାଙ୍କର ଭୁବନେଶ୍ୱର ବାସଭବନରେ ୧୯୮୭ ମସିହା ଅଗଷ୍ଟ ଚବିଶ ତାରିଖ ଦିନ । ଭୁବନେଶ୍ୱର ଯାଇ ତାଙ୍କର ଶବାଧାରରେ ଭକ୍ତିପୁଷ୍ପ ଅର୍ପଣ କରିଥିଲି । ମୋର ଜଣେ ପ୍ରଧାନ ସହାୟକଙ୍କୁ ହରାଇ ବସିଲି ।

ମୋର ଅବସରଦିନ ପାଖେଇ ଆସୁଥାଏ । ଦିନ ଗଣୁଥାଏ, କିପରି ଏ ଜଞ୍ଜାଳରୁ ମୁକ୍ତି ଲାଭ କରିବି । ଜୀବନର ସେହି ସ୍ମରଣୀୟ ଦିନଟି ଆସି ପହଞ୍ଚିଗଲା । ସେହିଦିନଟି ହେଲା ୧୯୮୮ ମସିହା ସେପ୍ଟେମ୍ବର ମାସ ତିରିଶ ତାରିଖ । ମୋର ବିଭାଗୀୟ ଅନ୍ତରଙ୍ଗ ବଂଧୁ ଡକ୍ଟର ଦେବେନ୍ଦ୍ର ମହାନ୍ତିଙ୍କୁ ଦାୟିତ୍ୱ ହସ୍ତାନ୍ତର କରି ସବୁଦିନ ପାଇଁ କଲେଜ ଛାଡ଼ିଲି । ଅବସର ନେଉଥିବାର ଖବର ମୋର ଅଧ୍ୟାପକ ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶଙ୍କୁ ଅଛପା ରହିଲା ନାହିଁ । ସେ ମୋତେ ଦୂରଭାଷ ଯୋଗେ ପଚାରିଲେ-''ଅବସର ପରେ କ'ଣ କରିବୁ ବୋଲି ମନସ୍ଥ କରିଛୁ ।'' କହିଲି, ସାର୍, ମୁଁ କିଛି ଚିନ୍ତା କରିନାହିଁ । ତାଙ୍କର ଉପଦେଶ ହେଲା- ''ଖ୍ରୀଷ୍ଟ କଲେଜ ଘରୋଇ କଲେଜ ହେଲେ ମଧ୍ୟ ତାହାର ସୁନାମ ଓ ପ୍ରତିଷ୍ଠା ସ୍ୱୀକୃତି ଲାଭ କରିଛି । ସେହି ଅନୁଷ୍ଠାନରେ କିଛି ସଫଳତା ଅର୍ଜନ କରିସାରିଲା ପରେ ଆଉ ଭୁଲରେ କୌଣସି ଅନାମଧେୟ କଲେଜର ଦାୟିତ୍ୱ କେବେହେଲେ ନେବୁ ନାହିଁ । ତୋର ସାତବର୍ଷର ତପସ୍ୟା ପାଣିରେ ଭାସିଯିବ ।''

ଏକାଧିକ କଲେଜରୁ ଦାୟିତ୍ୱ ଗ୍ରହଣ ପାଇଁ ଅନୁରୋଧ ହୋଇଥିଲେ ହେଁ ଆଉ ସେ ମାୟାରେ ଘାଣ୍ଟି ହେବାର ସୁଯୋଗ କାହାରିକୁ ଦେଲି ନାହିଁ । ଆରମ୍ଭ ହେଲା ଅବସର ଜୀବନର ଆଉ ଏକ ପ୍ରେକ୍ଷାପଟ ।

•••

# ଜୀବନ-ସ୍ରୋତସ୍ୱିନୀରେ ଅଭୁଲା ସ୍ମୃତିର ଢେଉ

**ଜୀ**ବନର ଚଲାପଥରେ ଜଣେ ପଥିକ ବହୁ କିସମର ଲୋକଙ୍କ ସମ୍ପର୍କରେ ଆସିବାର ସୁଯୋଗ ପାଇଥାଏ; ଅନେକ ସମସ୍ୟାର ସମ୍ମୁଖୀନ ହୋଇଥାଏ, ନାନା ସୁଖଦୁଃଖର ଆବର୍ତ୍ତ ମଧ୍ୟରେ ସନ୍ତରଣ କରୁଥାଏ; ତେବେ ସେହି ଅନ୍ଧାର ଓ ଆଲୋକର ଲହରି କାଟି କାଟି ଚାଲୁଥାଏ ଆଗକୁ ଆଗକୁ । ସିଂହାବଲୋକନର ଆଗ୍ରହ ରଖେ ନାହିଁ । ଅଧିକାଂଶ ଜନସଂପର୍କ ଓ ଅନୁଭୂତି ବିସ୍ମୃତିର ପରଦାରେ ଆଡ଼େଇ ହୋଇ ରହିଯାଏ । ତେବେ ଯେଉଁ କେତେକ ଘଟଣା ବା ଦୁର୍ଘଟଣା ମନ ଉପରେ ଗଭୀର ଭାବରେ ରେଖାପାତ କରିଥାଏ, ତାକୁ ଭୁଲିବା ସହଜ ହୁଏ ନାହିଁ । ପରିଣତ ବୟସରେ ଏକାକୀ ସ୍ମୃତିର ପ୍ରକ୍ଷାଳନ କଲାବେଳେ ତାହାର କିଛି ଝଲକ ନିଜର ଚକ୍ଷୁ ସମକ୍ଷରେ ରୂପେଲି ପର୍ଦ୍ଦାର ଛବି ପରି ଚଲାଫେରା କରିଥାଆନ୍ତି । ଏଠାରେ ସେହିପରି କେତେକ ମନଚିଆଁ ଅନୁଭୂତି କହିବାକୁ ଯାଉଚି ।

।। ଏକ ।।

ଜଣେ ବରିଷ୍ଠ ଅଧ୍ୟାପକ ଭାବରେ ବିଭିନ୍ନ ବିଶ୍ୱବିଦ୍ୟାଳୟର ପରୀକ୍ଷକ, ପ୍ରଶ୍ନକର୍ତ୍ତା, ଗବେଷଣା ନିବନ୍ଧର ସମୀକ୍ଷକ ଏବଂ ସର୍ବୋପରି ମଡ଼ରେସନ ବୋର୍ଡ଼ର ସଭ୍ୟ ଭାବରେ କାର୍ଯ୍ୟ କରିବାର ସୁଯୋଗ ମିଳିଥାଏ । କାହିଁକି କେଜାଣି ସମ୍ବଲପୁର ବିଶ୍ୱବିଦ୍ୟାଳୟ ନିରବଚ୍ଛିନ୍ନ ଭାବରେ ଅନେକ ବର୍ଷ ମଡ଼ରେସନ ବୋର୍ଡ଼ରେ କାର୍ଯ୍ୟ କରିବା ପାଇଁ ସୁଯୋଗ ପ୍ରଦାନ କରିଥିଲେ । ଥରକର କଥା ଭୁଲିପାରି ନାହିଁ । ଶୀତଦିନ ରାତି । ସମ୍ବଲପୁରରେ ପ୍ରବଳ ଶୀତ । ସମ୍ବଲପୁର-କଟକ ବସ୍‌ରେ କଟକ ଫେରୁଥାଏ ରାତି ଚାରିଟା ସମୟରେ । ତଥାପି ଅନ୍ଧାର ମାଡ଼ି ବସିଥାଏ । ଶୀତବସ୍ତ୍ରରେ ଢାଙ୍କି ହୋଇ ଗୋଟିଏ ଦୁଇଜଣିଆ ସିଟ୍‌ରେ ଆସନ ଗ୍ରହଣ କଲି । ପାଖରେ ବସିଥିଲେ ଜଣେ ଅଶୀତିପର ବୃଦ୍ଧ ଲୋକ । ସ୍ୱାସ୍ଥ୍ୟବାନ, ବଳିଲାପରି ଚେହେରା, ଭୟଙ୍କର ଗପୁଡ଼ି । ଚୁପ୍‌ଚାପ୍ ବସିବା ତାଙ୍କ ଜାତକରେ ନାହିଁ । ମୋର ସ୍ୱଭାବ ସଂପୂର୍ଣ୍ଣ ବିପରୀତ । ବସ୍ ଚାଲିବା ଆରମ୍ଭ କଲା । ଆରମ୍ଭ ହେଲା ବୃଦ୍ଧ ଭଦ୍ରବ୍ୟକ୍ତିଙ୍କର ଆଳାପ କରିବାର ଅହେତୁକ ବ୍ୟାକୁଳତା । ପ୍ରଥମ ପ୍ରଶ୍ନ-'ତୁମର ଘର କ'ଣ ସମ୍ବଲପୁର ?' ସଂକ୍ଷେପରେ ଉତ୍ତର-''ନାହିଁ ।'' କିଛି ସମୟ ପରେ ଆଉ ଏକ ପ୍ରଶ୍ନ-'କୁଆଡ଼େ ଆସିଥିଲ ?' ଉତ୍ତର ମଧ୍ୟ ସେହିପରି ନିର୍ଲିପ୍ତ-''ବିଶ୍ୱବିଦ୍ୟାଳୟରେ କିଛି ଗୋପନୀୟ କାର୍ଯ୍ୟସାଧନ !'' ପୁନର୍ବାର ପ୍ରଶ୍ନ ରହିରହି-''କେଉଁଠାରୁ ଆସିଥିଲ ?'' ଉତ୍ତର ଥିଲା ଆହୁରି ସଂକ୍ଷିପ୍ତ-

''କଟକ''ରୁ । ବୃଦ୍ଧ କିନ୍ତୁ ଛାଡ଼ିବାର ଲୋକ ନୁହନ୍ତି । ମୋ ତରଫରୁ କୌଣସି ପ୍ରଶ୍ନ ନାହିଁ । ସେ କିନ୍ତୁ ପ୍ରଗଲ୍ଭ । ଅଧିକାଂଶ ଯାତ୍ରୀ ପାହାନ୍ତାର ଶୀତୁଳିଆ ସୁଲୁସୁଲୁ ପବନ ସ୍ପର୍ଶରେ ଆରାମରେ ଢୁଳାଉଥାନ୍ତି । କିନ୍ତୁ ବୃଦ୍ଧଙ୍କର ଜୀବନପଞ୍ଜି ଖୋଲିଗଲା ପୃଷ୍ଠା ପରେ ପୃଷ୍ଠା । ସେ ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀ । ପୁଅ, ଝିଅ ଓ ସ୍ନେହପ୍ରବଣା ଧର୍ମପତ୍ନୀଙ୍କୁ ନେଇ ଏକ ସୁଖମୟ ପାରିବାରିକ ଜୀବନ । ତେବେ ସୁଦ୍ଧା ରସିକ ବୃଦ୍ଧ ଝୁରି ହେଉଛନ୍ତି ଯୌବନର ସେହି ମହୁଆନିଶା ଆଉ ପ୍ରିୟବାନ୍ଧବୀକୁ । ଯୌବନକାଳର ସେହି ଅନ୍ତରଂଗ ପ୍ରେୟସୀର କଥା କହିଲାବେଳେ ବୃଦ୍ଧ ନିଜର ପରିବେଶ ଓ ବୟସକୁ ବିସ୍ମୃତ ହୋଇଯାଉଥାଆନ୍ତି । ସମ୍ପୂର୍ଣ୍ଣ ଜଣେ ଅପରିଚିତ ଭଦ୍ରଲୋକ ପାଖରେ ନିଃସଂକୋଚରେ ପ୍ରଣୟର ଢେଉ । କେତେ ନିବିଡ଼ ଓ ଅନ୍ତରଂଗ ଥିଲା ସେହି ମମତାଭରା ପ୍ରେମାପ୍ଲୁତ ଯୌବନଲୀଳା । ବାଧକ ହୋଇ ଠିଆହେଲା ଉଭୟ ପରିବାର ମଧ୍ୟରେ ଐଶ୍ୱର୍ଯ୍ୟ, ଜାତିଗତ ଅହଂକାର ଓ ଆଭିଜାତ୍ୟ । ଦୁଇଟି କିଶୋର କିଶୋରୀଙ୍କର ଆଦ୍ୟ ଯୌବନର ପ୍ରେମ ଓ ପ୍ରଣୟର ସ୍ୱପ୍ନ ଏହିପରି ହଜିଗଲା ସବୁଦିନ ପାଇଁ । ଏତେବଡ଼ ସୁଖୀସଂସାରରେ ଜୀବନ ଅତିବାହିତ କରି ମଧ୍ୟ ଏହି ପରିଣତ ବୟସରେ ବୃଦ୍ଧ ହେଜି ହେଉଛନ୍ତି–'ଦୂରେ ଦୂରେ ଦୂରେ; ପରାଣପ୍ରିୟା ରହିଲା ଯାଇ କାହାର ଅନ୍ତଃପୁରେ ।''

ବସ୍ ରହିଲା ସକାଳ ଆଠଟାରେ ଅନଗୁଳ ବସ୍‌ଷ୍ଟାଣ୍ଡରେ । ବୃଦ୍ଧଙ୍କର କାହାଣୀର ଭଙ୍ଗା ପଡ଼ିଲା । ଉଭୟ ଓହ୍ଲାଇଗଲୁ ହୋଟେଲକୁ । ପୁନର୍ବାର ଗୋଟିଏ ଟେବୁଲରେ ମୁହାଁମୁହିଁ । ସେ ପଚାରିଲେ–ବାବୁ, ତୁମେ କିଏ ? ତୁମର ତ ପରିଚୟ ଜାଣିଲି ନାହିଁ ? ମୁଁ ଜଣେ ଅଧ୍ୟାପକ, କଟକର ଖ୍ରୀଷ୍ଟ ମହାବିଦ୍ୟାଳୟରେ । ଏତିକି କହିଲି । ଏଣେ ବସ୍ ଛାଡ଼ିବା ସମୟ ହୋଇଥାଏ । ବୃଦ୍ଧଙ୍କଠାରୁ ବିଦାୟ ନେଇ ଫେରିବି ବସ୍ ଭିତରକୁ । ବୃଦ୍ଧ ମୋର ହାତ ଟାଣିନେଇ ଜାକି ପକାଇଲେ । ଆଖିରୁ ଲୁହ ବୋହି ଯାଉଥାଏ । ''ବାବୁ, ତୁମେ ତ ବଡ଼ ଅଦ୍ଭୁତ ଯୁବକ ! ମୁଁ ବୁଢ଼ାଟିଏ ହେଲିଣି । କାହିଁକି କେଜାଣି, ମୋର ସାରାଜୀବନର ଅନେକ ଅକୁହାକଥା ତୁମ ଆଗରେ ଘଣ୍ଟାଘଣ୍ଟା ଗପ କରି ଚାଲିଲି । ଅଥଚ ତୁମର ପରିଚୟ ମଧ୍ୟ ଭଲ କରି ପାଇ ନାହିଁ । ଅନେକ ଦିନରୁ ମନରେ ଜମି ରହିଥିବା ଅବସୋସ ତୁମପରି ଅପରିଚିତ ଆଗରେ ଖାଲି କରି ଦେଇ ସନ୍ତୋଷ ଲାଭ କରୁଚି । ପୁଅ ! ଆଜି ଦିନଟି ମରିବାଯାଏଁ ହେଜି ହେଉଥିବି ।

ବର୍ଷ ପରେ ବର୍ଷ ମହାନଦୀରେ କେତେ ପାଣି ବହିଗଲାଣି । କିନ୍ତୁ ସେହି ସୁଦୂର ପାହାନ୍ତା ପହରର ଅପୂର୍ବ ଅନୁଭୂତି ଆଜି ମଧ୍ୟ ମନକୁ ଉଚ୍ଚାଟ କରିପକାଏ ।

।। ଦୁଇ ।।

ଏ ହେଉଛି ବିଂଶ ଶତାବ୍ଦୀର ସପ୍ତମ ଦଶକର କଥା । କଟକ ସିଦ୍ଧେଶ୍ୱର ସାହିରେ ରହୁଥାଏ ଗୋଟିଏ ଭଡ଼ାଘରେ । ମୋର ପତ୍ନୀ ଓ ସ୍କୁଲ ଯାଉଥିବା ଚାରିଜଣ ପୁଅଝିଅ । ହଠାତ୍ ଜଣାପଡ଼ିଲା, ଶ୍ରୀମତୀ ଭୟଙ୍କର ରୋଗରେ ଆକ୍ରାନ୍ତ । ଶରୀର ମଧ୍ୟରେ କାର୍ଯ୍ୟ କରୁଥିବା ଚାରିଗୋଟି ଭଲ୍‌ବ ମଧ୍ୟରୁ ତିନିଗୋଟି ସମ୍ପୂର୍ଣ୍ଣ ଅଚଳ । ଏପରି ରୋଗର ଚିକିତ୍ସା

ସେତେବେଳେ କେବଳ ଦକ୍ଷିଣଭାରତର ଭେଲୋର ହସ୍ପିଟାଲରେ ଉପଲବ୍ଧ । ସେଠାକୁ ଚିକିତ୍ସା ପାଇଁ ଗଲେ ଅନ୍ୟୂନ ଦୁଇଲକ୍ଷ ଟଙ୍କା ଆବଶ୍ୟକ । ପୁଅଝିଅ ପାରି ଉଠିନାହାନ୍ତି । ପାଖରେ ସହାୟକ ମଧ୍ୟ କେହି ନାହାନ୍ତି । ଅଧ୍ୟାପକ ଜୀବନର ସ୍ୱଳ୍ପ ଆୟକୁ ପାଥେୟ କରି ଏତେବଡ଼ ଅର୍ଥର ବୋଝ ବହନ କରି ଚିକିତ୍ସା ପାଇଁ ଯିବାକୁ ସାହସ ହେଉ ନଥାଏ । ପିଲାମାନେ ରହିବେ କେଉଁଠି ? କାହାପାଖରେ ନିରାପଦରେ ଓ ନିଃସଂକୋଚରେ । ଡାକ୍ତରଙ୍କ ସତର୍କବାଣୀ– ରୋଗୀ ସର୍ବଦା ଶୋଇ ରହିବେ । ସମ୍ପୂର୍ଣ୍ଣ ବିଶ୍ରାମ । ଘରେ କେହି ଜୋର୍‌ରେ ପାଟିତୁଣ୍ଡ କରିବେ ନାହିଁ । ଦୁଆର ଜୋର୍‌ରେ ବାଡ଼ିଆ ହେବ ନାହିଁ । ସାମାନ୍ୟ ଶବ୍ଦ ହେଲେ ରୋଗିଣୀର ଛାତି ଭୟଙ୍କର ଭାବରେ ଥରିବା ଆରମ୍ଭ କରେ । ଡାକ୍ତରମାନେ ଆଶଙ୍କା କରୁଥାଆନ୍ତି, ତୁରନ୍ତ ଭେଲୋର ହସ୍ପିଟାଲରେ ଅସ୍ତ୍ରୋପଚାର ବ୍ୟବସ୍ଥା ନ କଲେ ରୋଗୀର ଜୀବନଦୀପ କେଉଁ ମୁହୂର୍ତ୍ତରେ ନିର୍ବାପିତ ହୋଇଯାଇପାରେ । କଲେଜ ଦାୟିତ୍ୱ ସହିତ ଘରର ସମସ୍ତ ବ୍ୟବସ୍ଥା ବୁଝିବାକୁ ହୁଏ । ପାଖରେ କେହି ଲୋକଟିଏ ନାହିଁ । ପିଲାଙ୍କର ପାଠ ଦେଖା, ପୋଷାକ ସଫା, ଖିଆପିଆ ସହିତ ରାତିରେ ମଶାରୀବାନ୍ଧିବା ପର୍ଯ୍ୟନ୍ତ । ଶ୍ରୀମତୀଙ୍କ ଖାଇବା ପରେ ଯେତିକି ବିଶ୍ରାମ ମିଳେ, ଅଳ୍ପ ସମୟ ପାଇଁ ପୁସ୍ତକ ଓଲଟାଏ ଶ୍ରେଣୀକକ୍ଷର ପାଠ୍ୟ ପ୍ରସ୍ତୁତି ପାଇଁ । ରୋଗୀସେବା ଓ ଘର ଜଞ୍ଜାଳରୁ କିଛି ସମୟ ମୁକ୍ତି ମିଳିଲେ ଅପରାହ୍ନ ପାଞ୍ଚଟାବେଳେ ଘରୁ ବାହାରିପଡ଼େ ମନକୁ ହାଲ୍‌କା କରିବା ପାଇଁ । ସେଦିନ ଚାନ୍ଦିନିଚୌକରେ ଅବସ୍ଥିତ ନବଜୀବନ ପ୍ରେସ୍ ବାଟରେ ବୁଲି ବାହାରିଛି । ପ୍ରେସ୍ ମଧ୍ୟରୁ ବାହାରି ଆସିଲେ ସୁଲେଖକ ଓ ପ୍ରସିଦ୍ଧ ସଂକଳକ ନିମାଇଁଚରଣ ଦାସ । ନମସ୍କାର କଲି । ହସିହସି ମୋ ମୁଣ୍ଡରେ ହାତ ବୁଲାଇଦେଲେ । ଅତ୍ୟନ୍ତ ପ୍ରେମୀ ମଣିଷ ଜଣେ । ତାଙ୍କୁ ଜାଣିଥାଏ ବାଲ୍ୟଜୀବନରେ ମାଇନର ସ୍କୁଲରେ ପାଠ ପଢ଼ିଲାକାଳରୁ । ନିଜର ସଂକଳିତ ପୁସ୍ତକଗୁଡ଼ିକ ସେ ସ୍କୁଲମାନଙ୍କରେ ବୁଲି ବୁଲି ପ୍ରଚାର କରନ୍ତି । ପିଲାମାନେ ଆଗ୍ରହରେ କିଣି ନିଅନ୍ତି । ସେହି ବୟସରେ କିଣିଥିଲି ତାଙ୍କର ପ୍ରବନ୍ଧ ସଂକଳନ ଓ ଇଂରାଜୀ ଶବ୍ଦଅର୍ଥ ବହି । ସାଥୀ ହୋଇ ଚାଲିଲୁ ବଜାର ରାସ୍ତାରେ । ମଉସା କଥା ପ୍ରସଙ୍ଗରେ କହିଲେ, "ବାବୁ, ତୁମେ ବେଳେବେଳେ ଆମ ଘରଆଡ଼େ ଆସିବ । ମାଉସୀ ସୁଖୀ ହେବେ ।" ତାଙ୍କର ଏକ ସାଧୁସନ୍ଥ ମହାପୁରୁଷମାନଙ୍କ ଜୀବନୀ ସଂକଳନରେ ଶ୍ରୀଚୈତନ୍ୟଙ୍କ ସଂପର୍କରେ ମୋର ଏକ ପ୍ରବନ୍ଧ ସ୍ଥାନିତ ହୋଇଥିଲା । ସେଥିପାଇଁ ତାଙ୍କର ଶ୍ରଦ୍ଧା ଓ ଆଶୀର୍ବାଦର ଭାଗୀଦାର ହେବାର ସୁଯୋଗ ପାଇଥିଲି । ରାସ୍ତାରେ ଚାଲୁଚାଲୁ ଆରମ୍ଭ ହେଲା ବୁଢ଼ାଙ୍କର ମର୍ମବେଦନାର କାହାଣୀ । ପାରିବାରିକ ଜୀବନରେ ସବୁଦିନ ସମାନ ରହେ ନାହିଁ । ଆଜିର ଆଲୁଅର ଝଲକ ହୁଏତ ଆସନ୍ତା ସକାଳକୁ ମଳିନ ପଡ଼ିଯାଏ । ସେହିପରି କିଛି ପାରିବାରିକ ତୋଫାନର ସମ୍ମୁଖୀନ ହୋଇଥିଲେ ପରିଣତ ବୟସରେ । ବାଟଚଲା ମଧ୍ୟରେ ବାଣ୍ଟି ଚାଲିଥାନ୍ତି ମନଗହନର ମର୍ମନ୍ତୁଦ ପୀଡ଼ାର ବ୍ୟଥା । ଆଖି ତାଙ୍କର ସଜଳ ହୋଇ ଉଠୁଥାଏ । ମନୁଷ୍ୟ ଯାହା କାମନା କରୁଥାଏ, ତାହା ତାକୁ ଅଲଭ୍ୟ ହୁଏ ସିନା, ଯାହା ପାଇଥାଏ, ହୁଏତ ସେଥିପାଇଁ କେବେ ସ୍ୱପ୍ନ ମଧ୍ୟ ଦେଖିନଥାଏ ।

ଦରଘାବଜାର ପୁରୁଣାଜେଲ ଛକରେ ପହଞ୍ଚିଗଲା ପରେ ମୋର ବିଦାୟନେବାର ପାଳି । ମଉସାଯିବେ ମାତୃଭୂମି ପ୍ରେସ୍‌କୁ । ପ୍ରଣାମ ଜଣାଇ ଆଗକୁ ପାଦ ପକାଇବାର ଉଦ୍ୟମ କଲି । ବୃଦ୍ଧଙ୍କର ଆଦୌ ମନ ନଥାଏ ମୋର ସଖ୍ୟରୁ ଏତେ ଚଞ୍ଚଳ ବଞ୍ଚିତ ହେବା ପାଇଁ । ହାତ ଧରି ପକାଇ କହିଲେ, "ବାପା ! ମୁଁ ତ କେବଳ ମୋର ଦୁଃଖ କହିଚାଲିଲି । ତୁ ନୀରବରେ କେବଳ ଶୁଣିଲୁ । ତୋର ପରିବାର ହାଲଚାଲ ଟିକିଏ ମଉସାକୁ କହ ।" ରାସ୍ତାକଡ଼ରେ ଠିଆ ହୋଇ ବର୍ଣ୍ଣନା କଲି ମୋର ତତ୍‌କାଳୀନ ପାରିବାରିକ ପରିବେଶର ଦୁଃଖଦ ଅନୁଭୂତି ।

ମଉସା ଥକା ହୋଇ ରହିଗଲେ । ଆଖି ଲୁହରେ ଛଳଛଳ । ମୋତେ କୁଣ୍ଢାଇ ପକାଇଲେ । କହିଲେ, ମୁଁ ବୁଢ଼ାଟିଏ ହୋଇ ତୋ ଆଗରେ ମୋର ଏତେ ଦୁଃଖ ବଖାଣି ଚାଲିଲି । ତୋର ଏତେ ଜଞ୍ଜାଳ ଓ ଦୁଃଖ । ତଥାପି ତୋତେ ଦେଖିଲେ ଏହାର କାଣିଚାଏ ଟେର କେହି ପାଇବ ନାହିଁ । ତୁ କିପରି ହସିହସି ଏହା ହଜମ କରିପାରୁଛୁ ।

କହିଲି- ମଉସା ! ପଦୁଟିଏ କଥା ସ୍ମରଣ କରି ମନକୁ ବୁଝାଇଥାଏ-"ସଂସାରମେ କିତ୍‌ନା ଗମ୍ (ଦୁଃଖ) ହେ । ଲେକିନ୍ ହେ ଈଶ୍ୱର ! ମେରା ଗମ୍ କିତ୍‌ନା କମ୍ ହେ ।"

## ।। ତିନି ।।

ଖ୍ରୀଷ୍ଟ କଲେଜରେ କନିଷ୍ଠତମ ଅଧ୍ୟାପକ ଭାବରେ ମାତ୍ର ଦୁଇଟି ବର୍ଷ ଅତିକ୍ରମ କରିଥାଏ । ଅଧିକାଂଶ ଛାତ୍ର ଚାକିରୀ କରି ସକାଳ କଲେଜରେ ନାମ ଲେଖାଇଥାନ୍ତି । ଅନେକ ଛାତ୍ର ମୋ'ଠାରୁ ବୟସରେ, ଅଭିଜ୍ଞତାରେ ଯଥେଷ୍ଟ ଆଗରେ । ସୌଭାଗ୍ୟକ୍ରମେ ଏହି ଅଳ୍ପକାଳ ମଧ୍ୟରେ ବହୁ ଛାତ୍ରଙ୍କର ସ୍ନେହଭାଜନ ହୋଇପାରିଥିଲି । ଦିନକର କଥା ମନେପଡୁଛି । କଲେଜରୁ ଫେରି ଅପରାହ୍ଣରେ ଘରେ ବିଶ୍ରାମ କରୁଛି, ଜଣେ ଚତୁର୍ଥବର୍ଷ ଶ୍ରେଣୀର ଜଣେ ବୟସ୍କ ଛାତ୍ର ହଠାତ୍ ଆସି ମୋତେ ବସାଘରେ ସାକ୍ଷାତ କଲେ । ଭାବିଲି, ବୋଧହୁଏ କିଛି ପାଠ୍ୟଗତ ସନ୍ଦେହମୋଚନ କରିବାକୁ ଆସିଛନ୍ତି । ଆସିବାର କାରଣ ପଚାରିଲି । ସେ ଅତ୍ୟନ୍ତ ବିଚଳିତ ଜଣାପଡୁଥିଲେ । କହିଲେ-ମୋର ଗାଁରେ ବୃଦ୍ଧ ବୟସର ବାପା ବୋଉ ଅଛନ୍ତି । ତାଙ୍କ ପାଖରେ ସ୍କୁଲକୁ ଯାଉଥିବା ଏକମାତ୍ର ସାନଭାଇ । ମୋରି ଉପରେ ପରିବାର ଚଳାଇବାର ବୋଝ । ଏଣେ ଅଳ୍ପବୟସରୁ ବିବାହ କରିଥିବାରୁ କଟକରେ ଶିକ୍ଷକତା କରି ପାଠପଢୁଛି । ମୋର ସ୍ତ୍ରୀ ବାପାମା'ଙ୍କର ଏକମାତ୍ର ସନ୍ତାନ । ସେ ତେଣୁ ତାଙ୍କ ଘରଛାଡ଼ି ଅନ୍ୟତ୍ର ଯିବାପାଇଁ ରାଜି ନୁହେଁ । ବାଧ୍ୟ ହୋଇ ଶ୍ୱଶୁରଙ୍କ ଘରେ ରହୁଥାଏ । ମୋର ସ୍ତ୍ରୀ ମୋ ପାଇଁ ଏକ ବିପଦ ହୋଇ ଠିଆ ହୋଇଛି । ସେ ଜିଦ୍ କରି କହୁଛି, ତୁମେ ଘର ସହିତ କୌଣସି ସଂପର୍କ ରଖ ନାହିଁ । ତୁମର ସାନଭାଇର ଦାୟିତ୍ୱ ନିଅ ନାହିଁ । ଆମ ସଂସାର ଆମେ ଦେଖିବା । ସେମାନେ ତାଙ୍କର ଯେପରି ଇଚ୍ଛା ଚଳନ୍ତୁ । ଯଦି ଏଥିରେ ରାଜି ନୁହଁ, ମୋତେ ତ୍ୟାଗପତ୍ର ଦେଇଦିଅ । ମୋ ବାପାବୋଉଙ୍କୁ ଛାଡ଼ି ମୁଁ ରହିପାରିବି ନାହିଁ । ଏହି

ସଂକଟରୁ କିପରି ଉଦ୍ଧାର ପାଇବି, ବୁଝିପାରୁ ନାହିଁ । କାହାକୁ ଅବା ଏହି ଏକାନ୍ତ ଗୋପନୀୟ ଘରକଥା କହିବି । କାହିଁକି କେଜାଣି ମନହେଲା, ଆପଣଙ୍କୁ ପରାମର୍ଶ ମାଗିବି ।''

ଏପରି ପ୍ରଶ୍ନରେ ମୁଁ ନିଜେ କ୍ଷଣକ ପାଇଁ ବିଚଳିତ ହୋଇପଡ଼ିଲି । ସଂସାର ବିଷୟରେ ମୋର ଅବା ଅନୁଭୂତି କ'ଣ ? କ'ଣ କହି ଏହି ଯୁବକ ଛାତ୍ରଙ୍କୁ ବୁଝାଇପାରିବି ? ତଥାପି କହିଲି । କୌଣସି କାରଣରୁ ତୁମର ସ୍ତ୍ରୀ ଶାଶୁଘର ପ୍ରତି ଆକୃଷ୍ଟ ହୋଇପାରି ନାହାନ୍ତି । ଏଥିପାଇଁ ହୁଏତ ତାଙ୍କର ପିତାମାତାଙ୍କର ପ୍ରଭାବ କାର୍ଯ୍ୟ କରୁଥାଇପାରେ । ସ୍ୱଚ୍ଛଳ ପରିବାରର ଶିକ୍ଷିତା କନ୍ୟା ହୋଇଥିବାରୁ ମନରେ ଅହଂକାର ରହିବା ସ୍ୱାଭାବିକ । ଯୋଗ୍ୟପୁତ୍ର ଭାବରେ ଦୁଇକୂଳର ମନ ନେଇ ଚଳିବା ତୁମର କର୍ତ୍ତବ୍ୟ । ଅନ୍ତତଃ ଏକବର୍ଷ ପାଇଁ ତୁମେ ଘରକୁ ଆର୍ଥିକ ସାହାଯ୍ୟ କର ତୁମ ସ୍ତ୍ରୀଙ୍କ ଅଜାଣତରେ ପରୀକ୍ଷା ପାଇଁ ପ୍ରସ୍ତୁତି ଆଳରେ ଆଦୌ ଗାଁକୁ ଯାଅନାହିଁ । ବାପାବୋଉ ତୁମକୁ ଭୁଲ ବୁଝିବେ ନାହିଁ । ଯେଉଁଦିନ ତୁମ କୋଳକୁ ସନ୍ତାନଟିଏ ଆସିବ, ସେହିଦିନ ଅଲଗା ବସାଘରକୁ ଉଠିଯାଅ । ଶାଶୂ ଶ୍ୱଶୁରଙ୍କ ଉପରେ ବୋଝ ହୁଅନାହିଁ । ସନ୍ତାନ ଝଞ୍ଜାଳରେ ଅତିଷ୍ଠ ହୋଇ ତୁମର ପତ୍ନୀ ଅବଶ୍ୟ ଶାଶୁଙ୍କର ସାହାଯ୍ୟ ଲୋଡ଼ିବେ । ସେହିଦିନ ପର୍ଯ୍ୟନ୍ତ ଧୈର୍ଯ୍ୟ ଧର । ଘର ସହିତ ସଂପର୍କ ରଖିନାହିଁ ବୋଲି ଛଳନା କର ।

ଏହା ମଧ୍ୟରେ ଅନେକ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ଗୋଟିଏ ଗଳିରାସ୍ତାରେ ଯାଉଛି, ପୂର୍ବତନ ସେହି ଛାତ୍ର ଜଣଙ୍କ ନିଜର ପିଣ୍ଡାରୁ ଓହ୍ଲାଇ ଆସି ମୋତେ ନମସ୍କାର କଲେ । ଅତ୍ୟନ୍ତ ଆଗ୍ରହରେ ନିମନ୍ତ୍ରଣ କଲେ ତାଙ୍କର ଘରେ ପାଦ ଦେବା ପାଇଁ । ଘର ଭିତରେ ଜଣେ ବୃଦ୍ଧା କୋଳଛୁଆଟିଏ ଗେଲ କରୁଥାଆନ୍ତି । ବୃଦ୍ଧ ପିତା ପୁରାଣ ପାଠରେ ନିମଗ୍ନ । ଛାତ୍ରଜଣକ କହିଲେ, ସାର୍ ! ଆପଣ ମୋର ସଂସାରକୁ ରକ୍ଷା କରିଦେଲେ । ଆପଣଙ୍କ ପରାମର୍ଶରେ ପତ୍ନୀକୁ ସୁଖୀ କରିବା ପାଇଁ ଗୋଟିଏ ବର୍ଷ ପିତାମାତାଙ୍କୁ ଅବହେଳା କରିବାର ଛଳନା କରିଥିଲି । ଅତ୍ୟନ୍ତ ଦୁଃଖରେ ସମୟ ବିତାଉଥିଲି । ଆପଣଙ୍କ ଭବିଷ୍ୟତବାଣୀ ସଫଳ ହେଲା । ବର୍ତ୍ତମାନ ମୋର ବାପାବୋଉ ମୋ ପାଖରେ । ସେମାନଙ୍କ ସେବା କରି ପତ୍ନୀ ମୋର ଅତ୍ୟନ୍ତ ସନ୍ତୁଷ୍ଟ । ସାନଭାଇ ଉଚ୍ଚଶିକ୍ଷା ପାଇ କର୍ମକ୍ଷେତ୍ରରେ ନିଯୁକ୍ତ । ବର୍ତ୍ତମାନ ମୋର ପରିବାର ହସି ଉଠୁଛି । ଆପଣ ହୁଏତ ଭୁଲିଯାଇଥିବେ । ମୁଁ କିନ୍ତୁ ଆଜୀବନ ଆପଣଙ୍କୁ ଝୁରି ହେଉଥିବି ।

## ।। ଚାରି ।।

ସୁଉଚ୍ଚ ପର୍ବତମାଳାର ଉପତ୍ୟକାରେ ଟେନ୍ସା ସହର । ଚତୁର୍ଦ୍ଦିଗରେ ଘନଜଂଗଲର ପ୍ରାକୃତିକ ପରିବେଶ । ଜାଙ୍ଗଲିକ ସୁଷମା ଅବର୍ଣ୍ଣନୀୟ । ନିକଟରେ ମନଲୋଭା ଖଣ୍ଡାଧାର ଜଳପ୍ରପାତ । ଏହି ସହରକୁ ଓଡ଼ିଶାର ''ସିମଲା'' କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକଦା ସେଠାକୁ ସାହିତ୍ୟିକ ବନ୍ଧୁ ଅଚ୍ୟୁତାନନ୍ଦ କରଙ୍କ ସହିତ ଯାଇଥିଲି ଉତ୍କଳଦିବସ ଉତ୍ସବରେ ନିମନ୍ତ୍ରିତ ଅତିଥି ଭାବରେ । ଅଚ୍ୟୁତାନନ୍ଦ ବାବୁ ଜଣେ ଶକ୍ତିଶାଳୀ ପ୍ରବଚକ ଓ ବହୁଳ ପ୍ରଚାରିତ ସାତାୟାରଧର୍ମୀ ''ଦୁର୍ମୁଖ'' ପତ୍ରିକାର ସଂପାଦକ । ଓଡ଼ିଶାର ପ୍ରାଚୀନତମ ସାହିତ୍ୟ ଅନୁଷ୍ଠାନରେ

ମୁଁ ସଭାପତି ଥିଲାବେଳେ ଅଚ୍ୟୁତାନନ୍ଦବାବୁ ଥିଲେ ଉପସଭାପତି । ଉଭୟ ଏକତ୍ର ଅନେକବର୍ଷ ସାହିତ୍ୟ ଓ ସଂସ୍କୃତିକ୍ଷେତ୍ରରେ କାର୍ଯ୍ୟ କରି ଆସିଛୁ । ଟେନ୍ସା ସହରରେ ରାତି ଏଗାରଟାଯାଏଁ ଭାଷଣ ପର୍ବ ଚାଲିଲା । ରାତ୍ରିଭୋଜନ ପରେ ରାତି ବାରଟା ପରେ ବାହାରି ପଡ଼ିଲୁ କଟକ ଅଭିମୁଖେ । ରାସ୍ତା ଭୟଙ୍କର ନିର୍ଜନ । ମଧ୍ୟ ରାତ୍ରିରେ ଆଉ ବିଶେଷ ବସ୍ ଅଥବା କାର୍ ଯିବା ଆସିବାର ସମ୍ଭାବନା ନଥାଏ । ଟେନ୍ସା ସହରର ସେହି ସୁଉଚ୍ଚ ଉପତ୍ୟକାରୁ କାର ଧୀରେଧୀରେ ଓହ୍ଲାଇ ଆସିଲା ସମତଳ ଅଞ୍ଚଳକୁ । ରାସ୍ତାର ଦୁଇପଟେ ନିଘଞ୍ଚ ଜଂଗଲ । ରାତ୍ରିର ଅନ୍ଧକାରରେ ଆହୁରି ଭୟଙ୍କର ବୋଧ ହେଉଥାଏ । ରାସ୍ତା ଅତିକ୍ରମ କରି କିଛି ଜୀବଜନ୍ତୁ ଚାଲିଯିବାର ଦୃଶ୍ୟ କାର୍ ସମ୍ମୁଖ ଆଲୁଅରେ ଧରାପଡୁଥାଆନ୍ତି । କାଳେ କୌଣସି ହିଂସ୍ରଯନ୍ତୁ ହାବୁଡ଼ରେ ପଡ଼ିଯାଇପାରନ୍ତି ବୋଲି ମନରେ ଆଶଙ୍କା ରହୁଥାଏ । ଡ୍ରାଇଭର ମଧ୍ୟ କହୁଥାଏ, ନିର୍ଜନ ରାସ୍ତାରେ ଡକାୟତମାନଙ୍କର ଭୟ ରହିଛି । ଆମେ ଏତେ ରାତିରେ ଆସିବା ଠିକ୍ ହେଲା ନାହିଁ । ମାତ୍ର ଜରୁରୀ କାର୍ଯ୍ୟ ହେତୁ ମଧ୍ୟ ରାତ୍ରିରେ ଫେରି ଆସିବାର ନିଷ୍ପତ୍ତି ହୋଇଥିଲା । ହଠାତ୍ ଡ୍ରାଇଭର ସଂକେତ ଦେଲା–କଥାବାର୍ତ୍ତା ନକରି ନୀରବ ରହିବା ପାଇଁ । କାରଣ କ'ଣ ପଚାରିବାକୁ ସମୟ ନାହିଁ । ରାସ୍ତାକୁ ଅବରୋଧ କରି ସଦ୍ୟ କଟାଯାଇଥିବା ଏକ ଗଚ୍ଛା ଗଛର ଗଣ୍ଡି ଶୋଇ ରହିଛି । ଏହା ନିଶ୍ଚୟ ଡକାୟତମାନଙ୍କର ଚକ୍ରାନ୍ତ । ଗାଡ଼ି ପଛକୁ ଫେରିବାର ଉପାୟ ନାହିଁ । ହୁଏତ ନିକଟବର୍ତ୍ତୀ ଗଛମାନଙ୍କ ଆଢୁଆଳରେ ଡକାୟତମାନେ ଅପେକ୍ଷା କରିଛନ୍ତି । ଗାଡ଼ି ଧୀର କଲା ମାତ୍ରକେ ସେମାନେ ଆକ୍ରମଣ କରିବେ । ଡ୍ରାଇଭର୍ ଖୁବ୍ ଜୋର୍‌ରେ ଗାଡ଼ି ଚଲାଉଥାଏ । ନିଃଶ୍ୱାସ ନେବାକୁ ଅବସର ନାହିଁ । ସରୁ ଗଣ୍ଡି ଗଛକୁ ଡିଆଁଇ ଗାଡ଼ି ଅତିକ୍ରମ କଲା । ଭାବିବାକୁ ବେଳ ନାହିଁ । ହୁଏତ ଆଗରେ ଆଉ ଏକ ଦଳ ଡକାୟର୍ତ ଛକି ରହିଥିବେ । ପ୍ରାଣମୂର୍ଚ୍ଛା ଗାଡ଼ିର ବେଗ ବଢ଼ିଚାଲିଥାଏ । ଗାଡ଼ି ମଧ୍ୟରେ ଆମେ ଦୁଇବନ୍ଧୁ ଏକପ୍ରକାର ଥରୁଥାଉ । ବଡ଼ କାଠଗଣ୍ଡି ରାସ୍ତା ଅବରୋଧ କରିଥିଲେ ଆମ ଅବସ୍ଥା କ'ଣ ହୋଇଥାଆନ୍ତା ? ଜୀବନ ବଞ୍ଚାଇବା ବୋଧହୁଏ ସମ୍ଭବ ହୋଇ ନଥାନ୍ତା । ଏକାନିଃଶ୍ୱାସକେ ପାହାନ୍ତା ପହରେ କାର ଆସି ଲାଗିଲା ଆନନ୍ଦପୁର ଡାକବଂଗଳାରେ । ପ୍ରାଣସଂକଟରୁ ମଣିଷ ରକ୍ଷା ପାଇଲା ବୋଲି ଅନୁଭବ କଲୁ । ସେଠାରେ ଓହ୍ଲାଇ ନିତ୍ୟକର୍ମ ସାରି ଧୀରେ ସୁସ୍ଥେ କଟକ ବାହାରିଲୁ । ସେହି କାଳରାତ୍ରିର କଥା ମନେପଡ଼ିଲେ ଏବେ ମଧ୍ୟ ଦେହ ଶୀତେଇ ଉଠେ ।

## ।। ପାଞ୍ଚ ।।

ବହୁବର୍ଷ ତଳର କଥା । ଶିଳ୍ପନଗରୀ ରାଉରକେଲାକୁ ଅନେକଥର ନିମନ୍ତ୍ରିତ ଅତିଥିଭାବରେ ଯାଇଛି ସାଂସ୍କୃତିକ ସଭାରେ ଭାଷଣ ଦେବା ପାଇଁ । ସାଂସ୍କୃତିକ ଉତ୍ସବରେ ରାଉରକେଲାର ଜନସମାଗମ ଅତ୍ୟନ୍ତ ସ୍ୱତନ୍ତ୍ର ଏବଂ ଆକର୍ଷଣୀୟ । ଭାରତର ସର୍ବାଞ୍ଚଳରୁ ଶିକ୍ଷିତ ଓ ସମ୍ଭ୍ରାନ୍ତ ଲୋକମାନେ କର୍ମଉପଲକ୍ଷେ ଏଠାର ଅଧିବାସୀ । ଯେକୌଣସି ସାଂସ୍କୃତିକ ଉତ୍ସବରେ ଏହି ସର୍ବଭାରତୀୟ ସମାବେଶର ସ୍ୱତନ୍ତ୍ର ମହିମା ଉପଲବ୍ଧ ହୋଇଥାଏ । ପ୍ରତ୍ୟେକ

ବର୍ଷ କାର୍ତ୍ତିକମାସ ପୂର୍ଣ୍ଣମୀ ତିଥିରେ ରାଉରକେଲାରେ ମହାସମାରୋହରେ ଅନୁଷ୍ଠିତ ହୁଏ ବୋଇତ ବନ୍ଦାଣ ଉତ୍ସବ । ତତ୍‌କାଳୀନ ରାଜ୍ୟ ମନ୍ତ୍ରୀସଭାର ସଭ୍ୟ ସୁସାହିତ୍ୟିକ ନିତ୍ୟାନନ୍ଦ ମହାପାତ୍ର ଥିଲେ ବିଶିଷ୍ଟ ଅତିଥି ଏବଂ ମୁଁ ଯୋଗ ଦେଇଥିଲି ମୁଖ୍ୟବକ୍ତା ଭାବରେ । ସଭାମଞ୍ଚରେ ପ୍ରାୟ କୋଡ଼ିଏହଜାର ଶ୍ରୋତା । ସେଦିନର ଆଉ ଏକ ବିଶେଷ ଆକର୍ଷଣ ଥାଏ ନୃତ୍ୟନିପୁଣା ସଂଯୁକ୍ତା ପାଣିଗ୍ରାହୀଙ୍କର ନୃତ୍ୟ-ପ୍ରୋଗ୍ରାମ । ଭାଷଣପର୍ବ ପରେ ରାତି ଏଗାରଟାରେ ଆରମ୍ଭ ହେଲା ସଂଯୁକ୍ତାଙ୍କର ନୃତ୍ୟଲୀଳା । କଟକରୁ ଦୀର୍ଘପଥ କାରରେ ଯାଇ ଅତ୍ୟନ୍ତ କ୍ଲାନ୍ତି ଅନୁଭବ କରୁଥାଏ । ନୃତ୍ୟ ଉପଭୋଗ ନକରି ସାମାନ୍ୟ ଜଳଯୋଗ ପରେ ବିଶ୍ରାମ କରିବାକୁ ଆଶ୍ରୟସ୍ଥଳକୁ ଚାଲିଗଲି । ରାତ୍ରି ବାରଟା ସୁଦ୍ଧା ନୃତ୍ୟ ସଂଗୀତର ଆସର ସରିଆସିଲା । ରଙ୍ଗମଞ୍ଚ ନିର୍ଜନ ହୋଇଗଲା । ସମସ୍ତେ ଫେରିଗଲେ ନିଜନିଜ କୁଟୀରକୁ ବିଶ୍ରାମ ପାଇଁ । ମାତ୍ର ଏ କି ଅବ୍ୟାପାର । ସେହି ସାଂସ୍କୃତିକ ଅନୁଷ୍ଠାନର ଦଶବାରଜଣ ଉତ୍ସାହୀ କର୍ମୀ ମୋତେ ଆସି ନିଦରୁ ଉଠାଇଦେଲେ । କହିଲେ, ''ସାର୍ ! କିଛି ଖରାପ ଭାବିବେ ନାହିଁ । ଆଜି ରାତିରେ ଆପଣ ଉଜାଗର ରହିବେ । ଆମେ ଆପଣଙ୍କ ସହିତ ଆଳାପ କରିବୁ । ଆସନ୍ତା କାଲି ସକାଳୁ ଆପଣ କଟକ ଫେରିଯିବେ । ଏ ସୁଯୋଗ ଆମେ ଆଉ ପାଇବୁ ନାହିଁ ।'' ତକିଆଟିଏ ପିଠିରେ ଦେଇ କାନ୍ଥକୁ ଆଉଜି ବସିଲି । ସେହି ଉତ୍ସାହୀ ସଜ୍ଜନମାନେ ମୋତେ ଘେରି କରି ବସିଲେ । ସାହିତ୍ୟ ଓ ସଂସ୍କୃତି ବିଷୟରେ ଅସୁମାରୀ ପ୍ରଶ୍ନ । ଧୀରେ ସୁସ୍ଥେ ସେମାନଙ୍କୁ ଉତ୍ତର ଦେଇ ଚାଲିଥାଏ । ନାନା ଯୁକ୍ତିର ପ୍ରଶ୍ନବାଣର ସମ୍ମୁଖୀନ ମଧ୍ୟ ହେଉଥାଏ । କାଉ କା' କା' କଲା । ଖବର ଦେଇଗଲା ସିନ୍ଦୂରା ଫାଟିଲାବୋଲି । ସଂଧ୍ୟାବେଳର ଭାଷଣପର୍ବ ଅପେକ୍ଷା ରାତିସାରା ଏହି ଉତ୍ସାହୀ ବନ୍ଧୁମେଳରେ ସାହିତ୍ୟ ଆଲୋଚନା ଏକ ଅଭୁଲା ସ୍ମୃତି ହୋଇ ରହିଛି । ନିତ୍ୟକର୍ମ ସାରି ସେମାନଙ୍କଠାରୁ ବିଦାୟ ମାଗିଲି କଟକ ଅଭିମୁଖେ । ସେମାନେ ସମସ୍ତେ ସମସ୍ୱରରେ କୃତଜ୍ଞତା ଜଣାଉଥାଆନ୍ତି । ରାତିସାରା ଉଜାଗର ରହି ରସିକ ବନ୍ଧୁମାନଙ୍କର ସାହିତ୍ୟଚର୍ଚ୍ଚା ପ୍ରତି ଆଗ୍ରହ ଏକ ବିରଳ ଅନୁଭୂତି ନିଶ୍ଚୟ ।

## ।। ଛଅ ।।

ପାଠ୍ୟପୁସ୍ତକ ଜାତୀୟକରଣ ଅନୁଷ୍ଠାନର ପ୍ରଥମ ସଂପାଦକ ଥିଲେ ସ୍ୱାଧୀନତା ସଂଗ୍ରାମୀ ଓ ଜାତୀୟ ସଂଗୀତର ବିଖ୍ୟାତ କବି ବୀରକିଶୋର ଦାସ । ଏହି ଅନୁଷ୍ଠାନର ଆରମ୍ଭରୁ ପାଠ୍ୟପୁସ୍ତକ ପ୍ରସ୍ତୁତି କମିଟିରେ ବହୁବର୍ଷ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା । ସାହିତ୍ୟ ପାଠ୍ୟପୁସ୍ତକ ପ୍ରସ୍ତୁତି କ୍ଷେତ୍ରରେ ଯେଉଁମାନଙ୍କ ସହିତ କାର୍ଯ୍ୟ କରିଥିଲି, ସେମାନେ ହେଲେ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦ, କବି କାଳିନ୍ଦୀଚରଣ ପାଣିଗ୍ରାହୀ, ଶିକ୍ଷାବିତ୍ ଡମ୍ବରୁଧର ପରିଡ଼ା, ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ଅଧ୍ୟାପକ ବେଣୁଧର ରାଉତ, ପ୍ରଖ୍ୟାତ ପ୍ରଗତିଶୀଳ କବି ଅନନ୍ତ ପଟ୍ଟନାୟକ । ପରବର୍ତ୍ତୀ ସମୟରେ ଅନନ୍ତବାବୁ ହେଲେ ଏହି ପାଠ୍ୟପୁସ୍ତକ ପ୍ରସ୍ତୁତିକମିଟିର ସଂପାଦକ । ସେ ନିଷ୍ପତ୍ତି କଲେ, ପଶ୍ଚିମ ଓଡ଼ିଶାର ଭବାନୀପାଟଣାରେ ଏକ

ଶିଶୁ ସାହିତ୍ୟିକ ସମ୍ମେଳନ ଓ ସେମିନାର ଅନୁଷ୍ଠିତ ହେବ । ସମଗ୍ର ଓଡ଼ିଶାର ବହୁ ପ୍ରବୀଣ ଓ ପ୍ରତିଷ୍ଠିତ କବି, ଲେଖକ ଓ ଅଧ୍ୟାପକ ଉକ୍ତ ଅନୁଷ୍ଠାନରେ ନିମନ୍ତ୍ରିତ ହୋଇ ଅଂଶଗ୍ରହଣ କରିଥିଲେ । ଅନନ୍ତ ବାବୁ ମୋତେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ଏବଂ ସମ୍ମେଳନରେ ନିଶ୍ଚୟ ଯୋଗଦେବାକୁ ଅନୁରୋଧ କଲେ । ମୁଁ ଯିଦ୍ କଲି, ଯଦି ତାଙ୍କ ସହିତ ଏକା ଗାଡ଼ିରେ ଯିବି ଏବଂ ତାଙ୍କ ସହିତ ଏକତ୍ର ରହିବି, ତେବେ ଯିବା ପାଇଁ ଆପତ୍ତି ନାହିଁ । ବସ୍‌ରେ ଏତେବାଟ ଯାଇପାରିବି ନାହିଁ । ସଂସ୍କୃତି ବିଭାଗର ଜଣେ ବରିଷ୍ଠ ସେକ୍ରେଟେରୀ ଏବଂ ସରକାରୀ ପାଠ୍ୟପୁସ୍ତକ ମୁଦ୍ରଣ ସଂସ୍ଥାର ଭାରପ୍ରାପ୍ତ ଅଫିସର ଥାଆନ୍ତି ଆମ ସହିତ ସହଯାତ୍ରୀ । ମଧ୍ୟରାତ୍ରିରେ ବୌଦ ଡାକବଂଗଳାରେ ଆଶ୍ରୟ ନେଇ ତା' ଆରଦିନ ସୋନପୁର ଓ ବଲାଙ୍ଗିର ବାଟେ ପହଞ୍ଚିଲୁ ଭବାନୀପାଟଣା ସହରରେ । ସ୍ଥାନୀୟ ଏକ ସାଂସ୍କୃତିକ ଅନୁଷ୍ଠାନ ଏକ ସାଂସ୍କୃତିକ ସଭାର ଆୟୋଜନ କରିଥିଲେ ସଂଧ୍ୟା ସମୟରେ । ଏଥିରେ ଅନନ୍ତ ବାବୁ ଏବଂ ମୋତେ ଭାଷଣ ଦେବାକୁ ନିର୍ଦ୍ଦିଷ୍ଟ ପ୍ରୋଗ୍ରାମ ରହିଥିଲା । ସଭାପରେ ସ୍ଥାନୀୟ ନୃତ୍ୟଗୀତର ଆୟୋଜନ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା । ପୂର୍ବ ସର୍ତ୍ତ ଅନୁସାରେ ଗୋଟିଏ ବିଶ୍ରାମକକ୍ଷରେ ସେକ୍ରେଟେରୀ ଅନନ୍ତବାବୁଙ୍କ ସହିତ ରହିଲି । ପଥଶ୍ରମର ଭୟଙ୍କର କ୍ଳାନ୍ତି । କିନ୍ତୁ ଅନନ୍ତ ବାବୁ ଶୋଇପାରିଲେ ନାହିଁ । ବ୍ୟସ୍ତ ହେଉଥାଆନ୍ତି । ବୋଧହୁଏ ଦେହରେ ପ୍ରବଳ ଘୋଳାବିନ୍ଧାର ଯନ୍ତ୍ରଣା । ମୁଁ କି ଆଉ ଶୋଇପାରେ ? ଉଠିପଡ଼ି ତାଙ୍କ ଶଯ୍ୟାପାଖକୁ ଗଲି । ମୁଣ୍ଡ ଚିପିବାକୁ ଆରମ୍ଭ କଲି । ସେ ବାରଣ କରୁଥାଆନ୍ତି । ଶେଷରେ ବଳାତ୍କାରରେ ତାଙ୍କର ଗୋଡ଼ ଘଷି ଦେଲି । କେତେ ସମୟ ପରେ ସେ ଆରାମରେ ଶୋଇଗଲେ । ସକାଳୁ ଉଠି କହିଲେ– 'ପଠାଣି, ତୁ ମୋର ଜୀବନ ବଞ୍ଚାଇଦେଲୁ ।' ମୋର ଘୋଳାବିନ୍ଧାର ଯନ୍ତ୍ରଣା ଥିଲା ଅସହନୀୟ । ଦୁଇଦିନର ସେମିନାର ପରେ କଟକ ଫେରିବାର କଥା । ମୁଁ ପ୍ରସ୍ତାବ କଲି, ଯେଉଁ ବାଟରେ ଆସିଥିଲେ, ସେ ବାଟରେ ଫେରିବା ନାହିଁ । ଅନ୍ୟବାଟରେ ଗଲେ କିଛି ନୂଆ ସ୍ଥାନକୁ ଦର୍ଶନ କରିବାର ସୁଯୋଗ ମିଳିବ । ପ୍ରସ୍ତାବ କାର୍ଯ୍ୟକାରୀ ହେଲା । ଫୁଲବାଣୀ ବାଟେ ଫେରିବା ପାଇଁ ଠିକ୍ ହେଲା । ଆମ ସହିତ ସହଯାତ୍ରୀ ହେଲେ ତତ୍କାଳୀନ ଫୁଲବାଣୀର ଶିକ୍ଷାବିଭାଗ ପରିଦର୍ଶକ ଅଫିସର । ରାତିରେ ତାଙ୍କର ଘରେ ଆଶ୍ରୟ ନେବାର ବ୍ୟବସ୍ଥା ହୋଇଥାଏ । ରାତି ନଅଟାବେଳକୁ ଫୁଲବାଣୀ ସହରରେ ପହଞ୍ଚିଲୁ । ସହରରେ ପ୍ରବେଶ କରିବାର ଉପକଣ୍ଠରେ ଘନଅରଣ୍ୟ ମଧ୍ୟରେ ଆଦିବାସୀଙ୍କ ବିଖ୍ୟାତ ଦେବୀଙ୍କୁ ଦର୍ଶନ କଲୁ । ଦେବୀ କହିଲେ କେବଳ କାଠଗଡ଼ ଗୋଟିଏ । ଆଦିବାସୀମାନଙ୍କର ଆରାଧ୍ୟ ଦେବୀପୀଠ । ସାରାବର୍ଷ ଅସୁମାରୀ ବଳୀ ପଡ଼େ । ତେଣୁ ସେଠାରେ ସମ୍ମୁଖଭାଗରେ ପ୍ରଚୁର ରକ୍ତରଧାର ମାଟି ସହିତ ମିଶି ରହିଥାଏ ।

ଅନନ୍ତ ବାବୁ ଜଣେ ଶକ୍ତିଶାଳୀ କବି କେବଳ ନୁହନ୍ତି, ଜଣେ କବିପ୍ରାଣ ଲୋକ । ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ତାଙ୍କର ଅଗାଧ ପ୍ରବେଶ । ସେ ଜଣେ ବହୁପାଠୀ ସାହିତ୍ୟସାଧକ୍ । ଗଡ଼ଜାତ ଆନ୍ଦୋଳନରେ ବାମପନ୍ଥୀ ସଂଗ୍ରାମୀ ଭାବରେ ପୂର୍ବତନ ଗଡ଼ଜାତ ରାଜ୍ୟ ଢେଙ୍କାନାଳ ଜେଲ୍‌ରେ ଅକଥନୀୟ ଅତ୍ୟାଚାର ସହ୍ୟ କରିଛନ୍ତି ।

ଅନନ୍ତ ବାବୁ କହିଲେ, ହଇରେ ଆଦିବାସୀ ଅଞ୍ଚଳରେ ଗୋଟିଏ ରାତିର ରହଣି, ଧାଙ୍ଗଡ଼ି ନାଚ ଦେଖିବା ନାହିଁ ? କହିଲି, ଏତେ ରାତିରେ ଜଂଗଲ ଭିତର ଗାଁକୁ ଯିବା କିପରି ? ଆମ କଥାରେ କିଏ ଆସିବ ନାଚିବ ? ଆମର ସହଯାତ୍ରୀ ଥିଲେ ସ୍ଥାନୀୟ ଶିକ୍ଷାବିଭାଗ ପରିଦର୍ଶକ କର୍ମଚାରୀ । ଜଂଗଲ ମଧ୍ୟରେ ଆଦିବାସୀ ସ୍କୁଲର ଶିକ୍ଷକମାନେ ତାଙ୍କର ଅନୁଗତ । ତାଙ୍କର ନିର୍ଦ୍ଦେଶରେ ଆମର ଗାଡ଼ି ଚାଲିଲା ଜଂଗଲ ଭିତରର ଏକ କ୍ଷୁଦ୍ର ପଡ଼ାକୁ । ଶିକ୍ଷାକର୍ମୀ ସହଯୋଗରେ ଗୋଟିଏ ପଡ଼ାର କିଛି ଧାଂଗଡ଼ା ଆମ ସହିତ ଗାଡ଼ିରେ ବସିଲେ । ଆଉ ଏକ ପଡ଼ାରେ ଧାଂଗଡ଼ିମାନଙ୍କୁ ଆହ୍ୱାନ ଦେଲେ ବାଜାର ତାଳେତାଳେ । ଧାଂଗଡ଼ିମାନେ ବାହାରି ଆସିଲେ । ଦୁଇଟି ମାତ୍ର ଲଣ୍ଠନ ଆଲୁଅ । ମଧ୍ୟରାତ୍ରି ପର୍ଯ୍ୟନ୍ତ ନୃତ୍ୟ ଉପଭୋଗ କରି ଫେରି ଆସିଲୁ ଫୁଲବାଣୀ ସହରକୁ ରାତ୍ରିର ବିଶ୍ରାମ ପାଇଁ ।

## ।। ସାତ ।।

ଏ ହେଉଛି ଦୁଇହଜାର ଦୁଇ ମସିହାର କଥା । ସେତେବେଳେ ମୁଁ ଥାଏ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି । ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଓ ଚେନ୍ନାଇ ଉତ୍କଳ ଆସୋସିଏସନ ଆନୁକୂଲ୍ୟରେ ଏକ ଦିନିକିଆ କର୍ମଶାଳା ସହିତ ଓଡ଼ିଆ ଏବଂ ତାମିଲ କବିତା ପାଠୋତ୍ସବର ଆୟୋଜନ କରାଯାଇଥିଲା । ଅତ୍ୟନ୍ତ ମନୋରମ ପରିବେଶ ମଧ୍ୟରେ ଏହି ଦୁଇଟି ପ୍ରଦେଶର ସାଂସ୍କୃତିକ ମିଳନ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା । ଏହି କର୍ମଶାଳାର ଆଲୋଚ୍ୟ ବିଷୟବସ୍ତୁ ଥିଲା ''ଓଡ଼ିଶା ବାହାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଓଡ଼ିଆ ସଂସ୍କୃତି ଏବଂ ଓଡ଼ିଶା ବାହାରେ ଓଡ଼ିଆ ପରିବାରରେ ଭାଷା ସମସ୍ୟା ।'' ଏହି ସମାରୋହରେ ଏକାଡ଼େମୀ ସଭାପତି ଭାବରେ ମୋର ସଭାପତି ହେବା କଥା । ବାହାର ପ୍ରଦେଶର ନିମନ୍ତ୍ରିତ ଅତିଥିମାନେ ଇଂରେଜୀରେ ଭାଷଣ ଦେବେ । ମୋର ଇଂରାଜୀରେ କହିବାର ଅଭ୍ୟାସ ନାହିଁ । ତେଣୁ କୁଣ୍ଠିତ ହେଉଥାଏ ଚେନ୍ନାଇ ନଗରୀକୁ ଯିବା ବିଷୟରେ । ମାତ୍ର ଆମ ଏକାଡ଼େମୀ ସଂପାଦକ କହିଲେ, 'ସାର୍ ! ଏହା ଆମର ଇଜ୍ଜତର ପ୍ରଶ୍ନ । ଆପଣ ନ ଯିବେ କିପରି ?'' ନାଁ ତ ଲେଖେଇଚି । ଆଉ ଉପାୟ କ'ଣ ? ଚେନ୍ନାଇ ସାଂସ୍କୃତିକ ସମାରୋହର ଅନ୍ୟତମ ନିମନ୍ତ୍ରିତ ଅତିଥି ଥିଲେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ, ସୁଲେଖକ ଓ ବରିଷ୍ଠ ସାମ୍ବାଦିକ ବରେନ୍ଦ୍ରକୃଷ୍ଣ ଧଳ । ତରୁଣ ବୟସରେ ମୁଁ ଓ ବରେନ୍ଦ୍ରବାବୁ ସେଦିନର ପ୍ରଭାବଶାଳୀ ସଂବାଦପତ୍ର ''ମାତୃଭୂମି''ରେ ସାମ୍ବାଦିକ ଜୀବନ ଆରମ୍ଭ କରିଥିଲୁ ୧୯୫୨ ମସିହାରେ । ମୋ ଭାଗ୍ୟରେ ସେ ସୁଯୋଗ ଆଉ ରହିଲା ନାହିଁ । ମାତ୍ର ସେହିଦିନୁ ବରେନ୍ଦ୍ରବାବୁ ଜଣେ ନିଷ୍ଠାପର ନିରବଚ୍ଛିନ୍ନ ସାମ୍ବାଦିକ ଓ ପ୍ରତିବେଦକ । ଆମର ଚେନ୍ନାଇ ସାଂସ୍କୃତିକ ସମାରୋହ ବିଷୟରେ ତାଙ୍କର ଏକ ଦୀର୍ଘ ସମୀକ୍ଷା ୨୦୦୨ ମସିହା ଏପ୍ରିଲ ମାସ ୩୦ ତାରିଖ ''ଅନୁପମ ଭାରତ'' ଦୈନିକ ସଂବାଦପତ୍ରରେ ପ୍ରକାଶିତ ହୋଇଥିଲା । ଏଠାରେ ତାହାର କିଛି ଅଂଶ ଉଦ୍ଧାର କରୁଛି । ''ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ପଠାଣି

ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି କର୍ମଶାଳାକୁ ଉଦ୍‌ଘାଟନ କରିଥିଲେ ବିଖ୍ୟାତ ସାହିତ୍ୟିକ ମନୋଜ ଦାସ । ଓଡ଼ିଆ ଓ ଇଂରାଜୀରେ ତାଙ୍କର ଅନର୍ଗଳ ଭାଷଣ ସମସ୍ତଙ୍କୁ ମୁଗ୍ଧ କରିଥିଲା । ଆମେ ବିସ୍ମିତ ହେଲୁ ରାଜ୍ୟ ପର୍ଯ୍ୟଟନ, ସଂସ୍କୃତି ଓ ସୂଚନା-ଲୋକସଂପର୍କ ସଚିବ ଆର୍‌ ବାଲକ୍ରିଷ୍ଣନ୍‌ଙ୍କ ଭାଷଣ ଶୁଣି । ଉଭୟ ଓଡ଼ିଆ ଓ ଇଂରାଜୀଭାଷାରେ ସେ ତାଙ୍କ ବକ୍ତବ୍ୟ ରଖିଥିଲେ । x x x ଦିନକର କାର୍ଯ୍ୟକ୍ରମରେ ଥିଲା ଏକ ଚମତ୍କାର କବିତା ପାଠୋତ୍ସବ । ସଭାପତିତ୍ୱ କରିଥିଲେ ବିଶିଷ୍ଟ କବି ବ୍ରଜନାଥ ରଥ । ସଂଯୋଜନା କରିଥିଲେ ଶୁଭେନ୍ଦୁ ମୁଣ୍ଡ ଓ ଭଗବାନ ଜୟସିଂହ । ଓଡ଼ିଆ କବିତାର ତାମିଲ ପ୍ରତିରୂପ ପାଠ କରିଥିଲେ ତାମିଲନାଡୁର ବିଶିଷ୍ଟ କବି ଇନ୍ଦ୍ରନ୍ । ଇଂରାଜୀ ପ୍ରତିରୂପ ପାଠ କରିଥିଲେ ସଂଯୋଜକ ଦ୍ୱୟ । ଉଭୟ ସଂଯୋଜକଙ୍କ ଇଂରାଜୀ ଉଚ୍ଚାରଣ ଓ କବିମାନଙ୍କ ପରିଚୟ, ଓଡ଼ିଆ କବିତା ଉପରେ ବ୍ୟାଖ୍ୟା ଏବଂ ଇଂରାଜୀ କବିତା ଆବୃତ୍ତି ଶୁଣି ଆମ ପାଖରେ ବସିଥିବା ଜଣେ ତାମିଲ କବି ପଚାରିଲେ, ଏତେ ଚମତ୍କାର ସଂଯୋଜନା ସେ ଖୁବ୍ କମ୍ ଶୁଣିଛନ୍ତି । ଏଭଳି କବିତା ଓ ତା'ର ଇଂରାଜୀ ପ୍ରତିରୂପ ଶୁଣିବା ପରେ ଓଡ଼ିଆ ସାହିତ୍ୟ କେତେ ଉନ୍ନତ, ତାହା ସହଜରେ ବାରି ହେଉଛି । ଏହା କେବଳ ତାଙ୍କ କଥା ନୁହେଁ, ଆଉ ତିନି ଚାରିଜଣ ତାମିଲବନ୍ଧୁ ମଧ୍ୟ ସେଇ ଏକା କଥା ଆମକୁ କହିଲେ । ଆମେ ଓଡ଼ିଆଙ୍କ ପାଇଁ ଆତ୍ମପ୍ରସାଦ ଅନୁଭବ କଲୁ । କବିତା ଯେଉଁମାନେ ପାଠ କରିଥିଲେ ସେମାନେ ହେଲେ ସର୍ବଶ୍ରୀ ବ୍ରଜନାଥ ରଥ, ଗୋପାଳକୃଷ୍ଣ ରଥ, ଫନୀ ମହାନ୍ତି, ନୃସିଂହ ତ୍ରିପାଠୀ, ଅଜୟ ପ୍ରଧାନ, ଶ୍ରୀମତୀ ମନୋରମା ବିଶ୍ୱାଳ ମହାପାତ୍ର, ଗିରିବାଳା ମହାନ୍ତି ଓ ରଞ୍ଜିତା ନାୟକ । ତାମିଲ ଭାଷାରେ କବିତା ପଢ଼ିଥିଲେ ଇନ୍ଦ୍ରନ୍, ଆର୍. ବାଲକ୍ରିଷ୍ଣନ୍, ଅବଦୁଲ୍ ରହେମାନ୍, ଟି. ପାଲାମଲେଇ ପ୍ରମୁଖ ।

ସାଂଧ୍ୟ ଅଧିବେଶନରେ ଓଡ଼ିଆ ଭାଷା ଟେବୁଲ ସଂପୂର୍ଣ୍ଣ ଓଲଟିଗଲା । ଓଡ଼ିଶାର ରାଜ୍ୟପାଳ (ଯିଏ ତାମିଲନାଡୁ ଅଧିବାସୀ) ଏମ୍.ଏମ୍. ରାଜେନ୍ଦ୍ରନ୍, ବାଚସ୍ପତି ଶରତ କର, ବିଶିଷ୍ଟ ଚିକିତ୍ସକ ତଥା ତାମିଲନାଡୁ ଉତ୍କଳ ସମାଜର ପରାମର୍ଶଦାତା ଡାକ୍ତର କବିପ୍ରସାଦ ମିଶ୍ର, ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ପଠାଣି ପଟ୍ଟନାୟକ, ଓଡ଼ିଶା ସଂସ୍କୃତି ସଚିବ ଆର୍. ବାଲକ୍ରିଷ୍ଣନ୍, ତାମିଲନାଡୁ ସରକାରଙ୍କ ତାମିଲ ବିକାଶ ଓ ସଂସ୍କୃତି ସଚିବ ପି. ରାମେୟା, ଓଡ଼ିଶା ସଂସ୍କୃତି ବିଭାଗ ନିର୍ଦ୍ଦେଶକ ନଳିନୀ ମହାନ୍ତି ଓ ଏକାଡ଼େମୀ ସମ୍ପାଦକ ଅଶ୍ୱିନୀ ମିଶ୍ର ପ୍ରମୁଖ ଯୋଗ ଦେଇଥିଲେ । ସମସ୍ତେ ଇଂରାଜୀରେ ଭାଷଣ ଦେଲେ । ମନେହେଲା, କବିପ୍ରସାଦ ମିଶ୍ର, ଶରତ କର (ଦୁହେଁ ଘନିଷ୍ଠ ବନ୍ଧୁ ଓ କ୍ଲାସ୍‌ମେଟ୍) ଓ ପଠାଣି ପଟ୍ଟନାୟକଙ୍କ ମଧ୍ୟରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ନେଇ ଇଂରାଜୀ ବକ୍ତୃତା ପ୍ରତିଯୋଗିତା ହେଉଛି । ସାଂଧ୍ୟ ଅଧିବେଶନରେ ପ୍ରେକ୍ଷାଳୟ ଭରପୂର । ଅନେକ ତାମିଲବନ୍ଧୁ ଉପସ୍ଥିତ ଥିଲେ । ସମସ୍ତେ ଉପଭୋଗ କଲେ । ଆମେ ଓଡ଼ିଆଏ ଓଡ଼ିଶାରେ ମେଣ୍ଢା ହେଉ, ବୋଦା ହେଉ ବା କୁକୁଡ଼ା ହେଉ, କିନ୍ତୁ ସେଦିନ ତାମିଲନାଡୁର ରାଜଧାନୀ ଚେନ୍ନାଇରେ ଆମର ସେ ଦୁର୍ନାମ ଧୋଇ ହୋଇଗଲା । ଯେତେ ଦର୍ଶକ, ବିଶେଷ କରି ତାମିଲ ଦର୍ଶକମାନେ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥିଲେ ଓଡ଼ିଶାର ଏହି ତିନିଜଣ ବିଶିଷ୍ଟ ବ୍ୟକ୍ତିଙ୍କର ଅଭୂତପୂର୍ବ ବାକ୍‌ଚାତୁରୀ ।

ଇଂରାଜୀ ଭାଷଣକୁ ଭୟ କରି ଅତ୍ୟନ୍ତ ସନ୍ତର୍ପଣରେ ଚେନ୍ନାଇ ସଭାରେ ସଭାପତିତ୍ୱ କରିଥିଲି । ଈଶ୍ୱରଙ୍କ ଅପୂର୍ବ କରୁଣାରୁ ଏ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଫେରିଆସିଥିଲି । ଇଂରାଜୀରେ ଭାଷଣ ଦେବା ତାହାହିଁ ପ୍ରଥମ ଓ ଶେଷ ।

।। ଆଠ ।।

ଉଣେଇଶି ଶହ ଅଣାଅଶି ମସିହା ଅକ୍ଟୋବର ମାସ ଛଅ ତାରିଖ । ଖଡ଼ିଆଳ ସାହିତ୍ୟ ସମାଜର ବାର୍ଷିକ ଉତ୍ସବରେ ନିମନ୍ତ୍ରିତ ଅତିଥି ଭାବରେ ଯୋଗ ଦେବାର ସୁଯୋଗ ମିଳିଥିଲା । କଟକର ଉତ୍କଳ ସାହିତ୍ୟ ସମାଜ ପରି 'ଖଡ଼ିଆଳ ସାହିତ୍ୟ ସମାଜ' ଓଡ଼ିଶାର ଅନ୍ୟତମ ପ୍ରାଚୀନ ସାହିତ୍ୟ ଅନୁଷ୍ଠାନ । ପଶ୍ଚିମ ଓଡ଼ିଶାର ବାମଣ୍ଡା, ସୋନପୁର ଓ ଖଡ଼ିଆଳ ରାଜପରିବାର ବହୁକାଳ ପର୍ଯ୍ୟନ୍ତ ହିନ୍ଦୀଭାଷୀ ମଧ୍ୟପ୍ରଦେଶ ଅଧୀନରେ ଥିଲେ ହେଁ ଓଡ଼ିଆ ସାହିତ୍ୟ ଚର୍ଚ୍ଚାରେ ସର୍ବଦା ନିମଗ୍ନ ରହୁଥିଲେ ଏବଂ ଓଡ଼ିଆ ସାହିତ୍ୟର ଲେଖକମାନଙ୍କର ପୃଷ୍ଠପୋଷକତା କରି ଆସିଥିଲେ । ଏ ଦିଗରେ ଖଡ଼ିଆଳ ରାଜବଂଶର ଭୂମିକା ଥିଲା ଅତ୍ୟନ୍ତ ପ୍ରେରଣାଦାୟକ । କବିବର ରାଧାନାଥ ରାୟଙ୍କର ଗ୍ରନ୍ଥାବଳୀର ପ୍ରଥମ ପ୍ରକାଶକ ଥିଲେ ଖଡ଼ିଆଳ ରାଜପରିବାରର ଶିବନାରାୟଣ ଦେବ । ଏହି ଗ୍ରନ୍ଥ ରାଧାନାଥଙ୍କ ଜୀବିତାବସ୍ଥାରେ ୧୯୦୨ ମସିହା ଏପ୍ରିଲ ମାସରେ ପ୍ରକାଶ ଲାଭ କରିଥିଲା । ଖଡ଼ିଆଳ ରାଜା ବ୍ରଜରାଜ ସିଂହଦେଓଙ୍କୁ ଦ୍ୱିତୀୟ ଉପେନ୍ଦ୍ରଭଞ୍ଜ ବୋଲି ସମ୍ମାନିତ କରାଯାଏ । ଉନବିଂଶ ଶତାବ୍ଦୀର ଏହି ରାଜକବି (୧୮୫୧-୧୯୦୭) ରୀତିଯୁଗର ଶୈଳୀରେ ପ୍ରଣୟନ କରିଥିଲେ (୧) ବ୍ରଜବଧୂବିଳାସ (୨) ଶୋଭାବଲ୍ଲରୀ, (୩) ରତ୍ନପ୍ରଭା (୪) ରୂପମଞ୍ଜରୀ (୫) ଚଉତିଶା ତ୍ରୟ (୬) ସଂଗୀତଗୁଚ୍ଛ (୭) ସତ୍ୟନାରାୟଣ ବ୍ରତ କଥା (୮) ପ୍ରବନ୍ଧ ଚିତ୍ରକାବ୍ୟ । ୧୯୭୫ ମସିହାରେ ବ୍ରଜରାଜ ଗ୍ରନ୍ଥାବଳୀ ପ୍ରକାଶିତ ହୋଇଥିଲା । ସ୍ୱଭାବକବି ଗଂଗାଧର ମେହେର ତାଙ୍କର "ଉତ୍କଳଲକ୍ଷ୍ମୀ" କାବ୍ୟରେ ବ୍ରଜରାଜଙ୍କ ସ୍ତୁତିଚାରଣ କରି ଲେଖିଥିଲେ-

"ଖଡ଼ିଆଳପତି ବ୍ରଜରାଜଙ୍କର ଲଳିତ ସଂଗୀତ ରାଗେ
ଗାଉଥିଲେ ବେନି କଲ୍ଲୋଳିନୀ ତେଲ ଚିତ୍ରୋତ୍ପଳା ପଛଭାଗେ,
ଖଡ଼ିଆଳ ବନ କୁସୁମ ସ୍ତବକେ ଶୋଭୁଥିଲା ତାଙ୍କ ଖୋସା,
ଜନମନ ଟାଣି ନେଉଥିଲେ ଫୁଲବାସେ ସେହି ବେନି ଯୋଷା"

ଓଡ଼ିଶାର ଅନ୍ୟତମ ପ୍ରାଚୀନ ରଂଗମଞ୍ଚର ପ୍ରତିଷ୍ଠାତା ଖଡ଼ିଆଳ ରାଜବଂଶ । ଏହାର ନାମ ଥିଲା ବିକ୍ରମ ଥିଏଟର ରଂଗମଞ୍ଚ । ରାଜକୁମାର ବୀରବିକ୍ରମ ଦେବ ନିଜେ ଜଣେ ନାଟ୍ୟକାର ଥିଲେ ଏବଂ ତାଙ୍କ ପ୍ରତିଷ୍ଠିତ ରଂଗମଞ୍ଚରେ ୧୮୮୭ ଖ୍ରୀଷ୍ଟାବ୍ଦରେ ସ୍ୱରଚିତ ନାଟକ (୧) କୁସୁମକୁମାରୀ (୨) ଶୈଳବାଳା (୩) ଅମ୍ବିକାଦେବୀ (୪) ବୃଦ୍ଧବିବାହ (୫) ହରିଶ୍ଚନ୍ଦ୍ର (୬) ଭ୍ରାତୃସ୍ନେହ ଓ (୭) ଉତ୍କଳ ଦୁର୍ଦ୍ଦଶା ମଞ୍ଚସ୍ଥ କରିଥିଲେ । ଏହି ମଞ୍ଚରେ ଅନେକ ସମୟରେ ହିନ୍ଦୀଭାଷାର ଅନୂଦିତ ନାଟକ ମଧ୍ୟ ଅଭିନୀତ ହେଉଥିଲା । ଏହିପରି ଏକ ସାରସ୍ୱତ ସାଧନାପୀଠରେ ଅତିଥି ହେଲି ଖଡ଼ିଆଳ ରାଜା କବିସୌରଭ ଅନୁପସିଂହ

ଦେବଙ୍କର । ଦୁଇ ରାଜପୁତ୍ର ଜିତାମିତ୍ର ସିଂହଦେଓ ଓ ନୀଳଲୋହିତ ସିଂହଦେଓ ଦୁଇଦିନ କାଳ କାୟା ସଂଗେ ଛାୟା ପରି ମୋତେ ସଖ୍ୟ ପ୍ରଦାନ କରିଥିଲେ । ପିତାପୁତ୍ର ସମସ୍ତେ ଲେଖକ । ଅନୁପସିଂହ ଦେବଙ୍କ ଦେହାନ୍ତ ପରେ ଜିତାମିତ୍ର ସିଂହଦେଓ ବର୍ତ୍ତମାନ ଖଡ଼ିଆଳ ରାଜା ଭାବରେ ସମ୍ମାନିତ । ଖଡ଼ିଆଳର ପ୍ରାକୃତିକ ଶୋଭା, ବିଶେଷକରି ଜାଙ୍ଗଲିକ ସୁଷମା ଅତ୍ୟନ୍ତ ଆକର୍ଷଣୀୟ । ଐତିହାସିକ ବିକ୍ରମ ଥିଏଟରେ ରଂଗମଞ୍ଚ ବର୍ତ୍ତମାନ ଭଗ୍ନସ୍ତୂପରେ ପରିଣତ । ରାଜକୁମାର ଜିତାମିତ୍ରଙ୍କ ଉଦ୍ୟମରେ ଖଡ଼ିଆଳ ମିଉଜିଅମ୍ ଅନେକ ଐତିହାସିକ କୀର୍ତ୍ତିର ଗନ୍ତାଘର । ସେ ନିଜେ ଜଣେ ଗବେଷକ ମଧ୍ୟ । ରାଜା ଅନୁପ ସିଂହଦେଓ ତାଙ୍କର "ତ୍ରିପତ୍ରୀ" କାବ୍ୟକୁ ମୋତେ ଉପହାର ପ୍ରଦାନ କରିଥିଲେ । ତିନିଗୋଟି ଦୀର୍ଘ କବିତାର ସମଷ୍ଟି ଏହି କାବ୍ୟଗ୍ରନ୍ଥ ସମ୍ପୂର୍ଣ୍ଣ ଭଞ୍ଜୀୟ ରୀତିରେ ଲେଖାଯାଇଛି । ଖଡ଼ିଆଳ ସାହିତ୍ୟ ସମିତି ଏହାର ପ୍ରକାଶକ । ସାଂସ୍କୃତିକ ଉତ୍ସବର ଦ୍ୱିତୀୟ ଦିନରେ କବିତା ପାଠୋତ୍ସବର ଅନୁଭୂତି ଅବିସ୍ମରଣୀୟ । ଏଥିରେ ସମଗ୍ର ଖଡ଼ିଆଳ ଅଞ୍ଚଳର ୩୦ଜଣ କବି ଅଂଶଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ ୨୯ଜଣ ବିଭିନ୍ନ ରାଗରାଗିଣୀରେ କବିତା ପାଠ କରିଥିଲେ । ଜଣେମାତ୍ର କଟକୀ କବି ଅତ୍ୟାଧୁନିକ ଢଙ୍ଗରେ କବିତାଟିଏ ଆଣିଥିଲେ । ମନେହେଲା, ଖଡ଼ିଆଳର ଜନମାନସରେ ରୀତି ସାହିତ୍ୟର ଧାରା କେତେ ପ୍ରଭାବଶାଳୀ ଥିଲା । ଏହି ସଭାରେ ଅନୁପ ସିଂହଦେଓ ଗୋଟିଏ କବିତା ରଚନା କରି ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ ନିଜେ ପାଠ କରି । ତାହାର ପ୍ରତିଲିପି ଏହିପରି–

**–ସ୍ୱାଗତ ସମ୍ବର୍ଦ୍ଧନା–**

କାଦମ୍ବରୀ କରୁଣାରୁ ଲେଖନୀ ନିଃସୃତ
କାବ୍ୟଝର ବହେ ସାରା ଉତ୍କଳ ଭରସେ
କବିକୁଳ ପାନ କରି ସୁରଭୋଗଜିଣା
କମଳ ଲଭନ୍ତି ଚିତ୍ତେ ଅପାର ଆନନ୍ଦ ।
ପ୍ରଜ୍ଞାଦାୟିନୀ ଶାରଦା ସୁଯୋଗ୍ୟ ନନ୍ଦନ
ପୃଥିବୀରେ ଗଢ଼ିପାର ନନ୍ଦନ କାନନ
ପାରିଜାତ ପୁଷ୍ପ ତହିଁ ପାର ବିକଶଇ
ପ୍ରସନ୍ନ ସୁରଭି ରାଜ୍ୟସାରା ଚହଟାଇ
ସାରାଜୀବନ ଭାରତୀ ପୟର ପୁରଣ
ଶୁଶ୍ରୁଷାରେ ଜାତାନନ୍ଦେ ବିତାଇଛ ତୁମେ
ସ୍ୱତଃ ନତହୁଏ ମଥା ସୁକୃତ ସମ୍ମୁଖେ
ସ୍ୱାନ୍ତେ ଜନମେ ସଶ୍ରଦ୍ଧ ଗଭୀର ଭକତି
ଶୁଭ ଦିବସରେ କରେ ଆଜି ଖଡ଼ିଆଳ
ସାହିତ୍ୟ ସମିତି ତବ ମଂଗଳ କାମନା ।

ଭବଦୀୟ, ଖଡ଼ିଆଳ ସାହିତ୍ୟ ସମିତି, ତା ୬.୧୦.୭୯

ଖଡ଼ିଆଳରେ ଦୁଇଦିନର ରହଣି ମଧ୍ୟରେ ବୟୋବୃଦ୍ଧ ସାହିତ୍ୟସେବୀ କବିରାଜ ପ୍ରୟାଗଦତ୍ତ ଯୋଷୀଙ୍କର ନିକଟ ସଂପର୍କରେ ଆସିବାର ସୌଭାଗ୍ୟ ମିଳିଥିଲା । ସେ ଥିଲେ ଖଡ଼ିଆଳ ସାହିତ୍ୟ ସମିତିର ସଭାପତି । ପରବର୍ତ୍ତୀ କାଳରେ କୋଶଳୀ ସାହିତ୍ୟର ସ୍ୱାତନ୍ତ୍ର୍ୟ ରକ୍ଷାପାଇଁ ତାଙ୍କର ସଂଗ୍ରାମ ଅତୁଟ ରହିଥିଲା । ସାହିତ୍ୟ ସମିତିର ସଂପାଦକ ପଣ୍ଡିତ କାଳୀଚରଣ ରଥ ଓ ଯୁଗ୍ମସଂପାଦକ ଅଭୟଚରଣ ଚଲାନଙ୍କର ସାହିତ୍ୟ ପ୍ରୀତି ଓ ଶ୍ରଦ୍ଧା ନିବେଦନରେ ମୁଗ୍ଧ ହୋଇଥିଲି ।

ସେଦିନର ସଖ୍ୟକୁ ସ୍ମରଣ କରି ଏତେକାଳ ପରେ ମଧ୍ୟ ରାଜଭ୍ରାତା ନୀଳଲୋହିତ ସିଂହଦେଓ କଟକ ଆସିଲେ ମୋତେ ଅବଶ୍ୟ ସାକ୍ଷାତ କରି ଆଳାପ କରିଥାଆନ୍ତି ।

## ।। ନଅ ।।

୧୯୮୪ ମସିହା ଫେବୃୟାରୀ ମାସ ୨୬ ତାରିଖ । ତାଳଚେର ପଲିଟେକ୍‌ନିକ୍ ସ୍କୁଲ ନିମନ୍ତ୍ରଣ କଲେ ସାଂସ୍କୃତିକ ଉତ୍ସବରେ ଅତିଥି ହେବା ପାଇଁ । ସେମାନଙ୍କ ପ୍ରସ୍ତାବ ଦେଲି କୋଇଲାଖଣି ଭିତରକୁ ଯିବାର ସୁବିଧା କରିଦେବେ । ମୋର ସହଯାତ୍ରୀ ହେଲେ ଅନ୍ତରଂଗ ପଡ଼ୋଶୀ ଓ ସହକର୍ମୀ ଅଧ୍ୟାପକ ଗଦାଧର ମିଶ୍ର ଓ ମହେଶ୍ୱର ମହାନ୍ତି । ପୂର୍ବ ନିର୍ଦ୍ଧାରିତ ପ୍ରସ୍ତାବ ଅନୁସାରେ ପ୍ରଥମେ ଆମକୁ ନିଆଗଲା କୋଇଲାଖଣି ଅଭ୍ୟନ୍ତର ଦର୍ଶନ କରିବା ପାଇଁ । ଆମ ମୁଣ୍ଡରେ ଖଞ୍ଜି ଦିଆଗଲା ସ୍ୱତଃ ଆଲୋକ ଦେଉଥିବା ଲୁହାର ଟୋପି । ମାଇଲ ମାଇଲ ତଳକୁ ଯାନ୍ତ୍ରିକ ସିଡ଼ିରେ ଓହ୍ଲାଇବାକୁ ହେବ । ତାହାର ଭୟଙ୍କର ଗର୍ଜନରେ ଗଦାଧର ବାବୁ ଭୟ କରିଗଲେ । ସେ ରାଜି ହେଲେ ନାହିଁ ଖଣି ଭିତରେ ପ୍ରବେଶ କରିବା ପାଇଁ । ବାହାରେ ଅପେକ୍ଷା କଲେ ବାଧ୍ୟ ହୋଇ । ଆମେ ଦୁହେଁ ଆନନ୍ଦମନରେ ସେହି ଘନ ଅନ୍ଧକାର ଖଣି ଗହ୍ୱରରେ ଓହ୍ଲାଇଗଲୁ । ପୃଥିବୀର ଅଭ୍ୟନ୍ତରରେ ଅସଂଖ୍ୟ ଶ୍ରମିକ କାର୍ଯ୍ୟ କରୁଥାଆନ୍ତି । ପ୍ରବଳ ବେଗରେ ଅଭ୍ୟନ୍ତର ଝରଣାର ଜଳ ପ୍ରବାହିତ ହେଉଥାଏ । ରେଳଲାଇନ ବିସ୍ତାରିତ ହୋଇଥାଏ କୋଇଲା ବୋହିନେବା ପାଇଁ । ପରେ ଯନ୍ତ୍ର ସାହାଯ୍ୟରେ ତାହା ଭୂମି ଉପରକୁ ଉଠାଇ ନିଆଯାଏ । ଖଣି ମଧ୍ୟରେ ଅନେକ ସମୟରେ ଆକସ୍ମିକ ବିପତ୍ତି ଘନାଇ ଆସେ । ହଠାତ୍ ବିଷାକ୍ତ ଗ୍ୟାସ୍ ପ୍ରବାହ ଶ୍ରମିକମାନଙ୍କର ମୃତ୍ୟୁର କାରଣ ହୁଏ । ଅଥବା ଅତଡ଼ା ଖସିଲେ ତାରି ତଳେ ଅନେକ ଶ୍ରମିକ ସମାଧି ଗ୍ରହଣ କରନ୍ତି । ତଥାପି ସଂଗ୍ରାମର ଅନ୍ତ ନାହିଁ । ବିଜ୍ଞାନର କୌଶଳ ପ୍ରୟୋଗ କରି ବୁଦ୍ଧିଜୀବୀ ମନୁଷ୍ୟ ଅନେକ ଅସାଧ୍ୟ ସାଧନ କରିପାରୁଛି । ସେଠାରେ କାମ କରୁଥିବା ଶ୍ରମିକମାନେ ଅନେକଦିନ ପର୍ଯ୍ୟନ୍ତ ସୂର୍ଯ୍ୟାଲୋକ ଦେଖିପାରନ୍ତି ନାହିଁ । ସେହି ମାୟାପୁରୀର ସ୍ମୃତି ଅନେକ ସମୟରେ ମନକୁ ଛୁଇଁଛୁଇଁ ଯାଏ ।

## ।। ଦଶ ।।

୧୯୮୪ ସାଲ ଏପ୍ରିଲ ମାସ ଆଠ ତାରିଖଦିନ ସମ୍ବଲପୁର ସହରରେ ନିଖିଳ ଓଡ଼ିଶା ଶିଶୁ ସାହିତ୍ୟ ସମ୍ମେଳନ ଅନୁଷ୍ଠିତ ହେଉଥାଏ । ଏହାର ସଭାନେତ୍ରୀ ଥିଲେ କବି ଓ ସୁଲେଖିକା

ମନୋରମା ମହାପାତ୍ର । ଏହି ସମ୍ମେଳନରେ ମୁଖ୍ୟଅତିଥି ହୋଇ ଯାଉଥାଆନ୍ତି ବିଖ୍ୟାତ ଜନସେବୀ "ସମାଜ" ପତ୍ରିକାର କୁଳବୃଦ୍ଧ ସଂପାଦକ ରାଧାନାଥ ରଥ । ମନୋରମା ଦେବୀ ମୋତେ ନିମନ୍ତ୍ରଣ କଲେ ମୁଖ୍ୟବକ୍ତା ଭାବରେ ଯୋଗଦେବା ପାଇଁ । ତାଙ୍କର ସ୍ୱାମୀ ପଦାରବିନ୍ଦ ମହାପାତ୍ର ସେତେବେଳେ ଥିଲେ ଓଡ଼ିଶା ଜଂଗଲ ବିଭାଗର ସର୍ବୋଚ୍ଚ କର୍ତ୍ତା । ତାଙ୍କ ସହିତ ଯାତ୍ରା କରି ରାତିରେ ଅନଗୁଳ ଡାକବଂଗଳାରେ ବିଶ୍ରାମ କଲି । ରାଧାନାଥ ବାବୁ ଆଗରୁ ସମ୍ବଲପୁର ଚାଲିଗଲେ । ପ୍ରସ୍ତାବ ହେଲା, ଗୋଟିଏ ଗାଡ଼ିରେ ମନୋରମା ଦେବୀ ଓ ମୁଁ ଯିବୁ ସମ୍ବଲପୁର । ତା' ପୂର୍ବରୁ ମନୋରମା ଦେବୀଙ୍କର ଏକ ପ୍ରୋଗ୍ରାମ ଥାଏ ଅନଗୁଳ ବାଜି ରାଉତ ଛାତ୍ରାବାସର ସମାବର୍ତ୍ତନ ଉତ୍ସବରେ । ମୋର ଆଗ୍ରହ ହେଲା ଆଶ୍ରମକୁ ଯାଇ ମାଳତୀ ଚୌଧୁରୀଙ୍କୁ ଦର୍ଶନ କରିବି । ଓଡ଼ିଶାର ବରେଣ୍ୟ ସ୍ୱାଧୀନତା ସଂଗ୍ରାମୀ, ସମାଜବାଦୀ ଆନ୍ଦୋଳନର ପ୍ରମୁଖ ଚିନ୍ତାନାୟକ ନବକୃଷ୍ଣ ଚୌଧୁରୀଙ୍କର ଧର୍ମପତ୍ନୀ ଥିଲେ ମାଳତୀଦେବୀ । ନିଜର ବୈପ୍ଳବିକ ଗୁଣରେ ସେ ଥିଲେ ଅତ୍ୟନ୍ତ ବିଖ୍ୟାତ । ତାଙ୍କର ତ୍ୟାଗ ଓ ଅଗ୍ନିଜିଣା କାର୍ଯ୍ୟଶୈଳୀ କିମ୍ବଦନ୍ତୀରେ ରୂପାନ୍ତରିତ ହୋଇଅଛି । ମନୋରମା ଦେବୀ ମୋତେ ନେଇ ମାଳତୀ ଦେବୀଙ୍କୁ ପରିଚୟ କରାଇଦେଲେ । ଗଦ୍‌ଗଦ୍ ହୃଦୟରେ ତାଙ୍କୁ ପ୍ରଣାମ କଲି । ଅନେକଦିନର ଅଭିଳାଷ ପୂରଣ ହୋଇଗଲା । ସେଦିନ ତାଙ୍କର ସମାବର୍ତ୍ତନ ଉତ୍ସବର ମୁଖ୍ୟ ଅତିଥି କୌଣସି କାରଣରୁ ଆସିପାରିବେ ନାହିଁ ବୋଲି ଭୁବନେଶ୍ୱରରୁ ଖବର ମିଳିଲା । ମୁଁ ହେଲି ଧରାବର । ମାଳତୀ ଦେବୀଙ୍କ ଅନୁରୋଧରେ ମୁଖ୍ୟଅତିଥି ଭାବରେ ଅନ୍ତେବାସୀ ଛାତ୍ରଛାତ୍ରୀମାନଙ୍କୁ ଭାଷଣ ଦେଲି ଏବଂ ସମସ୍ତ ଆଶ୍ରମ ପରିବେଶର ଶାନ୍ତ ଏବଂ ସରଳ ବାତାବରଣ ଦର୍ଶନ କରି ମନ୍ତ୍ରମୁଗ୍ଧ ହୋଇଗଲି । ଆରମ୍ଭ ହେଲା ମନୋରମା ଦେବୀଙ୍କ ସହିତ ସହଯାତ୍ରୀ ଭାବରେ ସମ୍ବଲପୁର ଯାତ୍ରା । ପଥଶ୍ରାନ୍ତିର ସୁଯୋଗ ନଥାଏ । ମଧୁରକଣ୍ଠରେ ଅନର୍ଗଳ ଗାଇ ଚାଲିଥାଆନ୍ତି ଓଡ଼ିଶାର ପ୍ରଖ୍ୟାତ କବିମାନଙ୍କର ଅବିସ୍ମରଣୀୟ ଗୀତଗୁଡ଼ିକ । ମହାସମାରୋହରେ ଶିଶୁ ସାହିତ୍ୟ ସମ୍ମିଳନୀ ଶେଷ ହେଲା । ରାଧାନାଥବାବୁଙ୍କ ସହିତ ମୁଁ ରହିଥାଏ ବୁକ୍‌ହିଲ୍‌ର ଡାକବଂଗଳାରେ । ରାଧାନାଥ ବାବୁଙ୍କର ଆତିଥେୟତା ଅଭୁଲା ହୋଇ ରହିଛି । ପରଦିନ ସକାଳେ ତାଙ୍କର ଗାଡ଼ିରେ କଟକ ଫେରିଲି । ସମ୍ବଲପୁରରୁ କଟକ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ରାଧାନାଥବାବୁ ଅଧ୍ୟୟନରତ । ଧନ୍ୟ ତାଙ୍କର ଏକାଗ୍ରତା ଓ ଜ୍ଞାନଅର୍ଜ୍ଜନର ତପସ୍ୟା । ଶୁଣିଥିଲି, "ସମାଜ" ପ୍ରେସ୍ କକ୍ଷରେ ସେ ସମସ୍ତଙ୍କ ପାଇଁ ଅତ୍ୟନ୍ତ କଠୋର । କିନ୍ତୁ ଥରେ ପ୍ରେସ୍ ବାହାରକୁ ପାଦଦେଲେ ତାଙ୍କର ସ୍ନେହଶ୍ରଦ୍ଧା ଓ ପିତୃସୁଲଭ ଆଦର ଅଜାଡ଼ି ହୋଇପଡ଼େ ।

ରାଧାନାଥ ବାବୁଙ୍କ ସହିତ ଆଉ ଏକ ଅନୁଭୂତି ମନେପଡୁଛି । ଏକଦା ଦୁହେଁ ନିମନ୍ତ୍ରିତ ହୋଇଥାଉ ଅତିଥିବକ୍ତା ଭାବରେ ଗୋପାଳ ପ୍ରହରାଜଙ୍କ ସ୍ମୃତିସଭାକୁ ତାଙ୍କର ଜନ୍ମସ୍ଥାନ ସିଦ୍ଧେଶ୍ୱରପୁର । ସଭାପତି କାର୍ଯ୍ୟକ୍ରମରେ ସ୍ୱାଭାବତଃ ରାଧାନାଥବାବୁଙ୍କୁ ପ୍ରଥମେ ନିମନ୍ତ୍ରଣ କଲେ କହିବା ପାଇଁ । ସେ ବାରଣ କଲେ, ସେ କହିଲେ, ପ୍ରଥମେ ଏହି ଯୁବକ ଅଧ୍ୟାପକଙ୍କୁ

ନିମନ୍ତ୍ରଣ କରନ୍ତୁ । ତାଙ୍କପରେ ମୁଁ କହିବି । କେତେବଡ଼ ଉଦାର ଭାବନା । ତରୁଣ ସାହିତ୍ୟସେବୀମାନଙ୍କୁ ଉତ୍ସାହିତ କରିବା ପାଇଁ କେତେବଡ଼ ଆନ୍ତରିକ ଭାବନା । ସଭାଶେଷରେ ତାଙ୍କର ଗାଡ଼ିରେ ଫେରିଆସିଲି କଟକ । କଲେଜରେ ପ୍ରାୟ ମଧ୍ୟାହ୍ନ ସମୟରେ ସମାଜ ଅଫିସରୁ ଦୂରଭାଷରେ ମୋତେ ଡକରା ପଡ଼ିଲା । ସେପଟେ ଅଛନ୍ତି କାର୍ଯ୍ୟନିର୍ବାହୀ ବରିଷ୍ଠ ସହ ସଂପାଦକ ଉଦୟନାଥ ଷଡଙ୍ଗୀ । ସେ ମୋତେ କହିଲେ- "ପଠାଣି ବାବୁ, ଆପଣଙ୍କ ପାଇଁ ମୋ'ର ଚାକିରୀ ଯିବା ଉପରେ ।" ମୁଁ ତଟସ୍ଥ ହୋଇ କାରଣ ପଚାରିଲି । ସେ କହିଲେ, ଗତକାଲି ବାବୁଜୀଙ୍କ ସହିତ ଆପଣ ଗୋଟିଏ ମଞ୍ଚରେ ବକ୍ତା ଥିଲେ । ଆମର ସଂବାଦଦାତା ବାବୁଜୀଙ୍କର ବକ୍ତୃତାକୁ ଦୁଇକଲମ ରିପୋର୍ଟ କଲାବେଳେ ଆପଣଙ୍କୁ ସାମାନ୍ୟ କେତେଧାଡ଼ି ଲେଖି ଦେଇଛି । ବାବୁଜୀ ଏହା ପାଠ କରି ପ୍ରଚଣ୍ଡ କ୍ରୋଧରେ ଅଗ୍ନିଶର୍ମା । ପଠାଣିବାବୁ ମୋପରି ଦୀର୍ଘ ଚାଳିଶ ମିନିଟ ଭାଷଣ ଦେଲେ । ତାଙ୍କର ବିବରଣୀ କାହିଁ ? ଆପଣଙ୍କ ପାଖକୁ ଲୋକଟିଏ ପଠାଇ ଦେଉଛି । ଦୟାକରି ଭାଷଣଟି ଲେଖିଦିଅନ୍ତୁ । ସେ ଲୋକ ଆସି ମୋର ଭାଷଣ ଟିପି ନେଇଗଲେ । ରାଧାନାଥ ବାବୁଙ୍କ ସହିତ ମୋ ପରି ଲୋକର ମଧ ଦୀର୍ଘ ଭାଷଣ "ସମାଜ" ଭଳି ବିଖ୍ୟାତ ସଂବାଦପତ୍ରରେ ସ୍ଥାନିତ ହୋଇଥିଲା । ରାଧାନାଥ ବାବୁଙ୍କର ଏହି ଆଶୀର୍ବାଦବ୍ୟଞ୍ଜକ ଉଦାରତା ଆଜି ମଧ ଭୁଲିପାରି ନାହିଁ ।

## ।। ଏଗାର ।।

୧୯୮୭ ମସିହା ଏପ୍ରିଲ ପହିଲା ତାରିଖ । ଏହି ଦିବସଟି ଓଡ଼ିଶାବାସୀଙ୍କ ପାଇଁ ଅତ୍ୟନ୍ତ ସ୍ମରଣୀୟ । ୧୯୩୬ ମସିହା ଏପ୍ରିଲ ପହିଲାଦିନ ବହୁ ସଂଗ୍ରାମ ପରେ ଓଡ଼ିଶା ବୋଲି ପ୍ରଦେଶଟିଏ ଜନ୍ମଗ୍ରହଣ କରିଥିଲା । ସେହିଦିନଠାରୁ ବର୍ଷ ପରେ ବର୍ଷ ଓଡ଼ିଶାର ସର୍ବାଞ୍ଚଳରେ ଉତ୍କଳ ଦିବସ ପାଳନ କରାଯାଉଅଛି । ପୂର୍ବକଥିତ ଦିବସରେ ଉତ୍କଳଦିବସ ଉତ୍ସବରେ ଯୋଗଦେବାପାଇଁ ତାଳଚେରରେ ଅତିଥି ହୋଇଥିଲି । ମୋ ସହିତ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ ନ୍ୟାୟମୂର୍ତ୍ତି କେ.ପି. ମହାପାତ୍ର । ମୋର ସାହିତ୍ୟିକ ବନ୍ଧୁ ଆକାଶବାଣୀର ଡଃ ବ୍ରଜମୋହନ ମହାନ୍ତି ଥିଲେ ଅନ୍ୟତମ ବକ୍ତା । ଏହି ସଭାରେ ଅସୁମାରୀ ଶ୍ରୋତାମାନଙ୍କର ଆଗ୍ରହ ଲକ୍ଷ୍ୟ କରିବାର କଥା । କଟକ ବାହାରେ ଅନୁଷ୍ଠିତ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକରେ ଅଧିକ ନିଷ୍ଠା ଓ ଅନ୍ତରଙ୍ଗ ସହଯୋଗ ବାରିହୋଇପଡ଼େ । ଅତିଥିମାନଙ୍କୁ ଚର୍ଚ୍ଚା କରିବାରେ ସେମାନଙ୍କର ଆନନ୍ଦ ଓ ସନ୍ତୋଷ ଭୁଲି ହେବ ନାହିଁ । ଏହି ଅବସରରେ କର୍ମକର୍ତ୍ତାମାନେ ଆମକୁ ସାହାଯ୍ୟ କରିଥିଲେ ବିଭିନ୍ନ କଳକାରଖାନା ପରିଦର୍ଶନ କରିବା ପାଇଁ । ସେଗୁଡ଼ିକ ମଧରେ Heavy water plant, fertiliser plant, The Nalco. ତାଳଚେର କେବଳ କୋଇଲାଖଣି ପାଇଁ ଖ୍ୟାତ ହୋଇଥିଲା । ବର୍ତ୍ତମାନ ଏହା ଶିଳ୍ପନଗରୀ । ଏଠାରେ ନାଲ୍‌କୋ ଭଳି ଶିଳ୍ପାନୁଷ୍ଠାନ ଏସିଆ ଭୂଖଣ୍ଡରେ ବିଖ୍ୟାତ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ଶିଳ୍ପ ସମୃଦ୍ଧିର ପଦଧ୍ୱନି ତାଳଚେର ଦର୍ଶନ ନ କଲେ ଅନୁଭବ କରାଯାଇପାରିବ ନାହିଁ ।

## ।। ବାର ।।

ଅବସର ନେବା ପାଇଁ ଆଉ ଅଳ୍ପ କେତୋଟି ମାସଥାଏ । ୧୯୮୮ ମସିହା ସେପ୍ଟେମ୍ବର ତିରିଶ ତାରିଖରେ ମୁଁ ଅବସର ଗ୍ରହଣ କଲି । କିଛିମାସ ପୂର୍ବରୁ ଅର୍ଥାତ୍ ମେ' ମାସରେ ସୁଲେଖିକା ପ୍ରତିଭା ରାୟ ନିମନ୍ତ୍ରଣ କଲେ କୋରାପୁଟର ଗୋଟିଗୁଡ଼ା ଇନ୍ଦ୍ରାବତୀ ପ୍ରକଳ୍ପ ପରିଦର୍ଶନ କରିବା ପାଇଁ । ସେଠାରେ ତାଙ୍କର ସ୍ୱାମୀ ସଂସ୍କୃତିସମ୍ପନ୍ନ ଇଞ୍ଜିନିୟର ଅକ୍ଷୟ ରାୟ ଦାୟିତ୍ୱରେ ଥାଆନ୍ତି । ଅବସର ବିନୋଦନ ପାଇଁ ପ୍ରତିଭା ରାୟ ରହିଥାଆନ୍ତି ଗୋଟିଗୁଡ଼ାରେ । ସାହିତ୍ୟିକ ବନ୍ଧୁ ଶୁକଦେବ ସାହୁଙ୍କ ସହିତ ସହଯାତ୍ରୀ ହେଲି ଏହି ମହାର୍ଘ ଅନୁଭୂତି ଉପଭୋଗ କରିବା ପାଇଁ । ଟ୍ରେନ୍‌ରେ ଯାଇଁ ବିଜୟନଗର ଷ୍ଟେସନରେ ଓହ୍ଲାଇପଡ଼ିଲୁ । ଆମକୁ ନେବା ପାଇଁ ଅକ୍ଷୟବାବୁ କାର ବ୍ୟବସ୍ଥା କରିଥାଆନ୍ତି । ଏହି ଦୀର୍ଘପଥ କାର ଯୋଗେ ଯାଇ ପହଞ୍ଚିଲୁ ଗୋଟିଗୁଡ଼ାରେ । ବାଟଯାକ କୋରାପୁଟର ପ୍ରାକୃତିକ ରୂପଶୋଭା ଆଖି ଝଲସାଇ ଦେଉଥାଏ । ଗୋଟିଗୁଡ଼ାରେ ଆମେ ଦୁଇବନ୍ଧୁ ପହଞ୍ଚିଲୁ ମେ' ମାସ ୨୮ ତାରିଖରେ । ଅତ୍ୟନ୍ତ କ୍ଳାନ୍ତି ଅନୁଭବ କରୁଥାଉ ଟ୍ରେନ୍‌ଯାତ୍ରାର ଓ କାରଯାତ୍ରାର ଅବସାଦ ପାଇଁ । ମାତ୍ର ବିଶ୍ରାମ ପାଇଁ ଅବକାଶ ନାହିଁ । ସାତଦିନ ପାଇଁ ଆମର ସାଂସ୍କୃତିକ ପ୍ରୋଗ୍ରାମ ନିର୍ଧାର୍ଯ୍ୟ ହୋଇଯାଇଥାଏ । ମଧ୍ୟାହ୍ନ ଭୋଜନ ପରେ ଅକ୍ଷୟବାବୁ, ପ୍ରତିଭା ରାୟଙ୍କ ସହିତ ଆମେ ଦୁଇବନ୍ଧୁ ଯାତ୍ରାକଲୁ ଉମରକୋଟ । ଏହା ଏକ ଉପାନ୍ତ ଅଞ୍ଚଳ । ଏଠାରେ ବିବେକାନନ୍ଦଙ୍କ ସ୍ମୃତିରେ ଏକ ବିରାଟ ହଲ ଉନ୍ମୋଚନ ହେବାର ଥାଏ । ପ୍ରତିଭା ରାୟ ଓ ମୁଁ ଅତିଥିବକ୍ତା ଭାବରେ ଅଂଶଗ୍ରହଣ କରି ମଧ୍ୟରାତ୍ରିରେ ଫେରିଆସିଲୁ ଗୋଟିଗୁଡ଼ା । ତା' ପରଦିନ ସମଗ୍ର ଇନ୍ଦ୍ରାବତୀ ପ୍ରୋଜେକ୍ଟ ପରିଦର୍ଶନ କଲୁ । ଏଠାରେ କର୍ମରତ ଇଞ୍ଜିନିୟରମାନେ ଆମକୁ ପ୍ରୋଜେକ୍ଟର ପ୍ରତ୍ୟେକ ରହସ୍ୟ ବୁଝାଇ ଦେଉଥାଆନ୍ତି । ଏଠାରେ ଜଗନ୍ନାଥ ମନ୍ଦିର ଦର୍ଶନ ଆଉ ଏକ ଅଭୁଲାସ୍ମୃତି । ୩୦ ତାରିଖଦିନ ଯାତ୍ରା ଆରମ୍ଭ ହେଲା ନିଘଞ୍ଚ ଜଂଗଲ ଏବଂ ପାର୍ବତ୍ୟ ଉପତ୍ୟକା ମଧ୍ୟରେ ଅବସ୍ଥିତ ଗୁପ୍ତେଶ୍ୱର । ଏକ ବିଶାଳ ଗୁମ୍ଫା ମଧ୍ୟରେ ସୁଉଚ୍ଚ ଶିବଲିଙ୍ଗ । ଶିବଲିଙ୍ଗ ଉପରେ ସର୍ବଦା ଜଳଧାର । ନିକଟରେ ଚିରସ୍ରୋତା ଏକ ନଦୀ ପ୍ରବାହିତ । ଏହି ନିକାଞ୍ଚନ ଜଂଗଲ ରାଜ୍ୟକୁ ରାସ୍ତାଘାଟର ବିଶେଷ ସୁବିଧା ନଥିଲା । କିନ୍ତୁ ଉଭୟ ଆନ୍ଧ୍ର ଓ ଓଡ଼ିଶା ଅଞ୍ଚଳର ଅସଂଖ୍ୟ ଭକ୍ତ ବର୍ଷସାରା ଆସିଥାଆନ୍ତି ଗୁପ୍ତେଶ୍ୱରଙ୍କୁ ଦର୍ଶନ କରିବା ପାଇଁ । ସାମୟିକ ଆମୋଦ ପ୍ରମୋଦ ପାଇଁ ଏହା ଅତ୍ୟନ୍ତ ମନୋରମ ସ୍ଥଳୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଠାରେ ଅକ୍ଷୟବାବୁ ବଣଭୋଜିର ଆୟୋଜନ କରିଥିଲେ । ଏକତିରିଶ ତାରିଖର ପ୍ରୋଗ୍ରାମ ହେଲା ମାଛକୁଣ୍ଡ ଓ ଡୁଡୁମା ଜଳପ୍ରପାତ ଦର୍ଶନ, ହିରାକୁଦ ପ୍ରୋଜେକ୍ଟର ବହୁପୂର୍ବରୁ ଏହି ଜଳପ୍ରପାତକୁ ନିୟନ୍ତ୍ରଣ କରାଯାଇଥିଲା ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ପାଇଁ । ସ୍ୱାଧୀନତାର ପଦଧ୍ୱନି ନିକଟେଇ ଆସୁଥାଏ । ଅନ୍ତବର୍ତ୍ତୀ ସରକାରର ପ୍ରଧାନମନ୍ତ୍ରୀ ଥାଆନ୍ତି ହରେକୃଷ୍ଣ ମହତାବ ୧୯୪୬ ମସିହାରେ । ଓଡ଼ିଶା ସରକାର ମାନ୍ଦ୍ରାଜ୍ ସରକାର (ସେତେବେଳେ ଆନ୍ଧ୍ରପ୍ରଦେଶ ଜନ୍ମଗ୍ରହଣ କରିନଥିଲା)ଙ୍କ ସହିତ ଏକ ଚୁକ୍ତିରେ ଆବଦ୍ଧ

ହେଲେ ଡୁଡୁମାର ବିଦ୍ୟୁତ୍ ଉତ୍ପାଦନ ସହିତ ବହୁବର୍ଷ ପାଇଁ ଭାଗୀଦାର ହେବା ପାଇଁ । କାରଣ ଓଡ଼ିଶାର ବିଦ୍ୟୁତ୍ ଶକ୍ତିର ଉପଯୋଗ ପାଇଁ ବିଶେଷ ସୁଯୋଗ ସୃଷ୍ଟି ହୋଇ ନଥିଲା । ଉତ୍କଳ ସମ୍ମିଳନୀ ନେତୃତ୍ୱରେ ଆରମ୍ଭ ହେଲା ଡୁଡୁମା ଆନ୍ଦୋଳନ । ସେତେବେଳେ ମୁଁ କଲେଜରେ ପ୍ରଥମବାର୍ଷିକ କଳା ଛାତ୍ର । ପୁରୀ ସିଂହଦ୍ୱାର ଜନସଭାରେ ପ୍ରଧାନମନ୍ତ୍ରୀ ମହତାବଙ୍କୁ ଏକ ଲିଖିତ ମେମୋରାଣ୍ଡମ ଦେଇ ଡୁଡୁମା ବିଷୟରେ ପ୍ରଶ୍ନ କରିଥିଲି କେତେଜଣ ନେତାଙ୍କର ପ୍ରରୋଚନାରେ । ବ୍ରହ୍ମପୁର ସହରରେ ଉତ୍କଳ ସମ୍ମିଳନୀ ଏକ ସ୍ୱତନ୍ତ୍ର ଅଧିବେଶନ ଆହୂତ କରି ଆନ୍ଦୋଳନ ଜାରି ରଖିଥିଲା ଏହି ସଭାରେ । ମୁଁ ଯୋଗ ଦେଇଥିଲି ମୋର ସହପାଠୀ ବନ୍ଧୁ ହରିହର ବାହିନୀପତି ସହିତ ଯେ କି ପରବର୍ତ୍ତୀ ସମୟରେ ଓଡ଼ିଶା ବିଧାନ ସଭାର ଉପବାଚସ୍ପତି ଆସନ ଅଳଙ୍କୃତ କରିଥିଲା । ଏହି ଆନ୍ଦୋଳନ ଦ୍ୱାରା ପ୍ରେରିତ ହୋଇ ଅଧ୍ୟାପକ କୁଞ୍ଜବିହାରୀ ଦାଶ ରଚନା କରିଥିଲେ "ଡୁଡୁମା" କାବ୍ୟ । ଜୁନ ପହିଲା ତାରିଖରେ ଆମର ପ୍ରୋଗ୍ରାମ ହେଲା ନବରଂଗପୁର ସହରରେ ସାହିତ୍ୟ ସଂଧ୍ୟାରେ ଅତିଥି ହେବା ପାଇଁ । ଏଠାରେ ଓଡ଼ିଶାର ପ୍ରାଚୀନ ଇତିହାସ ଓ ସାହିତ୍ୟର ପରଂପରା ବିଷୟରେ ଆଲୋଚନା କରିବା ପାଇଁ ଅନୁରୋଧ କରାଯାଇଥିଲା । ଏତେଦିନ ଯେଉଁ ଗୋଟିଗୁଡ଼ାରେ ଅବସ୍ଥାନ କଲୁ, ସେଠାରେ ଇନ୍ଦ୍ରାବତୀ ସାହିତ୍ୟ ଆସରରେ ଅତିଥି ହେଲୁ ଜୁନ୍ ମାସ ଦୁଇ ତାରିଖରେ । ଏଠାରେ ମୋର ଆଲୋଚ୍ୟ ବିଷୟ ଥିଲା- "ଭଞ୍ଜ ସାହିତ୍ୟ ଆଲୋଚନାର ସ୍ୱରୂପ ।" ପ୍ରତିଭା ରାୟ ଆଗ୍ରହୀ ଥିଲେ ଆମକୁ ଏକ ପରଜା ଗାଁ ଦେଖାଇବା ପାଇଁ । ତେଣୁ ୩ ତାରିଖ ଦିନ ଜଂଗଲ ମଧ୍ୟରେ ଗୋଟିଏ ପରଜା ଗାଁରେ ପ୍ରବେଶ କରି କେତେଜଣଙ୍କ ଘର ଦର୍ଶନ କଲୁ । ଦିନବେଳେ ପ୍ରାୟ ଅଧିକାଂଶ ଗାଁ ବାହାରକୁ ଚାଲିଯାଇଥିଲେ ଶ୍ରମ କରିବା ପାଇଁ । ଅଣ ଓସାରିଆ ଚାଳିଘର ହେଲେ ମଧ୍ୟ ଅତ୍ୟନ୍ତ ପରିଷ୍କାର ପରିଚ୍ଛନ୍ନ । ଘର କାନ୍ଥରେ ନାନା ରଂଗର ମାଟିରେ ଚମତ୍କାର ଚିତ୍ରର ଶୋଭା । କେତେଜଣ ଅତ୍ୟନ୍ତ ବୃଦ୍ଧ ଓ ବୃଦ୍ଧା ଘରପିଣ୍ଡାରେ ବିଶ୍ରାମରତ । ପ୍ରତିଭା ରାୟ ପରବର୍ତ୍ତୀ କାଳରେ ଅନୁପ୍ରେରିତ ହୋଇଥିଲେ ଆଦିବାସୀ ଜୀବନକୁ ନେଇ ଗଳ୍ପ ଉପନ୍ୟାସ ରଚନା କରିବାପାଇଁ । ପାଞ୍ଚତାରିଖ ମେ' ମାସରେ ଗୋଟିଗୁଡ଼ା ପରିତ୍ୟାଗ କଲୁ, ବାହାରିଲୁ କଟକ ଅଭିମୁଖେ । ଜୀବନରେ ଓଡ଼ିଶାର ଅନେକ ଅଞ୍ଚଳକୁ ଯାଇଛି ସାଂସ୍କୃତିକ ସଭାରେ ଭାଷଣ ଦେବା ପାଇଁ । କିନ୍ତୁ ଗୋଟିଗୁଡ଼ା ରହଣିକାଳରେ ଏହି ସପ୍ତାହବ୍ୟାପି କାର୍ଯ୍ୟକ୍ରମ ମନରେ ଗଭୀର ଭାବରେ ରେଖାପାତ କରିଆସିଛି ।

## ।। ତେର ।।

ବରଗଡ଼ ଅଧିବାସୀ ଦୟାଲାଲ ଯୋଷୀ ଜଣେ ବିଶିଷ୍ଟ ଔପନ୍ୟାସିକ ଓ ସମାଜସେବୀ । ସେ ଏକଦା ଓଡ଼ିଶା ସାହିତ୍ୟ ଏକାଡ଼େମୀର କାର୍ଯ୍ୟକାରୀ ସମିତିର ସଭ୍ୟ ଥିଲେ । ବରଗଡ଼ର ସାଂସ୍କୃତିକ ଅନୁଷ୍ଠାନରେ ତାଙ୍କର ଭୂମିକା ଅତ୍ୟନ୍ତ ଉଲ୍ଲେଖନୀୟ । ସେ ମୋର ପରମବନ୍ଧୁ । ମଝେମଝେ ସେ ଦୂରଭାଷ ଯୋଗେ ଆଳାପ ନକରି ରହିପାରନ୍ତି ନାହିଁ । କଟକରେ ସେ

ଅନେକଥର ମୋର ଅତିଥି ହୋଇ ଆପ୍ୟାୟିତ କରିଛନ୍ତି । ଥରେ ତାଙ୍କର କଟକ ରହଣି କାଳରେ ମୋତେ କହିଲେ, ଆପଣ କେବଳ କଟକ, ପୁରୀ, ବାଲେଶ୍ୱର ଅଥବା ବ୍ରହ୍ମପୁର ସାଂସ୍କୃତିକ ସଭାରେ ଭାଷଣ ଦେଉଥିବେ, ଆମ ବରଗଡ଼କୁ ଆପଣଙ୍କର ପାଦ ପଡ଼ିବ ନାହିଁ ? କହିଲି, ଅତ୍ୟନ୍ତ ଆଗ୍ରହରେ- ''ଯିବି । ମାତ୍ର ଗୋଟିଏ ସର୍ତ୍ତରେ ।'' ସେ ଚମକି ପଡ଼ିଲେ । ''ସର୍ତ୍ତ ପୁଣି କ'ଣ ?'' ''ମୁଁ ଏକା ଯିବି ନାହିଁ । ମୋ ସହିତ ଆଉଜଣେ ସାହିତ୍ୟିକ ନିମନ୍ତ୍ରଣ କରିବେ । ତେଣୁ ଯିବା ଆସିବାରେ ଏକାଟିଆ ଅନୁଭବ କରିବି ନାହିଁ । ମୋତେ ଆପଣଙ୍କ ଅଞ୍ଚଳର କିଛି ଦର୍ଶନୀୟ ସ୍ଥାନ ଦେଖାଇବାର ବନ୍ଦୋବସ୍ତ କରିବେ ।'' ସେ କହିଲେ, ''ଆପଣଙ୍କୁ ଆମେ ହୀରାକୁଦ ବନ୍ଧ ଦେଖାଇପାରିବୁ ।'' ମୁଁ କହିଲି, ତାକୁ ମୁଁ ଅନେକଥର ଦେଖିଛି । ମୋର ଇଚ୍ଛା, ପ୍ରାଚୀନ କୀର୍ତ୍ତି, ମନୋରମ ପ୍ରାକୃତିକ ପରିବେଶ, ଅଥବା ଗୁରୁତ୍ୱପୂର୍ଣ୍ଣ ଐତିହାସିକ ବିଭବ ।'' ବନ୍ଧୁ ଯୋଷୀବାବୁ କହିଲେ, ''ଏଇକଥା । ଆମ ଅଞ୍ଚଳରେ ଅନେକ ଐତିହାସିକ ବିଭବକୁ ଆପଣ ଦେଖିପାରିବେ । ସେ ବ୍ୟବସ୍ଥା ନିଶ୍ଚୟ କରାଯିବ । ବରଗଡ଼ର ଗାନ୍ଧିସ୍ମୃତି ମନ୍ଦିରରେ ଗାନ୍ଧୀଙ୍କ ସଂପର୍କରେ ଆଲୋଚନା ପାଇଁ ମୋତେ ନିମନ୍ତ୍ରଣ କରାଗଲା । ମୋ ସହିତ ଅନ୍ୟତମ ନିମନ୍ତ୍ରିତ ଅତିଥି ଥିଲେ ବିଖ୍ୟାତ ଔପନ୍ୟାସିକ ଶାନ୍ତନୁ କୁମାର ଆଚାର୍ଯ୍ୟ । ଶାନ୍ତନୁ ବାବୁଙ୍କ ସହିତ ଦୁଇଦିନର ବରଗଡ଼ ରହଣି ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା । ଦୟାଲାଲ ବାବୁ ନିଜେ ଗାଡ଼ି ଚଳାଇ ଆମକୁ ନେଇଗଲେ ବାରପାହାଡ଼ର ନିଘଞ୍ଚ ଅରଣ୍ୟ ପ୍ରଦେଶକୁ । ଏଇ ଜଂଗଲରେ ଅନେକ ବର୍ଷ ବୀର ସୁରେନ୍ଦ୍ର ସାଏ ଆତ୍ମଗୋପନ କରି ଇଂରେଜ ସରକାରଙ୍କ ବିରୁଦ୍ଧରେ ଗରିଲାଯୁଦ୍ଧ ଚଳାଇଥିଲେ । ଜଂଗଲ ମଝିରେ ଏକ ପୁରାତନ ଅଥଚ ପ୍ରସିଦ୍ଧ ଶିବ ମନ୍ଦିର ଦର୍ଶନ କଲୁ । -ଓଡ଼ିଶା ଓ ମଧ୍ୟପ୍ରଦେଶର ଭକ୍ତଗଣ ଏଠାକୁ ଆସି ବର୍ଷସାରା ଦର୍ଶନ କରିଥାଆନ୍ତି । ଏକ ପ୍ରାକୃତିକ ଜଳଉତ୍ସ ମଧ୍ୟରେ ଶିବଲିଙ୍ଗ ପୂଜା ପାଉଛନ୍ତି । ରମଣୀୟ ପରିବେଶ ଦର୍ଶକର ମନକୁ ଆଚ୍ଛନ୍ନ କରିପକାଏ । ତା'ପରେ ଦୟାଲାଲ ବାବୁ ଆମ ଦୁଇବନ୍ଧୁଙ୍କୁ ନେଇଗଲେ ଗନ୍ଧମାର୍ଦ୍ଦନ ପାହାଡ଼ ଓ ବିଡ଼ାଲ ନରସିଂହ । ସେହି ମନୋରମ ପ୍ରାକୃତିକ ବିଭବ ଦର୍ଶନ କରି ରାଧାନାଥଙ୍କ କବିତାର ପଦୁଟିଏ ସ୍ମରଣ କଲି- ''ବଚନ ବିଷୟ ନୁହଁଇ ଏ ଛବି, ହୃଦ ସେ କେବଳ ପାରେ ଅନୁଭବି ।''. ଅତ୍ୟନ୍ତ ମହାର୍ଘ ଔଷଧୀୟ ବୃକ୍ଷଲତା ପାଇଁ ଗନ୍ଧମାର୍ଦ୍ଦନ ବିଖ୍ୟାତ । ଅନବରତ ପ୍ରବଳ ବେଗରେ ପର୍ବତର ଉପରିଭାଗରୁ ଲାସ୍ୟମୟୀ ତନ୍ୱୀପରି ଝରଣାଟିଏ ଡେଇଁ ଡେଇଁ ଅଜାଡ଼ି ହୋଇପଡ଼ୁଛି । ଶୁଣିଲି, ଗନ୍ଧମାର୍ଦ୍ଦନର ଠିକ୍ ଅପରପାର୍ଶ୍ୱରେ ବଲାଙ୍ଗିରପଟୁ ଏକ ବିଖ୍ୟାତ ଦେବମନ୍ଦିର ପାଦଦେଶରେ ବିଦ୍ୟମାନ । ପ୍ରବଳ ବେଗରେ ଏକ ଝରଣା ମଧ୍ୟ ସେଠାରେ ପାହାଡ଼ ଉପରୁ ଓହ୍ଲାଇ ଆସୁଛି । ଅନେକ ପରିଦର୍ଶକ ବଣଭୋଜି ପାଇଁ ବର୍ଷସାରା ସେଠାରେ ଏକାଠି ହୁଅନ୍ତି । ଓଡ଼ିଶାର ଚତୁର୍ଦ୍ଦିଗରେ ମନୋରମ ପ୍ରାକୃତିକ ବିଭବ ଏବଂ ଐତିହାସିକ ସ୍ମୃତି ବିଛାଡ଼ି ହୋଇପଡ଼ିଛି । ଓଡ଼ିଶାର ଅଧିକାଂଶଙ୍କ ପାଖରେ ଏହି ପ୍ରାକୃତିକ ବିଭବର ଖବର ପହଞ୍ଚି ପାରିନାହିଁ । ଏବେ ବି ବେଳେବେଳେ ମନ ଉଚ୍ଚାଟ ହୁଏ, ଆଉଥରେ ଏହି ଜାଂଗଲିକ ସୁଷମା ମଧ୍ୟରେ ନିଜକୁ ହଜାଇ ଦିଅନ୍ତି କି ? ଶରୀର ସେଥିପାଇଁ ଅନୁମତି ଦିଏ ନାହିଁ ।

## ।। ଚଉଦ ।।

ଅଧ୍ୟାପକ ଜୀବନର ମାତ୍ର କେତୋଟିବର୍ଷ ଅତିକ୍ରାନ୍ତ ହୋଇଥାଏ । ମହମ୍ମଦିଆ ବଜାର ପାଟରାସାହିର ଏକ ଭଡ଼ାଘରେ ମୋର ରହଣି ପରିବାର ସହିତ । ଦିନେ ମଧ୍ୟାହ୍ନ ସମୟରେ କଲେଜରୁ ଫେରି ଘରେ ବିଶ୍ରାମ କରୁଛି, ଜଣେ ସୁଉଚ୍ଚ ଭଦ୍ରଲୋକ ଆସି ପହଞ୍ଚିଲେ । ଅପରିଚିତ ହେଲେ ମଧ ବୟସ୍କ ବୋଲି ପ୍ରଣାମ ଜଣାଇଲି । ନିଜଆଡୁ ପରିଚୟ ଦେଲେ । ସେ ହେଉଛନ୍ତି କପିଳେଶ୍ୱର ଦାସ । ଗଞ୍ଜାମ ଜିଲ୍ଲା ବୁଗୁଡ଼ା ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ । ନାଁଟି ଶୁଣି ମୁଁ ଚମକି ପଡ଼ିଲି । କପିଳେଶ୍ୱର ଦାସ ହେଉଛନ୍ତି ଜଣେ ମହାନ ସାହିତ୍ୟିକ, ଶିକ୍ଷାବିତ୍ ଓ ପ୍ରାବନ୍ଧିକ । ତାଙ୍କର ଏକ ପ୍ରବନ୍ଧ କଲେଜ ଜୀବନର ଉପାଧିଶ୍ରେଣୀରେ ପିଲାମାନଙ୍କୁ ପଢ଼ାଉଥିଲି । ଶ୍ରୀ ଦାସଙ୍କର ଚିନ୍ତାଗର୍ଭିତ ଦାର୍ଶନିକ ଭାବବ୍ୟଞ୍ଜକ ପ୍ରବନ୍ଧ ସଂକଳନ ହେଲା ''ଜୀବନଚିନ୍ତା'' ସେ କହିଲେ, ମୁଁ ଆସିଛି, ଆମ ସ୍କୁଲର ବାର୍ଷିକ ଉତ୍ସବରେ ଆପଣଙ୍କୁ ଅତିଥି ଭାବରେ ନିମନ୍ତ୍ରଣ କରିବା ପାଇଁ । ମୋର ଆଶା, ସ୍କୁଲବୋଲି ଆପଣ ନିରାଶ କରିବେ ନାହିଁ । ଏପରି ଜଣେ ମାନନୀୟ ସମ୍ମାନାସ୍ପଦ ବ୍ୟକ୍ତିତ୍ୱଙ୍କର ସସ୍ନେହ ନିମନ୍ତ୍ରଣକୁ କ'ଣ ଉପେକ୍ଷା କରାଯାଇପାରେ ? ନିର୍ଦ୍ଦିଷ୍ଟ ଦିନରେ ବସ୍ ଯୋଗେ ବୁଗୁଡ଼ାରେ ଓହ୍ଲାଇଲା ବେଳକୁ ଜଣେ ସହକାରୀ ଶିକ୍ଷକ ଏବଂ କେତେଜଣ ଛାତ୍ର ବସ୍ ରହଣି ସ୍ଥାନରେ ଅପେକ୍ଷା କରିଛନ୍ତି ମୋତେ ସସମ୍ମାନେ ପାଛୋଟି ନେବା ପାଇଁ । ଆଦରଯତ୍ନର ଅଭାବ ନଥିଲା । ସଭାରେ ଯୋଗ ଦେବା ପୂର୍ବରୁ ମୋତେ ନିଆଗଲା ବିରଞ୍ଚିନାରାୟଣ ମନ୍ଦିରକୁ ଦର୍ଶନ କରିବା ପାଇଁ । ଘୁମୁସର ଭଞ୍ଜବଂଶର ଏ ଅପୂର୍ବ କୀର୍ତ୍ତି । କୋଣାର୍କରେ ସୂର୍ଯ୍ୟଙ୍କ ଭଗ୍ନ ମନ୍ଦିରର ମୁଖଶାଳା ଶୋଭାପାଉଛି । ସୂର୍ଯ୍ୟ ପୂଜା ପାଉନାହାନ୍ତି । ସୂର୍ଯ୍ୟ ଦେବତାଙ୍କ ଏକ ପ୍ରଧାନ ଆରାଧସ୍ଥଳୀ ଏହି ମନ୍ଦିର । ଏହାର ଆଉ ଏକ ବିଶେଷତ୍ୱ ହେଲା ମନ୍ଦିର ଗର୍ଭଗୃହର ଛାତତଳେ କାଷ୍ଠକର୍ମର ଅପୂର୍ବ ନିର୍ମାଣଶୈଳୀ । ଓଡ଼ିଆ ଶିଳ୍ପୀ କେବଳ ପ୍ରସ୍ତର ଶିଳ୍ପରେ ଇନ୍ଦ୍ରଜାଲ ସୃଷ୍ଟି କରି ନାହିଁ, କାଷ୍ଠଶିଳ୍ପରେ ମଧ କଳାକୁଶଳତାର ଅପରୂପ ଶୋଭା ସମ୍ପଦ ସାଇତି ରଖିଛି । ସଂଧ୍ୟାରେ ସାଂସ୍କୃତିକ ସଭାରେ ସଭାପତି ଥିଲେ ପ୍ରଧାନଶିକ୍ଷକ କପିଳେଶ୍ୱର ଦାସ । ମୋର ଭାଷଣ ପରେ ମୋ ଉଦ୍ଦେଶ୍ୟରେ ତାଙ୍କର ପ୍ରଶଂସା ଓ ଆଶୀର୍ବାଦ ଝରିଆସିଲା । ପ୍ରବୀଣମାନଙ୍କର ନବୀନମାନଙ୍କ ପ୍ରତି ଏହିପ୍ରକାର ଉଦାରଭାବନା ଆଜି ଦୁର୍ଲଭ ହୋଇଯାଉଛି । ପରଦିନ ସକାଳେ ପ୍ରଧାନଶିକ୍ଷକ ମୋ ପାଇଁ ଏକ ଜିପ୍‌ର ବ୍ୟବସ୍ଥା କରିଦେଲେ ବୁଗୁଡ଼ାର ଅନତିଦୂରରେ ବୁଦ୍ଧଖୋଲ ପର୍ବତ ଦର୍ଶନ କରିବା ପାଇଁ । ଏକଦା ବୌଦ୍ଧଧର୍ମର ସାଧକଗଣ ଏହି ପର୍ବତରେ ତପସ୍ୟା କରୁଥିଲେ ବୋଲି ଜଣାଯାଇଛି । ଅନେକ ପ୍ରାଚୀନ ବୌଦ୍ଧକୀର୍ତ୍ତି ଏଠାରେ ଲଭ୍ୟ ହୋଇଥାଏ । ପୁନଶ୍ଚ ମହାକବି ଉପେନ୍ଦ୍ର ଭଞ୍ଜ କବିତ୍ୱସିଦ୍ଧି ଲାଭ କରିବା ପାଇଁ ଏହି ପର୍ବତରେ ସାଧନା କରି ରାମତାରକ ମନ୍ତ୍ରରେ ସିଦ୍ଧିଲାଭ କରିଥିଲେ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ନିଜ ରଚନାରେ ସ୍ୱୀକାର କରିଯାଇଛନ୍ତି-''ତାରକମନ୍ତ୍ର ପରସାଦେ । ମୋହର କବିପଣ ଉଦେ ।'' ବସ୍ ଧରିବା ପାଇଁ ବୁଗୁଡ଼ା ଫେରିଆସିଲି ସିନା, ବୁଦ୍ଧଖୋଲ ଓ ବିରଞ୍ଚି ନାରାୟଣ ଦର୍ଶନର ଦିବ୍ୟ ଅନୁଭୂତି କ'ଣ ବିସ୍ମୃତ ହୋଇପାରେ ?

## ।। ପନ୍ଦର ।।

ଅନେକଦିନ ତଳର କଥା । କରଞ୍ଜିଆ କଲେଜ ଇଉନିଅନର ଉପଦେଷ୍ଟା ଅଧ୍ୟାପକ କଟକ ଆସି ନିମନ୍ତ୍ରଣ କଲେ ତାଙ୍କ ବାର୍ଷିକ ଉତ୍ସବରେ ଅତିଥିଭାବରେ ଯୋଗ ଦେବା ପାଇଁ । ମୋ ସହିତ ସେ ରେଭେନ୍ସା କଲେଜର ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଙ୍କୁ ମଧ୍ୟ ନିମନ୍ତ୍ରଣ କରିଛନ୍ତି । ମୁଁ କହିଲି, ମୋତେ କିଛି ନୂତନ ଦର୍ଶନୀୟ ସ୍ଥାନ ବୁଲାଇବାର ପ୍ରତିଶ୍ରୁତି ଦେଲେ ମୁଁ ଯିବି । ନଚେତ ମୋତେ ଭୁଲିଯାଆନ୍ତୁ । ସେ ହସିହସି କହିଲେ, ଏଇ କଥା !! ଆପଣଙ୍କୁ ଆମେ ଖଇରୀ ବାଘ, କୁମ୍ଭୀର ଗବେଷଣା କେନ୍ଦ୍ର ଏବଂ ଇତିହାସ ପ୍ରସିଦ୍ଧ ଖିଚିଂ ମନ୍ଦିର ଦେଖାଇପାରିବୁ । ଜାନକୀବାବୁଙ୍କ ପରି ସାହିତ୍ୟପ୍ରାଣ ଅଧ୍ୟାପକଙ୍କର ସଖ୍ୟଲାଭ ଆଉ ଏକ ସୁଯୋଗ । ଜାନକୀବାବୁ ଛାତ୍ର ଜୀବନରେ ସ୍ୱାଧୀନତା ସଂଗ୍ରାମୀ ଥିଲେ ଏବଂ ବାନର ସେନା ଭାବରେ ଜେଲକୋଠରୀ ଦର୍ଶନ କରିଥିଲେ । ଜଣେ ଶକ୍ତିଶାଳୀ କବି ଓ ବିଦ୍ୱାନ ଅଧ୍ୟାପକ ଭାବରେ ସେ ଖ୍ୟାତି ଅର୍ଜନ କରିଛନ୍ତି । ଏତଦ୍‌ବ୍ୟତୀତ ପ୍ରଭାବଶାଳୀ ସାହିତ୍ୟ ସମାଲୋଚକ, ଅନୁବାଦକ ଏବଂ ସାହିତ୍ୟ ସଂକଳକ ଭାବରେ ତାଙ୍କର ଖ୍ୟାତି ରହିଅଛି । କରଞ୍ଜିଆ କଲେଜରେ ଭାଷଣପର୍ବ ଶେଷ ହେଲା ପରେ କେତେଜଣ ଉତ୍ସାହୀ ଅଧ୍ୟାପକ ଆମର ସହଚର ହେଲେ ଖଇରୀ ବାଘକୁ ଦେଖାଇ ନେବା ପାଇଁ । ସେତେବେଳେ ଖଇରୀ ବାଘର ଆଚରଣ ପୃଥିବୀ ବିଖ୍ୟାତ ହୋଇସାରିଥାଏ । ଜଂଗଲ ବିଭାଗର ବରିଷ୍ଠ ଅଫିସର ଏବଂ ତାଙ୍କର ପତ୍ନୀଙ୍କର ଆଦର ଓ ସ୍ନେହ ଲାଭ କରି ଏକ ମହାବଳ ବାଘ ସମସ୍ତ ପ୍ରକାର ହିଂସ୍ର ଆଚରଣ ବିସ୍ମୃତ ହୋଇଯାଇଥାଏ ଏବଂ ଗୋଟିଏ ଶଯ୍ୟାରେ ସେମାନଙ୍କ ସହିତ ଶୟନ କରେ । ତାର ଆଚରଣ କିପରି ପରିବର୍ତ୍ତନ ହେଲା ବୋଲି କେତେକ ଗବେଷକ ଆଗ୍ରହ ପ୍ରକାଶ କରିଥାଆନ୍ତି । ଖଇରୀର ଦେହାନ୍ତ ପରେ ସେ ଆଜି ଏକ ଇତିହାସ ।

ତା'ପରେ ଅଳ୍ପ ସମୟ ପାଇଁ କୁମ୍ଭୀର ଗବେଷଣା କେନ୍ଦ୍ର ଦର୍ଶନ କରି ଚାଲିଲୁ ଇତିହାସ ପ୍ରସିଦ୍ଧ ଖିଚିଙ୍ଗ । ଏକଦା ମୟୂରଭଞ୍ଜ ରାଜାଙ୍କର ଏହା ଥିଲା ରାଜଧାନୀ । ଓଡ଼ିଶାର ଖ୍ୟାତନାମା ଗବେଷକ ଓ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହି ଗ୍ରାମର ସନ୍ତାନ । ଖିଚିଙ୍ଗ ମନ୍ଦିରର ଭାସ୍କର୍ଯ୍ୟଶିଳ୍ପ ଅତୁଳନୀୟ । ଏଠାରେ ଏକ କ୍ଷୁଦ୍ର ମିଉଜିଅମ୍ ମଧ୍ୟ ଅଛି । ଅନେକ ପ୍ରାଚୀନ କୀର୍ତ୍ତିର ତାହା ସଂଗ୍ରହଶାଳା ଏବଂ ଗବେଷକମାନଙ୍କ ପାଇଁ ଅତ୍ୟନ୍ତ ଆକର୍ଷଣୀୟ । ଖିଚିଙ୍ଗକୁ କେନ୍ଦ୍ରକରି ଅନେକ ପୌରାଣିକ କିମ୍ବଦନ୍ତୀ ପ୍ରଚାରିତ ହୋଇଥାଏ । ଆଜି ମଧ୍ୟ ସ୍ଥାନୀୟ ପ୍ରସ୍ତରଶିଳ୍ପୀମାନଙ୍କର ନିର୍ମାଣ କୌଶଳ ଦର୍ଶକର ଚକ୍ଷୁ ଝଲସାଇ ଦେଇଥାଏ । କର୍ପୂର ଉଡ଼ିଯାଇଛି, କନା କେବଳ ପଡ଼ି ରହିଛି । ଓଡ଼ିଶାର ମାଟି ରତ୍ନଗର୍ଭା । ଏହାର କାନନ, କାନ୍ତାର, ପର୍ବତଗୁମ୍ଫାରେ ଅସୁମାରୀ ପ୍ରାଚୀନ କୀର୍ତ୍ତିର ଭଗ୍ନାବଶେଷ ଛପି ରହିଛି । ଭାଷଣପର୍ବର କଥା ମନେନାହିଁ । କିନ୍ତୁ ମନରେ ଗଭୀର ଛାପ ଅଙ୍କନ କରି ରହିଛି ଏହି ଐତିହ୍ୟର ପଦଧ୍ୱନି ।

• • •

# ସାହିତ୍ୟସରଣୀରେ ସାରସ୍ୱତ ସଂପର୍କ

**ଇଂ**ରେଜ ସରକାର ବିଦାୟ ନେଲେ । ସରକାରୀ କୋଠାମାନଙ୍କରୁ ଇଉନିଅନ ଜାକ ପତାକା ଓହ୍ଲାଇ ଦିଆଗଲା । ସଗର୍ବରେ ଫରଫର ହୋଇ ଉଡ଼ିଲା ସ୍ୱାଧୀନ ଭାରତର ତ୍ରିରଙ୍ଗା ପତାକା । ଏହିପରି ମାହେନ୍ଦ୍ର ମୁହୂର୍ତ୍ତରେ ମୁଁ ପୁରୀ କଲେଜରେ ଆଇ.ଏ. ଶ୍ରେଣୀର ଛାତ୍ର । କେତେ ସ୍ୱପ୍ନ, କେତେ ଉନ୍ମାଦନା ଓ ସମ୍ଭାବନାର ଆହ୍ୱାନରେ ତରୁଣପ୍ରାଣ ଉଦ୍‌ବେଳିତ ହେଉଥାଏ । ପାଠପଢ଼ା ସହିତ ଆଉ କିଛି କରିବା ପାଇଁ ମନ ହେଉଥାଏ ଉଚ୍ଚାଟିତ ଓ ଆଲୋଡ଼ିତ ।

ଆରମ୍ଭ ହେଲା ପ୍ରଥମ କରି କଲେଜ ଇଉନିଅନ ଓ ନିର୍ବାଚନ । ଅହେତୁକ ଭାବରେ ଛାତ୍ର ରାଜନୀତି ଆଡ଼କୁ ଆକୃଷ୍ଟ ହୋଇଗଲି । ପ୍ରଥମ ନିର୍ବାଚନରେ କଲେଜ ଓଡ଼ିଆ ସାହିତ୍ୟ ସମାଜର ସହକାରୀ ସଂପାଦକ ହେବାର ଗୌରବ ଲାଭ କଲି । ସାହିତ୍ୟସମାଜ ଆନୁକୂଲ୍ୟରେ ଆରମ୍ଭ ହେଲା ସାହିତ୍ୟ ସଭାର ଆୟୋଜନ । ଏଇଠି ପ୍ରଥମେ ଶୁଣିଲି ପ୍ରବୀଣ ସାହିତ୍ୟିକ ଆମର ଅଧକ୍ଷ ଗିରିଜାଶଙ୍କର ରାୟ, ଔପନ୍ୟାସିକ ଲକ୍ଷ୍ମୀଧର ନାୟକ, ଲକ୍ଷ୍ମୀନାରାୟଣ ସାହୁ ଓ ପୁରୀରେ ଅବସ୍ଥାନ କରୁଥିବା ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ ଇତିହାସ ଲେଖକ ସୂର୍ଯ୍ୟନାରାୟଣ ଦାସଙ୍କୁ । ଧୀରେଧୀରେ ଜାଣିଲି, ସୂର୍ଯ୍ୟନାରାୟଣ ଦାସ ଜଣେ ଗବେଷକ, ବିଶିଷ୍ଟ ସାମ୍ବାଦିକ ଓ ବହୁ ପୁସ୍ତକର ଲେଖକ ।

ସୂର୍ଯ୍ୟନାରାୟଣ ତରୁଣ ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲେ ସାହିତ୍ୟସେବା କରିବା ପାଇଁ । ସେ ଥିଲେ ଅତ୍ୟନ୍ତ ଛାତ୍ରବତ୍ସଳ । କ୍ରମେ ତାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ହୋଇ ତାଙ୍କ ଲିଖିତ ବହି ଆଣି ପଢ଼ିଲି । ଆଜୀବନ ସାହିତ୍ୟ ସାଧନା କରି ସେ ପ୍ରାୟ ଅଶୀଟି ଗ୍ରନ୍ଥ ଲେଖିଛନ୍ତି ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ । ତାଙ୍କର ଲିଖିତ ପୁସ୍ତକମାନଙ୍କ ମଧ୍ୟରେ ଓଡ଼ିଆ ସାହିତ୍ୟର ଇତିହାସ, ଓଡ଼ିଶାର ଇତିହାସ, ଊନବିଂଶ ଶତାବ୍ଦୀର ଓଡ଼ିଶା, ପାଇକ ବିଦ୍ରୋହ, ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ଲିଙ୍ଗରାଜ ମନ୍ଦିର, ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସ ଇତ୍ୟାଦି ଅନ୍ତର୍ଗତ । ତାଙ୍କର ପ୍ରେରଣାରେ ଏହି ବୟସରେ ପୁରୀର ପ୍ରସିଦ୍ଧ ରଘୁନନ୍ଦନ ଲାଇବ୍ରେରୀରେ ବସି ଅଧ୍ୟୟନ କଲି ଇଂରେଜ ଅମଳରେ ପ୍ରକାଶିତ ବିଭିନ୍ନ ଗେଜେଟିଅର ଓ କିଛି ଓଡ଼ିଶା ସଂପର୍କୀୟ ଇଂରେଜୀଭାଷାରେ ଲିଖିତ ଇତିହାସ । ସେ ସମସ୍ତ ପୁସ୍ତକ ପାଠକୁ ହଜମ କରିବାର ବୟସ ମୋର ହୋଇ ନଥିଲା । ମାତ୍ର ମୋର ଦୃଷ୍ଟିର ବଳୟ କ୍ରମେକ୍ରମେ ପ୍ରସାରିତ ହେଉଥିଲା । ସୂର୍ଯ୍ୟନାରାୟଣ ଜନ୍ମ ହୋଇଥିଲେ ୧୯୦୮ ମସିହା ଜୁଲାଇ ମାସ ପହିଲାରେ ଏବଂ ଶେଷନିଃଶ୍ୱାସ ତ୍ୟାଗ କଲେ ୧୯୮୨ ମସିହା ଜୁଲାଇମାସ

ଏଗାର ତାରିଖରେ । ତାଙ୍କର ମୃତ୍ୟୁରେ ମୋର ଆଦ୍ୟଜୀବନର ସାହିତ୍ୟସେବାର ପ୍ରେରଣାଦାତାଙ୍କୁ ହରାଇଲି ।

ସାଧାରଣତଃ ତରୁଣ ମନରେ ସ୍ୱପ୍ନର ଲହଡ଼ି ଖେଳି ବୁଲୁଥାଏ । ଲେଖିଚାଲିଲି କବିତା, କ୍ଷୁଦ୍ରଗଳ୍ପ ଓ କିଛି ପ୍ରବନ୍ଧ । ପ୍ରଥମେ ପ୍ରାୟ ଏକଶତ ପୃଷ୍ଠାର ଏକ ଉପନ୍ୟାସ ଲେଖିଥିଲି । ଏକ ଭାବପ୍ରବଣ ମୁହୂର୍ତ୍ତରେ ତାହା ଅଗ୍ନିଗର୍ଭରେ ଖାଦ୍ୟ ହୋଇଗଲା । ଆଉ କେବେ ଉପନ୍ୟାସରେ ହାତ ଦେଇ ନାହିଁ । ଲେଖିଲି କବିତା ଓ କ୍ଷୁଦ୍ରଗଳ୍ପ । ୧୯୪୮ ମସିହାରୁ ୧୯୫୪– ଏହି ଛଅବର୍ଷ ମଧ୍ୟରେ ମୋ ଲିଖିତ କ୍ଷୁଦ୍ରଗଳ୍ପକୁ ଆଲୋକକୁ ଆଣିଥିଲେ ଡଗର, ଜାଗରଣ, ତରଙ୍ଗ, ବୀଣା, ରବିବାର ପ୍ରଜାତନ୍ତ୍ର, ନବୀନ, ସଂଗ୍ରାମ ଓ ଆସନ୍ତାକାଲି । ସମୁଦାୟ ୧୭ଟି ଗଳ୍ପ ପ୍ରକାଶ ପାଇଥିଲା । ସେହିପରି ୧୯୪୯ ରୁ ୧୯୫୧ ଏଇ ୩ ବର୍ଷ ମଧ୍ୟରେ ୧୭ଟି କବିତା ମୁଦ୍ରିତ ହୋଇଥିଲା । ସେହି ପତ୍ରିକାଗୁଡ଼ିକ ହେଲେ ଚତୁରଙ୍ଗ, ପ୍ରଜାତନ୍ତ୍ର, ମୀନାବଜାର, ରବିବାର ପ୍ରଜାତନ୍ତ୍ର, ନବୀନ, ସଂଗ୍ରାମ, ଉତ୍କଳକେଶରୀ । କଲେଜ ଜୀବନରେ ଅନେକଗୁଡ଼ିଏ ସଂବାଦଧର୍ମୀ ପ୍ରବନ୍ଧ ଓ ଅନୁବାଦ ପ୍ରବନ୍ଧ ସହିତ କିଛି ସାହିତ୍ୟ ସମାଲୋଚନା ମଧ୍ୟ ଲେଖିପାରିଥିଲି । ୧୯୪୮ ଠାରୁ ୧୯୫୨ ମଧ୍ୟରେ ସମୁଦାୟ ୩୨ଟି ପ୍ରବନ୍ଧ ପ୍ରକାଶିତ ହୋଇଥିଲା ରବିବାର ପ୍ରଜାତନ୍ତ୍ର, ଝଙ୍କାର, ସହକାର, ସତ୍ୟବାଦୀ, କୁଙ୍କୁମ, ଡଗର, ନବୀନ, ଜାଗରଣ ଏବଂ ଦୈନିକ ଆଶାରେ । ଅଳ୍ପ କେତୋଟି ସାହିତ୍ୟ ଆଲୋଚନା ପ୍ରବନ୍ଧ ବ୍ୟତୀତ କୌଣସି କବିତା ବା ପ୍ରବନ୍ଧ ସାଇତି ରଖିପାରି ନାହିଁ । ଯେଉଁ କେତୋଟି ସାହିତ୍ୟ ସଂପର୍କୀୟ ଆଲୋଚନା ପ୍ରବନ୍ଧ ତତ୍କାଳୀନ ସୁଧୀ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା, ତାହା ହେଲା କୋଇଲି ସାହିତ୍ୟ, ଚଉତିଶା ସାହିତ୍ୟ, ପ୍ରବନ୍ଧ ସାହିତ୍ୟ, ଗଦ୍ୟ ସାହିତ୍ୟର କ୍ରମବିକାଶ, ଓଡ଼ିଆ ସାହିତ୍ୟ ଓ ଉପେନ୍ଦ୍ରଭଞ୍ଜ, ଗଳ୍ପ ସାହିତ୍ୟ ଓ ଫକୀରମୋହନ, ଉପନ୍ୟାସ ସାହିତ୍ୟ । ଆମ କଲେଜରେ ଓଡ଼ିଆ ସମ୍ମାନ ଶ୍ରେଣୀ ଆରମ୍ଭ ହୋଇ ନଥିଲା । ମୁଁ ଥିଲି ଅର୍ଥନୀତି ସମ୍ମାନର ଛାତ୍ର । ମାତ୍ର ପଣ୍ଡିତ ସୂର୍ଯ୍ୟନାରାୟଣଙ୍କ ପ୍ରଶଂସାକୁ ପାଥେୟ କରି ଲେଖିଚାଲିଥିଲି । ଆକସ୍ମିକ ଭାବରେ କଟକର ପତ୍ରିକାସଂପାଦକମାନେ ମୋର ପ୍ରବନ୍ଧ ପ୍ରକାଶ କରିବା ପାଇଁ ଆଗ୍ରହ ପ୍ରକାଶ କଲେ । ମୋତେ କେହି ଜାଣନ୍ତି ନାହିଁ କଲେଜରେ ଅଧ୍ୟୟନରତ ଛାତ୍ର ବୋଲି । ସେମାନେ ବିଚାରୁଥିଲେ ମୁଁ ଜଣେ ଅଭିଜ୍ଞ ଓ ବୟସ୍କ ସାହିତ୍ୟସେବୀ । ଧୀରେଧୀରେ ପ୍ରବନ୍ଧ ଲେଖାରେ ମନ ଲାଗିରହିଲା । ମୋର ଅକାଳ ମୃତ୍ୟୁ ହୋଇଗଲା କବିତା ଓ କ୍ଷୁଦ୍ରଗଳ୍ପ ଜଗତରୁ । ଛାତ୍ରଜୀବନରେ ଯେଉଁ ପତ୍ରିକାଗୁଡ଼ିକ ମୋର ପ୍ରବନ୍ଧକୁ ସ୍ଥାନିତ କରି ମୋତେ ସାହିତ୍ୟସେବାର ରଙ୍ଗମଞ୍ଚରେ ଠିଆହେବାର ସ୍ୱୀକୃତି ପ୍ରଦାନ କରିଥିଲେ, ସେମାନଙ୍କୁ ଏଠାରେ ସ୍ମରଣ କରୁଛି ।

କଟକର କଳିଙ୍ଗଭାରତୀ ଆନୁକୂଲ୍ୟରେ ପୁରୀରେ ଭଞ୍ଜଜୟନ୍ତୀର ଆୟୋଜନ ହେଉଥାଏ । ସେଠାରେ ଉପସ୍ଥିତ ରହନ୍ତି କଳିଙ୍ଗଭାରତୀର ସଭାପତି କବି ବିଚ୍ଛନ୍ଦଚରଣ ପଟ୍ଟନାୟକ, ପୁରୀର ଜଗବନ୍ଧୁ ସିଂହ, ହିନ୍ଦୀଶିକ୍ଷକ ନରସିଂହ ନନ୍ଦ, ପ୍ରସିଦ୍ଧ ଆଇନଜୀବୀ ଓ ଗୀତିକାର ଲୋକନାଥ ପଟ୍ଟନାୟକ, ସୂର୍ଯ୍ୟନାରାୟଣ ଦାସ ଓ ଛାତ୍ର ସାହିତ୍ୟ ସମାଜର ଦୁଇଜଣ

ଶକ୍ତିଶାଳୀ ବକ୍ତା ହୃଦାନନ୍ଦ ରାୟ ଓ ରଜତକୁମାର କର । ଏ ସଭାରେ କତିପୟ ଛାତ୍ରବନ୍ଧୁ ଗହଣରେ ମୁଁ ମଧ୍ୟ ଯୋଗ ଦେଉଥିଲି । ବିଚ୍ଛନ୍ଦଚରଣ ଥିଲେ ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ସ୍ୱାଭିମାନ-ଆନ୍ଦୋଳନର ପ୍ରଧାନ ସେନାପତି । କାରଣ ଇଂରେଜ ଶାସନ କାଳରେ ନବଯୁଗର ସାହିତ୍ୟସେବୀଗଣ ଅତି ଉଗ୍ରଭାବରେ ଇଂରେଜୀ ସାହିତ୍ୟ ଓ ବଂଗଳା ସାହିତ୍ୟକୁ ଅନୁକରଣ କରୁଥିଲେ । ସମୃଦ୍ଧ ପ୍ରାଚୀନ ଓଡ଼ିଆ ସାହିତ୍ୟ ଓ ସାଂସ୍କୃତିକ ପରଂପରା ସହିତ ସେମାନେ ଥିଲେ ପ୍ରାୟତଃ ସଂପର୍କଶୂନ୍ୟ । ବିଚ୍ଛନ୍ଦଚରଣ କଳିଙ୍ଗଭାରତୀ ଜରିଆରେ ସମଗ୍ର ଓଡ଼ିଶାରେ ଭଞ୍ଜଜୟନ୍ତୀ ଉପଲକ୍ଷରେ ଏକ ସାଂସ୍କୃତିକ ଆନ୍ଦୋଳନ କରି ସଫଳତା ଅର୍ଜନ କଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟ ସହିତ ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଂଗୀତ କ୍ଷେତ୍ରରେ କଳିଙ୍ଗଭାରତୀ ବୈପ୍ଳବିକ ଚେତନା ସୃଷ୍ଟି କରିଥିଲେ । ସେହି ଆନ୍ଦୋଳନ ଫଳଶ୍ରୁତି ହେଲା ଆଜି ଓଡ଼ିଶାର ନୃତ୍ୟ ନିର୍ଦ୍ଦେଶକ ଓ ଓଡ଼ିଶୀନୃତ୍ୟ ପୃଥିବୀର ବହୁ ସମ୍ଭ୍ରାନ୍ତ ଦେଶରେ ସମ୍ମାନିତ ଓ ଆଦୃତ । କଟକରେ ଛାତ୍ରଜୀବନ ଓ କର୍ମମୟଜୀବନରେ ବିଚ୍ଛନ୍ଦଚରଣଙ୍କ ନିକଟ ସଂପର୍କରେ ବାରମ୍ବାର ଆସିଥିଲି ଏବଂ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଭଞ୍ଜଜୟନ୍ତୀରେ ପ୍ରଧାନବକ୍ତା ହେବାର ସୌଭାଗ୍ୟ ମଧ୍ୟ ଲାଭ କରିଥିଲି । କ୍ଷଣଜନ୍ମା ବିଚ୍ଛନ୍ଦବାବୁ ମାତ୍ର ଷାଠିଏ ବର୍ଷ ବୟସରେ ୧୯୬୧ ସାଲ ଜାନୁଆରୀ ଚଉଦ ତାରିଖରେ ଇହଲୀଳା ସାଂଗ କରିଥିଲେ । ଓଡ଼ିଆ ସାହିତ୍ୟରେ ବିଜାତୀୟ ପ୍ରଭାବ ବିରୁଦ୍ଧରେ ତାଙ୍କର ସାରସ୍ୱତ ସଂଗ୍ରାମ ଚିରସ୍ମରଣୀୟ ।

୧୯୪୯ ମଧ୍ୟଭାଗରେ କଟକରେ ମୋର ଆରମ୍ଭ ହୁଏ ଏମ୍.ଏ. ଶ୍ରେଣୀର ଛାତ୍ରଜୀବନ । ଉତ୍କଳ ବିଶ୍ୱବିଦ୍ୟାଳୟର ପୋଥିବିଭାଗରେ ସହକାରୀ ଗବେଷକ ଭାବରେ ପାର୍ଟଟାଇମ୍ ଚାକିରୀ କରି ରେଭେନ୍ସାରେ ଅଧ୍ୟୟନ କରୁଥାଏ । ମୋ ସହିତ ଆଉଜଣେ ସହପାଠୀ ଥିଲେ ଶ୍ରୀନିବାସ ମିଶ୍ର ଯେ କି ପରବର୍ତ୍ତୀ ଜୀବନରେ ଓଡ଼ିଆ ସାହିତ୍ୟ ବିଭାଗର ପ୍ରଫେସର ଓ ଗବେଷକ ଭାବରେ ସୁପରିଚିତ । ଏଇଠି ପ୍ରଥମେ ନିକଟ ସଂପର୍କରେ ଆସିଲି ସ୍ୱନାମଧନ୍ୟ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସହିତ । ସେ ଥିଲେ ଆମ କାର୍ଯ୍ୟର ତତ୍ତ୍ୱାବଧାରକ । ଏକାଧିକ ପୋଥି ମିଳାଇ ଆମେ ଦୁଇବନ୍ଧୁ ସାରଳାଦାସଙ୍କର ଚଣ୍ଡୀପୁରାଣର ତୁଳନାତ୍ମକ ଅନୁଲିପି ଲିପିବଦ୍ଧ କରି ଅଧ୍ୟାପକ ମହାନ୍ତିଙ୍କୁ ଦେଖାଉଥିଲୁ । ଓଡ଼ିଆ ଏମ୍.ଏ. କ୍ଲାସରେ ସିନା ନାଁ ଲେଖାଇଲି, ଓଡ଼ିଆରେ ବିଶେଷ ଗବେଷଣା ପୁସ୍ତକ ଅଥବା ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ପୁସ୍ତକ ନଥାଏ । ଅତୀତରେ ଯେଉଁ କେତୋଟି ଆଲୋଚନା ପୁସ୍ତକ ଲିଖିତ ହୋଇଥିଲା, ତାହା ଉପଲବ୍ଧ ହେଉ ନଥାଏ । ପ୍ରାଚୀନ ଓଡ଼ିଆ କାବ୍ୟସାହିତ୍ୟ, ପଞ୍ଚସଖା ସାହିତ୍ୟ, ପ୍ରାଚୀନ ଓଡ଼ିଆ ଗଦ୍ୟ ମାଦଳାପାଞ୍ଜି ଓ ଅନ୍ୟାନ୍ୟ କେତେକ ଗ୍ରନ୍ଥର ସଂପାଦନା ଓ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ପ୍ରକାଶ କରିଥିଲେ ଅଧ୍ୟାପକ ଆର୍ତ୍ତବଲ୍ଲଭ ତାଙ୍କ ପ୍ରତିଷ୍ଠିତ ପ୍ରାଚୀ ସମିତି ଜରିଆରେ । ଆର୍ତ୍ତବଲ୍ଲଭଙ୍କ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧହିଁ ଥିଲା ଆମର ଓଡ଼ିଆ ଏମ୍.ଏ. ତରଙ୍ଗିଣୀ ପାରି ହେବା ପାଇଁ ଏକମାତ୍ର ଆଶ୍ରୟ । ତାଙ୍କର ଛାତ୍ର ହେବାର ସୌଭାଗ୍ୟ ଆମର ନଥିଲା, କାରଣ ସେ ଅବସର ଗ୍ରହଣ କରିସାରିଥିଲେ । ମୋର ସାହିତ୍ୟ ସଭାମାନଙ୍କରେ ଯୋଗଦେବାର ଏକ ଝୁଙ୍କ ଥାଏ । କଟକର ଉତ୍କଳ ସାହିତ୍ୟ ସମାଜ ଆଲୋଚନା ସଭାରେ ଯୋଗଦେଇ ଜାଣିଲି

ଯେ ଅଧ୍ୟାପକ ଆର୍ତ୍ତବଲ୍ଲଭ ସଭାପତି ଅଛନ୍ତି । ସାହିତ୍ୟ କ୍ଷେତ୍ରରେ ସେ ଥିଲେ ସର୍ବମାନ୍ୟ ବ୍ୟକ୍ତିତ୍ୱ । ତାଙ୍କ ବିଷୟରେ କ୍ରମେ ଅଧିକ ଜାଣିବାକୁ ଆଗ୍ରହୀ ହେଲି । ତାଙ୍କର ଜନ୍ମ ଏକ ସମ୍ଭ୍ରାନ୍ତ ପରିବାରରେ ୧୮୮୭ ମସିହା ଅଗଷ୍ଟ ମାସ ଏଗାର ତାରିଖରେ । ସବୁଦିନ ପାଇଁ ଆଖି ବୁଜିଲେ ୧୯୬୩ ସାଲ ସେପ୍ଟେମ୍ବର ମାସ ୩୦ ତାରିଖ । ଛାତ୍ରଜୀବନରେ ସେ ଥିଲେ ପ୍ରସିଦ୍ଧ ଫୁଟବଲ ଖେଳାଳୀ । ଗୌରବମୟ ଅଧ୍ୟାପକ ଜୀବନରେ ସେ ଥିଲେ ଅତ୍ୟନ୍ତ ସମ୍ମାନିତ ବ୍ୟକ୍ତିତ୍ୱ । ଇଂରେଜ ସରକାର ତାଙ୍କର ଗବେଷଣା କ୍ଷେତ୍ରରେ ନେତୃତ୍ୱ ପାଇଁ ସମ୍ମାନିତ କରିଥିଲେ ରାୟ ସାହେବ ଭାବରେ ୧୯୩୧ ରେ । ଆର୍ତ୍ତବଲ୍ଲଭଙ୍କୁ ଶ୍ରଦ୍ଧା ଓ ଅଭିନନ୍ଦନ ଜଣାଇ କୁଳବୃଦ୍ଧ ମଧୁସୂଦନ ଦାସ ଏକ ଚିଠି ଲେଖିଥିଲେ । ସେହି ଚିଠିର ଅବିକଳ ପ୍ରତିଲିପି ପୂର୍ବରୁ ଉଲ୍ଲେଖ କରିଛି ।

କୁଳବୃଦ୍ଧ ମଧୁସୂଦନଙ୍କର ଭବିଷ୍ୟତବାଣୀ ସାର୍ଥକ ହୋଇଅଛି । ଆର୍ତ୍ତବଲ୍ଲଭଙ୍କୁ ୧୯୪୧ ରେ ଇଂରେଜ ସରକାର 'ରାୟବାହାଦୁର', ୧୯୬୦ ରେ ଭାରତ ସରକାର ''ପଦ୍ମଶ୍ରୀ' ଉପାଧିରେ ସମ୍ମାନିତ କରିଥିଲେ । ଆନ୍ଧ୍ର ଗବେଷଣା ପରିଷଦ ଦ୍ୱାରା ବିଦ୍ୟାଭୂଷଣ, ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ଅନରାରୀ ଡି.ଲିଟ୍. ଉପାଧିରେ ଶ୍ରୀଯୁକ୍ତ ମହାନ୍ତିଙ୍କୁ ସମ୍ମାନିତ କରାଯାଇଥିଲା ।

ଉତ୍କଳ ସାହିତ୍ୟ ସମାଜ ଓଡ଼ିଶାର ଅନ୍ୟତମ ପ୍ରାଚୀନ ସାହିତ୍ୟ ଅନୁଷ୍ଠାନ । ୧୯୦୩ ସାଲର ପ୍ରଥମ ଭାଗରେ ଉତ୍କଳ ସାହିତ୍ୟ ସମାଜ କଟକରେ ଜନ୍ମଗ୍ରହଣ କରେ ଏବଂ ସେହିବର୍ଷ ଡିସେମ୍ବର ମାସ ୩୦/୩୧ ତାରିଖଦିନ କଟକ ସହରରେ ଉତ୍କଳ ସମ୍ମିଳନୀର ପ୍ରଥମ ଉତ୍ସବରେ ପ୍ରଥମ ବାର୍ଷିକ ଉତ୍ସବ ପାଳନ କରେ ।

ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କ୍ରମଶଃ ଇଂରେଜୀ ଶିକ୍ଷାପ୍ରାପ୍ତ ଯୁବକମାନଙ୍କ ଉଦ୍ୟମରେ ଓଡ଼ିଆ ଭାଷା ଓ ସାହିତ୍ୟର ଆଲୋଚନା କରିବା ପାଇଁ ଆଂଚଳିକ ସ୍ତରରେ ଅନେକ ସାଂସ୍କୃତିକ ଅନୁଷ୍ଠାନ ଜନ୍ମଗ୍ରହଣ କରେ । ସେମାନଙ୍କ ମଧ୍ୟରେ ବାଲେଶ୍ୱର ଉତ୍କଳ ଭାଷା ଉନ୍ନତିବିଧାୟିନୀ ସଭା–୧୮୬୬, କଟକ ସୋସାଇଟି–୧୮୬୬, କଟକର ଭାଷୋଦ୍ଦିପନୀ ସଭା– ୧୮୬୭, ଉତ୍କଳଉଲ୍ଲାସିନୀ ସଭା– ୧୮୬୯, କଟକ ଡିବେଟିଂ କ୍ଲବ୍– ୧୮୬୯, କଟକ ସୁହୃଦ ସମାଜ– ୧୯୭୨, ଉତ୍କଳଉଦ୍ଦିପନୀ ସଭା– ୧୮୭୪, ଉତ୍କଳ ସଭା– ୧୮୭୮, ଶିକ୍ଷାବିଧାୟିନୀ ସଭା– ୧୮୮୦, ଉତ୍କଳ ସାହିତ୍ୟ ସମ୍ମିଳନୀ– ୧୮୮୬, ପୁରୀ ସୋସାଇଟି–୧୮୭୦, ଗଞ୍ଜାମ ଉତ୍କଳ ହିତବାଦିନୀ ସଭା– ୧୮୭୨, କଟକ ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ ସମିତି–୧୮୭୭, ପୁରୀ ଲିଟରାରୀ କ୍ଲବ୍– ୧୮୯୪, ଅନୁଗୁଳ ଶିକ୍ଷାବିବର୍ଦ୍ଧିନୀ ସଭା– ୧୮୯୭, ଖଡ଼ିଆଳ ସାହିତ୍ୟ ସମିତି–୧୮୮୩, ପାରଳା ଉତ୍କଳ ହିତୈଷିଣୀ ସଭା, କଟକ ଟ୍ରେନିଂ ସ୍କୁଲ ଆଲୋଚନା ସଭା–୧୮୯୩ ପ୍ରଭୃତି ବିଶେଷ ଉଲ୍ଲେଖନୀୟ । ମାତ୍ର ଏହି ଅନୁଷ୍ଠାନଗୁଡ଼ିକ ଥିଲେ ପ୍ରାୟତଃ ଆଂଚଳିକ ଏବଂ ଅଳ୍ପକାଳ ସ୍ଥାୟୀ । କେବଳ ଖଡ଼ିଆଳ ସାହିତ୍ୟ ସମିତି ଆଜିପର୍ଯ୍ୟନ୍ତ ସକ୍ରିୟ ରହିଛି । ଏ କ୍ଷେତ୍ରରେ ଉତ୍କଳ ସାହିତ୍ୟ ସମାଜ ଏକ ବ୍ୟତିକ୍ରମ । ଏହି ଅନୁଷ୍ଠାନ ସମଗ୍ର ଉତ୍କଳବାସୀଙ୍କୁ ପ୍ରତିନିଧିତ୍ୱ

କରି ଶତବାର୍ଷିକୀ ଉତ୍ସବ ପାଳନ କରିସାରିଛି । ଯେଉଁ କୃତବିଦ୍ୟ ଓଡ଼ିଆ ସାହିତ୍ୟିକଗଣ ଉତ୍କଳ ସାହିତ୍ୟ ସମାଜର ସଭାପତି ଆସନ ଅଳଙ୍କୃତ କରି ଆସିଛନ୍ତି, ସେମାନେ ହେଲେ ମଧୁସୂଦନ ରାଓ, ଫକୀରମୋହନ ସେନାପତି, ରାମଶଙ୍କର ରାୟ, ଅଜୟଚନ୍ଦ୍ର ଦାସ, ଗୋପାଳଚନ୍ଦ୍ର ପ୍ରହରାଜ, ଭିକାରୀଚରଣ ପଟ୍ଟନାୟକ, ଶଶିଭୂଷଣ ରାୟ, ପ୍ରାଣକୃଷ୍ଣ ପରିଜା, ଚିନ୍ତାମଣି ଆଚାର୍ଯ୍ୟ, ରତ୍ନାକର ପତି, ବୀରକିଶୋର ରାୟ ପ୍ରଭୃତି ମୁଁ ଯେତେବେଳେ ୧୯୪୯ ମସିହାରେ ଏମ୍.ଏ. ଶ୍ରେଣୀର ଛାତ୍ର, ସେତେବେଳେ ଅଧ୍ୟାପକ ଆର୍ତ୍ତବଲ୍ଲଭ ସଭାପତି ଏବଂ ଆମର ବରେଣ୍ୟ ଅଧ୍ୟାପକ ରାଜକିଶୋର ରାୟ ସଂପାଦକ । ଏହି ସମୟରେ ଡାକବାଜି ଯନ୍ତ୍ର ଆସି ନଥିଲା । ସାହିତ୍ୟ ସଭାର ଶ୍ରୋତା ଭାବରେ ଅତ୍ୟନ୍ତ ମୁଗ୍ଧ ନେତ୍ରରେ ଦର୍ଶକମଣ୍ଡଳୀରେ ଉପସ୍ଥିତ ପ୍ରତିଷ୍ଠିତ ସାହିତ୍ୟିକମାନଙ୍କୁ ଲକ୍ଷ୍ୟ କରୁଥିଲି ଏବଂ ସେମାନଙ୍କୁ ଆଗ୍ରହରେ ଶୁଣୁଥିଲି । ଏହି ବାଣୀସାଧକମାନେ ହେଲେ ବୟୋବୃଦ୍ଧ ବାଳକୃଷ୍ଣ ପଟ୍ଟନାୟକ, ଅନନ୍ତପ୍ରସାଦ ପଣ୍ଡା, କାଳିନ୍ଦୀଚରଣ ପାଣିଗ୍ରାହୀ, ଗୋଦାବରୀଶ ମହାପାତ୍ର, କମଳାକାନ୍ତ ଦାସ, ନବକିଶୋର ଦାସ, ସରଳା ଦେବୀ, ଶରତଚନ୍ଦ୍ର ମୁଖାର୍ଜୀ, ସୁଧାକର ପଟ୍ଟନାୟକ, ଗୌରୀକୁମାର ବ୍ରହ୍ମା, ନବକୁମାର ଦାସ, ରାଧାମୋହନ ଗଡ଼ନାୟକ, ଅନନ୍ତ ପଟ୍ଟନାୟକ । ଅନେକ ସମୟରେ ପଣ୍ଡିତ ନୀଳକଣ୍ଠ, ବିଚ୍ଛନ୍ଦଚରଣ ପଟ୍ଟନାୟକ, ମାୟାଧର ମାନସିଂହ ମଧ୍ୟ ଉପସ୍ଥିତ ରହୁଥିଲେ । ତରୁଣ ଛାତ୍ରଜୀବନରେ ସେମାନଙ୍କ ଆଲୋଚନା ଶ୍ରବଣ କରିବାର ସୌଭାଗ୍ୟ ଉପଲବ୍ଧ ହେଉଥିଲା ସାହିତ୍ୟ ସମାଜରେ । ଆର୍ତ୍ତବଲ୍ଲଭ ସଭାପତି ଥିବା ସମୟରେ ଜଣେ ଛାତ୍ର ଭାବରେ ନିମନ୍ତ୍ରିତ ହୋଇ କବି ନନ୍ଦକିଶୋର ବଳଙ୍କ ବିଷୟରେ ଏକ ପ୍ରବନ୍ଧ ପାଠ କରିବାର ଗୌରବ ଅର୍ଜନ କରିଥିଲି । ଏହାଥିଲା ମୋ ପାଇଁ ଏକ ଦୁର୍ଲ୍ଲଭ ଅନୁଭୂତି ।

୧୯୫୪ ସାଲ ଜୁଲାଇ ମାସରେ ଖ୍ରୀଷ୍ଟ କଲେଜରେ ଓଡ଼ିଆ ସାହିତ୍ୟ ବିଭାଗରେ କନିଷ୍ଠତମ ଅଧ୍ୟାପକ ଭାବରେ ଯୋଗ ଦେଇଥାଏ ଏହା ମଧ୍ୟରେ । ସାହିତ୍ୟ ସମାଜର ସଭ୍ୟ ହୋଇଯାଇଥାଏ । ୧୯୫୫ ମସିହାରେ କର୍ମକର୍ତ୍ତାମାନଙ୍କର ନିର୍ବାଚନ ହେଲା । ଆଜିକାଲି ପରି ନିର୍ବାଚନ ପ୍ରତିଯୋଗିତାମୂଳକ ହେଉ ନଥିଲା । ଆପୋଷରେ ମୁଷ୍ଟିମେୟ ସାହିତ୍ୟିକ ଏକାଠି ହୋଇ ସଭାପତି, ସଂପାଦକ ଓ କାର୍ଯ୍ୟକାରୀ ସମିତି ନିର୍ବାଚନ କରୁଥିଲେ । ୧୯୫୫ ମସିହା ଅଗଷ୍ଟ ମାସର ଗୋଟିଏ ଛୁଟିଦିନ । ନୂତନ ବର୍ଷ ପାଇଁ ନିର୍ବାଚନ ହେବ । ସଭ୍ୟ ଭାବରେ ସେହି ବୟୋଜ୍ୟେଷ୍ଠ ସାହିତ୍ୟସେବୀମାନଙ୍କ ଗହଣରେ ମୁଁ ମଧ୍ୟ ଉପସ୍ଥିତ ଥାଏ । ବିନା ପ୍ରତିଦ୍ୱନ୍ଦ୍ୱିତାରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି, ପ୍ରସିଦ୍ଧ ଐତିହାସିକ, ପ୍ରାବନ୍ଧିକ ଓ ଶିଶୁ ସାହିତ୍ୟିକ ସର୍ବୋପରି ସ୍ୱନାମଧନ୍ୟ ଆଇନଜୀବୀ ଚିନ୍ତାମଣି ଆଚାର୍ଯ୍ୟ ସଭାପତି ହେଲେ । ପ୍ରଫେସର କରୁଣାକର କର ଉପସଭାପତି ହେବା ସହିତ ଆଇନଜୀବୀ ଓ ନାଟ୍ୟକାର (ପରେ ଉଚ୍ଚନ୍ୟାୟାଳୟର ବିଚାରପତି) ନବ କୁମାର ଦାସ ଓ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ହେଲେ ଯୁଗ୍ମ ସଂପାଦକ । କାର୍ଯ୍ୟକାରୀ ସମିତି ପାଇଁ ଉପଯୁକ୍ତ ସଂଖ୍ୟକ ବରିଷ୍ଠ ସାହିତ୍ୟସେବୀ ଉପସ୍ଥିତ ନଥିଲେ । ମୋପରି ଜଣେ କନିଷ୍ଠ ସଭ୍ୟମୁଣ୍ଡରେ ସୁନାକଳସ ଢଳାଗଲା । ମୋ ପାଖରେ ବସିଥିଲେ ସମସ୍ତଙ୍କର ଆଦରର ଅଜା ବାଳକୃଷ୍ଣ ପଟ୍ଟନାୟକ । ଚିର ଜୁହାର, ଯୁଗୋପହାର,

ଫୁଲ ବଉଳବେଣୀ ଓ ଚାରୁ ଲବଙ୍ଗଲତା, ଜାତୀୟ ଚମ୍ପୂ, ପଲ୍ଲିଭାଷା, ତ୍ରିକାଳ କୋଇଲି, କନ୍ୟା ବିଦାୟ, ନାରୀ ଜାତି ପ୍ରତି ଭାରତ ମାତାର ଆକ୍ଷେପ, ଶୁଭସ୍ୱପ୍ନ, ମୋ ମା', ମା' ବୋଲି, ପକ୍ଷୀର ଜାତିପ୍ରେମ ପ୍ରଭୃତି ଅନେକ କ୍ଷୁଦ୍ର ଅଥଚ ଲୋକପ୍ରିୟ କବିତାଗ୍ରନ୍ଥର ସେ ରଚୟିତା । ସେ ମୋ ନାଁଟିକୁ ପ୍ରସ୍ତାବ କରିଦେଲେ କାର୍ଯ୍ୟକାରୀ ସମିତିର ସଭ୍ୟ ହେବା ପାଇଁ । କେଉଁ ମାହେନ୍ଦ୍ର ମୁହୂର୍ତ୍ତରେ ସଭ୍ୟ ହୋଇଥିଲି କେଜାଣି, ପ୍ରାୟ ଅର୍ଦ୍ଧଶତାବ୍ଦୀକାଳ ସାହିତ୍ୟ ସମାଜର କାର୍ଯ୍ୟନିର୍ବାହୀ ସମିତିରେ ନିରବଚ୍ଛିନ୍ନ ଭାବରେ ସଭ୍ୟ ରହିଥିଲି ଏବଂ ଦୁଇଥର ସଭାପତି ଓ ଥରେ ସଂପାଦକ ଦାୟିତ୍ୱ ମଧ୍ୟ ତୁଲାଇଥିଲି ।

ଉତ୍କଳ ସାହିତ୍ୟ ସମାଜର କର୍ମକର୍ତ୍ତା ଭାବରେ ଓଡ଼ିଶାର ବହୁ ପ୍ରସିଦ୍ଧ ଲେଖକ ଲେଖିକାମାନଙ୍କ ନିକଟ ସଂପର୍କରେ ଆସିବାର ସୌଭାଗ୍ୟ ମିଳିଥିଲା । ୧୯୫୫ ମସିହାର ପ୍ରଥମ କାର୍ଯ୍ୟକାରୀ ସମିତି ବୈଠକରେ ଉତ୍କଳ ଗୌରବ ମଧୁସୂଦନ ପାଠାଗାରକୁ ସଜାଡ଼ିବାର ଦାୟିତ୍ୱ ''ସମାଜ''ର ପ୍ରବୀଣ ସହସଂପାଦକ ଓ ସୁସାହିତ୍ୟିକ ଉଦୟନାଥ ଷଡଙ୍ଗୀ ଓ ମୋ ଉପରେ ନ୍ୟସ୍ତ କରାଗଲା । ଉଦୟନାଥ ବାବୁ 'ସମାଜ' ପତ୍ରିକାର ଦାୟିତ୍ୱରେ ଅତ୍ୟନ୍ତ କାର୍ଯ୍ୟବ୍ୟସ୍ତ । ସେ ଜଣେ ବିଶିଷ୍ଟ ଅନୁବାଦକ ଓ ଗଳ୍ପଲେଖକ ଓ ଶିଶୁ ସାହିତ୍ୟର ପ୍ରବୀଣ ସ୍ରଷ୍ଟା । ମାର୍କିନ ଉପନ୍ୟାସ 'ଟମକକାଙ୍କ କୁଟୀର' ଅନୁବାଦ କରି ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧି ଅର୍ଜନ କରିଅଛନ୍ତି । ସେ ଜଣେ ସ୍ୱାଧୀନତା ସଂଗ୍ରାମୀ । ଏହି ସ୍ୱନାମଧନ୍ୟ ଲେଖକଙ୍କର ଅନୁବାଦ ଗ୍ରନ୍ଥ ହେଲା ଟମକକାଙ୍କ କୁଟୀର, ବୌଦ୍ଧଜାତକ, ଆରବ୍ୟରଜନୀ, ମରଣ ଦୁଆରେ । ମୌଳିକ ଗଳ୍ପ ପୁସ୍ତକ ଲେଖିଛନ୍ତି ଦାମ୍ପତ୍ୟକଳହେ ଚୈବ, ମୁଦ୍‌ଗରମୋହ; ଶିଶୁମାନଙ୍କ ଉଦ୍ଦେଶ୍ୟରେ ରଚିତ ଗ୍ରନ୍ଥର ସଂଖ୍ୟା ସତୁରୀ । ଆତ୍ମଚରିତ 'ଗାନ୍ଧି ମହାରାଜାଙ୍କ ଶିଷ୍ୟ' ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ଏକ ଚମତ୍କାର ଇତିହାସ । ଏହିପରି ଜଣେ ପ୍ରସିଦ୍ଧ ଲେଖକଙ୍କ ସହିତ ପୁସ୍ତକାଳୟ ସଂଗଠନରେ ନିଯୁକ୍ତ ରହି ନିଜକୁ ଭାଗ୍ୟବାନ ମନେକରୁଥାଏ ।

ଉତ୍କଳଗୌରବ ମଧୁସୂଦନ ପାଠାଗାରର ଇତିହାସ ବଡ଼ ରହସ୍ୟପୂର୍ଣ୍ଣ । ସାହିତ୍ୟ ସମାଜ ପ୍ରଥମେ ଅଳ୍ପକିଛି ପୁସ୍ତକ ସଂଗ୍ରହ କରି କ୍ଷୁଦ୍ର ପାଠାଗାର ଆରମ୍ଭ କରିଥିଲେ । ପାଠାଗାର ପାଇଁ ସ୍ୱତନ୍ତ୍ର ସ୍ଥାୟୀ ଘର ନଥିଲା । ଏହି ସଂପର୍କରେ ସ୍ୱାଧୀନତା ସଂଗ୍ରାମୀ, ସୁଲେଖିକା ଓ ଉତ୍କଳ ସାହିତ୍ୟ ସମାଜର ପୂର୍ବତନ ସଂପାଦିକା ସରଳା ଦେବୀ ''ପୁଣ୍ୟସ୍ମୃତି'' ଶୀର୍ଷକରେ ନିମ୍ନଲିଖିତ ରୂପେ ସ୍ମୃତିଚାରଣ କରିଯାଇଛନ୍ତି । ୧୯୪୪ ମସିହାରେ ସେ ଥିଲେ ଉତ୍କଳ ସାହିତ୍ୟ ସମାଜର ସଂପାଦିକା ଏବଂ ସଭାପତି ଥିଲେ ତତ୍କାଳୀନ ଆଡ୍‌ଭୋକେଟ୍ ଜେନେରାଲ ବୀରକିଶୋର ରାୟ । ପରେ ସେ ପାଟଣା ହାଇକୋର୍ଟର ବିଚାରପତି ଓ ଓଡ଼ିଶା ହାଇକୋର୍ଟର ପ୍ରଥମ ମୁଖ୍ୟ ବିଚାରପତି ହୋଇଥିଲେ । ସାହିତ୍ୟସମାଜ ଆନୁକୂଲ୍ୟରେ ସାହିତ୍ୟ ସପ୍ତାହ ପାଳନ କରିବା ପାଇଁ ଦଶ ହଜାର ଟଙ୍କା ଚାନ୍ଦା ଆଦାୟ ହୋଇଥିଲା । ଏଥିରୁ ଚାରିହଜାର ଟଙ୍କା ବଳକା ରହିଥିଲା । ସଭାପତି ବୀରକିଶୋର ଆଦେଶ ଦେଲେ-''ସାହିତ୍ୟ ସପ୍ତାହ ଚାନ୍ଦାରୁ ବଞ୍ଚିଥିବା ଚାରିହଜାର ଟଙ୍କା ବାକି ଅଛି । ଏହି ଟଙ୍କାରେ ମଧୁବାବୁଙ୍କ ନାମରେ ସାଧାରଣଙ୍କ ପଢ଼ାଶୁଣା ନିମନ୍ତେ ଗୋଟିଏ ପୁସ୍ତକାଗାର ଓ ପାଠାଗାର ସାହିତ୍ୟ ସମାଜରୁ

ସ୍ୱତନ୍ତ୍ର ହୋଇ ପ୍ରତିଷ୍ଠିତ କରାଯାଉ ।'' ଏଥିପାଇଁ ଏକ ଏଗାରଜଣିଆ କମିଟି ଗଠିତ ହେଲା ସ୍ୱାଧୀନତା ସଂଗ୍ରାମୀ ଭାଗିରଥୀ ମହାପାତ୍ରଙ୍କ ସଭାପତିତ୍ୱରେ । ଏହି କମିଟିରେ ଥିଲେ ଚିନ୍ତାମଣି ଆଚାର୍ଯ୍ୟ, ସରଳା ଦେବୀ, ଭୁବନାନନ୍ଦ ଦାସ, ଭିକାରୀଚରଣ ପଟ୍ଟନାୟକ, ପାରେଶ୍ୱର ମହାନ୍ତି ପ୍ରଭୃତି କଟକର କେତେଜଣ ପ୍ରସିଦ୍ଧ ନାଗରିକ । ଲାଇବ୍ରେରୀ ଭବନ ପାଇଁ ସ୍ୱତନ୍ତ୍ର ଜମି ଉପଲଭ୍ୟ ନ ହେବାରୁ ସାହିତ୍ୟ ସମାଜରେ ସଭାପତି ଥିବା ସମୟରେ ଚିନ୍ତାମଣି ଆଚାର୍ଯ୍ୟ ସାହିତ୍ୟ ସମାଜ ଭୂମିରେ ଲାଇବ୍ରେରୀ ଭବନ ନିର୍ମାଣ ପାଇଁ ଅନୁମତି ଦେଇଦେଲେ । ଏହି ଉଦ୍ଦେଶ୍ୟରେ ପାରଳାଖେମୁଣ୍ଡି ମହାରାଜା ଗଜପତି ନାରାୟଣ ଦେବ ଅନେକ ସାହାଯ୍ୟ କରିଥିଲେ । ସାହିତ୍ୟ ସମାଜର ନିଜ ଭୂମିରେ ଦଣ୍ଡାୟମାନ ଏହି ପାଠାଗାର ଭବନ ସ୍ୱତନ୍ତ୍ର ଏବଂ ସ୍ୱାଧୀନ ଥିଲା । ଏଥିରେ ସାହିତ୍ୟ ସମାଜର କୌଣସି ଅଧିକାର ନଥିଲା ଯଦିଓ ସାହିତ୍ୟ ସମାଜର ପ୍ରତ୍ୟକ୍ଷ ଦାୟିତ୍ୱରେ ଏହା ପରିଚାଳିତ ହେଉଥାଏ ।

ପ୍ରବୀଣ ସାହିତ୍ୟସେବୀମାନଙ୍କ ସହିତ ଆମେ ଏକ ତରୁଣଗୋଷ୍ଠୀ ସାହିତ୍ୟ ସମାଜ ସହିତ ସଂପୃକ୍ତ ରହିଥାଉ । ମୋ ସହିତ ମାତୃଭୂମିର ପୂର୍ବତନ ସଂପାଦକ ବିଚିତ୍ରାନନ୍ଦ କର, ମୁରାରୀମୋହନ ଜେନା, ପରମାନନ୍ଦ ଅଧିକାରୀ, ଦୁର୍ମୁଖ ର ସଂପାଦକ ଅଚ୍ୟୁତାନନ୍ଦ କର, ରବିନାରାୟଣ ମହାପାତ୍ର ପ୍ରଭୃତି ଅତ୍ୟନ୍ତ ଉତ୍ସାହର ସହିତ ସାହିତ୍ୟସମାଜ କାର୍ଯ୍ୟରେ ଅଂଶଗ୍ରହଣ କରୁଥାଉ । ଆମରି ହତା ମଧ୍ୟରେ ଆମରି ଜମି ଉପରେ ମଧୁସୂଦନ ପାଠାଗାର ଏକ ସ୍ୱାଧୀନ ସଂସ୍ଥା ହୋଇ ରହିବ ଏକଥା ଆମର ଦେହସୁହା ହେଉ ନଥାଏ । ତେବେ ଏହି ପାଠାଗାର ପାଇଁ ରେଜିଷ୍ଟ୍ରୀଭୁକ୍ତ ପରିଚାଳକମାନେ ସରଳା ଦେବୀଙ୍କ ବ୍ୟତୀତ ସମସ୍ତେ ସ୍ୱର୍ଗବାସୀ । ୧୯୬୩ ମସିହାରେ କାଳିନ୍ଦୀଚରଣ ପାଣିଗ୍ରାହୀ ସଭାପତି ହେଲେ ଏବଂ ମୁଁ ଓ ବିଚିତ୍ରାନନ୍ଦ କର ସଂପାଦକ ରହିଲୁ । ଆମର ତରୁଣ ବନ୍ଧୁମାନେ କାର୍ଯ୍ୟକାରୀ ସମିତିର ସଭ୍ୟ । ସରଳା ଦେବୀ ଥାଆନ୍ତି ଉପସଭାପତି । ଯଦି ସେ କାଲି ଆଖି ବୁଜିଦେବେ, ଏହି ପାଠାଗାରର ମାଲିକ କିଏ ହେବ ? ତାଙ୍କୁ ବହୁତ ବୁଝାଇ ଏକମତ କଲୁ । ସେ ସାହିତ୍ୟ ସମାଜକୁ ଏହି ପାଠାଗାରର ମାଲିକାନା ହସ୍ତାନ୍ତର କରିଦେଲେ । ଏ କଥା ହୁଏତ ଅନେକ ବିସ୍ମୃତ ହୋଇଯିବେଣି । ମଧୁସୂଦନ ପାଠାଗାର ସ୍ୱତନ୍ତ୍ର ରେଜିଷ୍ଟ୍ରୀଭୁକ୍ତ ଅନୁଷ୍ଠାନ ହେବା ପୂର୍ବରୁ ସାହିତ୍ୟସମାଜ କକ୍ଷରେ ଏକ ପାଠାଗାର ପାଇଁ ପୁସ୍ତକ ସଂଗ୍ରହ ହେଉଥାଏ । ୧୯୫୦-୫୧ ମସିହାରେ ଊନବିଂଶ ଶତାବ୍ଦୀର ଅନେକ ପୁରୁଣା ପତ୍ରିକା ଓ ରେକର୍ଡ଼ ସଂଗ୍ରହ କରାଯାଇ ଲାଇବ୍ରେରୀର ସମ୍ପତ୍ତି ହୋଇଥିଲା । ପୁସ୍ତକ ରଖିବା ପାଇଁ ସ୍ୱତନ୍ତ୍ର କକ୍ଷର ଅଭାବରେ ସମସ୍ତ ପତ୍ରିକା ଓ ପୁସ୍ତକ ବକ୍ତୃତା ମଞ୍ଚର ଉପରିଭାଗ କକ୍ଷରେ ଜମା ରହିଥାଏ । ସେ ସମସ୍ତ ପୁସ୍ତକ ଓ ପତ୍ରିକାକୁ ଏହି ନୂତନ କକ୍ଷକୁ ଆଣି ବିଷୟାନୁକ୍ରମିକ ସଜ୍ଜୀକରଣ ଦାୟିତ୍ୱ ଆମ ଦୁହିଙ୍କ ଉପରେ ନ୍ୟସ୍ତ ରହିଲା । ଆଜି ମଧୁସୂଦନ ପାଠାଗାର ସାଧାରଣ ପାଠକ ଓ ଗବେଷକମାନଙ୍କର ଅତ୍ୟନ୍ତ ଆକର୍ଷଣୀୟ ଅନୁଷ୍ଠାନ । ସଭାପତି ଚିନ୍ତାମଣି ଆଚାର୍ଯ୍ୟଙ୍କ କାର୍ଯ୍ୟନିର୍ବାହିକା ସମିତିରେ ସଭ୍ୟଥିବା କେତେଜଣ ସାହିତ୍ୟିକ କଥା ସ୍ମରଣ କରୁଛି । ଉତ୍କଳକୁଟୀର ଶିଳ୍ପର ପ୍ରତିଷ୍ଠାତା, ବିଖ୍ୟାତ ନାଟ୍ୟକାର ଓ ଆଇନଜୀବୀ ଭିକାରୀ ଚରଣ ପଟ୍ଟନାୟକ ଥାଆନ୍ତି ଅନ୍ୟତମ ବରେଣ୍ୟ

ସଭ୍ୟ । ଏମ୍.ଏ. ଶ୍ରେଣୀର ଛାତ୍ର ଅବସ୍ଥାରେ ତାଙ୍କ ଲିଖିତ ନାଟକ କଟକ ବିଜୟ, ନନ୍ଦିକେଶ୍ୱରୀ, ରତ୍ନମାଳୀ, ସଂସାରଚିତ୍ର, ସୁଶୀଳା, ଯୌତୁକ ପ୍ରହସନ, ରାଜା ପୁରୁଷୋତ୍ତମଦେବ, ନିରୁପମା, ଅଦ୍ଭୁତ ଆଦର୍ଶ ପ୍ରଭୃତି ପାଠ କରିଥିଲି । ଏହିପରି ଜଣେ ଲେଖକଙ୍କର ନିକଟ ସଂପର୍କରେ ଆସିବାର ସୁଯୋଗ ପାଇ ନିଜକୁ ଧନ୍ୟ ମନେକରୁଥାଏ । ଦିନେ ଅତ୍ୟନ୍ତ ସ୍ନେହରେ ସେ ମୋତେ ଡାକି ନେଇଗଲେ ରାମଚନ୍ଦ୍ର ଭବନ ସମ୍ମୁଖରେ ଥିବା ତାଙ୍କ ଘରକୁ ଆଦର୍ଶ କୁଟୀରଶିଳ୍ପ ଅନୁଷ୍ଠାନ ଦେଖାଇବା ପାଇଁ । ତାଙ୍କ ନିର୍ମିତ ଅଭଙ୍ଗା କଣ୍ଢେଇ ଅତ୍ୟନ୍ତ ପ୍ରସିଦ୍ଧି ଅର୍ଜନ କରିଥାଏ ।

୧୯୫୮–୬୧ ମସିହାଯାଏ ପ୍ରସିଦ୍ଧ ବୈଜ୍ଞାନିକ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ପ୍ରାଣକୃଷ୍ଣ ପରିଜା ହେଲେ ସାହିତ୍ୟ ସମାଜର ସଭାପତି । ସଂପାଦକ ହେଲେ ଅଧ୍ୟାପକ (ଭରଦ୍ୱାଜ) ଜାନକୀବଲ୍ଲଭ ମହାନ୍ତି ଓ ବିଚିତ୍ରାନନ୍ଦ କର । ମୁଁ ଥାଏ ଅନ୍ୟତମ କାର୍ଯ୍ୟକାରୀ ସମିତି ସଭ୍ୟ । ପରିଜା ସାହେବ ୧୯୩୫ ମସିହାରେ ସଭାପତି ଭାବରେ କାର୍ଯ୍ୟ କଲାବେଳେ ଉପସଭାପତି ଥିଲେ ପ୍ରସିଦ୍ଧ ପ୍ରାବନ୍ଧିକ ଓ ଦାର୍ଶନିକ ବିପିନବିହାରୀ ରାୟ । ସଂପାଦକ ରହିଥିଲେ ସୁସାହିତ୍ୟିକ ଶଶିଭୂଷଣ ରାୟ ଓ କବି ବିଚ୍ଛନ୍ଦଚରଣ ପଟ୍ଟନାୟକ । କୁଳପତି ପରିଜାଙ୍କର ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ସାହିତ୍ୟରେ ଅଗାଧ ପ୍ରବେଶ ଥିଲା । ସେ ପ୍ରଥମେ ଲୋକପ୍ରିୟ ବିଜ୍ଞାନ ସାହିତ୍ୟ ପ୍ରଚାର ପାଇଁ ଉଦ୍ୟମ କରିଥିଲେ । ଭାଷଣ ଦେଲାବେଳେ ଖାଣ୍ଟି ସରଳ ଓଡ଼ିଆ ଭାଷାରେ ଓଡ଼ିଆ ଭାଗବତ ଓ ନାନା ଢଗଢମାଳି ଉଦ୍ଧାର କରି କହିବା ତାଙ୍କର ଅଭ୍ୟାସ ଥିଲା । ସମୟଜ୍ଞାନ ଅତ୍ୟନ୍ତ କଠୋର ଭାବରେ ପାଳନ କରୁଥିଲେ । ମାପିଚୁପି କଥା କହିବାରେ ସେ ଥିଲେ ଆଦର୍ଶସ୍ଥାନୀୟ । ସମକାଳୀନ ଶିକ୍ଷାବିତ୍‌ମାନଙ୍କ ଗହଣରେ ସେ ଥିଲେ ଏକ ଲିଜେଣ୍ଡ । ଏପରି ଜ୍ଞାନୀ ଓ ସ୍ଥିତପ୍ରଜ୍ଞ ବ୍ୟକ୍ତିତ୍ୱଙ୍କ ସହିତ ଉତ୍କଳ ସାହିତ୍ୟ ସମାଜ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ପୋର୍ଟସ୍ ପରିଚାଳନା ସମିତିର ଅନ୍ୟତମ ସଭ୍ୟ ଭାବରେ ନିକଟ ସଂପର୍କରେ ଆସିବାର ସୌଭାଗ୍ୟ ପାଇଥିଲି । ୧୯୬୧ ମସିହାରେ ସାହିତ୍ୟ ସମାଜର ସଭାପତି ନିର୍ବାଚିତ ହେଲେ ଗବେଷକ ଓ ଅବସରପ୍ରାପ୍ତ ପ୍ରଶାସକ ସୁଧାକର ପଟ୍ଟନାୟକ । "ସଂବାଦପତ୍ରରୁ ଓଡ଼ିଶାର କଥା" ପୁସ୍ତକ ପାଇଁ ସେ ଚିରସ୍ମରଣୀୟ ହୋଇ ରହିବେ । ତତ୍କାଳୀନ ସାହିତ୍ୟ ମାସିକରେ ଅନେକ ଗବେଷଣାତ୍ମକ ଐତିହାସିକ ପ୍ରବନ୍ଧର ସେ ସ୍ରଷ୍ଟା । ତାଙ୍କ ସମୟରେ ମୁଁ ମଧ୍ୟ କାର୍ଯ୍ୟକାରୀ ସମିତିର ଅନ୍ୟତମ ସଭ୍ୟ ଭାବରେ ନିର୍ବାଚିତ । ଏହି ସମୟରେ ଯେଉଁ ବରେଣ୍ୟ ସଭ୍ୟମାନଙ୍କ ନିକଟ ସଂପର୍କରେ ଆସିବାରେ ସୁଯୋଗ ପାଇଥିଲି, ସେମାନେ ହେଲେ ବିଶିଷ୍ଟ କବି, ନବ୍ୟବାଦୀ ଆନ୍ଦୋଳନର ସ୍ରଷ୍ଟା, ଉତ୍କଳ ସମ୍ମିଳନୀର ନେତା ଆଇନଜୀବୀ ନବକିଶୋର ଦାସ, ଔପନ୍ୟାସିକ ଓ ଗାଳ୍ପିକ ଅନନ୍ତପ୍ରସାଦ ପଣ୍ଡା, କବି ମାୟାଧର ମାନସିଂହ ଓ ଅନ୍ୟମାନେ । ସାହିତ୍ୟ ଆଲୋଚନା ସଭା ଅତ୍ୟନ୍ତ ଆକର୍ଷଣୀୟ ହେଉଥିଲା । ବରେଣ୍ୟ ସାହିତ୍ୟିକମାନଙ୍କର ଭାଷଣ ଶୁଣିବାର ସୌଭାଗ୍ୟ ଅନେକ ସମୟରେ ମିଳୁଥିଲା । ପ୍ରାୟ ପ୍ରତ୍ୟେକ ଆଲୋଚନା ସଭାରେ ଔପନ୍ୟାସିକ ଅନନ୍ତ ପ୍ରସାଦ ଓ କବି ନବକିଶୋର ଅଂଶଗ୍ରହଣ କରୁଥିଲେ । ଏହି ପ୍ରସଙ୍ଗରେ କବି ମାନସିଂହଙ୍କ ସଂପର୍କରେ ଏକ ଘଟଣା ମନେପଡୁଛି । ଏତେବେଳକୁ ଭୁବନେଶ୍ୱରରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଜନ୍ମ ଗ୍ରହଣ

କରିସାରିଥାଏ । ଓଡ଼ିଶାର ବୟୋଜ୍ୟେଷ୍ଠ ସାହିତ୍ୟସେବୀମାନଙ୍କର ତାହା ଥାଏ ଏକ ମିଳନମଣ୍ଡପ । ଥରେ କବି ମାନସିଂହ ସାହିତ୍ୟ ସମାଜ କାର୍ଯ୍ୟକାରୀ ସମିତିରେ ପ୍ରସ୍ତାବ କଲେ ଏହି ପ୍ରାଚୀନ ଅନୁଷ୍ଠାନକୁ ସାହିତ୍ୟ ଏକାଡ଼େମୀ ସହିତ ମିଶାଇ ଦିଆଯାଉ । ପରିଚାଳନା ସମିତିରେ ଆମେ ଯେଉଁ କେତେଜଣ ତରୁଣ ଗୋଷ୍ଠୀ ଥିଲୁ, ଏହାର ପ୍ରବଳ ପ୍ରତିବାଦ କଲୁ । ଆଲୋଚନା ପ୍ରସଙ୍ଗରେ ଆମର ଯୁକ୍ତି ଥିଲା, ଉତ୍କଳ ସାହିତ୍ୟ ସମାଜ ଦଳ, ମତ, ଗୋଷ୍ଠୀ ନିର୍ବିଶେଷରେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳର ପ୍ରାଚୀନତମ ଅନୁଷ୍ଠାନ । ଏଠାରେ ପ୍ରାଚୀନ, ନବୀନ ସାହିତ୍ୟସେବୀମାନେ ଏକାଠିହେବାର ଅଧିକାର ପ୍ରାପ୍ତ ହୋଇଛନ୍ତି । ମାତ୍ର ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏକ ସରକାରୀ ପରିଚାଳିତ ଅନୁଷ୍ଠାନ । ସରକାର ଯେଉଁ ସାହିତ୍ୟସେବୀମାନଙ୍କୁ ମନୋନୀତ କରନ୍ତି, ସେମାନଙ୍କୁ ନେଇ ଏ ଅନୁଷ୍ଠାନ । ଏଠାରେ କିନ୍ତୁ ସମସ୍ତଙ୍କର ଅଧିକାର । ଏ ପ୍ରସ୍ତାବ ନାକଚ ହୋଇଗଲା । ସାହିତ୍ୟ ସମାଜ ପାଠାଗାରରେ ଅନେକ ଅମୂଲ୍ୟ ପତ୍ରିକା ସାଇତା ହୋଇ ରହିଛି । ଅଧିକାଂଶ ଜୀର୍ଣ୍ଣଶୀର୍ଣ୍ଣ । ବୈଜ୍ଞାନିକ ଉପାୟରେ ସେଗୁଡ଼ିକ ରକ୍ଷଣାବେକ୍ଷଣ ନକଲେ ଧୀରେ ଧୀରେ ତାହା ପାଠୋପଯୋଗୀ ହେବ ନାହିଁ । ଏଥିପାଇଁ ସରକାରଙ୍କୁ ପ୍ରାର୍ଥନା କରାଗଲା । ସେ ଜଣେ ଉଚ୍ଚପଦସ୍ଥ ଅଫିସରଙ୍କୁ ପଠାଇଲେ । ସେ ଏଠାରେ ଆସି ପ୍ରସ୍ତାବ କଲେ, ଏ ସବୁ ଦୁର୍ଲ୍ଲଭ ସମ୍ପତ୍ତିକୁ ରାଜ୍ୟ ସଂଗ୍ରହାଳୟକୁ ହସ୍ତାନ୍ତର କରାଯାଉ । ସେଠାରେ ଏହାର ଉପଯୁକ୍ତ ରକ୍ଷଣାବେକ୍ଷଣ ପାଇଁ ବ୍ୟବସ୍ଥା ହେବ । ଏଥିରେ ଆମ ତରୁଣ ଗୋଷ୍ଠୀ ଅରାଜି ହେଲୁ । ଓଡ଼ିଶା ଓ ଓଡ଼ିଶା ବାହାରୁ ବହୁ ଗବେଷକ ଏହି ପତ୍ରିକା ଅଧ୍ୟୟନ କରିବା ପାଇଁ ରାମଚନ୍ଦ୍ର ଭବନ ପାଠାଗାରକୁ ଆସୁଛନ୍ତି । ଯଦି ଏହା ସରକାରଙ୍କ ସଂଗ୍ରହାଳୟକୁ ହସ୍ତାନ୍ତର ହେବ, ଏଠାକୁ କିଏ କାହିଁକି ଆସିବ ? ସେହି ପଦସ୍ଥ ସରକାରୀ କର୍ମଚାରୀ ନିରାଶ ହୋଇ ଫେରିଗଲେ । ସୁଖର କଥା, ଏହା ମଧ୍ୟରେ ଅନେକ ପ୍ରାଚୀନ ପତ୍ରିକାକୁ ବୈଜ୍ଞାନିକ ପଦ୍ଧତିରେ ସୁରକ୍ଷା ପ୍ରଦାନ କରାଯାଇଛି ।

୧୯୬୩ ମସିହାର କଥା । ସାହିତ୍ୟ ସମାଜର ନିର୍ବାଚନ ପାଖେଇ ଆସିଲା । ଆମେ ତରୁଣଗୋଷ୍ଠୀ ବିଚାର କଲୁ, ଏଥର ସୁସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ଆମର ସଭାପତି ହେଲେ ଅନୁଷ୍ଠାନର ଗୌରବ ବଢ଼ିବ । ସେସମୟରେ ଆଜିକାଲି ପରି ନିର୍ବାଚନ ଝମେଲା ନଥିଲା । ବରିଷ୍ଠ ସାହିତ୍ୟିକମାନଙ୍କୁ ସସମ୍ମାନେ ନିର୍ବାଚନ କରାଯାଉଥିଲା । କାଳିନ୍ଦୀବାବୁ ସେତେବେଳେ କଟକ ଆକାଶବାଣୀ କେନ୍ଦ୍ରରେ କାର୍ଯ୍ୟ କରୁଥାନ୍ତି । ତାଙ୍କୁ ଏଇଥିପାଇଁ ରାଜି କରାଇବାକୁ ବନ୍ଧୁମାନେ ମୋତେ ଦାୟିତ୍ୱ ଦେଲେ । ଆକାଶବାଣୀ ଅଫିସରେ ପହଞ୍ଚି କାଳିନ୍ଦୀବାବୁଙ୍କୁ ତାଙ୍କ କକ୍ଷରେ ସମ୍ମାନ ଜଣାଇଲି । ସେ ହସିହସି କହିଲେ, ଆଜି କ'ଣ ତୁମର ଟକ୍ ଦେବାର ଅଛି ? କହିଲି, ନାହିଁ ସାର୍ ! ଆପଣଙ୍କ ପାଖକୁ ଆସିଛି ଏକ ଅନୁରୋଧ କରିବା ପାଇଁ । ଆମେ ତରୁଣଗୋଷ୍ଠୀ ବିଚାରିଲୁ, ଆପଣ ଆମ ସାହିତ୍ୟ ସମାଜର ସଭାପତି ହେବା ପାଇଁ ରାଜି ହୁଅନ୍ତୁ । ଆପଣ ଯୌବନକାଳରୁ ଏହି ଅନୁଷ୍ଠାନର ସକ୍ରିୟ ସଭ୍ୟ । ୧୯୪୧ ମସିହାରେ ପ୍ରଫେସର ରତ୍ନାକର ପତି ସଭାପତି ଥିବାବେଳେ ଆପଣ ଥିଲେ ସଂପାଦକ । ୧୯୪୯ ମସିହାରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ଥିଲେ ସଭାପତି ଓ ଆପଣ

ଉପସଭାପତି ଆସନ ଅଳଙ୍କୃତ କରିଥିଲେ । ଆପଣଙ୍କ ପରି ବରିଷ୍ଠ ସାହିତ୍ୟସେବୀ ସଭାପତି ହେଲେ ସାହିତ୍ୟ ସମାଜ ଗୌରବ ଅନୁଭବ କରିବ । କାଳିନ୍ଦୀଚରଣ ଥିଲେ ଅତ୍ୟନ୍ତ ବିନୟୀ ଓ ମଧୁରଭାଷୀ । ହସିହସି କହିଲେ, ମୋ ପରି ବୟସ୍କ ଲୋକ ସେ ନିର୍ବାଚନ ଝମେଲାରେ ପଶି କାହିଁକି ଅପଦସ୍ତ ହେବ ? କହିଲି, ସାର୍ ! ସେପରି ଆଶଙ୍କା କରନ୍ତୁ ନାହିଁ । ଆପଣ କେବେହେଲେ ପ୍ରତିଯୋଗିତାର ସମ୍ମୁଖୀନ ହେବେ ନାହିଁ । ଯୁକ୍ତି ସ୍ୱରୂପ ଗ୍ରହଣ କରାଯାଉ ଯେ ଆପଣ ନିର୍ବାଚନରେ ଠିଆ ହୋଇ ହାରିଯିବେ । ତେବେ ସେଥିରେ ଆପଣଙ୍କର କ୍ଷତି ହେବ ନାହିଁ, ତାହା ସମଗ୍ର ସାହିତ୍ୟ ସଂସାର ପାଇଁ ଅପଯଶ ଆଣିଦେବ । ଶେଷରେ ରାଜିହେଲେ ଗୋଟିଏ ସର୍ତ୍ତରେ । କହିଲେ, ତୁମେ ଯଦି ଅନ୍ୟତମ ସଂପାଦକ ରହିବ, ତେବେ ମୁଁ ପ୍ରସ୍ତୁତ ଅଛି । ବଡ଼ ଅଡୁଆରେ ପଡ଼ିଲି । ମୋର ସହଯୋଗୀ ବନ୍ଧୁମାନେ ଭାବିବେ ଯେ ମୁଁ ବୋଧହୁଏ ସଂପାଦକ ପଦ ପାଇଁ ଲାଳାୟିତ ହୋଇ ଏପରି କହୁଛି । ସେ ଯାହାହେଉ ଶେଷରେ କାଳିନ୍ଦୀବାବୁ ହେଲେ ସଭାପତି ଏବଂ ବିନାବାଧାରେ ବନ୍ଧୁ ବିଚିତ୍ରାନନ୍ଦ କର ଓ ମୁଁ ହେଲୁ ଯୁଗ୍ମ ସଂପାଦକ । ଆମ କାର୍ଯ୍ୟକାରୀ ସମିତିରେ ଯେଉଁ ବରେଣ୍ୟ ସାହିତ୍ୟସେବୀମାନେ ରହିଲେ, ସେମାନେ ହେଲେ ଐତିହାସିକ ସୁଧାକର ପଟ୍ଟନାୟକ, ସାମ୍ବାଦିକ ଚନ୍ଦ୍ରଶେଖର ମହାପାତ୍ର, ଆଇନଜୀବୀ ଓ ନାଟ୍ୟକାର ନବକୁମାର ଦାସ (ପରବର୍ତ୍ତୀ କାଳରେ ଉଚ୍ଚନ୍ୟାୟାଳୟର ବିଚାରପତି ଓ ସାହିତ୍ୟ ସମାଜର ସଭାପତି) ନାଟ୍ୟକାର ମନୋରଞ୍ଜନ ଦାସ, ବିପ୍ଳବୀ କବି ମନମୋହନ ମିଶ୍ର, ପ୍ରସିଦ୍ଧ କବି, ଗାଳ୍ପିକ ଓ ଶିଶୁସାହିତ୍ୟର ଲେଖକ ଅନନ୍ତ ପଟ୍ଟନାୟକ, ସ୍ୱାଧୀନତା ସଂଗ୍ରାମୀ ଓ ସୁଲେଖିକା ସରଳା ଦେବୀ (ଉପସଭାପତି) ଔପନ୍ୟାସିକ ଅନନ୍ତ ପ୍ରସାଦ ପଣ୍ଡା, ସାମ୍ବାଦିକ ନଗେନ ବେଉରିଆ, ଅଧ୍ୟାପକ ଓ କବି ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), କବି କୁଞ୍ଜବିହାରୀ ଦାଶ ଏବଂ ହାସ୍ୟ ଓ ବ୍ୟଙ୍ଗ ସାହିତ୍ୟର ଯାଦୁକର ଫତୁରାନନ୍ଦ । ଏହି ବରେଣ୍ୟ ସାହିତ୍ୟରଥୀମାନଙ୍କ ଗହଣରେ ସାହିତ୍ୟ ସମାଜ ହସି ଉଠୁଥାଏ । ସାହିତ୍ୟ ଆଲୋଚନା ସଭା ହୁଏ ଅତ୍ୟନ୍ତ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଓ ଆନନ୍ଦମୁଖର । ଗୋଟିଏ ଘଟଣା ମନେପଡୁଛି ଆମ ସଭାପତିଙ୍କ ବିଷୟରେ । ସେତେବେଳେ ନନ୍ଦିନୀ ଶତପଥୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନରେ ଆସୀନ । ସେ ଆମ ସଭାପତିଙ୍କ ଝିଅ । ବିଚାରିଲୁ, ଏହି ସମୟରେ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରି ସାହିତ୍ୟସମାଜର ଦୁଃଖ କହିଲେ ସରକାରୀ ଅନୁଦାନ କିଛି ଅଧିକ ହୋଇପାରିବ । କାରଣ ସାହିତ୍ୟସମାଜର ବିଶେଷ ଆୟ ନଥାଏ । ସାମାନ୍ୟ ହଲ୍‌ଭଡ଼ା ହେଲା ଏକମାତ୍ର ପାଥେୟ । ଏଥିରେ ବିଜୁଳିବିଲ୍ ଓ କର୍ମଚାରୀମାନଙ୍କ ଦରମା ଦେବାର ଅକୁଳାଣ ହୁଏ । ସାହିତ୍ୟ ସଂଗଠନ କିପରି ଆଗେଇ ପାରିବ ? କାର୍ଯ୍ୟକାରୀ ସମିତି ଆଲୋଚନା କରି ସଭାପତିଙ୍କ ନେତୃତ୍ୱରେ ଏକ ପ୍ରତିନିଧିଦଳ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ପ୍ରସ୍ତାବ ହେଲା । ସଭାପତି କହିଲେ, ବିଧି ଅନୁସାରେ ସଭାପତି ଏହି ପ୍ରତିନିଧିଦଳର ନେତୃତ୍ୱ ନେବା କଥା । ମୁଖ୍ୟମନ୍ତ୍ରୀ ମୋର କନ୍ୟା ସତ, ଯଦି ସେ ମୋର ଆଜ୍ଞାଧୀନା ହୋଇଥାଆନ୍ତେ, ଏତେବେଳକୁ ଘରର ଚାରିକାନ୍ଥ ମଧ୍ୟରେ ଆଦର୍ଶ ଗୃହିଣୀଟିଏ ହୋଇ କାଳଯାପନ କରୁଥାଆନ୍ତେ । ସେ ମୋର ଅମାନିଆଁ ହେଲେ ବୋଲି ରାଜନୀତିରେ ନାମ କମେଇ ଆଜି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଆମେ

ପ୍ରତିନିଧିଦଳ ସଭାପତିଙ୍କୁ ଆମ ସାଂଗରେ ସାମିଲ ହେବା ପାଇଁ ଆଉ ବାଧ୍ୟ କରିନଥିଲୁ । ଆମର କାର୍ଯ୍ୟକାଳ ମଧ୍ୟରେ ୧୯୬୪ ମସିହାରେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଶେଷନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ପରି ସୁଲେଖକ ଓ ଭାରତରତ୍ନଙ୍କୁ ସମ୍ମାନ ଜଣାଇ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଷ୍ଟାଡ଼ିୟମ ପଡ଼ିଆର ସବୁଜ ଗାଲିଚା ଉପରେ ଶୀତସନ୍ଧ୍ୟାରେ ତିନିଦିନ ବ୍ୟାପି ସଭାର ଆୟୋଜନ କରିଥିଲୁ । ଏଥିରେ ପ୍ରତ୍ୟେକ ଅତିଥି ଲିଖିତ ଅଭିଭାଷଣ ପାଠ କରିଥିଲେ । ବରେଣ୍ୟ ସାହିତ୍ୟିକ ପଣ୍ଡିତ ନୀଳକଣ୍ଠ ଦାସ ଦେଇଥିଲେ ଉଦ୍‌ଘାଟନୀ ଭାଷଣ । ସାହିତ୍ୟ ସମାଜ ନିଜର ସୀମିତ ପାଣ୍ଠିର ଉପଯୋଗ କରି ନେହେରୁଙ୍କ ଉଦ୍ଦେଶ୍ୟରେ ଏକ ସ୍ମରଣିକା ପ୍ରକାଶ କରିଥିଲେ । କେନ୍ଦ୍ର ସାହିତ୍ୟ ଏକାଡ଼େମୀର ସଭାପତି କେ. ଆର୍‌.ନାରାୟଣଙ୍କ ପୌରୋହିତ୍ୟରେ ସାହିତ୍ୟ ସମାଜ କକ୍ଷରେ ପଣ୍ଡିତ ନେହେରୁଙ୍କର ଏକ ତୈଳଚିତ୍ର ଉନ୍ମୋଚିତ ହୋଇଥିଲା । ସରକାରୀ ସାହାଯ୍ୟ ପାଣ୍ଠି ସାହାଯ୍ୟରେ ଏହି ପ୍ରାଚୀନ ହଲର ଛାତ ମରାମତି କରାଯାଇଥିଲା । ଆମର କାର୍ଯ୍ୟକାଳ ମଧ୍ୟରେ ୧୯୬୬ ମସିହାରେ ନିଖିଳ ଉତ୍କଳ ସାହିତ୍ୟ ସମ୍ମିଳନୀର ଆୟୋଜନ କରାଯାଇଥିଲା । ଅଭ୍ୟର୍ଥନା ସମିତିର ସଭାପତି ରହିଲେ ଭୈରବ ଚନ୍ଦ୍ର ମହାନ୍ତି ଓ ସଂପାଦକ ହେଲେ କବି ଅନନ୍ତ ପଟ୍ଟନାୟକ । ଏହି ଉଦ୍ଦେଶ୍ୟରେ ପଠାଣି ପଟ୍ଟନାୟକ ଓ ବିଚିତ୍ରାନନ୍ଦ କରଙ୍କ ସଂପାଦନାରେ ଏକ ସ୍ମରଣିକା ପ୍ରକାଶ ପାଇଥିଲା । ୧୯୫୭ ସାଲରେ ତତ୍କାଳୀନ କାର୍ଯ୍ୟନିର୍ବାହୀ ସମିତି ପ୍ରସ୍ତାବ ଗ୍ରହଣ କରିଥିଲେ ଲେଖକ ପରିଚୟ ଗ୍ରନ୍ଥ ସଂକଳନ କରିବା ପାଇଁ । ଆମ କାର୍ଯ୍ୟକାରୀ ସମିତି ପୁନର୍ବାର ପ୍ରସ୍ତାବ ଗ୍ରହଣ କଲେ ୧୯୬୪ ମସିହାରେ । ଏତେବର୍ଷ ପରେ ଏହି ସଂକଳନ କାର୍ଯ୍ୟ ସମାପ୍ତ ହୋଇଥିଲେ ହେଁ ଅର୍ଥାଭାବରୁ ତାହା ପ୍ରକାଶ ପାଇପାରିଲା ନାହିଁ । ପରବର୍ତ୍ତୀ କାଳରେ ଏହି ଅପୂର୍ଣ୍ଣ କାର୍ଯ୍ୟକୁ ସାଫଲ୍ୟମଣ୍ଡିତ କଲେ ସୁସାହିତ୍ୟିକ ଓ ନାଟ୍ୟକାର ରତ୍ନାକର ଚଇନି । ସାହିତ୍ୟ ସମାଜ ନାମରେ କଲିକତାର ଏକ ବ୍ୟାଙ୍କରେ ସହସ୍ରାଧିକ ଟଙ୍କା ଅନେକଦିନୁ ଗଚ୍ଛିତ ଥିଲେ ହେଁ କେତେକ ନୀତିଗତ କାରଣରୁ ତାହା ଉଠାଇ ଆଣିବା କଷ୍ଟକର ହେଉଥିଲା । ଆମର କାର୍ଯ୍ୟକାରୀ ସମିତି ସଭ୍ୟ ସୁଧାକର ପଟ୍ଟନାୟକଙ୍କ ଅକ୍ଲାନ୍ତ ପରିଶ୍ରମରେ ପରିଶେଷରେ ସେହି ଟଙ୍କା ବହୁକାଳପରେ ଉଦ୍ଧାର କରାଯାଇପାରିଲା । ଆମ ସମୟରେ ଉତ୍କଳ ସାହିତ୍ୟ ସମାଜ ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀରେ ପ୍ରତିନିଧିତ୍ୱ କରୁଥିଲେ ଏବଂ ଏଥିପାଇଁ ଆମେ ଯଥାକ୍ରମେ ପଣ୍ଡିତ ବାଇକୋଳି ମହାପାତ୍ର ଓ ଅନନ୍ତ ପ୍ରସାଦ ପଣ୍ଡାଙ୍କୁ ପଠାଇଥିଲୁ । ବର୍ତ୍ତମାନ ଏହି ଗୌରବ ସାହିତ୍ୟ ସମାଜ ହରାଇ ବସିଛନ୍ତି । ଓଡ଼ିଶାର ଜନଜୀବନ, ପ୍ରାକୃତିକ ବିଭବ ଏବଂ ଶିଳ୍ପ ସଂପଦ ସଂପର୍କରେ ଲେଖକମାନେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ପାଇଁ ସରକାରୀ ସାହାଯ୍ୟ ପ୍ରାର୍ଥନା କରିଥିଲୁ । ଏଥିପାଇଁ ସରକାର ପାରାଦ୍ୱୀପ ଭ୍ରମଣ ପାଇଁ ସମସ୍ତ ବ୍ୟବସ୍ଥା କରିଦେଇଥିଲେ । ସମୁଦ୍ର ବେଳାଭୂମିରେ ଚାନ୍ଦିନୀଧୁଆ ଆକାଶତଳେ ସାରାରାତି ଲେଖକମାନଙ୍କର ଆଳାପ ଆଲୋଚନା ସ୍ମରଣୀୟ ହୋଇ ରହିଛି । ଯୁଗୋସ୍ଲୋଭିଆର ବିଶିଷ୍ଟ କବି ସୋଡ଼ମିର ମେଣ୍ଡରୋଭିକ୍ ସାହିତ୍ୟ ସମାଜରେ ସମ୍ବର୍ଦ୍ଧିତ ହୋଇଥିଲେ ୧୯୬୬ ମସିହାରେ ଆମ ସମୟର ପ୍ରସିଦ୍ଧ କବି ରାଧାମୋହନ

ଗଡ଼ନାୟକ ଓ ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ ଓ ପ୍ରଗତିଶୀଳ କବିତା ଆନ୍ଦୋଳନର ଅନ୍ୟତମ ସାରଥୀ କବି ଅନନ୍ତ ପଟ୍ଟନାୟକ ଯଥାକ୍ରମେ ସଭାପତି ଓ ଉପସଭାପତି ଆସନ ଅଳଙ୍କୃତ କରିଥିଲେ । ସଂପାଦକଦ୍ୱୟ ଥିଲେ ନାଟ୍ୟକାର ମନୋରଞ୍ଜନ ଦାସ ଓ ସାମ୍ବାଦିକ ନଗେନ ବେଉରିଆ । ଆମେ ତରୁଣଗୋଷ୍ଠୀ ସର୍ବଦା କାର୍ଯ୍ୟକାରୀ ସମିତିକୁ ନିର୍ବାଚିତ ହେଉଥିଲୁ । ସେଦିନର ନିର୍ବାଚନ ଏବଂ ଆଜିକାଲିର ନିର୍ବାଚନ ମଧ୍ୟରେ ଆକାଶପାତାଳ ପ୍ରଭେଦ । ବର୍ତ୍ତମାନ ଆଜୀବନ ସଭ୍ୟ ସଂଖ୍ୟା ସହସ୍ରାଧିକ ଏବଂ ତରୁଣଗୋଷ୍ଠୀ ଅତ୍ୟନ୍ତ ଆଗ୍ରହୀ କର୍ମକର୍ତ୍ତା ହେବା ପାଇଁ । ସେତେବେଳେ ସଭାପତି ଓ ଉପସଭାପତି ପାଇଁ ଆପୋଷରେ ପ୍ରବୀଣ ଲେଖକମାନଙ୍କୁ ଏକପ୍ରକାର ନିମନ୍ତ୍ରଣ କରାଯାଉଥିଲା । ନିର୍ବାଚନ ହେଉଥିଲା ସଂପାଦକ ଏବଂ କାର୍ଯ୍ୟକାରୀ ସମିତି ସଭ୍ୟମାନଙ୍କ ପାଇଁ । ଏହି କ୍ରମରେ କବି କୁଞ୍ଜବିହାରୀ ଦାଶ (୧୯୭୨-୧୯୭୯) ସଭାପତି ରହିଥିଲେ । ସଂପାଦକ ଥିଲେ ଆମ ତରୁଣଗୋଷ୍ଠୀର କବି ମୁରାରୀ ମୋହନ ଜେନା ଓ ସାମ୍ବାଦିକ ଭଗବାନ ନାୟକ ବର୍ମା । କବି କୁଞ୍ଜବିହାରୀ ଦାଶ ପ୍ରଥମେ ସଂସ୍କୃତ ଶିକ୍ଷା ବିଭାଗର ପରିଦର୍ଶକ ଅଫିସର ଭାବରେ କାର୍ଯ୍ୟ କରିଥିଲେ । ପରେ ସେ ଶାନ୍ତିନିକେତନ ଓଡ଼ିଆ ବିଭାଗର ମୁଖ୍ୟ ଭାବରେ ଅନେକ ବର୍ଷ କାର୍ଯ୍ୟ କରି ଓଡ଼ିଶା ସରକାରଙ୍କ ଶିକ୍ଷାବିଭାଗକୁ ଚାଲି ଆସିଲେ । ସେ ଥିଲେ ଅତ୍ୟନ୍ତ ଉତ୍ସାହୀ ଏବଂ ତରୁଣମାନଙ୍କର ପ୍ରେରଣାଦାତା । ବାଲେଶ୍ୱର କଲେଜରେ ଅଧ୍ୟାପକ ଥିଲାବେଳେ ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତିଙ୍କୁ ନିମନ୍ତ୍ରଣ କରିଥିଲେ ''ଫକୀରମୋହନ'' ବିଷୟରେ ଭାଷଣ ଦେବା ପାଇଁ । ସେହି ବକ୍ତୃତା ''ଫକୀରମୋହନ'' ଶୀର୍ଷକରେ ପ୍ରକାଶ କରିଥିଲେ ଗ୍ରନ୍ଥ ମନ୍ଦିର । ଫକୀରମୋହନ ସାହିତ୍ୟ ଆଲୋଚନାର ଏହା ଥିଲା ପ୍ରଥମ ବୈଜ୍ଞାନିକ ଅନୁଶୀଳନ । ପରେ ଏହି ଗ୍ରନ୍ଥର ପରିବର୍ଦ୍ଧିତ ସଂସ୍କରଣ ''ଫକୀରମୋହନ ସମୀକ୍ଷା'' ସାହିତ୍ୟ ଆଲୋଚନା କ୍ଷେତ୍ରରେ ସ୍ୱତନ୍ତ୍ର ପଦଧ୍ୱନୀ ସୃଷ୍ଟି କରିଥିଲା । ୧୯୪୬ ମସିହାରେ ଉତ୍କଳ ସମ୍ମିଳନୀ ନେତୃତ୍ୱରେ ଡୁଡୁମା ଆନ୍ଦୋଳନ ଏକ ଐତିହାସିକ ଘଟଣା । କବି କୁଞ୍ଜବିହାରୀ ଦାଶ ଏହି ଅବସରରେ ପ୍ରଣୟନ କରିଥିଲେ ''ଡୁଡୁମା'' ଓ ''ବାଗ୍ରା'' ଦୁଇଟି କାବ୍ୟଗ୍ରନ୍ଥ ।

ପ୍ରସିଦ୍ଧ ଲେଖକମାନଙ୍କ ତୈଳଚିତ୍ର ସାହିତ୍ୟ ସମାଜର ଏକ ମୂଲ୍ୟବାନ ଐଶ୍ୱର୍ଯ୍ୟ । ଓଡ଼ିଶାର ବହୁ ପୁଣ୍ୟଶ୍ଳୋକ ସାହିତ୍ୟ ସାଧକଙ୍କର ତୈଳଚିତ୍ର ଉନ୍ମୋଚନ କରାଇବାରେ କୁଞ୍ଜବାବୁ ବିଶେଷ ଉତ୍ସାହ ପ୍ରଦାନ କରିଥିଲେ । କୁଞ୍ଜବାବୁଙ୍କ ପରେ ପ୍ରସିଦ୍ଧ ସାମ୍ବାଦିକ ଓ ଲେଖକ ଉଦୟନାଥ ଷଡଙ୍ଗୀ ୧୯୭୯ ରେ ସଭାପତି ନିର୍ବାଚିତ ହୋଇଥିଲେ ହେଁ କାର୍ଯ୍ୟକାରୀ ସମିତିର କେତେକ ସଭ୍ୟଙ୍କର ବ୍ୟବହାରରେ ବିଚଳିତ ହୋଇ ଇସ୍ତଫା ଦେଇଦେଲେ । କାର୍ଯ୍ୟକାରୀ ସମିତି ସଭ୍ୟ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଙ୍କୁ ଏହି ଦାୟିତ୍ୱ ଅର୍ପଣ କଲେ । ସେ ମଧ୍ୟ ଅଳ୍ପଦିନ ପରେ ଇସ୍ତଫା ଦେବାକୁ ବାଧ୍ୟ ହେଲେ । ତାଙ୍କ ପରେ କାର୍ଯ୍ୟକାରୀ ସମିତିର ଅନୁରୋଧ କ୍ରମେ ମୋତେ ସଭାପତି ଦାୟିତ୍ୱ ଚଳାଇବାକୁ ପଡ଼ିଲା । ମୋ ସହିତ ସଭ୍ୟମାନଙ୍କର ଉପଯୁକ୍ତ ବୁଝାମଣା ରହିଥିଲା । ୧୯୮୩ ମସିହାରେ ବନ୍ଧୁ ବିଚିତ୍ରାନନ୍ଦ କର ସଭାପତି ନିର୍ବାଚିତ ହେଲେ ଏବଂ ଲୋକସେବକ ମଣ୍ଡଳର ସଭ୍ୟା, ସୁଲେଖିକା ମନୋରମା ମହାପାତ୍ର

ହେଲେ ସଂପାଦକ । ଔପନ୍ୟାସିକ ଶୁକଦେବ ସାହୁ ଉପସଭାପତି ଆସନ ଅଳଙ୍କୃତ କଲେ । ଏମାନଙ୍କ ସହିତ ମୁଁ ମଧ୍ୟ ଅନ୍ୟତମ କାର୍ଯ୍ୟକାରୀ ସମିତି ସଭ୍ୟ ରହିଥିଲି ଏବଂ ବିଭିନ୍ନ କାର୍ଯ୍ୟରେ ଅଂଶଗ୍ରହଣ କରୁଥିଲି । ସଭ୍ୟମାନଙ୍କ ମଧ୍ୟରେ ଚମତ୍କାର ବୁଝାମଣା ରାଜପଣ କରୁଥିଲା । ୧୯୯୨ ରେ ସଭାପତି ହୋଇ ଆସିଲେ ଉଚ୍ଚନ୍ୟାୟାଳୟର ଅବସରପ୍ରାପ୍ତ ବିଚାରପତି ନବକୁମାର ଦାଶ । କାର୍ଯ୍ୟକାରୀ ସମିତିର ସଭ୍ୟ ଭାବରେ ଲକ୍ଷ୍ୟ କରୁଛି, ପୂର୍ବପରି ଭଲ ବୁଝାମଣା ନଥିଲା । କେତେକ ସଭ୍ୟ ଅତ୍ୟନ୍ତ ଅସହଯୋଗୀ ମନୋଭାବ ବ୍ୟକ୍ତ କରି ପ୍ରତିକ୍ରିୟାଶୀଳ ହେଉଥିଲେ । ୧୯୯୨ ସାଲ ଜୁଲାଇମାସରେ ନିର୍ବାଚନ ହେବ । ପାଠକ ସଂସଦର ବିଖ୍ୟାତ ସଂପାଦକ ବ୍ରଜମୋହନ ମହାନ୍ତି ଏବଂ ପୋଲିସ ପ୍ରଶାସକ ଓ ଔପନ୍ୟାସିକ ଅନାଦି ସାହୁ ଆମ ଘରକୁ ଆସି ମୋତେ ସଭାପତି ହେବା ପାଇଁ ପ୍ରାର୍ଥୀ ହେବାକୁ ଅନୁରୋଧ କଲେ । ବନ୍ଧୁଭାବରେ ଏକପ୍ରକାର ଜିଗର ମଧ୍ୟ କଲେ । ମାତ୍ର ମୁଁ ଥିଲି ଅବିଚଳିତ । କୌଣସି ପଦପଦବୀ ପାଇଁ ମୋର ବିଶେଷ ଆକର୍ଷଣ ନଥାଏ । ଅବସ୍ଥା ଚକ୍ରରେ ଥରେ ସଂପାଦକ ଏବଂ ସଭାପତି ହୋଇଥିଲି । ଆଉ କାହିଁକି ? ନୂଆଲୋକ ଆସନ୍ତୁ । ମୋର ଏକାନ୍ତ ଅନୁରୋଧରେ ଅନାଦିବାବୁ ପ୍ରାର୍ଥୀ ହୋଇ ସଭାପତି ନିର୍ବାଚିତ ହେଲେ । କାର୍ଯ୍ୟାନ୍ତରରେ ସେ ଅନେକ ସମୟରେ କଟକ ବାହାରେ ରହୁଥିବାରୁ ଉପସଭାପତି ଭାବରେ ବ୍ରଜବାବୁ ସୁଚାରୁରୂପେ ଦାୟିତ୍ୱ ତୁଲାଉଥିଲେ । ମୁଁ କିନ୍ତୁ କାର୍ଯ୍ୟକାରୀ ସମିତି ସଭ୍ୟ ଭାବରେ ସହଯୋଗ କରୁଥାଏ । ପୁନର୍ବାର ନିର୍ବାଚନ ବର୍ଷ ଆସିଲା ୧୯୯୫ । ବ୍ରଜବାବୁ ଓ ଅନାଦିବାବୁ ମୋତେ ବାରମ୍ବାର ଅନୁରୋଧ କଲେ ସଭାପତି ରୂପେ ପ୍ରାର୍ଥୀ ହେବା ପାଇଁ । ମୋର ସେହି ଗୋଟିଏ ଉତ୍ତର । କାର୍ଯ୍ୟକାରୀ ସମିତିରେ ରହିଲି । କିନ୍ତୁ ମୋର ଏକାନ୍ତ ଅନୁରୋଧରେ ବ୍ରଜବାବୁ ସଭାପତି ନିର୍ବାଚିତ ହେଲେ । ନାଟ୍ୟକାର ରତ୍ନାକର ଚଇନି ହେଲେ ସଂପାଦକ ଏବଂ ସୁଲେଖକ ପରମାନନ୍ଦ ଅଧିକାରୀ ଉପସଭାପତି ଭାବରେ ଦାୟିତ୍ୱ ଗ୍ରହଣ କଲେ । ବ୍ରଜବାବୁ ଥିଲେ ଜଣେ ଶକ୍ତିଶାଳୀ ସଂଗଠକ । ତାଙ୍କ କାର୍ଯ୍ୟକାଳକୁ ନିର୍ମାଣର ଯୁଗ ବୋଲି ଅଭିହିତ କରାଯାଇପାରେ । ତାଙ୍କ ଉଦ୍ୟମରେ ମଧୁସୂଦନ ପାଠାଗାରର ଉପର ମହଲା ନିର୍ମାଣ କରାଯାଇଥିଲା । ଅଧ୍ୟାପକ ଶ୍ରୀଧର ଦାସଙ୍କ ସ୍ମୃତିରେ ତାଙ୍କର ପିଲାମାନଙ୍କ ଦାନରେ ନିର୍ମିତ ହେଲା ଦୁଇମହଲା ବିଶିଷ୍ଟ ଶ୍ରୀଧର ଭବନ । ତାଙ୍କର ନେତୃତ୍ୱରେ ଉତ୍କଳ ପାଠକ ସଂସଦ ଓଡ଼ିଶାର ସାହିତ୍ୟ ଇତିହାସ ଓ ସଂସ୍କୃତି ବିଷୟରେ ଅନେକଗୁଡ଼ିଏ ମୂଲ୍ୟବାନ ଗ୍ରନ୍ଥ ସଂପାଦିତ ହୋଇଅଛି । ଏହି କ୍ଷେତ୍ରରେ ତାଙ୍କର ପରମ ସହାୟକ ଥିଲେ ଓଡ଼ିଶା ବୁକ୍‌ଷ୍ଟୋରର ମାଲିକ ଗୋବିନ୍ଦ ପାତ୍ର । ସାହିତ୍ୟ ସମାଜର ସଭାପତି ଭାବରେ ବ୍ରଜବାବୁ କିଛି ନୂତନ ପ୍ରକାଶନ ମଧ୍ୟ ଆରମ୍ଭ କରିଥିଲେ । ବହୁ ଆଲୋଚନା ସଭାର ଆୟୋଜନ କରି ଅନେକ ଶକ୍ତିଶାଳୀ ବକ୍ତା ଓ ବିଦଗ୍ଧ ଶ୍ରୋତାମାନଙ୍କୁ ସେ ଏକାଠି କରିପାରୁଥିଲେ । ୧୯୯୮ ଜୁନ୍ ମାସରେ ବ୍ରଜବାବୁଙ୍କର କାର୍ଯ୍ୟକାଳ ପୂରି ଆସିଲା । ପୁନର୍ବାର ଅନାଦିବାବୁ, ବ୍ରଜବାବୁ ଓ କେତେଜଣ ହିତାକାଙ୍କ୍ଷୀ ବନ୍ଧୁ ମୋତେ ଅନୁରୋଧ କଲେ ସଭାପତି ଭାବରେ ପ୍ରାର୍ଥୀ ହେବା ପାଇଁ । ଏଥର ମନାକଲେ ବୋଧହୁଏ ତାହା ମୋର ଅହଂକାର ହେବ । ବନ୍ଧୁମାନଙ୍କ କଥାକୁ ରକ୍ଷା କଲି ଗୋଟିଏ ସର୍ତ୍ତରେ । ପ୍ରାର୍ଥୀ

ହେବି ମାତ୍ର ମୋତେ ଭୋଟ ଦିଅନ୍ତୁ ବୋଲି କାହାକୁ ପ୍ରାର୍ଥନା କରିବି ନାହିଁ । ବ୍ରଜବାବୁ କହିଲେ, ଠିକ୍ ଅଛି, ସେ ଦାୟିତ୍ୱ ଆମର । ସହସ୍ରାଧିକ ସଭ୍ୟ । ସମସ୍ତେ ଆଗ୍ରହରେ ଅଂଶଗ୍ରହଣ କରୁଥାଆନ୍ତି ନିର୍ବାଚନ ଯୁଦ୍ଧରେ । ମୋର ପ୍ରତିପକ୍ଷ ଭାବରେ ନିର୍ବାଚନ ଲଢ଼ିଲେ ମନୋରମା ମହାପାତ୍ର । ସାହିତ୍ୟ ସମାଜରେ ସହସ୍ରାଧିକ ଭୋଟଦାତାଙ୍କର ସମାବେଶ । ଭୋଟଦାନ ପାଇଁ ସ୍ୱତନ୍ତ୍ର ଭାବରେ ତିନୋଟି ବୁଥ୍ ବ୍ୟବସ୍ଥା କରାଯାଇଥାଏ । ମୁଁ ଦିନ ବାରଟା ପର୍ଯ୍ୟନ୍ତ ଅଫିସ୍ କକ୍ଷରେ ଏକୁଟିଆ ବସିଥାଏ । ମୋର ପ୍ରତିପକ୍ଷ ସମଗ୍ର ଦିନଟି ଗେଟ୍ ପାଖରେ ଠିଆ ହୋଇ ଭୋଟ ଭିକ୍ଷା କରୁଥାଆନ୍ତି । କୁଳପତି ବଟକୃଷ୍ଣ ମହାନ୍ତି, ନ୍ୟାୟମୂର୍ତ୍ତି ନବ କୁମାର ଦାସ, ନ୍ୟାୟମୂର୍ତ୍ତି ରଙ୍ଗନାଥ ମିଶ୍ର ଓ ବରିଷ୍ଠ ଆଇନଜୀବୀ ଗଙ୍ଗାଧର ରଥଙ୍କୁ ଧାଡ଼ିରେ ଠିଆ ହୋଇଥିବାବେଳେ ସେମାନଙ୍କୁ ସମ୍ମାନ ଜଣାଇବା ପାଇଁ ଅଫିସ୍ କକ୍ଷରୁ ବାହାରିଥିଲି ଅଳ୍ପ ସମୟ ପାଇଁ । ବାରଟା ପରେ ଘରକୁ ଫେରି ଆସି ଭୋଜନ ପରେ ବିଶ୍ରାମ କଲି । ଅପରାହ୍ଣ ପାଞ୍ଚଟା ପରେ ଅଭ୍ୟାସ ମୁତାବକ ମହାନଦୀ କୂଳକୁ ଚାଲିଗଲି ସଂଧ୍ୟା ଭ୍ରମଣ ପାଇଁ । ରାତି ନଅଟା ପରେ ଭୋଜନ ପର୍ବ ସାରି ବିଶ୍ରାମ କରିବାକୁ ପ୍ରସ୍ତୁତ ହେଉଥାଏ । ସାହିତ୍ୟ ସମାଜର ନିର୍ବାଚନ ଫଳାଫଳ ବିଷୟରେ କିଛି ଖବର ପାଉ ନଥାଏ । ଭାବିଲି, ଭଲ ହେଲା । ହାରିଗଲି । ଝଞ୍ଝାଳ ଗଲା । ରାତି ସାଢ଼େ ନଅଟାବେଳକୁ ଦୂରଭାଷରେ ଖବର ପାଇଲି । ନିର୍ବାଚନରେ ମୁଁ ଜୟଲାଭ କରିଛି । ଉପସଭାପତି ଭାବରେ ସଫଳତା ଅର୍ଜନ କରିଛନ୍ତି ଶ୍ରୀ ଅଚ୍ୟୁତାନନ୍ଦ କର, ''ଦୁର୍ମୁଖ'' ପତ୍ରିକାର ସଂପାଦକ । ସଂପାଦକଦ୍ୱୟ ହେଲେ ଡଃ ସତ୍ୟ ରାୟ ଓ ସଂଜିତ ପଟ୍ଟନାୟକ । ଆମ ଦୂରଭାଷ ଯନ୍ତ୍ରକୁ ବିଶ୍ରାମ ନାହିଁ । ଆସିଲା ଅଭିନନ୍ଦନ ଓ ଶୁଭେଚ୍ଛା ପର୍ବ ବହୁ ହିତାକାଂକ୍ଷୀ ଓ ଶୁଭେଚ୍ଛୁ ବନ୍ଧୁମାନଙ୍କଠାରୁ । ରାତି ବାରଟା ପରେ ବାଧ୍ୟ ହୋଇ ଫୋନ୍ ରିସିଭର କାଢ଼ିଦେଇ ଆରାମରେ ଶୋଇଗଲି ।

ସାହିତ୍ୟ ଆଲୋଚନା ସଭାର ଆୟୋଜନ ଓ ସାହିତ୍ୟସେବୀମାନଙ୍କ ଉଦ୍ଦେଶ୍ୟରେ ସ୍ମୃତିସଭା ଏକପ୍ରକାର ଗତାନୁଗତିକ ଧାରା । ତେବେ ଆମ କାର୍ଯ୍ୟକାଳ ମଧ୍ୟରେ ବିଭିନ୍ନ ଲେଖାର ସଂକଳନ କରି ସାହିତ୍ୟ ସମାଜ ବୁଲେଟିନ ପ୍ରକାଶ କରାଯାଇଥିଲା । ସାହିତ୍ୟର ବିଭିନ୍ନ ବିଭାଗରେ ସାହିତ୍ୟ ସମାଜ ଲେଖକମାନଙ୍କୁ ପ୍ରତ୍ୟେକ ବର୍ଷ ସମ୍ମାନିତ କରିଆସିଛି । ମୁଁ ଦାୟିତ୍ୱ ନେଲାପରେ ଅନେକ ସାହିତ୍ୟସେବୀ ବନ୍ଧୁ ଅନୁରୋଧ କଲେ ସାହିତ୍ୟ ସମାଜ ଆନୁକୁଲ୍ୟରେ ଅନୁବାଦ ସାହିତ୍ୟସେବୀମାନଙ୍କୁ ସମ୍ମାନିତ କରିବା ପାଇଁ । ଏଥିପାଇଁ ମୋଟା ଅଙ୍କର ଗଚ୍ଛିତ ପାଣ୍ଠି ଆବଶ୍ୟକ । ଓଡ଼ିଶାର ପ୍ରସିଦ୍ଧ ପ୍ରକାଶକ ଓ ଅନୁବାଦକ ପ୍ରଫୁଲ୍ଲଚନ୍ଦ୍ର ଦାସଙ୍କୁ ସାକ୍ଷାତ କଲି ତାଙ୍କର ଚାନ୍ଦିନୀଚୌକରେ ଅବସ୍ଥିତ ବାସଭବନରେ । ମୋର ପ୍ରସ୍ତାବ ଶୁଣି ସେ ଅତ୍ୟନ୍ତ ଉତ୍ସାହିତ ହେଲେ ଏବଂ ଏକ ମୋଟା ଅଙ୍କର ସ୍ଥାୟୀ ପାଣ୍ଠି ସାହିତ୍ୟସମାଜ ନାମରେ ପ୍ରଦାନ କଲେ । ସେହିଦିନୁ ଉତ୍କଳ ସାହିତ୍ୟ ସମାଜ ଅନୁବାଦକମାନଙ୍କୁ ସମ୍ମାନିତ କରିଆସୁଛି ।

୧୯୦୩ ସାଲରେ ବିଧିବଦ୍ଧ ଭାବରେ ସାହିତ୍ୟ ସମାଜ ଜନ୍ମଗ୍ରହଣ କରିଥିଲା । ସେହି ହିସାବରେ ୨୦୦୩ ମସିହା ହେବ ସାହିତ୍ୟ ସମାଜର ଶତବାର୍ଷିକୀ ବର୍ଷ । ଆମର

ବର୍ତ୍ତମାନ କାର୍ଯ୍ୟକାଳ ହେଉଛି ୧୯୯୮ ରୁ ୨୦୦୧ ସାଲ ପର୍ଯ୍ୟନ୍ତ । ତେଣୁ ଆଜିଠାରୁ ଶତବାର୍ଷିକୀ ଉତ୍ସବ ପାଳନ ପାଇଁ ପ୍ରସ୍ତୁତି ଆବଶ୍ୟକ । ଆମର ପରିଚାଳନା ସମିତି ନିଷ୍ପତ୍ତି କଲେ, ଏହି ଉଦ୍ଦେଶ୍ୟରେ ଶ୍ରୀରାମଚନ୍ଦ୍ର ଭବନର ପଛପଟେ ଯେଉଁ ମୁକ୍ତ ପରିସର ବିଦ୍ୟମାନ, ସେଠାରେ ଆଉ ଏକ ନୂତନ ଆଲୋଚନା କକ୍ଷ "ଶତାବ୍ଦୀ ଭବନ" ନିର୍ମାଣ କରାଯିବ । ଏଥିପାଇଁ ପ୍ରଚୁର ଅର୍ଥ ଆବଶ୍ୟକ । କର୍ମକର୍ତ୍ତାମାନଙ୍କ ସହିତ ଏହି ବିଷୟରେ ପରାମର୍ଶ କରି ସାକ୍ଷାତ କଲି ପାର୍ଲିଆମେଣ୍ଟ ସଭ୍ୟ ଓ ଭାରତ ଉଚ୍ଚନ୍ୟାୟାଳୟର ମୁଖ୍ୟ ବିଚାରପତି ରଙ୍ଗନାଥ ମିଶ୍ରଙ୍କୁ ତାଙ୍କର ହରିଣପାର୍କ ସନ୍ନିକଟ ବାସଭବନରେ । ସେ ଅତ୍ୟନ୍ତ କଳାପ୍ରାଣ ବ୍ୟକ୍ତିତ୍ୱ ଏବଂ ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ କବି, ପ୍ରାବନ୍ଧିକ ଓ ଔପନ୍ୟାସିକ ଗୋଦାବରୀଶ ମିଶ୍ରଙ୍କର ସୁପୁତ୍ର । ଧୀର ଚିତ୍ତରେ ଆମର ପ୍ରସ୍ତାବ ଶୁଣି ସେ ତାଙ୍କର ସାଂସଦ ପାଣ୍ଠିରୁ ମୋଟା ଅଙ୍କର ଅର୍ଥ ଦେବେ ବୋଲି ରାଜି ହେଲେ । ଅନ୍ୟ ସହଯୋଗୀ ଓଡ଼ିଶାର ସାସଂଦମାନଙ୍କଠାରୁ ମଧ୍ୟ ଅର୍ଥ ଆଦାୟ କରିଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

ଆଜି ଯେଉଁ ବିଶାଳ ଶତାବ୍ଦୀ ଭବନ ସାହିତ୍ୟସେବୀମାନଙ୍କ ପଦସ୍ପର୍ଶରେ ଧନ୍ୟ ହୋଇଛି, ତାହାର ମୂଳକର୍ତ୍ତା ହେଉଛନ୍ତି ନ୍ୟାୟମୂର୍ତ୍ତି ରଙ୍ଗନାଥ ମିଶ୍ର । ତାଙ୍କର ପ୍ରରୋଚନାରେ ଅନ୍ୟମାନେ ସାହାଯ୍ୟ କରିଥିଲେ । ଆମର ଶିକ୍ଷାମନ୍ତ୍ରୀ ସମୀର ଦେ, ସାଂସଦ ଭର୍ତ୍ତୃହରି ମହତାବ, ସାଂସଦ ମି. ଖୁଣ୍ଟିଆ ପ୍ରଭୃତିଙ୍କର ଆର୍ଥିକ ସାହାଯ୍ୟ ଅତ୍ୟନ୍ତ ସ୍ମରଣୀୟ । ପ୍ରଥମ କିସ୍ତିରେ ଯେଉଁ ଟଙ୍କା ଆସିଲା, ତାହାକୁ ଲକ୍ଷ୍ୟ କରି ଆମ ଅନୁଷ୍ଠାନର ପରିସରରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଉପସ୍ଥିତିରେ ଶୁଭସ୍ତମ୍ଭ ସ୍ଥାପିତ ହେଲା । ମାତ୍ର ଦୁଃଖର କଥା, ଜିଲ୍ଲା ପ୍ରଶାସକ ସହଯୋଗ କଲେ ନାହିଁ । କାରଣ ଏହି କାର୍ଯ୍ୟ ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଓ ନିର୍ଦ୍ଦେଶରେ ହେବା କଥା । ମୋର ସଭାପତିର କାର୍ଯ୍ୟକାଳ ସରିଆସିଲା । ଅଥଚ, ପ୍ରଥମ କିସ୍ତିରେ ପ୍ରସ୍ତାବିତ ଶତାବ୍ଦୀ ଭବନ ପାଇଁ ଯେଉଁ ଅର୍ଥ ଅଣାଇପାରିଲି, ତାହା ମୋ ସମୟରେ ବିନିଯୋଗ ହେବା ସମ୍ଭବ ହେଲା ନାହିଁ । ମୋ ପରେ ୨୦୦୧ ମସିହା ଜୁଲାଇ ମାସରୁ ନୂତନ ସଭାପତି ଭାବରେ ନିର୍ବାଚିତ ହୋଇ ଆସିଲେ ପ୍ରସିଦ୍ଧ ନାଟ୍ୟକାର, ଅଧ୍ୟାପକ ରତ୍ନାକର ଚଇନି ଓ ସଂପାଦକ ଡଃ ବିଜୟାନନ୍ଦ ସିଂହ । ଆମର ସୌଭାଗ୍ୟକୁ କଟକ ଜିଲ୍ଲାର ଜିଲ୍ଲାପାଳ ହୋଇ ଆସିଲେ ଅତ୍ୟନ୍ତ ସଂସ୍କୃତିସମ୍ପନ୍ନ, ଓଡ଼ିଶାପ୍ରେମୀ ପ୍ରଶାସକ ଅଶ୍ୱିନୀ ବୈଷ୍ଣବ । ଅଣଓଡ଼ିଆ ଅଫିସର ହୋଇ ମଧ୍ୟ ଅନର୍ଗଳ ଓଡ଼ିଆ ଭାଷାରେ ବକ୍ତୃତା ଦେଉଥିଲେ ଏବଂ ଓଡ଼ିଶାର ଐତିହ୍ୟ, ପରଂପରା, ଶିଳ୍ପ ସ୍ଥାପତ୍ୟ ଓ ସାଂସ୍କୃତିକ ଜୀବନର ପ୍ରେମରେ ସେ ପଡ଼ିଯାଇଥିଲେ । ତାଙ୍କର ପ୍ରତ୍ୟକ୍ଷ ନିର୍ଦ୍ଦେଶରେ ସରକାରୀ ଯନ୍ତ୍ରୀମାନେ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଜାତି ଉଦ୍ଦେଶ୍ୟରେ ଶତାବ୍ଦୀ ଭବନକୁ ପ୍ରଦାନ କରିପାରିଥିଲେ । ଶତବାର୍ଷିକୀ ଉତ୍ସବ ପାଳନ ପାଇଁ ଏକ ଉଚ୍ଚ ସ୍ତରର କମିଟି ଗଠନ କରାଯାଇଥିଲା । ନ୍ୟାୟମୂର୍ତ୍ତି ରଙ୍ଗନାଥ ମିଶ୍ର ହେଲେ ଏହି ଅନୁଷ୍ଠାନର ସଭାପତି ଏବଂ କାର୍ଯ୍ୟକାରୀ ସଭାପତିର ଦାୟିତ୍ୱ ମୋତେ ଅର୍ପଣ କରାଯାଇଥିଲା । ମୁଁ ସଭାପତି ଥିଲାବେଳେ ଯେଉଁ କାର୍ଯ୍ୟ ଆରମ୍ଭ ହୋଇଥିଲା, ନାନା ବାଧାବିଘ୍ନ ସତ୍ତ୍ୱେ ତାହାର ସଂଫଳ ରୂପାୟନ ହେଲା ରତ୍ନାକର ଚଇନି, ସଭାପତି ଓ ବିଜୟାନନ୍ଦ ସିଂହ ସଂପାଦକଙ୍କ

ଅକ୍ଳାନ୍ତ ଉଦ୍ୟମରେ । ମହାସମାରୋହରେ ଶତବାର୍ଷିକୀ ଉତ୍ସବ ପାଳନ କରାଗଲା । ଏହି ଉପଲକ୍ଷେ ସଂପାଦକ ବିଜୟାନନ୍ଦ ଓ ମୋ ସଂପାଦନାରେ ପ୍ରକାଶ ପାଇଲା ଏକ ସ୍ମରଣୀୟ ଗ୍ରନ୍ଥ ''ଶତାବ୍ଦୀ ସ୍ୱାକ୍ଷର'' । ଏହି ଗ୍ରନ୍ଥର 'ଅଗ୍ରଲେଖ' ରେ ଲେଖିଥିଲି ''ଶତାବ୍ଦୀ ସ୍ୱାକ୍ଷର''- ଏକ ଜାତୀୟ ଆତ୍ମଲିପି ଶୀର୍ଷକରେ-ଆରମ୍ଭ ହେଲା ପ୍ରଥମ କରି ସାର୍ବଜନୀନ-ସମ୍ମେଳନ (କମନ ପ୍ଲାଟ୍‌ଫର୍ମ) ର ଅଧ୍ୟାୟ । ରାଜ୍ୟସ୍ତରୀୟ ଭାଷା ଓ ସାହିତ୍ୟ ପ୍ରୀତିର ସିନ୍ଦୂରା ଫାଟିଲା ପରା !! ନବଜାଗରଣର ଏହି ଉଦିତ ସୂର୍ଯ୍ୟକୁ ଆଦ୍ୟ ଅର୍ଘ୍ୟ ପ୍ରଦାନ କରିଥିଲେ ଉତ୍କଳ ସମ୍ମିଳନୀ ଓ ଉତ୍କଳ ସାହିତ୍ୟ ସମାଜ । ବିଗତ ଏକଶତ ବର୍ଷ ଧରି ପବିତ୍ର ସାରସ୍ୱତ ମଞ୍ଚରେ ଓଡ଼ିଶାର ସାରସ୍ୱତ-ସାଧକଗଣ ଏକାଠି ହୋଇଛନ୍ତି ଏବଂ ବହୁଭାବରେ ଏବଂ ବହୁବିଭାଗରେ ଓଡ଼ିଆ ସାହିତ୍ୟର ବିକାଶ ସାଧନ କରିଛନ୍ତି ।

'ଶତାବ୍ଦୀ ସ୍ୱାକ୍ଷର' ସେହି ଗୌରବମୟ ଜାତୀୟ-ସାହିତ୍ୟର ଅପୂର୍ବ ଆଲେଖ୍ୟ ବହନ କରିଅଛି । ଆଗାମୀ ବର୍ଷମାନଙ୍କରେ ପ୍ରଗତିପଥରେ ଅଗ୍ରସର ହେବା ପାଇଁ ଏହା ପ୍ରେରଣାଦାୟକ ହେବ ବୋଲି ଆଶା କରାଯାଏ । ପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ଅଶେଷ କଲ୍ୟାଣ ଲାଭ କରି ଏହି ଜାତି ଗୌରବମଣ୍ଡିତ ହେଉଥାଉ ।

ଦୀର୍ଘ ଅର୍ଦ୍ଧଶତାବ୍ଦୀକାଳ ଓଡ଼ିଶାର ପ୍ରାଚୀନତମ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜରେ ନିରବଚ୍ଛିନ୍ନ ଭାବରେ କାର୍ଯ୍ୟକାରୀ ସମିତି ସଭ୍ୟ ଓ କର୍ମକର୍ତ୍ତା ହୋଇ ରହିବା ଯୋଗୁ ବହୁ ପ୍ରବୀଣ ଓ ନବୀନ ସାହିତ୍ୟସେବୀଙ୍କର ପ୍ରତ୍ୟକ୍ଷ ସଂପର୍କରେ ଆସିପାରିଥିଲି । ଓଡ଼ିଶାର ସର୍ବାଞ୍ଚଳରେ ସାହିତ୍ୟ ଅନୁଷ୍ଠାନ ଓ ଶିକ୍ଷାନୁଷ୍ଠାନର ନିମନ୍ତ୍ରଣ କ୍ରମେ ଭାଷଣ ଦେବାର ସୁଯୋଗ ପାଇଥିବାରୁ କଟକଠାରୁ ଦୂରରେ ରହୁଥିବା ବହୁ ସାହିତ୍ୟସେବୀଙ୍କର ନିକଟ ସଂପର୍କରେ ଆସିବାର ସୌଭାଗ୍ୟ ମିଳିଥିଲା । ପଦପଦବୀର ଅହଂକାର ଓ ଅଭିମାନ ସମାଜଜୀବନର ସବୁକ୍ଷେତ୍ରରେ ବିଦ୍ୟମାନ । ଏକମାତ୍ର ସାହିତ୍ୟମଣ୍ଡପରେ ଏହି ବାଧା ପ୍ରାୟତଃ ଦୂରୀଭୂତ ହୋଇଥାଏ । ଏକ କୁଟୁମ୍ବିତାର ହସ୍ତପ୍ରସାରଣ କରି ସାହିତ୍ୟ ସଂସାର ହିଁ ବରିଷ୍ଠ, କନିଷ୍ଠ ନିର୍ବିଶେଷରେ ସମସ୍ତଙ୍କୁ ଏକାଠି କରିପାରେ ।

•••

# ଓଡ଼ିଶା ସାହିତ୍ୟ ଏକାଡ଼େମୀରେ କେତୋଟି ବର୍ଷ

ଈଶ୍ୱରଙ୍କ ଇଚ୍ଛା ବ୍ୟତୀତ ଗଛର ପତ୍ରଟିଏ ମଧ୍ୟ ହଲେ ନାହିଁ ବୋଲି ଆଧ୍ୟାତ୍ମିକ ବିଶ୍ୱାସ ରହିଛି । ଅଚାନକ ଅନେକ କଥା ଜୀବନରେ ଘଟିଯାଏ, ଯାହା ତାହା ନିଜର ସ୍ୱପ୍ନର ବାହାରେ । ଏହିପରି ଏକ ଅନୁଭୂତି ହୋଇଥିଲା ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଆସନ ଅଳଙ୍କୃତ କରିବାରେ । କାରଣ ଏହି ଆସନରେ ପ୍ରଥମରୁ କେତେକବର୍ଷ ବହୁ ବରେଣ୍ୟ ସାହିତ୍ୟିକ ଆସୀନ ହୋଇଛନ୍ତି । ତା'ପରେ ଆସିଛି ଅଫିସିକ ପର୍ବ । ଶକ୍ତିଶାଳୀ ପ୍ରଶାସକ ଅଥବା ରାଜ୍ୟର ମନ୍ତ୍ରୀ, ମୁଖ୍ୟମନ୍ତ୍ରୀଗଣ ଏହି ଆସନ ମଣ୍ଡନ କରି ଆସିଛନ୍ତି । ସାହିତ୍ୟ ଏକାଡ଼େମୀର ଇତିହାସ ପର୍ଯ୍ୟାଲୋଚନା କଲେ ଏହା ସହଜରେ ଧରାପଡ଼ିଯାଏ ।

୧୯୫୭ ମସିହା ଅକ୍ଟୋବର ମାସରେ ଓଡ଼ିଶା ସରକାରଙ୍କ ମହତାବ ମନ୍ତ୍ରୀମଣ୍ଡଳ ସାହିତ୍ୟ ଏକାଡ଼େମୀ ପ୍ରତିଷ୍ଠା କଲେ । ଏହି ଅନୁଷ୍ଠାନ ୧୮୬୦ ଖ୍ରୀଷ୍ଟାବ୍ଦ ସୋସାଇଟି ଆଇନ ଅନୁସାରେ ୧୯୭୦ ମସିହା ଜୁଲାଇ ମାହ ୨୫ ତାରିଖରେ ବିଧିବଦ୍ଧ ଭାବରେ ରେଜିଷ୍ଟ୍ରୀ ହୁଏ । ପ୍ରଥମରୁ ଯେଉଁ ସଂବିଧାନ ପ୍ରଣୟନ କରାଯାଇଥିଲା, ତହିଁରେ ଲିପିବଦ୍ଧ ହୋଇଥିଲା ଏହି ପ୍ରକାର-''ସଭାପତି ଓ ଉପସଭାପତି ରାଜ୍ୟ ସରକାରଙ୍କ ଦ୍ୱାରା ନିଯୁକ୍ତ ହେବେ ଏବଂ ରାଜ୍ୟ ସରକାରଙ୍କ ଅବଧାରିତ ସମୟ ପର୍ଯ୍ୟନ୍ତ ପଦରେ ଅବସ୍ଥାପିତ ରହିବେ । ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ସଭାପତି ରହି ଏହା ରେଜିଷ୍ଟ୍ରୀ ହୋଇଥିଲେ ହେଁ ସଂବିଧାନ ଅନୁସାରେ ସରକାର ପ୍ରଥମରୁ ଯେଉଁମାନଙ୍କୁ ସଭାପତି ଆସନ ପାଇଁ ନିଯୁକ୍ତି ପ୍ରଦାନ କରିଥିଲେ, ତାହାର ବିବରଣୀ ଏହିପରି-

(୧) ପଣ୍ଡିତ ନୀଳକଣ୍ଠ ଦାସ- ୯.୧୦.୧୯୫୭-୮.୧୦.୧୯୫୮

(୨) ଭାରତସେବକ ଲକ୍ଷ୍ମୀନାରାୟଣ ସାହୁ- ୯.୧୦.୧୯୫୮-୧୫.୯.୧୯୬୧

(୩) ଶ୍ରୀ ହରେକୃଷ୍ଣ ମହତାବ- ୧୬.୯.୧୯୬୧-୨୨.୯.୧୯୬୩

(୪) ଶ୍ରୀ ସନ୍ତୋଷ କୁମାର ସାହୁ- ୨୩.୯.୧୯୬୩-୨.୯.୧୯୬୬
ଉପମନ୍ତ୍ରୀ-ସଂସ୍କୃତି ବିଭାଗ

(୫) ସଦାଶିବ ତ୍ରିପାଠୀ- ୩.୯.୧୯୬୬-୭.୩.୧୯୬୭
ମୁଖ୍ୟମନ୍ତ୍ରୀ

(୬) ନିତ୍ୟାନନ୍ଦ ମହାପାତ୍ର- ୮.୩.୧୯୬୭-୩୦.୬.୧୯୬୭
ସଂସ୍କୃତିବିଭାଗ ମନ୍ତ୍ରୀ

(୭) ହରେକୃଷ୍ଣ ମହତାବ- ୧.୭.୧୯୬୭- ୮.୬. ୧୯୭୧
(୮) ଶରତ କୁମାର କର- ୯.୬.୧୯୭୧-୩୦.୬.୧୯୭୨
ଶିକ୍ଷାମନ୍ତ୍ରୀ
(୯) ନନ୍ଦିନୀ ଶତପଥୀ- ୧.୭.୧୯୭୨-୨୧.୩.୧୯୭୩
ମୁଖ୍ୟମନ୍ତ୍ରୀ
(୧୦) ହେରମ୍ବନାରାୟଣ ଦାସମହାପାତ୍ର- ୨୨.୩.୧୯୭୩- ୯.୪.୧୯୭୪(ପ୍ରଶାସକ)
(୧୧) ଯଦୁନାଥ ଦାଶମହାପାତ୍ର- ୧୦.୪.୧୯୭୪- ୧୯.୧୦.୧୯୭୫
ଶିକ୍ଷାମନ୍ତ୍ରୀ
(୧୨) ଗଂଗାଧର ମହାପାତ୍ର- ୨୦.୧୦.୧୯୭୫- ୨୮.୧୦.୧୯୭୬
ଶିକ୍ଷାମନ୍ତ୍ରୀ
(୧୩) ମତଲୁବ ଅଲ୍ଲୀ- ୨୯.୧୦.୧୯୭୬- ୨୫.୦୬.୧୯୭୭
ଶିକ୍ଷାମନ୍ତ୍ରୀ
(୧୪) ବିଶ୍ୱଭୂଷଣ ହରିଚନ୍ଦନ - ୨୬.୬.୧୯୭୭- ୧୮.୭.୧୯୭୮
ସଂସ୍କୃତି ବିଭାଗ ମନ୍ତ୍ରୀ
(୧୫) ସଚ୍ଚିଦାନନ୍ଦ ରାଉତରାୟ- ୧୯.୭.୧୯୭୮-୨୫.୮.୧୯୮୧
(୧୬) ସୁରେନ୍ଦ୍ର ମହାନ୍ତି-୨୬.୮.୧୯୮୧-୩୧.୧୨.୧୯୮୭
(୧୭) ମହାପାତ୍ର ନୀଳମଣି ସାହୁ- ୧.୧. ୧୯୮୮-୩୧.୫.୧୯୯୦
(୧୮) ମନୋରମା ମହାପାତ୍ର- ୧୯.୬.୧୯୯୧- ୧୧.୭.୧୯୯୪
(୧୯) କିଶୋରୀଚରଣ ଦାସ- ୧୨.୭.୧୯୯୪-୧୨.୫.୧୯୯୭
(୨୦) ଜାନକୀବଲ୍ଲଭ ପଟ୍ଟନାୟକ- ୧.୧. ୧୯୯୮- ୧୨.୫.୧୯୯୯
ମୁଖ୍ୟମନ୍ତ୍ରୀ
(୨୧) ଗିରିଧର ଗମାଙ୍ଗୋ- ୧୩.୫.୧୯୯୯- ୫.୧୨.୧୯୯୯
ମୁଖ୍ୟମନ୍ତ୍ରୀ
(୨୨) ହେମାନନ୍ଦ ବିଶ୍ୱାଳ- ୬.୧୨.୧୯୯୯- ୪.୩.୨୦୦୦ (ମୁଖ୍ୟମନ୍ତ୍ରୀ)
(୨୩) ନବୀନ ପଟ୍ଟନାୟକ- ୫.୩.୨୦୦୦- ୧୬.୭.୨୦୦୦ (ମୁଖ୍ୟମନ୍ତ୍ରୀ)
(୨୪) ପଠାଣି ପଟ୍ଟନାୟକ-୧୭.୭.୨୦୦୦-୨୩.୭.୨୦୦୩

୧୯୫୭ ସାଲ ଜୁଲାଇ ମାସରେ ସାହିତ୍ୟ ଏକାଡେ଼ମୀ ଜନ୍ମ ଗ୍ରହଣ କରିଥିଲେ ହେଁ ଏହାର ଉପସଭାପତି ପଦ ସୃଷ୍ଟି ହୋଇ ନଥିଲା । ୧୯୬୬ ସାଲ ନଭେମ୍ବର ମାସ ପର୍ଯ୍ୟନ୍ତ । ସଭାପତି ଥିଲେ ଏକପ୍ରକାର ଆଳଙ୍କାରିକ ବ୍ୟକ୍ତି । ତେଣୁ ୨୬.୧୧.୧୯୬୬ ମସିହାରେ କାର୍ଯ୍ୟକାରୀ ସଭାପତି ପଦ ସୃଷ୍ଟି କରାଯାଇଥିଲା । ସେହି ୧୯୬୬ ମସିହାରୁ ୧୬.୧.୧୯୬୧ ମସିହା ପର୍ଯ୍ୟନ୍ତ ଅତିରିକ୍ତ ମୁଖ୍ୟଶାସନ ସଚିବ ଓ ଉନ୍ନୟନ କମିସନର ଥିଲେ କାର୍ଯ୍ୟକାରୀ

ସଭାପତି । ୧୭.୧.୧୯୬୮ ତାରିଖରେ କାର୍ଯ୍ୟକାରୀ ସଭାପତି ବଦଳରେ ଉପସଭାପତି ପଦ ସୃଷ୍ଟି କରାଯାଇଥିଲେ ହେଁ କେହି ଉପସଭାପତି ନିଯୁକ୍ତ ହୋଇ ନଥିଲେ । ଅତିରିକ୍ତ ମୁଖ୍ୟ ଶାସନ ସଚିବ ଓ ଉନ୍ନୟନ କମିସନର ଉପସଭାପତି ରୂପେ କାର୍ଯ୍ୟ ତୁଲାଇ ଥିଲେ । ୧୯୭୨ ମସିହାରେ ସରକାର ଉପସଭାପତି ନିଯୁକ୍ତ କଲେ । କ୍ରମାନ୍ୱୟରେ ନିମ୍ନଲିଖିତ ବ୍ୟକ୍ତିଗଣ ଉପସଭାପତି ଆସନ ଅଳଙ୍କୃତ କରିଆସିଅଛନ୍ତି ମୋ ସମୟ ପର୍ଯ୍ୟନ୍ତ । ସେମାନେ ହେଲେ-

ସତ୍ୟାନନ୍ଦ ଚଂପତିରାୟ- ୧.୯.୭୨-୩୧.୭.୧୯୭୮

ରାଜକିଶୋର ରାୟ- ୩.୮.୧୯୭୮-୧୮.୬.୧୯୮୧

ରାଧାମୋହନ ଗଡ଼ନାୟକ- ୧୯.୬.୧୯୮୧-୩୦.୧. ୧୯୮୭

ଡଃ ବିନୋଦଚନ୍ଦ୍ର ନାୟକ- ୧.୧. ୧୯୮୮-୧୧.୬.୧୯୯୪

ଶ୍ରୀନିବାସ ଉଦ୍‌ଗାତା- ୧୨.୬.୯୪-୩୧.୧୨.୯୬

ଶ୍ରୀ ଉମାଶଙ୍କର ପଣ୍ଡା- ୧୮.୬.୨୦୦୦- ୨୪.୬. ୨୦୦୩

ଆରମ୍ଭ କାଳରୁ ମୋ ସମୟ ପର୍ଯ୍ୟନ୍ତ ଯେଉଁ ସଂପାଦକମାନେ ଏକାଡ଼େମୀର କାର୍ଯ୍ୟଭାର ଗ୍ରହଣ କରିଥିଲେ, ସେମାନେ ହେଲେ-

ଅଧ୍ୟାପକ ଶ୍ରୀ ରାଜକିଶୋର ରାୟ- ୬.୯.୧୯୫୭-୨୫.୬. ୧୯୫୮

ଅଧ୍ୟାପକ ଶ୍ରୀ ଗୌରୀକୁମାର ବ୍ରହ୍ମା- ୨୬.୬.୧୯୫୮-୩.୬.୧୯୬୭

ଔପନ୍ୟାସିକ ଶ୍ରୀ କାହ୍ନୁଚରଣ ମହାନ୍ତି- ୪.୬.୧୯୬୭-୨୩.୩.୧୯୬୮

କବି ବିନୋଦ ଚନ୍ଦ୍ର ନାୟକ- ୮.୪. ୧୯୬୮- ୨.୯. ୧୯୭୩

ନାଟ୍ୟକାର ମନୋରଂଜନ ଦାସ- ୧୬.୧୧. ୧୯୭୪- ୧୫.୧.୧୯୮୦

ପ୍ରଶାସକ ଶ୍ରୀ ରାଇଚରଣ ଦାସ- ୧୫.୪. ୧୯୮୦-୨୩.୩. ୧୯୮୩

ଅଧ୍ୟାପକ ଶ୍ରୀ ଚିନ୍ତାମଣି ବେହେରା- ୩୧.୩. ୧୯୮୩- ୧୬.୮.୧୯୮୫

ପ୍ରଶାସକ ଶ୍ରୀ ସୁରେନ୍ଦ୍ର ନାଥ ଶତପଥୀ- ୧୨.୯.୧୯୮୫-୩୦.୬.୧୯୯୦

ପ୍ରଶାସକ ଶ୍ରୀ ଇନ୍ଦୁଭୂଷଣ କର- ୧୭.୮.୧୯୯୦-୪.୧୧.୧୯୯୪

ଅଧ୍ୟାପକ ଶ୍ରୀ ରାଜକିଶୋର ମିଶ୍ର- ୫.୧୨. ୧୯୯୪- ୩୦.୯.୧୯୯୬

ଅଧ୍ୟାପକ ଡଃ ହରପ୍ରସାଦ ପରିଚ୍ଛା ପଟ୍ଟନାୟକ- ୧.୧୦.୧୯୯୬-୧୯.୫.୧୯୯୯

ପ୍ରଶାସିକା ଶ୍ରୀମତୀ ପ୍ରମିଳା ମିଶ୍ର- ୧୯.୫.୧୯୯୯- ୯.୮.୧୯୯୯

ପ୍ରଶାସକ ଅଶ୍ୱିନୀ କୁମାର ମିଶ୍ର- ୧୯.୫.୧୯୯୯- ୨୦୦୩ ର ପ୍ରଥମ ଭାଗ । ମୋର କାର୍ଯ୍ୟକାଳର ଶେଷବେଳକୁ ସଂପାଦକ ହୋଇଆସିଲେ ଗୋବିନ୍ଦ ନାୟକ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ଜନ୍ମ ଗ୍ରହଣ କରିବା ସମୟରେ ସପକ୍ଷ ଓ ବିପକ୍ଷରେ ନାନା ମତ ପ୍ରକାଶିତ ହୋଇଥିଲା । ଅନେକ ଏହାକୁ ସ୍ୱାଗତ କରିଥିବାବେଳେ କେତେଜଣ କଠୋର ସମାଲୋଚନା ମଧ୍ୟ କରିଥିଲେ । ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ କବି ଡଃ ମାୟାଧର ମାନସିଂହଙ୍କର ସମାଲୋଚନା ଏହି କ୍ଷେତ୍ରରେ ବିଶେଷ ପ୍ରଣିଧାନ ଯୋଗ୍ୟ । ସେ ଲେଖିଥିଲେ-

''ନୂତନ ମନ୍ତ୍ରୀମଣ୍ଡଳ ବୃଦ୍ଧାଙ୍ଗୁଠି ତଳେ ରହିବାଭଳି ସାହିତ୍ୟ ଏକାଡ଼େମୀଟିଏ ଠିଆ କରାଇଦେଲେ । କୌଣସି ରାଜ୍ୟର ସାହିତ୍ୟ ଏକାଡ଼େମୀ ବା ଅକାଡ଼େମୀ ନାମଧାରୀ କୌଣସି ହେଲେ ଅନୁଷ୍ଠାନ ଏକ ସର୍କାରୀ ଡିପାର୍ଟମେଣ୍ଟ ନୁହେଁ । ଏହା ଅକାଡ଼େମୀ ଶବ୍ଦର ଅପମାନ ।''

''ଓଡ଼ିଶା ରାଜ୍ୟରେ ଅକାଡ଼େମୀ ଏକ ନୂଆ ପଦାର୍ଥ ହୋଇପାରେ ବା ଅନ୍ୟ କେତେକ ନିଜର ହେୟ ଓ ଦୟନୀୟ ମାନସିକ ସ୍ତରରୁ ତାକୁ କେବଳ ଚାକିରୀ ଓ କ୍ଷମତା ପ୍ରୟୋଗର ଖେଳନା ରୂପେ ବ୍ୟବହାର କରିପାରନ୍ତି, କିନ୍ତୁ ସେମାନଙ୍କର ବୁଝିବା ଉଚିତ ଯେ ଅକାଡ଼େମୀ ଏକ ବିଶ୍ୱବ୍ୟାପୀ ଅନୁଷ୍ଠାନ ଓ ସର୍ବତ୍ର ଯେଉଁ ଐତିହ୍ୟ, ଯେଉଁ ଲକ୍ଷ୍ୟ ଓ ଯେଉଁ ରୀତିରେ ଅକାଡ଼େମୀ ସବୁ ପରିଚାଳିତ ହୁଏ, ଓଡ଼ିଶାରେ ତାହା ସେପରି ପରିଚାଳିତ ନ ହେଲେ ତାହାଯୋଗୁ ସମଗ୍ର ଦେଶ ଓ ଜାତିକୁ ଉପହସିତ ହେବାକୁ ହେବ । x x x ଅକାଡ଼େମୀ ହେଲା ଏକଜାତିର ସମସ୍ତ ବୌଦ୍ଧିକସାଧନାର ଶେଷ ଓ ଶ୍ରେଷ୍ଠ ନିକଷ ଓ ନିଶାଣ । ସେଠାରେ ଯେଝା ସିଏ ଲୋକର ସ୍ଥାନ ନାହିଁ । ତାହା ପଦ, ପ୍ରତିପତ୍ତିର ଆଖଡ଼ାଘର ନୁହେଁ । ଏପରି ଚେଷ୍ଟା କରିବା ହିଁ ଜାତି ଭାବରେ ଆମର ମୂର୍ଖତା ପ୍ରମାଣ କରିବ ଓ କରୁଛି ।''

ମୋଟ ଉପରେ ଡକ୍ଟର ମାନସିଂହଙ୍କର ଅଭିମତ ହେଲା–''ଅକାଡ଼େମୀ ସରକାରୀ ଦପ୍ତର ନହେଉ । ଏହା ହେଉ ଓଡ଼ିଶାର ବୁଦ୍ଧିଜୀବୀମାନଙ୍କର ପ୍ରକୃତ ପ୍ରତିନିଧିମୂଳକ ଅନୁଷ୍ଠାନ । ଏହି ଅନୁଷ୍ଠାନ ଓଡ଼ିଶାର ସର୍ବାଞ୍ଚଳକୁ ପ୍ରତିନିଧିତ୍ୱ କରୁ । ସର୍ବୋପରି ସମଗ୍ର ଓଡ଼ିଶାରେ ଅକାଡ଼େମୀ ଜାତୀୟ ଚେତନା ଜାଗ୍ରତ କରୁ ।''

ଏହା ସତ୍ୟ ଯେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏକ ସରକାରୀ ପରିଚାଳିତ ଅନୁଷ୍ଠାନ । ଏହାର ସମସ୍ତ ଖର୍ଚ୍ଚ ସରକାର ବହନ କରିଥାଆନ୍ତି । କର୍ମକର୍ତ୍ତାମାନେ ମଧ୍ୟ ସରକାରଙ୍କ ସଂସ୍କୃତି ବିଭାଗ ଦ୍ୱାରା ନିଯୁକ୍ତ । ସେହି କାରଣରୁ ମୁଷ୍ଟିମେୟ ସାହିତ୍ୟିକମାନଙ୍କୁ ବାଦଦେଲେ ବର୍ଷ ପରେ ବର୍ଷ ଏହି ଅନୁଷ୍ଠାନର ସଭାପତି ହୋଇଛନ୍ତି ସରକାରଙ୍କର ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଗଣ । ଏପରିକି ଜଣେ ବରିଷ୍ଠ ପ୍ରଶାସକ ମଧ୍ୟ ଅତୀତରେ ଏହି ଆସନ ଅଳଙ୍କୃତ କରିଛନ୍ତି । ୧.୧.୧୯୮୯ ଠାରୁ ୧୬.୭.୨୦୦୦ ମଧ୍ୟରେ ଜାନକୀବଲ୍ଲଭ ପଟ୍ଟନାୟକ, ଗିରିଧର ଗମାଙ୍ଗୋ, ହେମାନନ୍ଦ ବିଶ୍ୱାଳ ଏବଂ ନବୀନ ପଟ୍ଟନାୟକଙ୍କ ପରି ଚାରିଜଣ ମୁଖ୍ୟମନ୍ତ୍ରୀ ସଭାପତି ଆସନ ଅଳଙ୍କୃତ କଲାପରେ କାହିଁକି କେଜାଣି ମୋତେ ଏହି ଆସନରେ ବସିବାର ସୁଯୋଗ ମିଳିଲା । ମନ୍ତ୍ରୀ ଅଥବା ମୁଖ୍ୟମନ୍ତ୍ରୀମାନଙ୍କର ଆଦୌ ଅବସର ନଥାଏ ଏକାଡ଼େମୀ କାର୍ଯ୍ୟରେ । ତେଣୁ ବୋଧହୁଏ ପୁନର୍ବାର କୌଣସି ଲେଖକ ମୁଣ୍ଡରେ ସୁନାକଳସ ଥୋଇବାର ସରକାରୀସ୍ତରରେ କଳ୍ପନାଜଳ୍ପନା ଚାଲିଥାଏ । ସଂସ୍କୃତିବିଭାଗ ମନ୍ତ୍ରୀଙ୍କର ସୁପାରିଶ ସରକାରୀ ସ୍ତରରେ ଅନୁକୂଳ ସମର୍ଥନ ପାଉ ନଥାଏ । ତେଣୁ ତତ୍‌କାଳୀନ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ସଭାପତି ବରେଣ୍ୟ କବି ରମାକାନ୍ତ ରଥ, ବରିଷ୍ଠ ସାହିତ୍ୟସେବୀ ଚିତ୍ତରଞ୍ଜନ ଦାସ ଏବଂ ସଂସ୍କୃତିବିଭାଗ କମିସନରଙ୍କୁ ନେଇ ଏକ କମିଟି ଗଠିତ ହୁଏ । ନାନା ଆଲୋଚନାର ଶେଷ ନିଷ୍ପତ୍ତି ସ୍ୱରୂପ ମୋତେ ଏକାଡ଼େମୀ ସଭାପତି ଭାବରେ ମନୋନୀତ କରିଥିଲେ । ଏ ସବୁ ମୋର ଶୁଣିବା କଥା । କାରଣ ସରକାର ଏହି ବିଷୟରେ ମୋର ମତାମତ ପଚାରି ନଥିଲେ ।

ସେ ହେଉଛି ଦୁଇହଜାର ମସିହା ଜୁନ ଚବିଶ ତାରିଖ । ସକାଳର ସୂର୍ଯ୍ୟକିରଣ ଘର ଅଗଣାକୁ ସ୍ପର୍ଶ କଲାବେଳକୁ ଦୂରଭାଷ ବାଜି ଉଠିଲା । ଭୁବନେଶ୍ୱରରୁ ବନ୍ଧୁ ଅଧ୍ୟାପକ ଚିନ୍ତାମଣି ବେହେରା ଅଭିନନ୍ଦନ ଜଣାଇ ଖବର ଦେଲେ ଯେ ସାହିତ୍ୟ ଏକାଡ଼େମୀର ସଭାପତି ଭାବରେ ମୋତେ ସରକାର ନିଯୁକ୍ତି ଦେଇଛନ୍ତି । ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲି । ଏହି ବିଷୟରେ ମୋତେ କୌଣସି ଚିଠି ସରକାର ଲେଖି ନାହାନ୍ତି ଅଥବା ମୋର ମତ ଗ୍ରହଣ କରିନାହାନ୍ତି । ଆରମ୍ଭ ହେଲା ଦୂରଭାଷ ମାଧ୍ୟମରେ ଅଭିନନ୍ଦନ ବାର୍ତ୍ତା । ଘଣ୍ଟାଘଣ୍ଟା ଧରି ଏ ପର୍ବ ଚାଲିଥାଏ । ଓଡ଼ିଶାର ସର୍ବାଞ୍ଚଳର ସାହିତ୍ୟସେବୀ ଓ ଅନ୍ତରଙ୍ଗ ବନ୍ଧୁଗଣ ଆନ୍ତରିକ ଅଭିନନ୍ଦନ ଜଣାଉଥାନ୍ତି । ଅଥଚ ମୋ ପାଖରେ କୌଣସି ସରକାରୀ ଚିଠି ପହଞ୍ଚି ନଥାଏ । ତେବେ ଅସୁମାରୀ ସାହିତ୍ୟସେବୀ ଓ ବନ୍ଧୁପରିଜନଙ୍କ ହୃଦୟରେ ମୋ ପାଇଁ ସ୍ଥାନଟିଏ ଅଛି ବୋଲି ସନ୍ତୋଷ ଲାଭ କରୁଥାଏ । ୨୫ ତାରିଖ ସଂଧ୍ୟାରେ ''ସମାଜ'' ସଂବାଦପତ୍ରରେ ଏକ ସଂବାଦ ପ୍ରକାଶିତ ହେଲା ''ସାହିତ୍ୟ ଓ ସଂଗୀତ ନାଟକ ଏକାଡ଼େମୀର ନୂଆ ସଭାପତି'' ଶିରୋନାମାରେ, ତାହାହେଲା– ''ଭୁବନେଶ୍ୱର, ତା ୨୪.୬–ବିଶିଷ୍ଟ ସାହିତ୍ୟିକ ପ୍ରଫେସର ପଠାଣି ପଟ୍ଟନାୟକ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଭାବେ ନିଯୁକ୍ତ ହୋଇଥିବାବେଳେ ଗାଳ୍ପିକ ଉମାଶଙ୍କର ପଣ୍ଡାଙ୍କୁ ଏହାର ଉପସଭାପତି ଭାବେ ସରକାର ମନୋନୀତ କରିଛନ୍ତି । ସେହିପରି ପୂର୍ବତନ କୁଳପତି ତଥା ବିଶିଷ୍ଟ ନୃତ୍ୟଶିଳ୍ପୀ ପ୍ରଫେସର ପ୍ରିୟମ୍ବଦା ମହାନ୍ତି ହେଜମାଦିଙ୍କୁ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀର ସଭାପତି ଭାବେ ନିଯୁକ୍ତି ଦିଆଯାଇଛି ।

କଂଗ୍ରେସ ସରକାର ଅମଳରେ ମୁଖ୍ୟମନ୍ତ୍ରୀ ସାହିତ୍ୟ ଏକାଡ଼େମୀ ସଭାପତି ରହିବାର ଯେଉଁ ପରଂପରା ସୃଷ୍ଟି ହୋଇଥିଲା, ଏଥରର ନୂତନ ନିଯୁକ୍ତି ପରେ ସେଥିରେ ପୂର୍ଣ୍ଣଚ୍ଛେଦ ପଡ଼ିଛି ।'' ଜୁନ ମାସ ୨୪ ତାରିଖରେ ସଂବାଦପତ୍ରମାନେ ମୋର ସଭାପତି ହେବା କଥା ଘୋଷଣା କରିଥିଲେ । କୌଣସି ପ୍ରକାର ସରକାରୀ ଚିଠି ଆସୁ ନଥାଏ । ଜୁଲାଇ ମାସ ୧୭ ତାରିଖରେ ''ପ୍ରଗତିବାଦୀ'' ସଂବାଦପତ୍ରରେ ଏକ ଦୀର୍ଘ ଆଲୋଚନା ପ୍ରକାଶ ପାଇଲା । ରାଜ୍ୟସରକାରଙ୍କ ସଂସ୍କୃତି ବିଭାଗର ମନ୍ଥରଗତିକୁ କଟାକ୍ଷ କରି ଉକ୍ତ ସଂବାଦପତ୍ର ଲେଖିଥିଲେ–

''ସଂସ୍କୃତିବିଭାଗ ପକ୍ଷରୁ ଗତ କିଛିଦିନ ତଳେ ସାହିତ୍ୟିକ ପଠାଣି ପଟ୍ଟନାୟକଙ୍କୁ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଓ ଉମାଶଙ୍କର ପଣ୍ଡାଙ୍କୁ ଉପସଭାପତି ପଦପାଇଁ ମନୋନୀତ କରାଯାଇଥିବା କଥା ଜଣାପଡ଼ିବାର ୨୦ ଦିନରୁ ଉର୍ଦ୍ଧ୍ୱ ସମୟ ବିତିଯାଇଥିଲେ ମଧ୍ୟ ବର୍ତ୍ତମାନ ସୁଦ୍ଧା ଏଥିପାଇଁ କୌଣସି ବିଭାଗୀୟ ନୋଟିସ ପ୍ରକାଶ ପାଇନାହିଁ । ସଭାପତି ପଦ ପାଇଁ ମନୋନୀତ ହୋଇଥିବା ଡକ୍ଟର ପଠାଣି ପଟ୍ଟନାୟକଙ୍କୁ ଯୋଗାଯୋଗ କରିବାରେ, ସେ ଏହି ସମ୍ବନ୍ଧରେ କୌଣସି ସରକାରୀ ଚିଠି ପାଇନାହାନ୍ତି ଓ ତାଙ୍କୁ ସଭାପତି ଭାବେ ମନୋନୀତ କରାଯାଇଥିବା ଗଣମାଧ୍ୟମଗୁଡ଼ିକରୁ ଜାଣିଲେ ବୋଲି କହିଥିଲେ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ମଧ୍ୟ ଏ ସମ୍ବନ୍ଧରେ କୌଣସି ଚିଠି ପାଇ ନାହିଁ । ତେବେ ଏ ପର୍ଯ୍ୟନ୍ତ ସଭାପତି ଓ ଉପସଭାପତି ନିଯୁକ୍ତି ସମ୍ବନ୍ଧରେ ଚିଠିଟି ନ ଆସି କେଉଁଠି ଓ କେଉଁ କାରଣରୁ ପଡ଼ିରହିଛି ?

ବିଶେଷ ସୂତ୍ରରୁ ଜଣାଯାଏ, ଏ ସମ୍ବନ୍ଧୀୟ ଫାଇଲଟି ବର୍ତ୍ତମାନ ମୁଖ୍ୟମନ୍ତ୍ରୀଙ୍କ ଅନୁମୋଦନ ପାଇଁ ପଡ଼ିରହିଛି । କିନ୍ତୁ ସମୟ ଅଭାବରୁ ଦସ୍ତଖତ ହୋଇପାରୁନାହିଁ । ଦସ୍ତଖତଟିଏ ପାଇଁ ଏତେଦିନ ସମୟ ଲାଗିବା ବିସ୍ମୟକର ମନେହେଉଛି । ସହଜେ ତ ସାହିତ୍ୟ ଏକାଡ଼େମୀର ପୁରସ୍କାର ଉତ୍ସବଗୁଡ଼ିକ ପଛେଇକରି ରହିଛି । ବର୍ତ୍ତମାନ ପୁଣି ସଭାପତି ନିଯୁକ୍ତି ବିଳମ୍ବ ହେଲାଣି ।''

ଜୁଲାଇମାସ ୧୭ ତାରିଖଦିନ ପୂର୍ବାହ୍ଣରେ ସାହିତ୍ୟ ଏକାଡ଼େମୀର ସଂପାଦକ କବି ଅଶ୍ୱିନୀ କୁମାର ମିଶ୍ର ତାଙ୍କର ସହକାରୀମାନଙ୍କ ଗହଣରେ ଆସି ମୋତେ ସାକ୍ଷାତ କଲେ ଏବଂ ଫୁଲତୋଡ଼ା ସହିତ ସରକାରଙ୍କ ନିଯୁକ୍ତିପତ୍ର ପ୍ରଦାନ କରି ଅଭିନନ୍ଦନ ଜଣାଇଲେ । କଥାହେଲା, ଆସନ୍ତା ସୋମବାରଦିନ ଅଫିସରେ ଯୋଗଦେବା ପାଇଁ ଗାଡ଼ିର ବ୍ୟବସ୍ଥା ହେବ ।

ସଭାପତି ନିଯୁକ୍ତି ପତ୍ରର ଅବିକଳ ନମୁନା ଏହିପରି–

Government fo Orissa, Tourism and Culture Department

Notification- No. 3226/ XC-29/2000 / TC. Dated : Bhubaneswar, The 14.7.2000

In pursuance of the provision of Clause 4 (1) of the constitution of Orissa Sahitya Academy Sri Pathani Pattnaik is appointed as president of the Sahitya Academy for a period of three years or until further Orders whichever is earlier from the date he actually assumes the charge of the office of the president.

By order of Governer

R.N. Senapati
Commissioner- Cum-Secretary to Govt.

ଜୁଲାଇମାସ ୨୪ ତାରିଖଦିନ ଭୁବନେଶ୍ୱରରେ ଏକାଡ଼େମୀ ଅଫିସରେ ଯୋଗଦେଲି । ସମ୍ବଲପୁରରୁ ଉପସଭାପତି ଉମାଶଙ୍କର ପଣ୍ଡା ମଧ୍ୟ ସେହିଦିନ ଆସି ପହଞ୍ଚିଥିଲେ । ଉପସଭାପତି ଓ ଏକାଡ଼େମୀ ସଚିବ ଅଶ୍ୱିନୀବାବୁଙ୍କ ସହିତ ଏକାଡ଼େମୀର ନାନା ସମସ୍ୟା ସଂପର୍କରେ ଆଲୋଚନା କଲି । ଏକାଡ଼େମୀର ବଜେଟ, ପ୍ରକାଶନର ଅବସ୍ଥା ଓ ଅନୁଷ୍ଠାନର ମୁଖପତ୍ର ''କୋଣାର୍କ'' ବିଷୟରେ ମଧ୍ୟ ନାନା କଥା ଜାଣିବାକୁ ପାଇଲି । ଆଗାମୀ ମାସ ୭ ତାରିଖରେ କାର୍ଯ୍ୟକାରୀ ସମିତିର ବୈଠକ ଆହ୍ୱାନ କଲି ।

ବିଗତ କୋଡ଼ିଏ ଦିନ ମଧ୍ୟରେ ସମଗ୍ର ଓଡ଼ିଶାର ବିଭିନ୍ନ ଅଞ୍ଚଳର ସାହିତ୍ୟସେବୀ ବନ୍ଧୁ ଓ ବୟସ୍କ ହିତାକାଙ୍କ୍ଷୀମାନେ ଅନେକ ଚିଠି ପ୍ରେରଣ କରି ଅଭିନନ୍ଦନ ଜଣାଇଥିଲେ । ତେବେ ଏଠାରେ ଆମ ସମୟର ପ୍ରବୀଣ କବି ବିନୋଦଚନ୍ଦ୍ର ନାୟକଙ୍କ ଆନ୍ତରିକତାଭରା ଚିଠିଟି ଏଠାରେ ଉପସ୍ଥାପନ କରୁଛି ।

୨୪.୭. ୨୦୦୦
ସାହାସପୁର, ଝାରସୁଗୁଡ଼ା
୭୬୮୨୧୫

ସମ୍ମାନାସ୍ପଦ ପ୍ରଫେସର ପଟ୍ଟନାୟକ !

ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ରୂପେ ମୁଁ ଆପଣଙ୍କୁ ସ୍ୱାଗତ ଜଣାଉଛି ଏବଂ ଅଭିନନ୍ଦନ ଜ୍ଞାପନ କରୁଛି ।

ସାହିତ୍ୟର ଜିନାସନରେ ଆପଣ ଏକ ଅତୀନ୍ଦ୍ରିୟ ଯୋଗୀ । ଆପଣଙ୍କ ନିଷ୍ଠା ଓ ସାଧନା ଆଦର୍ଶର ପ୍ରତିବିମ୍ବ ବହନ କରେ । ଆପଣଙ୍କର ଊର୍ଦ୍ଧ୍ୱ ଦୃଷ୍ଟିରେ ଉଦୟସୂର୍ଯ୍ୟ ଦୀର୍ଘଜୀବୀ ହୁଅନ୍ତୁ । ଆପଣଙ୍କ ପଥ ପୁଷ୍ପରେ ଚର୍ଚ୍ଚିତ ହେଉ ।

**ପ୍ରଫେସର ପଠାଣି ପଟ୍ଟନାୟକ**
ସଭାପତି, ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର

ଶୁଭେଚ୍ଛୁ
**ବିନୋଦ ଚନ୍ଦ୍ର ନାୟକ**

ଏକାଡ଼େମୀରେ ପ୍ରଥମଦିନର ଅନୁଭୂତି ମନେପଡୁଚି । ଯୋଗଦେବା ପୂର୍ବରୁ ଏକ ଦୀର୍ଘଚିଠି ମୋର ହସ୍ତଗତ ହୋଇଥିଲା ସାହିତ୍ୟ ଏକାଡ଼େମୀର ଜଣେ ପୂର୍ବତନ ଉପସଭାପତିଙ୍କ ନିକଟରୁ । ସଭାପତି ଇସ୍ତଫା ଦେଇ ଚାଲିଯିବାରୁ ସେ କିଛିଦିନ ସଭାପତି ଦାୟିତ୍ୱ ତୁଲାଇଥିଲେ । ତାଙ୍କର ପ୍ରଧାନ ଅଭିଯୋଗ ଥିଲା– ''ବିଡ଼ମ୍ବନା ଯେ କାର୍ଯ୍ୟାଳୟ କୌଣସି କାର୍ଯ୍ୟରେ ସହଯୋଗ କରନ୍ତି ନାହିଁ; ମନା ନକରି କାଳକ୍ଷେପଣ କରନ୍ତି । ତେଣୁ ସାଧାରଣ ଚିଠିଟିଏ ପାଇଁ ବି କାର୍ଯ୍ୟାଳୟ ଉପରେ ନିର୍ଭର ନକରି ମୁଁ ହାତରେ ଲେଖୁଥିଲି, ପ୍ରତିଲିପି ପାଖରେ ରଖୁଥିଲି ଓ ଆସୁଥିବା ପ୍ରତ୍ୟେକ ଚିଠିର ଉତ୍ତର ଦେଉଥିଲି ।'' ଆଉ ମଧ୍ୟ ପୂର୍ବତନ ଜଣେ ସଭାପତି କାର୍ଯ୍ୟାଳୟର ଅସହଯୋଗରୁ କୁଆଡ଼େ ଅସନ୍ତୋଷ ପ୍ରକାଶ କରି କାର୍ଯ୍ୟକାଳ ସମାପ୍ତ ନ ହେଉଣୁ ଇସ୍ତଫା ପ୍ରଦାନ କରି ବିଦାୟ ନେଇଥିଲେ ।

ଏପରି ଚିଠିଟିଏ ପାଇ ମନରେ ନାନା ଆଶଙ୍କା ପୋଷଣ କରି ଏକାଡ଼େମୀ ଅଫିସରେ ପ୍ରବେଶି କରିଥିଲି । ଏକାଡ଼େମୀର ସଂବିଧାନରେ ସଭାପତି ଗୋଟିଏ ଆଳଙ୍କାରିକ ପଦବୀ । ସମସ୍ତ ଦାୟିତ୍ୱ ସଂପାଦକଙ୍କ ଉପରେ । ସଭାପତି କେବଳ କାର୍ଯ୍ୟକାରୀ ସମିତି ଓ ସାଧାରଣ ପରିଷଦର ବିଭିନ୍ନ ଅଧିବେଶନରେ ସଭାପତିତ୍ୱ କରିବେ । ସାଂସ୍କୃତିକ ସଭାମାନଙ୍କରେ ସଭା ପରିଚାଳନା କରିବେ । ତେବେ ସଭାପତି ନିଜର ବ୍ୟକ୍ତିତ୍ୱବଳରେ ନୈତିକ ପ୍ରଭାବ ପକାଇ ଏକାଡ଼େମୀ କାର୍ଯ୍ୟ ପରିଚାଳନାରେ ସାର୍ଥକ ଭୂମିକା ଗ୍ରହଣ କରିବା ପାଇଁ କ୍ଷମ ହେବେ ବୋଲି ଆଶା କରାଯାଏ । ମୋର ପରମ ସୌଭାଗ୍ୟ ଯେ ଦୀର୍ଘ ୩ ବର୍ଷର କାର୍ଯ୍ୟକାଳ ମଧ୍ୟରେ

ଏକାଡ଼େମୀ ସଂପାଦକ ଓ କାର୍ଯ୍ୟାଳୟର କର୍ମଚାରୀବୃନ୍ଦ ଏବଂ ସର୍ବୋପରି କାର୍ଯ୍ୟକାରୀ ସମିତି ଓ ସାଧାରଣ ଅଧିବେଶନର ସଭ୍ୟବୃନ୍ଦଙ୍କ ସହିତ ଅତ୍ୟନ୍ତ ସନ୍ତୋଷଜନକ ବୁଝାମଣା ସମ୍ଭବ ହୋଇପାରିଥିଲା । ଓଡ଼ିଶାର ସର୍ବାଞ୍ଚଳର ଲେଖକ ପ୍ରତିନିଧିମାନଙ୍କର ଶ୍ରଦ୍ଧା ଓ ସମ୍ମାନ ଲାଭ କରି ନିଜକୁ ଧନ୍ୟ ମନେ କରୁଥିଲି । ସଂସ୍କୃତି ବିଭାଗର ନିର୍ଦ୍ଦେଶକ ହେଉଛନ୍ତି ପରିଚାଳନା ସମିତିରେ ସରକାରଙ୍କ ପ୍ରତିନିଧି । ଏକାଡ଼େମୀ ସଂସ୍କୃତି ବିଭାଗର ଅଧୀନରେ ପରିଚାଳିତ ଏକ ଅନୁଷ୍ଠାନ । ନିର୍ଦ୍ଦେଶକ ଓ କମିଶନର ସଂସ୍କୃତିବିଭାଗ ସହଯୋଗ ନକଲେ ଏକାଡ଼େମୀ ଅଚଳ ହୋଇଯିବ । ସେହିପରି ସରକାରଙ୍କର ଆଉଜଣେ ପ୍ରତିନିଧି ଅର୍ଥ ପରାମର୍ଶଦାତା । ଯେକୌଣସି ପ୍ରକାର ଖର୍ଚ୍ଚର ଶେଷ ନିଷ୍ପତ୍ତି ତାଙ୍କ ଅନୁମୋଦନକୁ ଅପେକ୍ଷା କରିଥାଏ । ମୁଁ ଦିନକପାଇଁ କୌଣସି ଅସୁବିଧା ଭୋଗ କରିନାହିଁ । ସମସ୍ତଙ୍କର ସସ୍ନେହ ସହଯୋଗ ଲାଭ କରି ଚାହୁଁଚାହୁଁ ତିନୋଟି ବର୍ଷ ଅତୀତ ହୋଇଯାଇଥିଲା ।

କହୁଥିଲି ପ୍ରଥମ ଦିନର କଥା । କାର୍ଯ୍ୟାଳୟର କର୍ମଚାରୀମାନେ ଅଫିସ୍ ରୁମ୍‌ରେ ମୋତେ ସାକ୍ଷାତ କରି ଦୀର୍ଘଦିନର ସେମାନଙ୍କର ଅଭାବ ଅସୁବିଧା ଉପସ୍ଥାପନ କଲେ । ଏକାଡ଼େମୀ ସରକାରୀ ପରିଚାଳିତ ହେଲେ ମଧ କର୍ମଚାରୀମାନେ ସରକାରୀ ନିୟମାନୁସାରେ ବେତନ ଓ ଅନ୍ୟ ଭତ୍ତା ପାଆନ୍ତି ନାହିଁ । ସେମାନଙ୍କର ପେନସନ ସୁବିଧା ନାହିଁ । ଏ ଦିଗରେ ସଭାପତି ହିସାବରେ ମୁଁ କିଛି କରିବି ବୋଲି ସେମାନେ ଦାବୀ ଉପସ୍ଥାପନ କଲେ । ମନେମନେ ହସିଲି । ସେମାନଙ୍କୁ କହିଲି, ମୋ ପୂର୍ବରୁ ଚାରିଜଣ ମୁଖ୍ୟମନ୍ତ୍ରୀ ସଭାପତି ଆସନ ଅଳଙ୍କୃତ କରିଛନ୍ତି । ସେମାନଙ୍କ ପୂର୍ବରୁ ଏକାଧିକ ମନ୍ତ୍ରୀ ମଧ ସଭାପତି ହୋଇଛନ୍ତି । ସେତେବେଳେ ଆପଣମାନେ କ'ଣ କରୁଥିଲେ । ମୋର କର୍ତ୍ତବ୍ୟ ହେଲା, ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା । ତାହା କରାଯିବ ।

୨୦୦୩ ମସିହା ଅଗଷ୍ଟ ୭ ତାରିଖ ଦିନ ଏକାଡ଼େମୀର ପ୍ରଥମ ବୈଠକ ମୋ ଅଧକ୍ଷତାରେ ଆହୂତ ହେଲା । ପୂର୍ବରୁ ମୋତେ ସତର୍କ କରାଇ ଦିଆଯାଇଥିଲା ଯେ କେତେଜଣ ସଭ୍ୟ କାର୍ଯ୍ୟକାରୀ ସମିତିରେ କୌଣସି କାର୍ଯ୍ୟ କରାଇଦେବେ ନାହିଁ । ମୋ ସହିତ ଉପସଭାପତି ଉମାଶଙ୍କର ପଣ୍ଡା, ସଂପାଦକ ଅଶ୍ୱିନୀ ମିଶ୍ର, ରେଭେନ୍ସା କଲେଜର ଅବସରପ୍ରାପ୍ତ ଅଧକ୍ଷ ଡଃ ପ୍ରଫୁଲ୍ଲ ମହାନ୍ତି, ଡଃ ବିଜୟାନନ୍ଦ ସିଂହ, ଦୁଃଖୀଶ୍ୟାମ ପଟ୍ଟନାୟକ, ଦୟାଲାଲ ଯୋଷୀ ଏବଂ କୋଷାଧକ୍ଷ ତଥା ଅର୍ଥ ପରାମର୍ଶଦାତା ଉପସ୍ଥିତ ଥିଲେ । ସାମାନ୍ୟ ବିରୋଧ ସତ୍ତ୍ୱେ ସମସ୍ତ କାର୍ଯ୍ୟନିର୍ଘଣ୍ଟ ସୁରୁଖୁରୁରେ ସମର୍ଥନ ଓ ଅନୁମୋଦନ ଲାଭ କଲା । ଏହି ପ୍ରଥମ ବୈଠକରେ ଏକାଡ଼େମୀ କର୍ମଚାରୀମାନଙ୍କର ସାମାନ୍ୟ ବେତନ ବୃଦ୍ଧି କରିବା ପାଇଁ ପ୍ରସ୍ତାବ ଗ୍ରହଣ କରାଇପାରିଥିଲି । ଜଣେ ସଭ୍ୟ ପ୍ରବଳ ପ୍ରତିବାଦ କରିବାର କାରଣ ହେଲା ଅନ୍ୟ ଏକାଡ଼େମୀ କର୍ମଚାରୀ ଏହି ମର୍ମରେ ଦାବୀ କରିବେ । ତାଙ୍କୁ ବୁଝାଇଲି, ଏହି ବେତନ ବୃଦ୍ଧି ସରକାର କରୁନାହାନ୍ତି । ଆମର ଗଚ୍ଛିତ ପାଣ୍ଠିରୁ ଆମେ ଆମର କର୍ମଚାରୀଙ୍କୁ ସାମାନ୍ୟ ସାହାଯ୍ୟ କରିବାରେ ଅନ୍ୟକାହାର ଆପତ୍ତି ହେବ କାହିଁ ? ସେହିପରି ଆମର ଉପ-ସଚିବଙ୍କ ପୁଅ

ଭୟଙ୍କର ରୋଗରେ ପୀଡ଼ିତ ଥିଲା । ସେ ପ୍ରାର୍ଥନା କରିଥିଲେ କିଛି ସାହାଯ୍ୟ ପାଇଁ । କ୍ଷୀଣ ପ୍ରତିବାଦ ସତ୍ତ୍ୱେ ତାହା ମଧ୍ୟ ଅନୁମୋଦନ ଲାଭ କଲା । ଏହି ପ୍ରଥମଦିନର ଘଟଣାବଳୀରୁ କାର୍ଯ୍ୟାଳୟର କର୍ମଚାରୀଗଣ ମୋ ପ୍ରତି କୃତଜ୍ଞ ରହି ଅକୁଣ୍ଠ ଆନୁଗତ୍ୟ ପ୍ରକାଶ କରିଥିଲେ ।

ଜୁଲାଇମାସ ୨୪ ତାରିଖରେ ସଭାପତି ଦାୟିତ୍ୱ ଗ୍ରହଣ କଲି । ମାତ୍ର ଏକ ସପ୍ତାହ ଅତିକ୍ରାନ୍ତ ହୋଇନାହିଁ, ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତିଙ୍କଠାରୁ ପହିଲା ଅଗଷ୍ଟରେ ପ୍ରେରିତ ଏକ ଅନୁରୋଧ ପତ୍ର ପାଇଲି ବିଶ୍ୱବିଦ୍ୟାଳୟର ଏକ ଭବ୍ୟ ସମାରୋହରେ ଅତିଥିବକ୍ତା ହେବା ପାଇଁ । କୁଳପତି ପ୍ରଫେସର ଡି.ଆର. ନାଏକ ଲେଖିଥିଲେ-

No. 219/VC/SU Dated. Ist August, 2K

Sreejukta Pathani Pattnaik
President, Orissa Sahitya Akademi
Bhubaneswar

Sir,

It was a longstanding demand of academician and people of western Orissa to instal a life-size bronze statue of the Nature-poet, Gangadhar Meher, in the premises of Sambalpur University. The statue is expected to be installed soon. We propose to have the statue unvelling ceremony on the occasion of Gangadhar Jayanti, the 15th August, 2000, which will be followed by a meeting.

We will feel honoured if you kindly grace the occasion as the chief speaker.

With regards.

Yours Sincerely
D.R. Naik

ଯୋଗକୁ ସେହି ୧୫ ତାରିଖଦିନ ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ଗଙ୍ଗାଧରଙ୍କ ଜନ୍ମସ୍ଥାନ ବରପାଲିରେ ଏକ ସାହିତ୍ୟ ଉତ୍ସବ ପାଳିତ ହେବାର ଆୟୋଜନ ହେଉଥାଏ । ଏକାଡ଼େମୀରେ ଏହା ମୋର ପ୍ରଥମ ସାହିତ୍ୟସଭା ହେବ ଭୁବନେଶ୍ୱର ବାହାରେ ।

ଜ୍ୟୋତିବିହାରରେ ଏହି ୧୫ ତାରିଖଦିନ ପ୍ରବଳ ଜନସମାଗମ ମଧ୍ୟରେ ତତ୍କାଳୀନ ଆସେମ୍ଳି ବାଚସ୍ପତି ଶରତ କୁମାର କର ଗଙ୍ଗାଧରଙ୍କର ପ୍ରତିକୃତି ଉନ୍ମୋଚନ କଲେ । ତା'ପରେ ବିଶ୍ୱବିଦ୍ୟାଳୟ ହଲରେ କୁଳପତିଙ୍କ ସଭାପତିତ୍ୱରେ ଏକ ଆଲୋଚନା ସଭାରେ ପ୍ରଧାନ ଅତିଥି ହେଲେ ବାଚସ୍ପତି ଶରତ କର ଓ ମୁଁ ହେଲି ମୁଖ୍ୟବକ୍ତା । ମଞ୍ଚାସୀନ ଥିଲେ ସଂସ୍କୃତି ବିଭାଗ ନିର୍ଦ୍ଦେଶକ ନରେନ୍ଦ୍ର ମିଶ୍ର । ମୋ ଦ୍ୱାରା ଉନ୍ମୋଚିତ ହେଲା ବିଶ୍ୱବିଦ୍ୟାଳୟର ମୁଖପତ୍ର 'ସପ୍ତର୍ଷି' ଏବଂ ବାଚସ୍ପତି ଉନ୍ମୋଚନ କଲେ ଗଙ୍ଗାଧରଙ୍କ 'ତପସ୍ୱିନୀ'ର ହିନ୍ଦୀ ଅନୁବାଦ-।

ସଂଧ୍ୟାରେ ବରପାଲିରେ ରାଜ୍ୟସ୍ତରୀୟ ଗଙ୍ଗାଧର ଜୟନ୍ତୀ ଉତ୍ସବରେ ସଭାପତି ହେଲି । ଆମର ଅତିଥିବକ୍ତା ଥିଲେ ନିର୍ଦ୍ଦେଶକ ନରେନ୍ଦ୍ର କୁମାର ମିଶ୍ର, ସ୍ଥାନୀୟ ବିଧାୟକ ଅଶୋକ କୁମାର ପାଣିଗ୍ରାହୀ, ବାଚସ୍ପତି ଶରତ କୁମାର କର, ଡଃ ବିଜୟାନନ୍ଦ ସିଂହ, ପାର୍ଥସାରଥୀ,

ଅଜୟ ବାରିକ । ଏହି ଅବସରରେ ମେହେର କବିଙ୍କ ସ୍ମୃତି ମନ୍ଦିର ଓ ତାଙ୍କ ପରିବାରର ବାସସ୍ଥାନ ପରିଦର୍ଶନ କଲୁ । ୧୬ ତାରିଖରେ ଫେରିବା ବାଟରେ ହୀରାକୁଦ ବନ୍ଧର ବିସ୍ତୃତ ଅଂଚଳ ଅତିକ୍ରମ କରିବା ସମୟରେ ମନୁଷ୍ୟକୃତ ଏହି ବିଶାଳ ଜଳଭାଗର ଭୀମକାନ୍ତ ଦୃଶ୍ୟ ଉପଭୋଗ କରି ଫେରିଆସିଲୁ କଟକ ।

୧୭ ତାରିଖରେ ଏକ ଅଶୁଭ ଖବର ଶୁଣିବାକୁ ମିଳିଲା । ମହାନ ସାହିତ୍ୟରଥୀ ଅଧ୍ୟାପକ ନଟବର ସାମନ୍ତରାୟ ଶେଷନିଶ୍ୱାସ ତ୍ୟାଗ କଲେ ଭୁବନେଶ୍ୱର ବାସଭବନରେ । ସେ ଜନ୍ମ ହୋଇଥିଲେ ୧୯୧୩ ସାଲରେ । ଆଜୀବନ ଏହି ଜ୍ଞାନତପସ୍ୱୀଙ୍କର ସ୍ନେହଭାଜନ ହେବାର ସୌଭାଗ୍ୟ ଲାଭ କରିଥିଲି । ମଧ୍ୟେ ମଧ୍ୟେ ତାଙ୍କଠାରୁ ଅନେକ ମମତାସିକ୍ତ ଚିଠି ମଧ୍ୟ ପାଉଥିଲି । ତାଙ୍କର ବିୟୋଗରେ ଓଡ଼ିଆ ସମାଲୋଚନା ସାହିତ୍ୟର ଅପୂରଣୀୟ କ୍ଷତି ହେଲା ବୋଲି ସ୍ୱୀକାର କରିବାକୁ ହେବ ।

ଅଗଷ୍ଟ ମାସ ୨୭ ତାରିଖଦିନ ଏକାଡ଼େମୀ ଆନୁକୂଲ୍ୟରେ ଏକ ସାହିତ୍ୟ ଉତ୍ସବର ଆୟୋଜନ ହେଲା । ଏଠାରେ କବିତା ପାଠୋତ୍ସବ ପରିଚାଳନା ପାଇଁ ସ୍ଥାନୀୟ ଜଣେ ସାହିତ୍ୟସେବୀଙ୍କୁ ଦାୟିତ୍ୱ ଅର୍ପଣ କରିଥିଲୁ । ତାଙ୍କ ବିରୁଦ୍ଧରେ ଦୂରଭାଷ ଯୋଗେ ସ୍ଥାନୀୟ ସାହିତ୍ୟସେବୀ କେତେଜଣ ପ୍ରବଳ ପ୍ରତିବାଦ କରି କବିତା ପାଠୋତ୍ସବ କରାଇଦେବେ ନାହିଁ ବୋଲି ଧମକ ଦେଉଥାଆନ୍ତି । ଆମ ପ୍ରଦେଶରେ ସାହିତ୍ୟସେବୀମାନେ ହିଁ ସାହିତ୍ୟିକମାନଙ୍କର ଶତ୍ରୁତା କରିବାକୁ ସୁଖମଣନ୍ତି । ସେମାନଙ୍କୁ ମୁଁ ନିମନ୍ତ୍ରଣ କଲି କବିତା ପାଠ କରିବା ପାଇଁ । ଯଦି ଅଶାନ୍ତି କରନ୍ତି, ତେବେ ମୋ କାର୍ଯ୍ୟକାଳ ମଧ୍ୟରେ ଭଦ୍ରକ ମାଟିରେ ଏକାଡ଼େମୀ ପାଦ ପକାଇବ ନାହିଁ ବୋଲି ସାବଧାନ କରାଇଦେଲି, ସୁରୁଖୁରୁରେ ସାହିତ୍ୟ ସଭା ଓ କବିତାପାଠୋତ୍ସବ ହେଲା । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ସଭାପତି କବି ରମାକାନ୍ତ ରଥ ଉଦ୍‌ଘାଟନ କଲେ ଏବଂ ଅତିଥିବକ୍ତା ଥିଲେ କବି ବ୍ରଜନାଥ ରଥ ଓ ଡଃ ସନାତନ ମହାନ୍ତି । ଆଲୋଚନା ଅବସରରେ ରମାକାନ୍ତ ବାବୁଙ୍କୁ କହିଲି, ଆପଣଙ୍କ କାର୍ଯ୍ୟକାଳ ସମୟରେ କେନ୍ଦ୍ର ଏକାଡ଼େମୀ କିଛି ଭଲ ଓଡ଼ିଆ ବହି ପ୍ରକାଶ କରନ୍ତୁ । ରମାକାନ୍ତ ବାବୁ କହିଲେ, ତାହା ଏତେ ସହଜ ନୁହେଁ । ଓଡ଼ିଶାରେ କାହାରି ବିଷୟରେ କିଛି ଲେଖିବା ପାଇଁ ବରାଦ କରାଗଲେ ଲେଖକକୁ ଉତ୍ସାହିତ କରିବା ପରିବର୍ତ୍ତେ ଆମର ସାହିତ୍ୟପ୍ରେମୀମାନେ ତାଙ୍କ ବିରୁଦ୍ଧରେ ବେନାମୀ ଚିଠି ପକାଇବାକୁ ଅକୁଣ୍ଠିତ ହୁଅନ୍ତି ନାହିଁ । ପରିଣାମ ହୁଏ, ସେହି ପ୍ରକାଶନ ଯୋଜନାଟି ଅନ୍ୟ ଭାଷାଭାଷୀ ଉପଭୋଗ କରନ୍ତି । ଏହା ଏକ ଜାତୀୟ ରୋଗରେ ପରିଣତ ହୋଇଯାଇଛି । କେହି କାହାକୁ ସହ୍ୟ କରିବାକୁ ପ୍ରସ୍ତୁତ ନୁହନ୍ତି ।

ଓଡ଼ିଶାର ଶିଳ୍ପନଗରୀ ରାଉରକେଲାରେ ଏକାଡ଼େମୀ ଆନୁକୂଲ୍ୟରେ ଦୁଇଦିନବ୍ୟାପୀ ସାହିତ୍ୟ ସମାରୋହରେ ସଭାପତି ହେବା ପାଇଁ ୨୭ ତାରିଖ ପୂର୍ବାହ୍ନରେ ରାଉରକେଲା ଯାତ୍ରା କଲି । ଏହି ଦୀର୍ଘପଥର ସହଯାତ୍ରୀ ଥିଲେ ଉପସଭାପତି ଉମାଶଙ୍କର ବାବୁ ଏବଂ ଅଫିସର ବରିଷ୍ଠ କର୍ମଚାରୀ ବହଲିବାବୁ ଓ ଷେନୋ ମିଶ୍ରବାବୁ । ୨୮ ତାରିଖ ପୂର୍ବାହ୍ନରେ

ଏକ ଭବ୍ୟ ଉଦ୍‌ଘାଟନ ଉତ୍ସବରେ ସଭାପତି ହେଲି ସର୍ବଭାରତୀୟ ଦର୍ଶକମାନଙ୍କ ସମାରୋହରେ । ଆମର ଉଦ୍‌ଘାଟକ ଥିଲେ ମନ୍ତ୍ରୀ ମଂଗଳା କିସାନ ଓ ଅତିଥି ଥିଲେ ପ୍ରସିଦ୍ଧ କବି ଓ କମିଶନର ରାଜେନ୍ଦ୍ର କିଶୋର ପଣ୍ଡା ।

ସଭାମଞ୍ଚରେ ଆସୀନ ହେଲାପରେ ଦର୍ଶକମାନଙ୍କର ପ୍ରଥମ ଧାଡ଼ିରେ ପ୍ରଫେସର ପ୍ରଫୁଲ୍ଲ ପତି ବସିଥିବାର ଦେଖିଲି । ସେ ଜଣେ ଅତ୍ୟନ୍ତ ସମ୍ମାନିତ ବ୍ୟକ୍ତି । ତାଙ୍କର ଯଦିଓ କୌଣସି ଭୂମିକା କାର୍ଯ୍ୟ ନିର୍ଘଣ୍ଟରେ ନଥିଲା, ଆମର କାର୍ଯ୍ୟାରମ୍ଭ ପୂର୍ବରୁ ପ୍ରଫେସର ପତିଙ୍କୁ ଅନୁରୋଧ କଲି ମଞ୍ଚ ଉପରକୁ ଆସି ଆମକୁ ଆଶୀର୍ବାଦ ଦେବା ପାଇଁ । ଏହା ଥିଲା ମୋର ଏକ ଭୁଲ ନିଷ୍ପତ୍ତି । ପ୍ରଫେସର ପତି ମହାଶୟ ଔଚିତ୍ୟଜ୍ଞାନ ହରାଇ ଅତ୍ୟନ୍ତ ଅସୂୟାବଚନ ଶୁଣାଇ ଏକାଡ଼େମୀକୁ ବିଦ୍ରୂପ କରିବାକୁ ଲାଗିଲେ । ତାଙ୍କର ବକ୍ତବ୍ୟ ରହିଲା– ଏହା କ'ଣ କେବଳ ଓଡ଼ିଆ ସାହିତ୍ୟ ଏକାଡ଼େମୀ ? ଆମର କୋଶଳୀ ସାହିତ୍ୟର ସ୍ଥାନ କାହିଁ ? ଏହିପରି ଅନେକ ଅଭିଯୋଗ । ଆଶୀର୍ବାଦ ବଦଳରେ ଅଭିଶାପ । ମୁଁ ବିଚଳିତ ହୋଇପଡ଼ିଲି । ଏତେବଡ଼ ଶିକ୍ଷାବିତ୍ ହୋଇ ଏତେ ସଂକୀର୍ଣ୍ଣ ପ୍ରତିକ୍ରିୟା । ସେ ମଞ୍ଚତଳକୁ ଓହ୍ଲାଇଗଲାପରେ ମୁଁ ଶ୍ରୋତୃମଣ୍ଡଳୀ ଉଦ୍ଦେଶ୍ୟରେ ଘୋଷଣା କଲି– ଅଧ୍ୟାପକ ପତି ଶ୍ରୋତାମାନଙ୍କୁ ବିଭ୍ରାନ୍ତ କରିଥିବାରୁ ମୁଁ ଅତ୍ୟନ୍ତ ଦୁଃଖ ପ୍ରକାଶ କରୁଛି । ଆମର ଓଡ଼ିଶା ସାହିତ୍ୟ ଏକାଡ଼େମୀ; ଓଡ଼ିଆ ସାହିତ୍ୟ ଏକାଡ଼େମୀ ନୁହେଁ । ଓଡ଼ିଶାରେ ଯେତେ ଭାଷାର ସାହିତ୍ୟସେବୀ ଅଛନ୍ତି, ସମସ୍ତଙ୍କୁ ଗ୍ରହଣ କରି ଚାଲିଆସିଛି ଓଡ଼ିଶା ସାହିତ୍ୟ ଏକାଡ଼େମୀ । କୋଶଳୀ ସାହିତ୍ୟ, ଆଦିବାସୀ ସାହିତ୍ୟ, ଇଂରେଜୀ ସାହିତ୍ୟ, ବଂଗଳା, ଉର୍ଦ୍ଦୁ ଅଥବା ତେଲୁଗୁ ସାହିତ୍ୟରେ ଯଦି କେହି ଓଡ଼ିଶାବାସୀ ସାଧନାରତ, ସେ ସମସ୍ତଙ୍କୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ କୋଳେଇ ନେଇ ଗର୍ବ ଅନୁଭବ କରିବ । ଏହାପରେ ଅତ୍ୟନ୍ତ ସମାରୋହରେ ରାଉରକେଲାରେ ସାହିତ୍ୟ ଉତ୍ସବ ପାଳିତ ହେଲା । ଆମର ସାହିତ୍ୟ ମାଧ୍ୟମରେ ଭାବଗତ ଆଲୋଚନା ଏକତା, ଦ୍ୱିତୀୟ ଦିନର ଦ୍ୱିତୀୟ ଅଧିବେଶନରେ ଆଲୋଚ୍ୟ ବିଷୟ ଥିଲା "ସାଂପ୍ରତିକ ଚର୍ଚ୍ଚା" । ଅନେକ ପ୍ରବୀଣ ଆଲୋଚକ ଏଥିରେ ଅଂଶ ଗ୍ରହଣ କରି ସମାରୋହକୁ ସାଫଲ୍ୟମଣ୍ଡିତ କରିଥିଲେ ।

୨୦୦୦ ମସିହା ନଭେମ୍ବର ମାସ ୧୯ ତାରିଖ ରବିବାର । ଓଡ଼ିଆ ସାହିତ୍ୟ ଓ ଅଭିନୟ କଳାକ୍ଷେତ୍ରରେ ଆଉ ଏକ କଳାଦିବସ । ଓଡ଼ିଶାର ସର୍ବାଞ୍ଚଳରେ ବହୁ ଦଶନ୍ଧି ଧରି ନିଜର ଅଭିନୟ ଜରିଆରେ ଜନମାନସକୁ ମନ୍ତ୍ରମୁଗ୍ଧ କରିଥିବା ବାବି ଓରଫ୍ ସାମୁଏଲ ସାହୁ ସବୁଦିନ ପାଇଁ ଆଖି ବୁଜିଲେ । ଏକଦା ରାଉରକେଲାର ଏକ ଭବ୍ୟ ସମାରୋହରେ ବାବିଙ୍କୁ ସମ୍ବର୍ଦ୍ଧନା କରାଯାଇଥିଲା । ଏହି ସଭାରେ ଅଧ୍ୟାପକ ପ୍ରାଣବନ୍ଧୁ କରଙ୍କ ସହିତ ମୁଁ ଯୋଗ ଦେଇଥିଲି ଅତିଥି ବକ୍ତା ଭାବରେ । ସମ୍ମାନ ଓ ଉପଢୌକନରେ ହୁଏତ ସାମୟିକ ମନ ପୂରି ଉଠୁଥିବ, ମାତ୍ର ପେଟ ପୂରେ ନାହିଁ । ଆଜୀବନ ଜନତାକୁ ରଂଗରସରେ ଆନନ୍ଦ ପ୍ରଦାନ କରି ଦାରିଦ୍ର୍ୟ ଜର୍ଜରିତ ବାବି ଶେଷରେ ଦୀର୍ଘନିଃଶ୍ୱାସ ପକାଇ କହୁଥିଲେ, "ଏତେ ଦେଇ ଦେଇ ମୁଁ ପାଇଲି କ'ଣ ?"

ସେହିପରି ଆଜି ଦିନରେ ଆଉ ଏକ ଦୁଃଖଦ ସମ୍ବାଦ ଶୁଣିବାକୁ ମିଳିଲା । ଆଜୀବନ ବିପ୍ଳବୀ କବି, ପ୍ରସିଦ୍ଧ ସାମ୍ବାଦିକ ଓ ସଂପାଦକ ଏବଂ ସର୍ବୋପରି ଅଗ୍ନିବର୍ଷୀ ବକ୍ତା ମନମୋହନ ମିଶ୍ରଙ୍କର ଦେହାନ୍ତ ହୋଇଗଲା । ପୁରୀ ନିକଟବର୍ତ୍ତୀ ବୀରପ୍ରତାପପୁର ଶାସନରେ ଏହି ପ୍ରସିଦ୍ଧ ସାହିତ୍ୟରଥୀ ୧୯୧୮ ସାଲରେ ଜନ୍ମଗ୍ରହଣ କରିଥିଲେ । ବାମପନ୍ଥୀ ଆନ୍ଦୋଳନରେ ସେ ଥିଲେ ଆଗଧାଡ଼ିର ସୈନିକ । ସ୍ୱର୍ଗତ କବି ମନମୋହନଙ୍କ ଦଶାହ ଦିବସରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଭୁବନେଶ୍ୱର ମିଉଜିଅମ ହଲରେ ଏକ ଶୋକସଭାର ଆୟୋଜନ କରିଥିଲେ ମୋ ସଭାପତିତ୍ୱରେ । ସେହି ଅନୁଷ୍ଠାନରେ ଅତିଥିବକ୍ତା ଭାବରେ ଯୋଗ ଦେଇଥିଲେ କବି ରବି ସିଂ, ଆଶିଷ ମହାପାତ୍ର, ଔପନ୍ୟାସିକ ବିଭୂତି ପଟ୍ଟନାୟକ, ସ୍ୱାଧୀନ ପଟ୍ଟନାୟକ, ନାରୀ କବି ଇନ୍ଦୁ ମିଶ୍ର ଓ ଅଜୟ ରାଉତ ।

କଲିକତା ନଗରୀରେ ମାନ୍ୟବର ରାଜ୍ୟପାଳଙ୍କ ସଭାପତିତ୍ୱରେ ଆହୂତ ହେଲା ଇଷ୍ଟର୍ଣ୍ଣ ଜୋନାଲ କଲ୍‌ଚରାଲ୍ ସେଣ୍ଟର କାର୍ଯ୍ୟକାରୀ ସମିତିର ଏକ ବୈଠକ ଡିସେମ୍ବର ମାସ ଏଗାର ତାରିଖରେ । ଏଠାରେ ମଣିପୁର, ତ୍ରିପୁରା, ଆସାମ, ପଶ୍ଚିମବଂଗ ଏବଂ ଓଡ଼ିଶାର ବିଭିନ୍ନ ଏକାଡ଼େମୀର କର୍ମକର୍ତ୍ତାମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା ଆଲୋଚନାରେ ଅଂଶ ଗ୍ରହଣ କରିବା ପାଇଁ । ଏକାଡ଼େମୀର ସଭାପତି ଭାବରେ ଲଳିତକଳା ଏକାଡ଼େମୀର ସଭାପତି ଅସିତ ମୁଖାର୍ଜୀଙ୍କ ସହିତ ଉଡ଼ାଜାହାଜରେ କଲିକତା ଗଲି ରବିବାର ଦଶ ତାରିଖରେ । କଲିକତାରେ ଗୋଲମାର୍କେଟରେ ଅବସ୍ଥିତ ଇନ୍‌ଷ୍ଟିଚିଉଟ ଅଫ୍ କଲ୍‌ଚର ବିଲ୍‌ଡ଼ିଂରେ ଅତିଥିମାନଙ୍କୁ ରହିବାର ବନ୍ଦୋବସ୍ତ କରାଯାଇଥିଲା । ରାଜ୍ୟପାଳଙ୍କ ସଭାପତିତ୍ୱରେ ରାଜଭବନରେ ଏହି ଆଲୋଚନା ବୈଠକରେ ଆମ ଦୁଇଜଣଙ୍କ ସହିତ ଓଡ଼ିଶାରୁ ଯୋଗ ଦେଇଥିଲେ କବି ସୌଭାଗ୍ୟ ମିଶ୍ର, ସଂଗୀତକାର ପ୍ରଫୁଲ୍ଲ କର, ପ୍ରିୟମ୍ବଦା ମହାନ୍ତି ହେଜମାଦି, ନାଟ୍ୟକାର ବିଶ୍ୱଜିତ ଦାସ ଏବଂ ସାମ୍ବାଦିକ ମଣିପଦ୍ମା ଦେବୀ । ଆଲୋଚନା ବୈଠକ ଶେଷରେ ରାଜ୍ୟପାଳ ମହୋଦୟ ଏହି ଲେଖକ ଓ କଳାକାରମାନଙ୍କୁ ଦିବାଭୋଜନରେ ଆପ୍ୟାୟିତ କରିଥିଲେ ।

ଉଡ଼ାଜାହାଜରେ ବସିବା ଥିଲା ମୋର ପ୍ରଥମ ଅନୁଭୂତି । ଭୁବନେଶ୍ୱରରୁ କଲିକତା ବ୍ୟୋମଯାନରେ ମାତ୍ର ଏକଘଣ୍ଟାର ବାଟ । ଫେରିଲି ୧୨ ତାରିଖ ସନ୍ଧ୍ୟାରେ ବିଶ୍ୱଜିତବାବୁଙ୍କ ସହିତ । ଅନ୍ୟମାନେ ଅନ୍ୟକାର୍ଯ୍ୟରେ ରହିଗଲେ । ଭୁବନେଶ୍ୱର ଆକାଶରେ ଉଡ଼ାଜାହାଜ ପ୍ରାୟ ଏକଘଣ୍ଟାକାଳ ଘୂରି ବୁଲୁଥାଏ । ତଳକୁ ଓହ୍ଲାଇବାର ସଂକେତ ଦିଆଯାଉ ନଥାଏ । ସମସ୍ତ ଯାତ୍ରୀ ତଟସ୍ଥ । କିଛି ଯାନ୍ତ୍ରିକ ଗୋଳମାଳ ହେଲା କି ? ମୋର ଉଡ଼ାଜାହାଜରେ ବସିବାର ମହାର୍ଘ ଅନୁଭୂତି ମଉଳି ଯାଉଥାଏ । ଭାବୁଥାଏ ମନେମନେ–

''ଲିଭିବ ଏଥି ମୋର ଜୀବନଦୀପ ।
ଏ ବାରତା ନ ଯିବ ଜନସମୀପ ।''

ଯାହାହେଉ, ପ୍ରାୟ ଏକଘଣ୍ଟା ପରେ ଉଡ଼ାଜାହାଜ ତଳକୁ ଓହ୍ଲାଇଲା ନିରାପଦରେ । ଏକାଡ଼େମୀ ଗାଡ଼ିରେ କଟକ ଫେରି ଆଶ୍ୱସ୍ତ ହେଲି ।

ସଭାପତି ଦାୟିତ୍ୱ ନେବାପରେ ଡିସେମ୍ବର ୧୯ ତାରିଖରେ ୨ୟ ଥର ପାଇଁ କାର୍ଯ୍ୟକାରୀ ସମିତିର ବୈଠକ ଡାକିଲି । ଏହା ଥିଲା ଚଳିତବର୍ଷର ଶେଷ ବୈଠକ । ଏଥିରେ ନୂତନ ବର୍ଷ ପାଇଁ ବଜେଟ ଗୃହୀତ ହେଲା ଏବଂ ନିଷ୍ପତ୍ତି ହେଲା ସମ୍ବଲପୁରରେ ହେବ ଲେଖକମାନଙ୍କୁ ସମ୍ମାନିତ କରିବା ପାଇଁ ସାହିତ୍ୟ ଉତ୍ସବ । ଏଥିପାଇଁ ସର୍ବସମ୍ମତିକ୍ରମେ ଏ ବର୍ଷର ଜଗନ୍ନାଥ ପୁରସ୍କାର ପାଇଁ ମନୋନୀତ ହେଲେ କବି ବିନୋଦଚନ୍ଦ୍ର ନାୟକ । କେଉଁମାନେ ସମ୍ମାନିତ ହେବେ, ତାହା ମଧ୍ୟ ସ୍ଥିର କରାଗଲା ।

୨୦ ତାରିଖରେ ଏକାଡ଼େମୀ ଅଫିସରେ ସାଧାରଣ ପରିଷଦର ବୈଠକ ବସିଲା । ସାଧାରଣ ପରିଷଦର କାର୍ଯ୍ୟକାଳ ପୂରିଯିବା ଉପରେ । ଓଡ଼ିଶାର ସର୍ବାଞ୍ଚଳର ଲେଖକ ପ୍ରତିନିଧିମାନଙ୍କୁ ସ୍ୱାଗତ କରିବାର ସୌଭାଗ୍ୟ ଲାଭ କଲି ।

ଦୁଇହଜାର ଏକ ମସିହା ଜାନୁଆରୀ ୨୮ ତାରିଖ ମୋ ପାଇଁ ଏକ ସ୍ମରଣୀୟ ଦିବସ । ଏହି ଦିବସରେ କଟକ କଳାବିକାଶ କେନ୍ଦ୍ର ହଲରେ ଗଙ୍ଗାଧର ରଥ ଫାଉଣ୍ଡେସନ ପ୍ରଦତ୍ତ ସାହିତ୍ୟ ଭାରତୀ ସମ୍ମାନରେ ମୋତେ ଭୂଷିତ କରାଗଲା । ଏହି ଅନୁଷ୍ଠାନରେ ପ୍ରଧାନ ଅତିଥି ସୁସାହିତ୍ୟିକ ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ହାତରୁ ଏକଲକ୍ଷ ଟଙ୍କାର ଚେକ୍ ଓ ସାହିତ୍ୟଭାରତୀ ମାନପତ୍ର ଗ୍ରହଣ କଲି । ଏହି ସମ୍ମାନ ପାଇଲା ପରେ ଶତାଧିକ ଲେଖକ ଓ ହିତାକାଂକ୍ଷୀ ବନ୍ଧୁ ପରିଜନ ଦୂରଭାଷ ଓ ପୋଷ୍ଟକାର୍ଡ଼ ଯୋଗେ ଅଭିନନ୍ଦନ ଜଣାଇଲେ । ସାହିତ୍ୟଭାରତୀ ସମ୍ମାନ ଉତ୍ସବରେ ଯେଉଁ ଲିଖିତ ଭାଷଣ ପ୍ରଦାନ କରିଥିଲି, ତାହାର ଅଳ୍ପକିଛି ଏଠାରେ ଉଦ୍ଧାର କରୁଛି– ''ସାହିତ୍ୟ'' ବିଷୟରେ କେତୋଟି ଚିରନ୍ତନ ସତ୍ୟ ପ୍ରଚାର କରାଯାଇଛି । ଯେପରି ''ହିତଂ ସନ୍ନିହିତଂତଦ୍ ସାହିତ୍ୟମ୍''– ଯାହା ସମାଜର ହିତ ସାଧନ କରେ । ''ସହିତଂ ରସେନ ଯୁକ୍ତମ୍ ତସ୍ୟ ଭାବଃ ସାହିତ୍ୟମ୍'' । ଯାହା ପାଠକର ଅଥବା ଶ୍ରୋତାର ମନକୁ ତୃପ୍ତ କରିଥାଏ । ''ଅବହିତଂ ମନସା ମହର୍ଷିଭିଃ ତଦ୍ ସାହିତ୍ୟମ୍'' । ପାଠକର ମନକୁ ଯାହା ଉନ୍ନତ କରିଥାଏ । ସାହିତ୍ୟ ତେଣୁ ପାଠକ ପାଖରେ ଅପହଂଚ ହେବ କିପରି ? ସାହିତ୍ୟ ସମାଜକୁ ଗଠନ କରେ । ସାହିତ୍ୟସେବୀର ତାହା ହେଉଛି ଏକ ପବିତ୍ର ଏବଂ ସାରସ୍ୱତ କର୍ତ୍ତବ୍ୟ । Oscar Wild ତେଣୁ ଯଥାର୍ଥରେ କହିଥିଲେ– "Literature always anticipates life. It does not copy it, but mould it to its purpose."

କବିର ଲେଖନୀ ଯାହା ସୃଷ୍ଟି କରେ, ତାହା ଆଉ ବ୍ୟକ୍ତିଗତ ହୋଇ ରହେ ନାହିଁ । ସମଗ୍ର ସମାଜ ହୁଏ ତାହାର ଅଧିକାରୀ । କେଉଁ ପ୍ରାଚୀନ ଯୁଗରୁ ଭାରତର ବୈଦିକ ଋଷି ଏହି ଭାବନାଟି ସ୍ମରଣ କରାଇଦେଇ ଅଛନ୍ତି । 'ଋଗ୍‌ବେଦ'ରେ କୁହାଯାଇଛି–

''ଏତଦ୍ ବଚୋ ଚରିତର ମାପିମୃଷ୍ଟ
ଆ ଯଦ୍‌ତେ ଘୋଷନ୍ ଉତ୍ତର ଯୁଗନି ।''

ଏହାର ମର୍ମବାଣୀ ହେଲା– ହେ କବି, ଏକଥା ଭୁଲିଯାଅ ନାହିଁ ଯେ ତୁମ ମୁଖନିସୃତ କଥା ପରବର୍ତ୍ତୀ ଯୁଗମାନଙ୍କରେ ପ୍ରତିଧ୍ୱନିତ ହେବ । ଏଥିରୁ ଜଣାଯିବ ଯେ ମନୁଷ୍ୟର ଚିନ୍ତା

ଯେତେବେଳେ କଥା ବା ଲେଖାରୂପରେ ପ୍ରକାଶ ପାଏ, ସେତେବେଳେ ତାହା ବ୍ୟକ୍ତିଗତ ବିଷୟ ନୁହେଁ । ତାହା ସମାଜର ସମ୍ପତ୍ତି ହୋଇଯାଏ ।

ତେଣୁ ଲେଖକ ହେଉ ଉଦାର, ସହାନୁଭୂତିଶୀଳ ଏବଂ ପ୍ରିୟ ପାଠକ ସଂସାର ପାଖରେ ହେଉ ଅତ୍ୟନ୍ତ ଆପଣାର । ପାଠକୀୟ ସ୍ୱୀକୃତି ହେଉ ସାହିତ୍ୟ ସାଧନାର ସର୍ବଶ୍ରେଷ୍ଠ ଐଶ୍ୱର୍ଯ୍ୟ । ଲେଖକ ଓ ପାଠକ ମଧ୍ୟରେ ପ୍ରତିଷ୍ଠା ହେଉ ପ୍ରେମାନୁଭୂତି ଓ ରସାନୁଭୂତିର ଅନାବିଳ ପ୍ରଣୟରେଖା । ଥରେ କବିଗୁରୁ ରବୀନ୍ଦ୍ରନାଥ ଲେଖିଥିଲେ **ଏହିପରି**–

"ଏକାକୀ ଗାୟକେର ନହେତ ଗାନ
  ମିଲିତେ ହବେ ଦୁଇଜନେ,
ଏକଜନ ଗାବେ ଖୁଲିୟା ଗଲା
  ଅପରଜନ ଗାବେ ମନେ ।
ତଟେର ବୁକେ ଲାଗେ ଜଲେର ଢେଉ
  ତବେତ କଲଗାନ ଉଠେ
ବାତାସେ ବନ ସଭା ଶିହରି ଜାଗେ
  ତବେତ ମର୍ମର ଛୁଟେ ।
ଜଗତେ ଯଥାଯତ ରହେଛେ ଧ୍ୱନି
  ଯୁଗଲେ ମିଲିୟାଛେ ଆଗେ,
ଯେଖାନେ ପ୍ରେମ ନେଇ ବୋବାର ସଭା
  ସେଖାନେ ଗାନ ନାଇ ଜାଗେ ।"

କୌଣସି ଜାତି କେବେ ବଡ଼ ହୋଇନାହିଁ ତାହାର ବିଶାଳ ହର୍ମ୍ୟମାଳା, ଆକାଶଚୁମ୍ବି ମିନାର, ବିରାଟ କଳକାରଖାନା, ପୃଥିବୀ ଧ୍ୱଂସୀ ଅସୁମାରୀ ମାରଣାସ୍ତ୍ର ଅଥବା ଅକଳନ ସୁଦୂରଗାମୀ ଯାନ୍ତ୍ରିକ ଯାନବାହନ ଯୋଗୁ । ଗୋଟିଏ ଜାତିର ପ୍ରକୃତ ମହାନତାର ମାନଦଣ୍ଡ ହେଲା ତାହାର ବଳିଷ୍ଠ ଜାତୀୟ ଚରିତ୍ର, ଉନ୍ନତ ମେଧା ଓ ମନୀଷା ଏବଂ ସର୍ବୋପରି ଚିରନ୍ତନ ସାରସ୍ୱତ ସୃଷ୍ଟି ।

ତେଣୁ ଆମେ ଆଶା କରିବା, ଦରଦୀ କବିର ସାହିତ୍ୟସାଧନା ହେଉ ପାଠକସମାଜର ଅତ୍ୟନ୍ତପ୍ରିୟ ଆଲୋକବର୍ତ୍ତିକା । ଜୟମା' କଳିଙ୍ଗଭାରତୀ ! ଜୟହିନ୍ଦ୍ ।"

ଏକାଡ଼େମୀ କାର୍ଯ୍ୟକାଳ ମଧ୍ୟରେ ସାହିତ୍ୟଭାରତୀ ସମ୍ମାନ ଥିଲା ମୋ ପାଇଁ ଆଉ ଏକ ଆକସ୍ମିକ ଅଥଚ ମଧୁମୟ ଅନୁଭୂତି । ଏପରି ସ୍ୱୀକୃତି ଥିଲା ମୋର କଳ୍ପନାର ବାହାରେ ।

ଏକାଡ଼େମୀର ଆନୁକୂଲ୍ୟରେ ସମ୍ମାନ ବିତରଣ ଉତ୍ସବ ପାଇଁ ନିର୍ଦ୍ଦିଷ୍ଟ ହେଲା ୨୦୦୧ ମସିହା ଫେବୃୟାରୀ ମାସ ୨୪ ତାରିଖ । ଏହି ଉତ୍ସବରେ ସୁଲେଖକ ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ନିମନ୍ତ୍ରଣ କରାଯାଇଥିଲା ଉପଢୌକନ ପ୍ରଦାନ କରି ଲେଖକମାନଙ୍କୁ ସମ୍ମାନିତ କରିବା ପାଇଁ । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ଓଡ଼ିଆ ଭାଷା ଅଥବା ସାହିତ୍ୟରେ

ଆଦୌ ଖଡ଼ିଛୁଆଁ ନଥିଲେ ମଧ୍ୟ ଇଂରେଜୀ ଭାଷାରେ ସେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଅଛନ୍ତି । ଭାରତୀୟ ସଂସ୍କୃତି, ସଭ୍ୟତା ଓ ଇତିହାସ ବିଷୟରେ ତାଙ୍କର ତିନିଗୋଟି ପୁସ୍ତକ ପ୍ରକାଶିତ ହୋଇଅଛି । ତାହାହେଲା (୧) Garden of life. ପରିବେଶ ଓ ପାରମ୍ପରିକ ଜ୍ଞାନ ହେଉଛି ଏହି ଗ୍ରନ୍ଥର ଆଖ୍ୟାନଭାଗ । (୨) The second paradise. ଭାରତୀୟ ସଂସ୍କୃତି ହେଲା ଏହି ପୁସ୍ତକର କଥାବସ୍ତୁ । (୩) A Desert Kingdom. ଭାରତୀୟ ଇତିହାସକୁ ଉପଲକ୍ଷ୍ୟ କରି ଏହି ଗ୍ରନ୍ଥ ଲିଖିତ ।

୨୪ ତାରିଖଦିନ ପୂର୍ବାହ୍ନରେ ସମ୍ବଲପୁରର ଆରାଧ୍ୟା ମା' ସମ୍ବଲେଶ୍ୱରୀଙ୍କୁ ଦର୍ଶନ କରି ବୁର୍ଲାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଡକ୍ଟର ଜେନାଙ୍କୁ ସାକ୍ଷାତ କଲି । ପୂର୍ବରୁ ବିଶ୍ୱବିଦ୍ୟାଳୟ କବି ବିନୋଦ ନାୟକଙ୍କ ଲିଖିତ ''କବିତା ପରମେଶ୍ୱରୀ'' ଆଲୋଚନାଗ୍ରନ୍ଥର ପାଣ୍ଡୁଲିପି ମୋତେ ପ୍ରେରଣ କରିଥିଲେ ଉପଯୁକ୍ତ ସମୀକ୍ଷା କରି ରିପୋର୍ଟ ଦେବା ପାଇଁ । ଅନୁକୂଳ ଅଭିମତ ହେଲେ ତାହାକୁ ବିଶ୍ୱବିଦ୍ୟାଳୟ ପ୍ରକାଶ କରିବେ । ମୋର ଅଭିମତ ଓ ଉକ୍ତ ପୁସ୍ତକର ପାଣ୍ଡୁଲିପି ଡକ୍ଟର ଜେନାଙ୍କୁ ପ୍ରଦାନ କରି ଫେରି ଆସିଲି ସହରକୁ । ଅପରାହ୍ଣ ଚାରିଟାବେଳେ ସମ୍ବର୍ଦ୍ଧନା ସଭା ହେଲା । ମୁଖ୍ୟମନ୍ତ୍ରୀ କେବଳ କବି ବିନୋଦଚନ୍ଦ୍ର ନାୟକଙ୍କୁ ଜଗନ୍ନାଥ ସମ୍ମାନରେ ଭୂଷିତ କରି ସାମାନ୍ୟ ବକ୍ତବ୍ୟ ରଖି ଅନ୍ୟ ଜରୁରୀ କାର୍ଯ୍ୟରେ ବିଦାୟ ନେଲେ । ଅନ୍ୟ ଅତିଥିବର୍ଗ ହେଲେ ଗୌରହରି ପଣ୍ଡା ଢେଙ୍କାନାଳ, ଘନଶ୍ୟାମ ତ୍ରିପାଠୀ ଖଣ୍ଡପଡ଼ା, ଉଦୟନାଥ ଶ୍ରୀଚନ୍ଦନ ପାଟଣାଗଡ଼, ଡକ୍ଟର ଅର୍ଜୁନ ଶତପଥୀ ରାଉରକେଲା, ମାଧବଚନ୍ଦ୍ର ଶତପଥୀ କଟକ, କସ୍ତୁରୀଚରଣ ଦାସ କଲିକତା । ସଭାପତି ଭାବରେ ମୋ ଦ୍ୱାରା ଏମାନେ ସମ୍ବର୍ଦ୍ଧିତ ହେଲେ । ଅନ୍ୟ ଦୁଇଜଣ ଅତିଥି ଉତ୍କଳିକା ଦାସ ଓ ହେମଲତା ଦାସ ଥିଲେ ଅନୁପସ୍ଥିତ ।

ଦୀର୍ଘ ଭାଷଣ ନହେଲେ ମଧ୍ୟ ମୁଖ୍ୟମନ୍ତ୍ରୀ ସମସ୍ତ ବକ୍ତବ୍ୟ ଓଡ଼ିଆ ଭାଷାରେ ରଖିଥିଲେ । ଉପାନ୍ତ ଅଞ୍ଚଳରେ ଓଡ଼ିଆ ସଂସ୍କୃତି ଓ ଭାଷାର ସୁରକ୍ଷା ପାଇଁ ଉଦ୍ୟମ କରିବାକୁ ସେ ଆହ୍ୱାନ ଦେଇଥିଲେ । ସେ କହିଥିଲେ, ଓଡ଼ିଆ ଭାଷା ଓ ସଂସ୍କୃତି କୌଣସି ଗୁଣରେ ଅନ୍ୟ ଭାଷା ବା ସଂସ୍କୃତିଠାରୁ ନ୍ୟୂନ ନୁହେଁ । ବହୁ କବି, ଲେଖକ, ସାହିତ୍ୟିକଙ୍କ ନିରଳସ ସାଧନା ଯୋଗୁ ଓଡ଼ିଆ ସାହିତ୍ୟ ଅନ୍ୟ ଯେକୌଣସି ଶୀର୍ଷସ୍ଥାନୀୟ ସାହିତ୍ୟର ସମକକ୍ଷ ହୋଇପାରିଛି ।''

ମୁଖ୍ୟମନ୍ତ୍ରୀ ବିଦାୟ ନେଲାପରେ ମୋ ପାଇଁ ଆସିଲା ଏକ ପରୀକ୍ଷାର ବେଳ । ଅତୀତରେ ଏହି ସହରରେ ପୂର୍ବତନ ଜଣେ ଏକାଡ଼େମୀ ସଭାପତି କୋଶଳୀ ସାହିତ୍ୟପ୍ରେମୀମାନଙ୍କର ପ୍ରଶ୍ନବାଣରେ କ୍ଷତବିକ୍ଷତ ହୋଇ ଅତ୍ୟନ୍ତ ଅପଦସ୍ତ ଭାବରେ ବିଦାୟ ନେଇଥିଲେ । ମା' ସମଲେଶ୍ୱରୀଙ୍କୁ ମନେମନେ ଗୁଣି ହେଉଥାଏ ଏହି ସଂକଟର ଉପଯୁକ୍ତ ଭାବରେ ସମ୍ମୁଖୀନ ହେବା ପାଇଁ । ସମ୍ବର୍ଦ୍ଧନାର ଶେଷ ପର୍ଯ୍ୟାୟରେ ଜଣେ ସମ୍ବର୍ଦ୍ଧିତ ସାହିତ୍ୟିକ ଅତି କଠୋର ଭାବରେ ଏକାଡ଼େମୀଙ୍କୁ ସମାଲୋଚନା କରି ଭାଷଣ ଦେଲେ । କାରଣ ଏକାଡ଼େମୀ କୋଶଳୀ ସାହିତ୍ୟ ପାଇଁ କିଛି କରୁନାହାନ୍ତି । ତାଙ୍କୁ ସମର୍ଥନ କରି କେତେଜଣ

ଯୁବକ ଶ୍ରୋତା ମଧ୍ୟ ଅଣ୍ଟାଭିଡ଼ି ବାହାରି ଆସିଲେ ପ୍ରଶ୍ନବାଣରେ ହତଚକିତ କରିବା ପାଇଁ । ସଦର୍ପରେ ଠିଆ ହୋଇ ଏହି ଭାବପ୍ରବଣ ସାହିତ୍ୟସେବୀମାନଙ୍କ ଆଗରେ ଘୋଷଣା କଲି– କୋଶଳୀ ସାହିତ୍ୟର ଲେଖକମାନଙ୍କୁ ସାହିତ୍ୟ ଏକାଡ଼େମୀ ସମ୍ମାନିତ କରିବା ଉଚିତ । ମାତ୍ର ଆଜି ପର୍ଯ୍ୟନ୍ତ ହେଲା ନାହିଁ କାହିଁକି ? ଏହି ବିଗତ ତିନି ଦଶନ୍ଧି ମଧ୍ୟରେ ପଶ୍ଚିମ ଓଡ଼ିଶାର ବହୁ ନେତା ମନ୍ତ୍ରୀ ଏବଂ ଏମ୍.ଏଲ୍.ଏ. ହୋଇଛନ୍ତି । ପ୍ରଭାବଶାଳୀ ପ୍ରଶାସକ ଭାବରେ ମଧ୍ୟ କାର୍ଯ୍ୟ କରିଛନ୍ତି । ଏମାନେ କ'ଣ କରୁଥିଲେ ? ଆପଣମାନେ ସେମାନଙ୍କ ଜରିଆରେ କାମଟି ସୁରୁଖୁରୁରେ କରାଇ ପାରିଥାନ୍ତେ । ଏକାଡ଼େମୀ କେବଳ ପୁରସ୍କାର ଦେବା ପାଇଁ ପ୍ରସ୍ତାବ ଗ୍ରହଣ କରିପାରିବ । ମାତ୍ର ଏଥିପାଇଁ ସରକାର ଅର୍ଥ ବ୍ୟବସ୍ଥା କରିବା କଥା । ଆପଣମାନେ ସରକାରଙ୍କୁ ପ୍ରଭାବିତ କରି କାମ ହାସଲ କରିପାରନ୍ତି । ଏକାଡ଼େମୀ କାର୍ପଣ୍ୟ ପ୍ରକାଶ କରିବାର କୌଣସି ଅବକାଶ ନାହିଁ । ବିଦ୍ରୋହୀ ପ୍ରଶ୍ନକର୍ତ୍ତାଗଣ ଶାନ୍ତ ହୋଇଗଲେ । ଆନନ୍ଦ ମନରେ କଟକ ଫେରି ଆସିଲି । ସାହିତ୍ୟ ଏକାଡ଼େମୀ ଦାୟିତ୍ୱ ନେବା ଅବସରରେ ଓଡ଼ିଶା ସାହିତ୍ୟର ବୟୋବୃଦ୍ଧ କବି ସଚ୍ଚିଦାନନ୍ଦ ରାଉତରାୟ ମୋତେ ଦୂରଭାଷ ଯୋଗେ ବାରମ୍ବାର ଅନୁରୋଧ କଲେ ଏକାଡ଼େମୀ ଅଫିସ୍‌ରେ ଅନେକଦିନରୁ ପଡ଼ି ରହିଥିବା ତାଙ୍କ ଗ୍ରନ୍ଥାବଳୀ ପ୍ରକାଶ କରିବା ପାଇଁ । ପୁନଶ୍ଚ ଓଡ଼ିଆ ସାହିତ୍ୟର ସର୍ବମାନ୍ୟ ଅଧ୍ୟାପକ ଜୟକୃଷ୍ଣ ଥିଲେ ମୋର ଶିକ୍ଷାଗୁରୁ । ଏମ୍.ଏ. ଶ୍ରେଣୀରେ ଅଧ୍ୟାପନା କାଳରେ ସାର୍ ଅନେକ ସମୟରେ ତାଙ୍କ ଲିଖିତ ସଂସ୍କୃତଗ୍ରନ୍ଥ 'ମାତୃମୁକ୍ତି ମୁକ୍ତାବଳୀ' ର ଅନେକ ଶ୍ଳୋକ ଉଦ୍ଧାର କରି ମନ୍ତ୍ରମୁଗ୍ଧ କରିଦେଉଥିଲେ । ସେ ଗ୍ରନ୍ଥଟି ମଧ୍ୟ ଅନେକଦିନରୁ ଏକାଡ଼େମୀର ବିଚାରାଧୀନ । ସାର୍‌ଙ୍କର ସୁପୁତ୍ର ବିରଞ୍ଚି ମଧ୍ୟ ବାରମ୍ବାର ସ୍ମରଣ କରାଇଦେଲେ । ଇତିହାସ ଅଧ୍ୟାପକ ଯଜ୍ଞଦତ୍ତ ସାହୁ ଓଡ଼ିଶାର ସାଂସ୍କୃତିକ ଇତିହାସର ଗୋଟିଏ ଖଣ୍ଡର ପାଣ୍ଡୁଲିପି ଅନେକଦିନରୁ ଉପସ୍ଥାପନ କରିଥିଲେ ମଧ୍ୟ ପ୍ରକାଶନ କ୍ଷେତ୍ରରେ ତଦ୍‌ବିର ନଥିଲା । ଏ ବିଷୟରେ ଅନେକ ଅଫିସିକ କୁଣ୍ଠା ଏବଂ ସମୀକ୍ଷକମାନଙ୍କ ଆଳସ୍ୟ ବା ଅନାଗ୍ରହ ଥିଲା ଅନେକ ପରିମାଣରେ ଦାୟୀ ବୋଲି ଅନୁସନ୍ଧାନରୁ ବୁଝିଲି । କାର୍ଯ୍ୟକାରୀ ସମିତିରେ ଏହି ବିଷୟରେ ଆଲୋଚନା କରି ଏହାର ଯଥାଶୀଘ୍ର ପ୍ରକାଶନ ପାଇଁ ଉଦ୍ୟମ ଜାରି ରଖିଲି । ସୁଖର କଥା, ଅନେକ ଦିନରୁ ପଡ଼ି ରହିଥିବା ସଚ୍ଚି ରାଉତରାୟଙ୍କ ଗ୍ରନ୍ଥାବଳୀ ପୁସ୍ତକରୂପରେ ଆତ୍ମପ୍ରକାଶ କଲା । ୨୦୦୨ ମସିହା ଜାନୁଆରୀ ୪ ତାରିଖଦିନ ଭୁବନେଶ୍ୱର ପାନ୍ଥନିବାସରେ ମୋ ସଭାପତିତ୍ୱରେ ଉନ୍ମୋଚନ ଉତ୍ସବ ସମାହିତ ହେଲା । ଅତିଥିଦ୍ୱୟ ଥିଲେ ସରକାରଙ୍କ ବିତ୍ତମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ ଓ ରାଜସ୍ୱମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ । ଏହି ଉତ୍ସବରେ ଏକାଡ଼େମୀ ପ୍ରକାଶିତ "Quiet flows the Mahanadi" ପୁସ୍ତକ ମଧ୍ୟ ଲୋକାର୍ପଣ ହୋଇଥିଲା । ୨୦୦୦ ମସିହା ମାର୍ଚ୍ଚମାସ ୧୬ ତାରିଖରେ ମୋ ସଭାପତିତ୍ୱରେ କାର୍ଯ୍ୟକାରୀ ସମିତିର ନିଷ୍ପତ୍ତି ମୋ ପାଇଁ ଏକ ସ୍ମରଣୀୟ ଘଟଣା । ଏହି ବୈଠକରେ ଆମର ନିଷ୍ପତ୍ତି ହେଲା ଏକାଡ଼େମୀର ସର୍ବଶ୍ରେଷ୍ଠ ସମ୍ମାନ ଔପନ୍ୟାସିକ ଓ ସୁଲେଖିକା ବସନ୍ତକୁମାରୀ ପଟ୍ଟନାୟକଙ୍କୁ ଅର୍ପଣ କରିବା ପାଇଁ । ଏହି ସଂବାଦ ଖବରକାଗଜ

ପୃଷ୍ଠାରେ ପ୍ରଚାରିତ ହେଲା ମାତ୍ରକେ ମୋର ଅବସ୍ଥା ଘାଏଲ । ବସନ୍ତ ଦେବୀ ଓ ତାଙ୍କର ସୁଲେଖକ ଭ୍ରାତା ରାଜକିଶୋର ପଟ୍ଟନାୟକଙ୍କ ସହିତ ମୋର ଅନେକ ଦିନରୁ ଆଳାପ ପରିଚୟ । ମୁଁ ସେମାନଙ୍କର ଶ୍ରଦ୍ଧା ଓ ସ୍ନେହଭାଜନ ହୋଇ ନିଜକୁ ଭାଗ୍ୟବାନ ମନେ କରିଥାଏ । ଦୂରଭାଷ ଯୋଗେ ବସନ୍ତ ଦେବୀ ମୋ ଉପରେ ଖଡ୍ଗହସ୍ତ । ମୁଁ ଜାଣିଥିଲି, ଏହି ସମ୍ମାନପ୍ରାପ୍ତି ଓ ଉପଢୌକନ ଯୋଗାଡ଼ ଯୁଗରେ ସେମାନେ ଏକ ବ୍ୟତିକ୍ରମ । ଏଥିପାଇଁ ସେମାନଙ୍କର କୌଣସି ପ୍ରକାର ମୋହ ନଥାଏ । ମୋତେ ବସନ୍ତ ଦେବୀ କହିଲେ, ଆପଣ ମୋର ମନୋଭାବ ଜାଣନ୍ତି । ମୋତେ ଏପରି ଲଜ୍ଜାଜନକ ପରିସ୍ଥିତିକୁ ଟାଣିବା ପାଇଁ କିପରି ଆପଣଙ୍କର ଇଚ୍ଛା ହେଲା । ଆପଣଙ୍କ ନାଁରେ ମୁଁ ମୁଣ୍ଡ ବାଡ଼େଇବି ।'' ମୁଁ ବିନୀତ ଭାବରେ କହିଲି, ଏଥିରେ ମୋର କୌଣସି ଭୂମିକା ନାହିଁ । କାର୍ଯ୍ୟକାରୀ ସମିତି ଓଡ଼ିଶାର ପ୍ରତିନିଧିସ୍ଥାନୀୟ ଲେଖକମାନଙ୍କର ମତ ଗ୍ରହଣ କରି ଏପରି ନିଷ୍ପତ୍ତି ଗ୍ରହଣ କରିଛନ୍ତି । ମୋର ବିଶ୍ୱାସ, ଆପଣ ଲେଖକ ସମାଜର ଆଗ୍ରହକୁ ନିଶ୍ଚୟ ସମ୍ମାନ ଜଣାଇବେ । ଯାହାହେଉ ୨୦୦୩ ମସିହା ଜାନୁଆରୀ ମାସ ଆଠ ତାରିଖରେ ଏକାଡ଼େମୀର ଏକ ବର୍ଣ୍ଣାଢ଼୍ୟ ଉତ୍ସବରେ ବସନ୍ତ ଦେବୀ ଅତିବଡ଼ୀ ସମ୍ମାନ ଗ୍ରହଣ କଲେ । ଶେଷପର୍ଯ୍ୟନ୍ତ ମୋର ବିଶ୍ୱାସ ହେଉନଥିଲା ସେ ଆମକୁ ଅନୁଗୃହୀତ କରିବେ ବୋଲି ।

ମୋର କାର୍ଯ୍ୟକାଳ ମଧ୍ୟରେ ଚେନ୍ନାଇ ସହରରେ ଏକାଡ଼େମୀ ଆନୁକୂଲ୍ୟରେ ଏହି ଦୁଇ ଭାଷାଭାଷୀ ଲେଖକମାନଙ୍କର ମିଳନ ଓ ସାଂସ୍କୃତିକ ଆଲୋଚନା ଅତ୍ୟନ୍ତ ଉଲ୍ଲେଖନୀୟ । ଉଭୟ ଅଞ୍ଚଳର ନିର୍ବାଚିତ କବିତାର ଇଂରେଜୀ ଅନୁବାଦ ଏହିଠାରେ ଉନ୍ମୋଚିତ ହେଲା । ଏହି ସଭାର ମୁଖ୍ୟ ଆଲୋଚ୍ୟ ବିଷୟ ଥିଲା Oriya Culture and Oriya speaking tracts outside Orissa, ୨୦୦୨ ମସିହା ଏପ୍ରିଲ ୨୦ ତାରିଖରେ ଚେନ୍ନାଇ ସହରର ମିଉଜିୟମ ଥିଏଟର ହଲରେ ଅନୁଷ୍ଠିତ ହେଲା ପ୍ରଥମ ଅଧିବେଶନ । ବିଶିଷ୍ଟ କବି ମନୋଜ ଦାସ ଏହି ଆଲୋଚନା ସଭାକୁ ଉଦ୍‌ଘାଟନ କଲେ ଏବଂ ପ୍ରବନ୍ଧ ପାଠ କଲେ ଡଃ କବିପ୍ରସାଦ ମିଶ୍ର ଓ ଶ୍ରୀ ଆଶୁତୋଷ ସାମନ୍ତରାୟ । ମଧ୍ୟାହ୍ନରେ ଉଭୟ ପ୍ରଦେଶର ନିମନ୍ତ୍ରିତ କବିମାନେ କବିତାପାଠ କଲେ ଏବଂ ଏହାର ଉଦ୍‌ଘାଟନ କଲେ କବି ବ୍ରଜ ମିଶ୍ର । ସଂଧ୍ୟା ଅଧିବେଶନରେ ଓଡ଼ିଶାର ସାଂସ୍କୃତିକ ପରଂପରା ବିଷୟରେ ଆଲୋଚନା ହେଲା ସରଗରମ । ଏଥିରେ ଆମ ଆସେମ୍ବ୍ଲିର ବାଚସ୍ପତି ଶରତ କୁମାର କର, ଆମ ଗଭର୍ଣ୍ଣର, ସଂସ୍କୃତିବିଭାଗ କମିଶନର, ତାମିଲନାଡୁର ସଂସ୍କୃତି ବିଭାଗ ସେକ୍ରେଟାରୀ ପ୍ରଭୃତି ଅଂଶ ଗ୍ରହଣ କରିଥିଲେ । ଏହି ସଭାରେ ମୋର ପ୍ରଦତ୍ତ ଇଂରେଜୀ ଭାଷଣ ଏବଂ ବାଚସ୍ପତିଙ୍କ ଭାଷଣ ଓଡ଼ିଆ ସଂବାଦପତ୍ରରେ ଯଥେଷ୍ଟ ପ୍ରଶଂସିତ ହୋଇଥିଲା ।

ଜୁଲାଇ ମାସ ୬ ତାରିଖ ଦିନଟି ଏବେ ମଧ୍ୟ ସ୍ମରଣ କରୁଛି । ଆମ ଏକାଡ଼େମୀ ଓ କଲିକତା ଜାତୀୟ ପାଠାଗାରର ମିଳିତ ଉଦ୍ୟମରେ କଟକର ଷ୍ଟାଡ଼ିୟମସ୍ଥିତ ଉତ୍କଳ ଚାମ୍ବର ଅଫ୍ କମର୍ସ ହଲରେ ମୋ ସଭାପତିତ୍ୱରେ ଏକ ସଭାର ଆୟୋଜନ ହୋଇଥିଲା । ଏହି ସଭାରେ ଆମ ରାଜ୍ୟର ସଂସ୍କୃତିବିଭାଗ କମିସନର, କଲିକତା ଜାତୀୟ ପାଠାଗାରର ନିର୍ଦ୍ଦେଶକ,

ଅନେକ ଲେଖକ ଓ ପ୍ରକାଶକ ଆଲୋଚନାରେ ଅଂଶଗ୍ରହଣ କରିଥିଲେ । ଦୁଇଦିନବ୍ୟାପୀ ଏହି ସେମିନାର ଅନୁଷ୍ଠିତ ହୋଇଥିଲା ।

ଆଉ ଏକ ସ୍ମରଣୀୟ ଘଟଣା ହେଉଛି ଏକାଡ଼େମୀ ଆନୁକୁଲ୍ୟରେ ସୁଦୂର ମାଲକାନାଗିରିରେ "ଆଦିବାସୀ ଲୋକ କବିତା ଆଲୋଚନା ଚକ୍ର" ମୁଁ ମାଲକାନାଗିରି ଯାଉଛି ଜାଣିପାରି କୋରାପୁଟର ତତ୍‌କାଳୀନ କଲେକ୍ଟର ଆମ ସେକ୍ରେଟାରୀଙ୍କ ଜରିଆରେ ମୋତେ ନିମନ୍ତ୍ରଣ କଲେ ଫେରିବାବାଟରେ ୧୬ ତାରିଖଦିନ କୋରାପୁଟର ଜିଲ୍ଲାସ୍ତରୀୟ ଉତ୍ସବ ଉଦ୍‌ଘାଟନ କରିବା ପାଇଁ । ଭୁବନେଶ୍ୱରରୁ କୋରାପୁଟ ଥରେ ଯାଇଥିଲି ସାହିତ୍ୟ ଏକାଡ଼େମୀର ଆଦିବାସୀ ସେମିନାରରେ ପ୍ରବନ୍ଧ ପାଠ କରିବା ପାଇଁ ବସ୍‌ଯୋଗେ । ଲହଡ଼ି ପରି ଶୋଭମାନ ପର୍ବତର ବୁକୁଚିରି ଅଙ୍କାବଙ୍କା ରାସ୍ତାରେ ଆମର ଯାତ୍ରା ଥିଲା ବଡ଼ ଚିତ୍ତାକର୍ଷକ । ସେହି ସମୟରେ କଲେକ୍ଟର ବ୍ୟବସ୍ଥା କରିଥିଲେ ବଣ୍ଡାପର୍ବତରେ ପ୍ରାଚୀନ ପ୍ରସ୍ତରଯୁଗର ଆଦିବାସୀ ଗାଁ ମାନଙ୍କର ଜନବସତି ଓ ସଂସ୍କୃତି ଅନୁଧ୍ୟାନ କରିବା ପାଇଁ । ଏଥର କିନ୍ତୁ ରେଳଗାଡ଼ି ଯୋଗେ କୋରାପୁଟ ଯାତ୍ରା । ଅସଂଖ୍ୟ ପର୍ବତମାଳାର ବୁକୁ ଚିରି ରେଳଗାଡ଼ି ଧାଉଁଥିଲା ଅସୁମାରୀ ସୁଡଙ୍ଗପଥରେ । ଏଠାରେ ଟ୍ରେନ୍‌ର ଲୁଚକାଳୀ ଖେଳ ଏବଂ ବିସ୍ତୃତ ଅଞ୍ଚଳରେ ଜାଙ୍ଗଲିକ ସୁଷମା ଅତ୍ୟନ୍ତ ମନୋମୁଗ୍ଧକର । କୋରାପୁଟରୁ କାରଯୋଗେ ଆମର ଯାତ୍ରା ହେଲା ମାଲକାନାଗିରି । ଏହି ସେମିନାରରେ ଅଧ୍ୟାପିକା ଦମୟନ୍ତୀ ବେସ୍ରା (ସାନ୍ତାଳୀ ଭାଷାର) ପଦ୍ମନାଭ ମାଡ଼କାଣ୍ଡି (କୋୟା ଭାଷାର), ଲକ୍ଷ୍ମଣ ମାଦଡୋରା (ବଣ୍ଡା ଭାଷାର) ଏବଂ ପର୍ଶୁରାମ ସ୍ୱାଇଁ (କୋୟା ଭାଷାର) ଲୋକକବିତା ସଂପର୍କରେ ଚମତ୍କାର ଆଲୋଚନା ପ୍ରବନ୍ଧ ଉପସ୍ଥାପନ କରିଥିଲେ । ଅତୀତରେ କୋରାପୁଟରେ ମଧ୍ୟ ଥରେ ଆଦିବାସୀ ସାହିତ୍ୟ ସଂପର୍କରେ ସେମିନାର ଓ ପୁସ୍ତକ ପ୍ରକାଶନ ହୋଇଥିଲା । ତେଣୁ ସାହିତ୍ୟ ଏକାଡ଼େମୀ କେବଳ ଓଡ଼ିଆ ସାହିତ୍ୟର ସେବା କରୁଛି ଅଭିଯୋଗ ଅତ୍ୟନ୍ତ ନିରର୍ଥକ ଓ ଅସୂୟାପ୍ରଣୋଦିତ ।

ସାହିତ୍ୟ ଏକାଡ଼େମୀର ସଭାପତି ଭାବରେ ଡିସେମ୍ବର ମାସ ୨୫ ତାରିଖରେ (୨୦୦୨ ମସିହା) ନିମନ୍ତ୍ରିତ ହେଲି ତିର୍ତ୍ତୋଲ ନିକଟସ୍ଥ ବାବା ବଳିଆଙ୍କ ଅରିଲୋ ଆଶ୍ରମକୁ ନିଖିଳ ଉତ୍କଳ ପାଲାକାର ସମ୍ମିଳନୀକୁ ଉଦ୍‌ଘାଟନ କରିବା ପାଇଁ । ଓଡ଼ିଶାରେ ପାଲା ସଂସ୍କୃତି ଓ ପରଂପରା ଅତି ପ୍ରାଚୀନ । ଏହା ଏକ ଲୋକପ୍ରିୟ ଆମୋଦଦାୟକ କଳା ଅନୁଷ୍ଠାନ । ବାବା ବଳିଆ ଆମ ସମୟର ଜଣେ ଆଧ୍ୟାତ୍ମିକ ବ୍ୟକ୍ତିତ୍ୱ । ତାଙ୍କର ନିକଟ ସଂପର୍କକୁ ଆସିବାର ସୌଭାଗ୍ୟ ଲାଭ କଲି । ଏହି ସମ୍ମିଳନୀରେ ସମଗ୍ର ଓଡ଼ିଶାରୁ ପାଲାକାର [illegible] ଆସିଥିଲେ । ସେମାନଙ୍କ ମଧ୍ୟରେ କେବଳ ୨୦/୨୫ ଦଳ ମହିଳା ପାଲାକାର ରହିଥିଲେ । ଏହାଥିଲା ମୋ ପାଇଁ ଏକ ନୂତନ ଅନୁଭବ । ଏହି ସଭାରେ ଦାବୀ ହେଲା, ସାହିତ୍ୟର ସବୁ ବିଭାଗର ଲେଖକମାନଙ୍କୁ ଯେପରି ସାହିତ୍ୟ ଏକାଡ଼େମୀ ସମ୍ମାନ କରୁଛନ୍ତି, ଓଡ଼ିଆ ସାହିତ୍ୟକୁ ଚର୍ଚ୍ଚା କରି ଯୁଗଯୁଗ ଧରି ଯେଉଁ ପାଲାକାରମାନେ ସାଧନା ଅବ୍ୟାହତ ରଖିଛନ୍ତି, ସେମାନଙ୍କୁ କାହିଁକି ଏକାଡ଼େମୀ ସମ୍ମାନିତ କରୁନାହିଁ ?

ଏକାଡ଼େମୀରେ ମୋର କାର୍ଯ୍ୟକାଳ ଆଉ ମଧ ଛଅଟି ମାସ ଥିଲା । ଏହାର ଶେଷ ତାରିଖ ଥିଲା ୨୦୦୩ ମସିହା ଜୁଲାଇମାସ ୨୩ ତାରିଖ । ତେଣୁ ପାଲାକାରମାନଙ୍କର ଆପତ୍ତି କାର୍ଯ୍ୟକାରୀ କରିବାକୁ ମୋ ପାଖରେ ଅବସର ନଥିଲା । ତେବେ ମୋର ପରମ ସନ୍ତୋଷ ଯେ ମୋର ଅମଳରେ ପ୍ରଥମ କରି ଗୀତିକବିମାନଙ୍କୁ ଏକାଡ଼େମୀ ସମ୍ମାନିତ କରିବାର ପରଂପରା ସୃଷ୍ଟି କଲେ । ସାହିତ୍ୟ ଏକାଡ଼େମୀର ପ୍ରକାଶିତ ପୁସ୍ତକ ରଖିବା ପାଇଁ ସ୍ଥାୟୀ ଘରଟିଏ ନଥିଲା । ତେଣୁ ପୁରୁଣା ଭୁବନେଶ୍ୱରରେ ପାଞ୍ଚହଜାର ଟଙ୍କା ମାସିକ ଭଡ଼ାରେ ଏକ ଗୋଦାମଘର ନିଆଯାଇ ହଜାର ହଜାର ପୁସ୍ତକ ଗଚ୍ଛିତ ରହିଥାଏ । ଆର୍ଥିକ ଦୃଷ୍ଟିରୁ ଏକାଡ଼େମୀ ସ୍ୱଚ୍ଛଳ ନଥିବାରୁ ଏହା ଏକପ୍ରକାର ଆର୍ଥିକ ବୋଝ ପରି ମନେହେଉଥାଏ । ଏକାଡ଼େମୀ ଅଫିସ ଗୃହର ଉପର ତାଲାଟି ବହୁତଦିନରୁ ସରକାରୀ ଅବହେଳା ଯୋଗୁ ଖାଲି ପଡ଼ିଥିବା ଦେଖି ଆମର କାର୍ଯ୍ୟକାରୀ କମିଟି ସଭ୍ୟ ସଂସ୍କୃତିବିଭାଗ ନିର୍ଦ୍ଦେଶକ ନଳିନୀ ମହାନ୍ତିଙ୍କର ଦୃଷ୍ଟି ଆକର୍ଷଣ କଲି । ସେ ଅନୁମତି ପ୍ରଦାନ କଲେ ଆମ ଖର୍ଚ୍ଚରେ ଆବଶ୍ୟକୀୟ ଅପୂର୍ଣ୍ଣ କାର୍ଯ୍ୟ ପୂରଣ କରି ଆମର ପୁସ୍ତକ ଭଣ୍ଡାରକୁ ଏଠାକୁ ଆଣିପାରିବୁ । ମାସିକ ଅର୍ଥଦଣ୍ଡରୁ ମୁକ୍ତି ମଧ ମିଳିବ । ମୋର ପ୍ରାର୍ଥନାକୁ ଗ୍ରାହ୍ୟ କରି ସରକାରଙ୍କ ଅନୁମତି ମିଳିଗଲା । ଏବଂ ପୁରୁଣା ଭୁବନେଶ୍ୱରରୁ ଆମର ଗଚ୍ଛିତ ପୁସ୍ତକ ଭଣ୍ଡାର ଘୁଞ୍ଚି ଆସିଲା । ଆର୍ଥିକ ଦଣ୍ଡରୁ ମୁକ୍ତି ମିଳିଲା । ''ଓଡ଼ିଆ ଲେଖକ'' ପରିଚୟ ଗ୍ରନ୍ଥ ସଂପାଦନା କରିବା ପାଇଁ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ଆମର ଅଫିସ କର୍ମଚାରୀମାନେ ପ୍ରଥମରୁ ସରକାରଙ୍କ ଦ୍ୱାରା ଅବହେଳିତ ଅବସ୍ଥାରେ ଥାଆନ୍ତି । ସେମାନଙ୍କର ଅବସରକାଳୀନ ପେନ୍‌ସନ୍ ବ୍ୟବସ୍ଥା ନଥାଏ । କର୍ମଚାରୀମାନେ କର୍ମଚାରୀ ଭବିଷ୍ୟତନିଧି ଯୋଜନାରେ (ଇ.ପି.ଏଫ୍) ଅନ୍ତର୍ଭୁକ୍ତ ହେଲେ ଅବସର ପରେ ପେନ୍‌ସନ୍ ଭଳି ସୁବିଧା ପାଇବେ ଜାଣି ସେମାନଙ୍କ ସି.ପି.ଏଫ୍ ବଦଳରେ ଇ.ପି.ଏଫ୍ ଯୋଜନା ଲାଗୁ କରାଗଲା । 'କୋଣାର୍କ' ପତ୍ରିକାର ସ୍ୱତନ୍ତ୍ର ସାହିତ୍ୟ ସଂଖ୍ୟାଗୁଡ଼ିକ ଅତ୍ୟନ୍ତ ଆଦରଣୀୟ ଥିଲା । କାହିଁକି କେଜାଣି ପରବର୍ତ୍ତୀ ଅବସ୍ଥାରେ ଏହାକୁ ସାଧାରଣ ସାହିତ୍ୟ ପତ୍ରିକାରେ ପରିଣତ କରିଦିଆଗଲା । ଏହି ଦିଗରେ ଓଡ଼ିଶାରେ ଅନେକ ପତ୍ରିକା ପ୍ରକାଶିତ ହୁଏ । ତେଣୁ ବିଶେଷ ସଂଖ୍ୟା ଭାବରେ ଏଣିକି 'କୋଣାର୍କ' କୃପାସିନ୍ଧୁ ମିଶ୍ର, ଜଗବନ୍ଧୁ ସିଂହ, ଜଗମୋହନ ଲାଲା, ପ୍ୟାରୀମୋହନ ଆଚାର୍ଯ୍ୟ, କୃଷ୍ଣପ୍ରସାଦ ବସୁ, ଗୌରୀଶଙ୍କର ରାୟ ପ୍ରଭୃତିଙ୍କ ବିଷୟରେ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶନ ପାଇଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ଏବଂ ଏହି କ୍ଷେତ୍ରରେ ଅନେକ କାର୍ଯ୍ୟ ମଧ ହୋଇସାରିଛି । ''ସମ୍ବଲପୁରୀ ଗୀତି କବିତା'' ସଂକଳନ ପୁସ୍ତକ ପ୍ରକାଶନ ପାଇଁ ବ୍ୟବସ୍ଥା କରିପାରିଥିଲି । ଏକାଡ଼େମୀରେ ମୋର ତିନିବର୍ଷ କାର୍ଯ୍ୟକାଳ ମଧରେ ସଂପାଦକ ଅଶ୍ୱିନୀ ମିଶ୍ର, ଅଫିସ୍ କର୍ମଚାରୀବୃନ୍ଦ ଏବଂ କାର୍ଯ୍ୟକାରୀ ସମିତି ତଥା ସଂସ୍କୃତିବିଭାଗ ନିର୍ଦ୍ଦେଶକ ଓ ଅର୍ଥ ପରାମର୍ଶଦାତାଙ୍କର ସ୍ନେହ, ଶ୍ରଦ୍ଧା ଓ ଅକୁଣ୍ଠ ସହଯୋଗ ଲାଭ କରି ଧନ୍ୟ ହୋଇଥିଲି । କାର୍ଯ୍ୟକାରୀ ସମିତିର ସଭ୍ୟ ପରମ ଶ୍ରଦ୍ଧେୟ ଡଃ ବିଜୟାନନ୍ଦ ସିଂହ କାୟା ସଂଗେ ଛାୟା ଭଳି ରହି ମୋର ସହଯାତ୍ରୀ ହୋଇଥିଲେ । ଏତେ ସୁଖ ଓ ସନ୍ତୋଷ ସତ୍ତ୍ୱେ ଈଶ୍ୱର ମଧ କିଛି ଦୁଃଖ

ମୋ ପାଇଁ ରଖିଥିଲେ । ପୂର୍ବରୁ ଲେଖିଛି, ଆମର ଓଡ଼ିଶାରେ ଲେଖକମାନେ ହିଁ ଲେଖକର ପ୍ରାୟ ଶତ୍ରୁ ପାଲଟି ଯାଆନ୍ତି । କେହି କାହାକୁ ସହ୍ୟ କରିପାରନ୍ତି ନାହିଁ । ମୋର ଏତେ ସୁଖ କ'ଣ ଭଗବାନ ସହନ୍ତେ ? କାଳେ ଅଭିମାନ ଆସିଯିବ । ତେଣୁ କାର୍ଯ୍ୟକାରୀ ସମିତିର କତିପୟ ସଭ୍ୟ କାର୍ଯ୍ୟକାରୀ ସମିତିରେ ଏକାଡ଼େମୀ ପୁରସ୍କାର ନିଷ୍ପତ୍ତି ସର୍ବସମ୍ମତ ଦସ୍ତଖତ ଦେଇସାରି ମୋତେ କେତେକ ତ୍ରୁଟି ପାଇଁ ଏକକ ଦାୟୀ କରି ସଂବାଦପତ୍ରରେ ବଦନାମ କରିଥିଲେ । ମୁଁ ନିଜେ କୌଣସି ଏକକ ନିଷ୍ପତ୍ତିରେ ବିଶ୍ୱାସ କରେ ନାହିଁ । ସମସ୍ତଙ୍କ ବୁଝାମଣାକୁ ନେଇ ଅନୁଷ୍ଠାନ ଚାଲିଥାଏ । ତେଣୁ ଆଦୌ ଦୁଃଖ କରି ନାହିଁ । କେବଳ ପ୍ରାର୍ଥନା କରିଛି, ଏହି ଛଦ୍ମବେଶୀ ବନ୍ଧୁମାନଙ୍କୁ ପ୍ରଭୁ କ୍ଷମା ଦିଅନ୍ତୁ ।

ଏବେ ଜାଣିବାକୁ ପାଉଛି, ମୁଁ ଆସିଲା ପରେ ଏକାଡ଼େମୀରେ ସଭାପତିମାନଙ୍କୁ ଅଳ୍ପଦିନ ପାଇଁ ନିଯୁକ୍ତି ପ୍ରଦାନ କରି ବିଦାୟ କରିଦିଆଯାଉଛି ।

ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ଅନେକ ସୁଯୋଗ ରହିଛି । ମାତ୍ର ସଭାପତିଙ୍କୁ ସମୟ ନଦେଲେ ସେ ଅବା କ'ଣ କରିପାରିବେ । ତଥାପି ମୋର କାର୍ଯ୍ୟକାଳ ମଧ୍ୟରେ ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ଓଡ଼ିଶାର ସର୍ବାଞ୍ଚଳରେ ସାହିତ୍ୟ ସଭା ଓ ସ୍ମୃତି ସଭାର ଆୟୋଜନ କରାଯାଇଛି । ବହୁ ତରୁଣ ଓ ପ୍ରବୀଣ ସାହିତ୍ୟସେବୀମାନଙ୍କୁ ଏହି ସମାରୋହରେ ଏକତ୍ର ହେବାର ସୁଯୋଗ ଏକାଡ଼େମୀ ପାଇଁ ଗୌରବର କଥା । ଯେ କୌଣସି କାର୍ଯ୍ୟ ସାଧନ ପାଇଁ ଅର୍ଥ ଆବଶ୍ୟକ । ଏହି କ୍ଷେତ୍ରରେ ସରକାର ମୁକ୍ତହସ୍ତ ହୋଇ ସାହାଯ୍ୟ କରିବା ସଂଗେସଂଗେ କର୍ମକର୍ତ୍ତାମାନଙ୍କୁ ସୁଯୋଗ ପ୍ରଦାନ କଲେ ଅନେକ କାର୍ଯ୍ୟ ହୋଇପାରିବ ବୋଲି ଆଶା କରାଯାଏ ।

# ପାରିବାରିକ ଜୀବନର କେତୋଟି ଚିତ୍ର

ପୂର୍ବରୁ ମୋର ପଲ୍ଲୀ ଗାଁ ଓ ଜେଜେଙ୍କ ବିଷୟରେ କେତେକ ସୂଚନା ଦେଇସାରିଛି । ଜେଜେ ଓ ଗୋସେଇଁ ମାଆଙ୍କ କୋଳରେ ଗେହ୍ଲା ହେବାର ସୁଯୋଗ ପାଇ ନାହିଁ । ଅପର୍ତ୍ତିଆଣି ପୁଅ ହେତୁ ମୋ ପାଇଁ ଘରେ ଓ ବାହାରେ କୌଣସି ପୂଜାପାର୍ବଣର ଆୟୋଜନ ହୋଇନାହିଁ । ବାପା, ଦୁଇ ଦାଦା ଓ ଦୁଇ ପିଉସୀ ହୋଇଗଲେ ପିତୃମାତୃ ଛେଉଣ୍ଡ । ଏହି କାରଣରୁ ବାପା ଓ ଅନ୍ୟ ଭାଇଭଉଣୀମାନେ ଆର୍ଥିକ ଅନଟନରେ ଘାଣ୍ଟି ହୋଇଥିବେ । ସେତେବେଳେ କେବଳ ଗ୍ରାମ୍ୟସ୍କୁଲରେ ପାଠପଢ଼ା ସୀମିତ । ବିଶେଷ ଶିକ୍ଷାନୁଷ୍ଠାନ ଗାଁ ପାଖରେ ନଥାଏ । ତେବେ ସେହି ଅନୁଭୂତି ନେଇ ଘରର ବଡ଼ପୁଅ, ତେଣୁ ମୁରବୀ ଭାବରେ ବାପା ସୋମନାଥ ପଟ୍ଟନାୟକ ପୁରୀ ଚାଲିଆସିଲେ ଭାଗ୍ୟ ପରୀକ୍ଷା କରିବା ପାଇଁ । ସେ ପ୍ରଥମେ ଭିଙ୍ଗାରପୁର ଜମିଦାରୀରେ କର୍ମ କରି ଅଭିଜ୍ଞତା ହାସଲ କଲେ ଏବଂ ପରେ ପରେ ଭାରତର ପ୍ରସିଦ୍ଧ ସମୃଦ୍ଧିବନ୍ତ ମଠ ଭାବରେ ପରିଗଣିତ ପୁରୀର ଏମାର ମଠର ଲ' ଏଜେଣ୍ଟ ରହିଲେ ଦୀର୍ଘ ବାରବର୍ଷକାଳ । ଘରର ଅବସ୍ଥା ବଦଳିଗଲା । ଭାଇମାନଙ୍କୁ ଆଣି ପୁରୀରେ ରଖିଲେ । ମଝିଆ ଭାଇ ଗୋପୀନାଥ ପଟ୍ଟନାୟକ ଅନ୍ୟଏକ ବିଶାଳ ଜମିଦାରୀ ରାୟବାହାଦୂର ଲୋକନାଥ ମିଶ୍ରଙ୍କ ଜମିଦାରୀର ଲ' ଏଜେଣ୍ଟ । ସେ ଆଜୀବନ ଏହି ଦାୟିତ୍ୱ ଗ୍ରହଣ କରି ଯଶସ୍ୱୀ ହୋଇଥିଲେ । ବାପ, ମା' ଛେଉଣ୍ଡ କନିଷ୍ଠ ଭାଇ କାଶୀନାଥ ପଟ୍ଟନାୟକ ଭାଇମାନଙ୍କ ଆଦର ଯତ୍ନରେ ଅତ୍ୟନ୍ତ ଗେହ୍ଲା ହୋଇପଡ଼ିଲେ । ଭାଇମାନେ ଚାହୁଁଥିଲେ, ସାନଭାଇ ଉଚ୍ଚଶିକ୍ଷା ପାଇ ଘରର ନାଁ ରଖୁ । ମାତ୍ର ଏଥିପ୍ରତି ଭାଗ୍ୟ ଅନୁକୂଳ ହେଲା ନାହିଁ । କେବଳ ମାଟ୍ରିକ ଖଣ୍ଡିକ ପାସ୍ କରିବା ପାଇଁ ଭାଇମାନେ ତାଙ୍କୁ ପୁରୀ ଜିଲ୍ଲା ସ୍କୁଲ, ଖୋର୍ଦ୍ଧା ହାଇସ୍କୁଲ, ବାଣପୁର ହାଇସ୍କୁଲ, ଶେଷରେ କଲିକତା ନିକଟ ବାଗନାନ୍ ହାଇସ୍କୁଲରେ ପଢ଼ାଇଲେ । ତଥାପି ସେ ନାନା ସଉକିନିରେ ରହି ଅମନଯୋଗୀ ହେଉଥିଲେ ଏବଂ ମାଟ୍ରିକ୍ ପାସ୍ କରିପାରିଲେ ନାହିଁ । ସେ ଆଜୀବନ ପୁରୀ ମ୍ୟୁନିସିପାଲିଟିର ଟିକସ କଲେକ୍ଟର ଭାବରେ ଥାଇ ପୁରୀରେ ନିଜର ଘର ନିର୍ମାଣ କରି ରହିଲେ । ବାପା ଓ ବଡ଼ଦାଦା ମଧ୍ୟ ପୁରୀରେ ସ୍ୱତନ୍ତ୍ର ଭାବରେ କୋଠାଘର କରି ଅବସ୍ଥାନ କଲେ । ନିଜ ଗାଁରେ ବର୍ଷକ ଚଳିବା ପାଇଁ ଚାଷଜମି ଓ ଘରର ରୂପ ବଦଳିଗଲା । ଗାଁରେ ଏକ ପ୍ରଭାବଶାଳୀ ପରିବାର ଭାବରେ ସମ୍ମାନିତ ହେଉଥିଲେ । ବଡ଼ଦାଦା ଗୋପୀନାଥଙ୍କର ପୁଅ ରଘୁନାଥ ଭାରତୀୟ ଷ୍ଟେଟ ବ୍ୟାଙ୍କରେ ପଦସ୍ଥ କର୍ମଚାରୀ ଥାଇ ବର୍ତ୍ତମାନ ଭୁବନେଶ୍ୱରରେ ନିଜର

ଗୃହରେ ଅବସର ଜୀବନ ଯାପନ କରୁଅଛି । ତାଙ୍କର କନିଷ୍ଠ ପୁଅ ଜଗନ୍ନାଥ ପଟ୍ଟନାୟକ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ଜଣେ ବରିଷ୍ଠ ଆଇନଜୀବୀ । ସେ କଟକରେ ଏକ ବିଶାଳ ହର୍ମ୍ୟ ନିର୍ମାଣ କରି ଅବସ୍ଥାନ କରୁଛି । ଭାରତୀୟ ବାର କାଉନସିଲ ନୂଆଦିଲ୍ଲୀରେ ସେ ଦୁଇଥର ନିର୍ବାଚିତ ଚେଆରମ୍ୟାନ୍ ଭାବରେ କାର୍ଯ୍ୟକରି ଯଥେଷ୍ଟ ଗୌରବାନ୍ୱିତ । ଏହି ଦାୟିତ୍ୱରେ ଥାଇ ଭାରତୀୟ ଆଇନଜୀବୀମାନଙ୍କର ପ୍ରତିନିଧିମଣ୍ଡଳର ନେତା ଭାବରେ ଜଗନ୍ନାଥ ଇଂଲଣ୍ଡ, ୟୁରୋପର ବିଭିନ୍ନ ଦେଶ, ଆଫ୍ରିକା, ଅଷ୍ଟ୍ରେଲିଆ, ଯୁକ୍ତରାଷ୍ଟ୍ର ଆମେରିକା ପ୍ରଭୃତି ବହୁ ବିଦେଶୀ ରାଷ୍ଟ୍ରରେ ଆଇନ ବିଶ୍ୱବିଦ୍ୟାଳୟ ଓ ବରିଷ୍ଠ ଆଇନଜୀବୀ ଅନୁଷ୍ଠାନରେ ଭାଷଣ ଦେବାକୁ ନିମନ୍ତ୍ରିତ ହୋଇ ସମ୍ମାନିତ ହୋଇଥିଲା ।

ବାପା ଆମ ତିନିଭାଇଙ୍କୁ ଉଚ୍ଚଶିକ୍ଷା ଦେବା ପାଇଁ ଯତ୍ନବାନ ହୋଇଥିଲେ । ପୁରୀରେ ଆମର ଘର ଥିବାରୁ ସ୍କୁଲ କଲେଜରେ ଅଧ୍ୟୟନ କରିବାରେ ଅସୁବିଧା ରହିଲା ନାହିଁ । ପୂର୍ବରୁ ମୋର କଲେଜ ଜୀବନର କଥା ସୂଚନା ଦେଇସାରିଛି । କର୍ମମୟ ଜୀବନରେ କିଛି କଥା ମଧ୍ୟ ଉଲ୍ଲେଖ କରିଛି । ରବିବାର ପ୍ରଜାତନ୍ତ୍ର, ଝଙ୍କାର, ମାତୃଭୂମି, ସହକାର ପ୍ରଭୃତି ବିଖ୍ୟାତ ପତ୍ରପତ୍ରିକା ଏବଂ ଭାରତୀୟ ପ୍ରେସ୍ କମିଶନ ନୂଆଦିଲ୍ଲୀ, ଭଦ୍ରକ କଲେଜ ଓ ଖ୍ରୀଷ୍ଟ କଲେଜର ଅଧ୍ୟାପନା ଜୀବନର କିଛି ଅନୁଭୂତି ମଧ୍ୟ କହିବାକୁ ଭୁଲି ନାହିଁ । ଦୀର୍ଘ ଷାଠିଏ ବର୍ଷ କାଳ ଓଡ଼ିଶାର ସର୍ବାଞ୍ଚଳରେ ବହୁ ଶିକ୍ଷାନୁଷ୍ଠାନ, ବିଶ୍ୱବିଦ୍ୟାଳୟ, ସାହିତ୍ୟ ଅନୁଷ୍ଠାନରେ ଅତିଥିବକ୍ତା ହେବାର ସୌଭାଗ୍ୟ ଲାଭ କରିଛି । ଭାରତୀୟ ସାହିତ୍ୟ ଏକାଡ଼େମୀ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରତିଷ୍ଠା ହେବା ସମୟରୁ ନାନା ପ୍ରସଙ୍ଗରେ ରେଫରୀ ହେବାରେ ସମ୍ମାନିତ ହୋଇଛି । ଭାରତୀୟ ଏନ୍.ବି.ଟି ଆନୁକୁଲ୍ୟରେ ମୋ ସଂପାଦନାରେ ନିର୍ବାଚିତ ''ଓଡ଼ିଆ କ୍ଷୁଦ୍ରଗଳ୍ପ'' ମୋର ସଂପାଦନା ଓ ମୁଖବନ୍ଧ ଦ୍ୱାରା ପ୍ରକାଶିତ ହୋଇ ଅନେକ ସଂସ୍କରଣ ହୋଇସାରିଛି । ଭାରତର ବିଭିନ୍ନ ପ୍ରାଦେଶିକ ଭାଷାରେ ମଧ୍ୟ ଅନୂଦିତ ହୋଇ ପ୍ରଚାର ଲାଭ କରିଛି । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଅନୁରୋଧରେ ମନୋଗ୍ରାଫ୍ ଲେଖିଛି ସାରଳା ଦାସ, ନୀଳକଣ୍ଠ ଦାସ ଓ କବି ବୀରକିଶୋର ଦାସଙ୍କ ବିଷୟରେ । ଓଡ଼ିଶାର ପାଠ୍ୟପୁସ୍ତକ ସଂସ୍ଥା ମୋ ଦ୍ୱାରା ଲିଖିତ ''ଓଡ଼ିଶାର ଜୀବନଚରିତ'' ପ୍ରକାଶ କରିଛନ୍ତି । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ସରସ୍ୱତୀ ସମ୍ମାନର ଶେଷସିଦ୍ଧାନ୍ତ ଓଡ଼ିଶା ସଂପର୍କୀୟ କମିଟିରେ କେତେଥର ସଭ୍ୟ ହେବାର ସୁଯୋଗ ପାଇଛି । କଟକର ଆକାଶବାଣୀ ଓ ଓଡ଼ିଶାର ଦୂରଦର୍ଶନରେ ନାନା ପ୍ରସଙ୍ଗରେ ଅଂଶ ଗ୍ରହଣ କରି ହୋଇଛି ଗୌରବାନ୍ୱିତ । ଅଧ୍ୟାପକ ଜୀବନରେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ, ଏକାଡ଼େମିକ୍ କାଉନସିଲ, ଓଡ଼ିଆ ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍ ଓ କଣ୍ଡକ୍ଟିଂବୋର୍ଡ଼ର ସଭ୍ୟ ଭାବରେ ବହୁ ବରେଣ୍ୟ ଅଧ୍ୟାପକମାନଙ୍କ ସହିତ କର୍ମ କରିବାର ସୁଯୋଗ ପାଇପାରିଛି । ବିଭିନ୍ନ ବିଶ୍ୱବିଦ୍ୟାଳୟର ପରୀକ୍ଷା ସଂପର୍କୀୟ ପ୍ରଶ୍ନକର୍ତ୍ତା ଓ ମୁଖ୍ୟ ପରୀକ୍ଷକ ଦାୟିତ୍ୱ ବହୁବର୍ଷ ତୁଲାଇଲା ପରେ ଅବସର ଜୀବନରେ ଆଉ ସେମାନଙ୍କର ଅନୁରୋଧ ରକ୍ଷା କରିନାହିଁ । କେବଳ ବିଗତ ତିରିଶବର୍ଷ କାଳ ବିଭିନ୍ନ ବିଶ୍ୱବିଦ୍ୟାଳୟର ଗବେଷଣା ପ୍ରବନ୍ଧର ପରୀକ୍ଷକ ଦାୟିତ୍ୱ

ଗ୍ରହଣ କରିଆସିଛି । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଆନୁକୁଲ୍ୟରେ ପ୍ରକାଶିତ ଭାରତୀୟ ସାହିତ୍ୟ ଏନ୍‌ସାଇକ୍ଲୋପେଡ଼ିଆରେ ଓଡ଼ିଶାର ଲେଖା ଓ ଲେଖକମାନଙ୍କ ସଂପର୍କରେ ମୋ ଲିଖିତ କେତୋଟି ପ୍ରବନ୍ଧ ସ୍ଥାନିତ ହୋଇପାରିଛି । ଏପରିକି ତାମିଲ ସାହିତ୍ୟର ଏନ୍‌ସାଇକ୍ଲୋପିଡ଼ିଆରେ ''ଫକୀରମୋହନ'' ଓ ''ସାରଳା ଦାସ'' ଶୀର୍ଷକରେ ମୋର ଦୁଇଟି ଲେଖା ପ୍ରକାଶିତ ହୋଇଛି । ତାମିଲ ଏକାଡ଼େମୀର ସ୍ୱୀକୃତି ପତ୍ର ଏଠାରେ ଉପସ୍ଥାପନ କରୁଛି ।

The Tamil Academy
M.P. Periaswoamythddran
Chief Editor
Tamil Encyclopedia Office
University Building
Madras-5. 20/6/1966
Dear Sir.

Article : (1) Fakirmohan
(2) Sarala Das

Namaskaram. We acknowledge with thanks the receipt of your contribution for the timil Encyclopedia.

Yours sincerely,
Chief Editor

ସାହିତ୍ୟ ଏକାଡ଼େମୀରେ ସଭାପତି ଥିଲାବେଳେ ପୁରୀ ସଂସ୍କୃତ ବିଶ୍ୱବିଦ୍ୟାଳୟ ତାଙ୍କର ସିନେଟ ମେମ୍ବର ଭାବରେ ମୋତେ ସମ୍ମାନିତ କରିଥିଲେ । ସଭାପତି ଭାବରେ ଉତ୍କଳ ୟୁନିଭରସିଟି ଅଫ୍ କଲ୍‌ଚରର ସିନେଟ ଓ ସିଣ୍ଡିକେଟ ସଭ୍ୟ ଭାବରେ କାର୍ଯ୍ୟ କରିବାର ସୁଯୋଗ ମିଳିଥିଲା । ଏହି ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ଡଃ ବିମଳେନ୍ଦୁ ମହାନ୍ତି ତାଙ୍କର ୨୪.୦୬.୨୦୦୦ ତାରିଖ ଚିଠିରେ ମୋର ସଭାପତି ହେବାରେ ଆନନ୍ଦ ପ୍ରକାଶ କରି ଅଭିନନ୍ଦନ ଜଣାଇଥିଲେ । ସେଥିରେ ଲେଖିଥିଲେ–

"By virtue of your office as president of Orissa Sahitya Academy, you are a member of the Academic council as well as the Board of management of the Utkal University of Culture, Bhubaneswar.

The University will be benifited by your induction into these two authorities of the university and looks forward to your guidance.with regards."

ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ର ୨୧.୧୨.୧୯୯୬ ତାରିଖ ଚିଠିରେ ଫିଚର ଫିଲିମ୍ ନିର୍ବାଚନ କମିଟିର ଅନ୍ୟତମ ସଭ୍ୟ ଭାବରେ ମୋତେ ଗ୍ରହଣ କରିଥିଲେ । ଏହି କମିଟିରେ ବହୁ ସମ୍ମାନିତ ଲୋକଙ୍କର ସଭ୍ୟପଦ ରହିଥିଲା ।

ଏକଦା ଭାରତ ଲୋକସଭାର ସଭ୍ୟା ଥିବା ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ରାଜାଜୀ ଲିଟରାରୀ ଆୱାର୍ଡ଼ କମିଟି ଗଠନ କରାଯାଇଥିଲା । ଏହି କମିଟିର ଅନ୍ୟତମ ସଭ୍ୟ ଭାବରେ କାର୍ଯ୍ୟ କରିଥିଲି । ଶ୍ରୀମତୀ ପଟ୍ଟନାୟକ ତାଙ୍କ ଲିଖିତ ପତ୍ରରେ ମୋତେ ଏହିପରି

ଅନୁରୋଧ କରିଥିଲେ-

ମାନନୀୟ ପଠାଣି ବାବୁ

Rajaji Literary Award Committee ମୋ ଅଧ୍ୟକ୍ଷତାରେ ଗଠନ ହୋଇଛି । ତିନିଜଣିଆ କମିଟି ମଧ୍ୟରେ ଆପଣ ଜଣେ ଅଛନ୍ତି । ଏଥିପାଇଁ ଆପଣଙ୍କର ଆପତ୍ତି ରହିବ ନାହିଁ ବୋଲି ଆଶା କରେ । କମିଟିର ଉଦ୍ଦେଶ୍ୟ ହେଲା, କେତେଗୁଡ଼ିଏ ପୁସ୍ତକ ମଧ୍ୟରୁ ଆପଣ ତିନୋଟି ସର୍ବୋତ୍କୃଷ୍ଟ ପୁସ୍ତକ ପୁରସ୍କୃତ ହେବା ପାଇଁ ବାଛିବେ । ମୋତେ ଆପଣମାନଙ୍କଠାରୁ ଏ ସାହାଯ୍ୟ ନେବା ପାଇଁ ଦାୟିତ୍ୱ ଦିଆଯାଇଛି । ଅନ୍ୟ ଦୁଇଜଣ ହେଲେ (୧) ଡଃ କୁଞ୍ଜବିହାରୀ ଦାଶ (୨) ଶ୍ରୀ ସୀତାକାନ୍ତ ମହାପାତ୍ର । ମୁଁ ଆପଣଙ୍କ ସହିତ ଫୋନ୍‌ରେ କଥାବାର୍ତ୍ତା ହେବା ପାଇଁ ଚେଷ୍ଟା କଲି- ପାଇଲି ନାହିଁ । ତେଣୁ ଚିଠି ଲେଖିଲି । ଆଶାକରେ ଆପଣ ଏଥିରେ ସାହାଯ୍ୟ କରିବେ । ଏଥିପାଇଁ ଚିଠାର ଗୋଟିଏ ନକଲ ପଠାଇଲି ।

ନମସ୍କାର ସହ ।

ଆପଣଙ୍କର

ଜୟନ୍ତୀ ପଟ୍ଟନାୟକ

କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତାଙ୍କର ପ୍ରସ୍ତାବିତ ସାହିତ୍ୟ ବିଶ୍ୱକୋଷ ପାଇଁ ମୋତେ ଯେଉଁ କେତୋଟି ବିଷୟ ଲେଖିଦେବା ପାଇଁ ଅନୁରୋଧ କରିଥିଲେ, ତାହା ଏଠାରେ ପ୍ରଦତ୍ତ ହେଲା ।

Sahitya Akademi
National Academy of Letters

October 26.1979

Chief Editor. Dr. Sitanshu Yeshaschandra
M.A. Ph.D. (U.S.A)
M.A. Ph.D. (Bombay)

The Sahitya Akademy has planned to bring out a literary Encyclopaedia, the Encyclopaedia of Indian Literature. A copy of the E.I.L. Brochure is enclosed herewith. As it gives the pertinent information on the nature and the scope of Encyclopaedia, I refrain from duplicating it here.

Your kind and valued contribution is sought for this Encyclopaedia in the field of Oriya literature. The topic on which you are requested to write have been listed below and the number of words within which each entry should be written has been indicated against the topic.

| Topics | No. of words |
|---|---|
| Prose in Oriya literature | 1500 |
| Essay | 1500 |

| | |
|---|---|
| Biographies | 1500 |
| Autobiographies | 1000 |
| Criticism, Literary | 2200 |
| Chronicles | 2200 |
| Gopinath Nanda Sharma | 400 |
| Shyam Sundar Rajguru | 100 |
| Gopal Chandra Praharaj | 400 |
| Biswanath Kar | 200 |
| Nilamani Bidyaratna | 200 |
| Sasibhusan Roy | |
| Harekrushna Mahatab | 200 |
| Krushnaprasad Basu | 200 |
| Artaballava Mohanty | 200 |
| Binayaka Mishra | 400 |
| Natabara Samantaray | 400 |
| Bansidhar Mohanty | 400 |
| Benudhar Rout | 200 |
| Suryanarayana Das | 400 |

Exact and adequate biographical and bibliographical date forms the essence of our entries on the authors. Critical works on the authors in Oriya, English and other languages should be mentioned in the bibliography at the end of the entry. Exact dates of the publications of the authors, books should be given in the main body of the entries.

The entries should be in English and the typed script should kindly be sent in duplicate.

I would request you to send half of your valued encyclopaedia entries by november 30, 1979 and the remaining by December 31, 1979.

You contribution is of value to us and I hope that your co-operation wil be available to this project.

With kind regards.

Sri Pathani Pattnaik
Reader in Oriya
Christ College
Cuttack- 753001

Sincerely yours
P.K. Mohanty
Editorial Assistant
For Dr.S. Yeshaschandra

ପରିବାର ଗଞ୍ଜାଳରେ ଥାଇ ନାନା କାର୍ଯ୍ୟରେ ଅଂଶଗ୍ରହଣ କରୁଥିଲି । ଏହି ସବୁ କାର୍ଯ୍ୟରେ ମୋର ଧର୍ମପତ୍ନୀ ପ୍ରଭାତ କୁମାରୀ ପଟ୍ଟନାୟକ ମୋତେ ଆଜୀବନ ଅତ୍ୟନ୍ତ ଆନ୍ତରିକ ଓ ନିଷ୍ଠାର ସହିତ ସହଯୋଗ କରୁଥିଲେ । ଏପରିକି ସେ ମୋତେ ଦୈନନ୍ଦିନ ପାରିବାରିକ ଗଞ୍ଜାଳରେ ମୁଣ୍ଡ ଭର୍ତ୍ତି କରିବାକୁ ଦେଉନଥିଲେ । ୧୯୫୩ ମସିହା ମାର୍ଚ୍ଚ ମାସ ନଅ ତାରିଖରେ

ଆମେ ଦୁହେଁ ବିବାହ ବନ୍ଧନରେ ବନ୍ଦୀ ହୋଇଗଲୁ । ସେ ଥିଲେ ଚିଲିକାକୂଳରେ ହରିପୁର ନାମକ ଗ୍ରାମରେ ଏକ ବହୁକୁଟୁମ୍ବୀ ସ୍ୱଚ୍ଛଳ ପରିବାରର ଅଲିଅଳ ଦୁହିତା । ଏହି ପରିବାର ବିପୁଳ ସମ୍ପତ୍ତି, କୋଠାବାଡ଼ି ଏବଂ ଘରୋଇ ଠାକୁର ମନ୍ଦିରର ଅଧିକାରୀ । କେବଳ ଠାକୁରଙ୍କ ପାଇଁ ଦଶବାଟି ଜମି ଖଞ୍ଜା ହୋଇଛି । ବର୍ଷତମାମ ନାନା ଉତ୍ସବ, ବାବାଜୀ, ବୈଷ୍ଣବ, ଅତିଥି ଅଭ୍ୟାଗତ ଚର୍ଚ୍ଚା ଲାଗି ରହିଥାଏ । ଅନେକ ସମୟରେ ନାଗା ସନ୍ନ୍ୟାସୀଦଳ ବହୁ ସପ୍ତାହ ଧରି ଘୋଡ଼ା, ହାତୀ ଓ ଓଟଙ୍କ ଗହଣରେ ଏହି ଗ୍ରାମରେ ଡେରା ପକାଇଥାନ୍ତି ଠାକୁରଙ୍କର ଅତିଥି ହୋଇ । ଶ୍ରୀମତୀଙ୍କର ପିଇସି କଟକର ଏକ ସମ୍ଭ୍ରାନ୍ତ ପରିବାରରେ ବିବାହ କରିଥିଲେ । ଏହି ଉଦ୍ଦେଶ୍ୟରେ କଟକରୁ ବରଯାତ୍ରୀ ଯିବା ପାଇଁ କନ୍ୟାଘର ତରଫରୁ ଦୁଇଟି ସ୍ୱତନ୍ତ୍ର ରେଳଡବାର ବ୍ୟବସ୍ଥା କରାଯାଇଥିଲା । ଏହିଭଳି ଏକ ସ୍ୱଚ୍ଛଳ ପରିବାରରେ ନାନା ଦାସଦାସୀଙ୍କ ଗହଣରେ ପ୍ରତିପାଳିତ ପ୍ରଭାତ କୁମାରୀ ଆସିଲେ ବୋହୂ ହୋଇ ଆମର ମଧ୍ୟବିତ୍ତ ପରିବାରକୁ । ପ୍ରଥମ ଦିନରୁହିଁ ସେ ହାଣ୍ଡିଚୁଲି ଧରିବା ପାଇଁ କୁଣ୍ଠିତ ହୋଇ ନଥିଲେ । ଆମର ଗହଳି ପରିବାରରେ ସେ ଆଜୀବନ ସମସ୍ତଙ୍କୁ ଆପଣେଇ ନେଇଥିଲେ ଆପଣାର ବ୍ୟବହାରରେ । ସେ ଥିଲେ ଆଜୀବନ କର୍ମଚଞ୍ଚଳ ଏବଂ ନାନା ସାହିତ୍ୟ ପତ୍ରିକା ଓ ଓଡ଼ିଆ ସାହିତ୍ୟଗ୍ରନ୍ଥ ପାଠ କରିବାର ଅଭ୍ୟାସ ରଖିଥିଲେ ଶେଷ ପର୍ଯ୍ୟନ୍ତ । ୨୦୦୮ ମସିହା ଜୁନ୍ ମାସ ୧୯ ତାରିଖ ଦିନ ସମଗ୍ର ପରିବାରକୁ ଶୋକ ସାଗରରେ ଭସାଇ ମୋତେ ନିଃସଙ୍ଗ କରି ବାହୁଡ଼ି ଗଲେ ସେହି ଅଦୃଶ୍ୟପୁରକୁ, ଯେଉଁଠାରୁ ସେ ଆସିଥିଲେ ମାନବଲୀଳା କରିବା ପାଇଁ । ଦୁଇ ଝିଅ ଓ ଦୁଇ ପୁଅଙ୍କର ସେ ଜନନୀ । ତାଙ୍କରି ଯତ୍ନରେ ସମସ୍ତେ ଉଚ୍ଚଶିକ୍ଷିତ । ବଡ଼ଝିଅ ବାସବଦତ୍ତା ଓଡ଼ିଆ ସାହିତ୍ୟ ବିଭାଗରେ ବରିଷ୍ଠ ଅଧ୍ୟାପିକା । ବଡ଼ ଜ୍ୱାଇଁ ଜୀବନବଲ୍ଲଭ ଦାସ ବରିଷ୍ଠ ଜୁଡ଼ିସିଆଲ ମାଜିଷ୍ଟ୍ରେଟ୍ । ତାର ଶାଶୁଘର ପୁରୀ ସହର ହେରାଗୋହରି ସାହିରେ । ଶଶୁର ମଧ୍ୟ ଆଇନଜୀବୀ ଥିଲେ । ସର୍ବକନିଷ୍ଠ ଝିଅ ବନଜ୍ୟୋତ୍ସ୍ନା ଗ୍ରାଜୁଏଟ । ସେ ବାଲେଶ୍ୱର ସୁନହଟରେ ଏକ ସମ୍ଭ୍ରାନ୍ତ ପରିବାରରେ ବୋହୂ । ଜ୍ୱାଇଁ ବାରୀନ୍ଦ୍ର ଦାସ ଆଡ଼ଭୋକେଟ ।

ଦୁଇ ପୁଅଙ୍କ ମଧ୍ୟରେ ବଡ଼ ଶୁଭକାନ୍ତ ଜଣେ ମେଧାବୀ ଛାତ୍ର । ପରିସଂଖ୍ୟାନରେ ପ୍ରଥମ ଶ୍ରେଣୀରେ ଏମ୍.ଏ. ଏବଂ ଡକ୍ଟରେଟ୍ କରି କିଛିଦିନ ଅଧ୍ୟାପକ ଭାବରେ କାର୍ଯ୍ୟ କରିଥିଲା ଏକ ଘରୋଇ କଲେଜରେ । ବର୍ତ୍ତମାନ ଓଡ଼ିଶା ସରକାରଙ୍କ ପରିସଂଖ୍ୟାନ ବିଭାଗର ଆସିଷ୍ଟାଟ୍ ଡାଇରେକ୍ଟର । ସାନପୁଅ ସୂର୍ଯ୍ୟକାନ୍ତ ଏମ୍.ଏ. ଓ ଆଇନଡିଗ୍ରୀ ହାସଲ କରି କିଛିକାଳ ଆଇନ ବ୍ୟବସାୟରେ ମନ ଦେଇଥିଲା । ସେଥିରେ ସନ୍ତୁଷ୍ଟ ନହୋଇ ବର୍ତ୍ତମାନ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରରେ ଜଣେ ସହକାରୀ ଅଫିସର । ମୋର ଦୁଇବୋହୂଙ୍କୁ ଶ୍ରୀମତୀ ନିର୍ବାଚନ କରିଥିଲେ । ସେମାନେ ଉଚ୍ଚଶିକ୍ଷିତା ଏବଂ ସୁଗୃହିଣୀ । ଏକମାତ୍ର କୁଳାଙ୍କୁର ନାତି ଚନ୍ଦନ (ସଂକେତ) ବାଲ୍ୟକାଳରୁ ଜଣେ ମେଧାବୀ ଛାତ୍ର ଭାବରେ ପରିଚିତ । ଓଡ଼ିଆ, ଇଂରେଜୀ, ହିନ୍ଦୀ ବକ୍ତୃତା ପ୍ରତିଯୋଗିତାରେ ସ୍କୁଲରେ ଏବଂ ସ୍କୁଲ ବାହାରେ ଅଂଶଗ୍ରହଣ କରି ବର୍ଷ ପରେ ବର୍ଷ ସେ ବହୁ ସାର୍ଟିଫିକେଟ ଓ ଉପଢୌକନର ଅଧିକାରୀ । କେବଳ କ୍ଲାସର ମେଧାବୀ ଛାତ୍ର ଭାବରେ ନୁହେଁ, ସମସ୍ତ ସ୍କୁଲର ଶ୍ରେଷ୍ଠ ଛାତ୍ର ଭାବରେ ଗୋଟିଏ ବର୍ଷ ସେ

ଏକ ବିରାଟ ସିଲ୍ଡରେ ସମ୍ମାନିତ ।

ଶ୍ରୀମତୀ ପ୍ରଭାତ କୁମାରୀ ନିଜର ଦେବରମାନଙ୍କୁ ସନ୍ତାନ ପରି ସ୍ନେହ ଅଜାଡ଼ି ଦେଉଥିଲେ ।

ଆମେ ତିନିଭାଇ । ମଝିଆ ଭାଇ ତ୍ରିଲୋଚନ ଭାରତୀୟ ନୌବାହିନୀରେ କର୍ମ କରି ଅବସର ଗ୍ରହଣ କଲାପରେ ଚୌଦ୍ୱାର କଳିଙ୍ଗଟିଉବ୍ସ କାରଖାନାରେ ସିକ୍ୟୁରିଟି ଅଫିସର ଭାବରେ ଅବସର ଗ୍ରହଣ କରିଥିଲା । ତା'ପରି ସ୍ନେହପ୍ରବଣ ଭାଇ ବିରଳ । ସେ ଚୌଦ୍ୱାରରେ ନିଜର ଘର କରି ପରିବାର ସହ ବାସ କରୁଥିଲା । ଏବେ ଏକବର୍ଷ ହେଲା ଆମ୍ଭମାନଙ୍କୁ ଶୋକସାଗରରେ ଭସାଇ ସେପୁରକୁ ବାହୁଡ଼ି ଗଲା । ସାନଭାଇ ବାସୁଦେବ ଅତି ଅଳ୍ପ ବୟସରେ ମୃତ୍ୟୁବରଣ କଲା । ଏକାନ୍ନବର୍ତ୍ତୀ ପରିବାରରେ ତାର ଦୁଇଝିଅ ବାହା ହୋଇ ସୁଖର ସଂସାର କରୁଛନ୍ତି । ପୁଅ ନାନୁ ଭୁବନେଶ୍ୱରରେ ବ୍ୟବସାୟ କରି ନିଜର ଘର ସଂସାରରେ ସୁଖରେ ଅଛି । ସାନଭାଇବୋହୂ ବୁଢ଼ୀ ବାପାଙ୍କର ପୁରୀ ଘର ଗାଁରେ ଥିବା ଘରଦ୍ୱାର ଓ ଜମିବାଡ଼ି ଦାୟିତ୍ୱ ସୁରୁଖୁରୁରେ ଚଳାଇ ଆସିଛି ।

ଏହି ସମସ୍ତ ପରିବାରର ଲୋକମାନେ ଘରର ବଡ଼ବୋହୂ ପ୍ରଭାତ କୁମାରୀଙ୍କୁ ଯଥେଷ୍ଟ ମାନ୍ୟ ଓ ଶ୍ରଦ୍ଧା କରୁଥିଲେ । ତାଙ୍କ ନିକଟରେ କେହି ପରଆପଣା ନଥିଲେ । ପରିବାର, ସ୍ୱଜନ, ବନ୍ଧୁବାନ୍ଧବ, ସାଇପଡ଼ିଶା–ସମସ୍ତଙ୍କର ସେ ଥିଲେ ଅତ୍ୟନ୍ତ ଆଦରଣୀୟା ।

ଜୁନ୍‌ମାସର ୧୮ ତାରିଖ ସ୍ନାନଯାତ୍ରାର ପବିତ୍ର ଦିବସ । ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରି ଭକ୍ତମାନେ ଧନ୍ୟ ହୁଅନ୍ତି । ସେହିଦିନ ରାତିରେ ପ୍ରଭାତକୁମାରୀ ଅସୁସ୍ଥ ହୋଇପଡ଼ିଲେ । ପାଖରେ ଜଗି ବସିଥାଆନ୍ତି ଦୁଇପୁଅ ଓ ଦୁଇବୋହୂ । କ୍ଳାନ୍ତି ଲାଗିବାରୁ ଉପର ଘରେ ବିଶ୍ରାମ କରିବାକୁ ପିଲାମାନେ ବାଧ କଲେ । କେତେବେଳେ ନିଦ ଲାଗିଯାଇଛି । ପାହାନ୍ତା ପହରକୁ ସ୍ୱପ୍ନ ଦେଖିଲି "ପ୍ରଭା" ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । କାହିଁକି ଏପରି ସ୍ୱପ୍ନ ଦେଖିଲି ବୋଲି ବିଚଳିତ ହେଉଥାଏ । ବଡ଼ପୁଅ ଡାକ ପକାଇଲା ତଳକୁ ଆସ । "ବୋଉ" କ'ଣ ହୋଇଯାଉଛି ।

ଆସିଲା ସେଇ କଳାଦିବସର ଅପରାହ୍ଣ । ଆମ୍ବୁଲାନ୍‌ସ ଗାଡ଼ିରେ ପିଲାମାନେ ବୋଉକୁ ନେଇଗଲେ ଶାନ୍ତି ହସ୍‌ପିଟାଲ । ସେଠାରେ ପହଞ୍ଚିବା ପୂର୍ବରୁ ତାଙ୍କର ଆତ୍ମାପକ୍ଷୀ ଉଡ଼ିଯାଇଥିଲା । ପଞ୍ଚାବନ ବର୍ଷର ସୁଖମୟ ଦାମ୍ପତ୍ୟ ଜୀବନକୁ କାଟିଦେଇ ସେ ଚାଲିଗଲେ ମୋତେ ଏକାଟିଆ କରି । ଏତେ ଦୀର୍ଘକାଳ ମୋର ସମସ୍ତ ସୁଖଦୁଃଖରେ ସେ ଛାୟା ପରି ମୋତେ ଆବୋରି ରହିଥିଲେ । ଆଜି ପୁରୀ ସ୍ୱର୍ଗଦ୍ୱାର ଶ୍ମଶାନରେ ସେ ମିଶିଗଲେ ପାଉଁଶ ହୋଇ । ପୂର୍ବଦିନ ପାହାନ୍ତାରେ ଯେଉଁ ସ୍ୱପ୍ନ ଦେଖିଲି, ତାହା ଏପରି ସତ୍ୟରେ ପରିଣତ ହେବ ବୋଲି କଳ୍ପନା କରିନଥିଲି । ଜୀବନର ଚଲାପଥରେ ପ୍ରଭା ଥିଲେ ପ୍ରକୃତ ସହଧର୍ମିଣୀ ଓ ସହକର୍ମିଣୀ । ନିଃସଙ୍ଗ ଜୀବନର କାହାଣୀ ହେବ ଅନ୍ୟପ୍ରକାର । "ଜୀବନର ଚଲାପଥେ" ଏଇଠି ଶେଷ ହେଉ !!

•••

# ପରିଶିଷ୍ଟ

## ।। ଏକ ।।

## ପ୍ରକାଶିତ ରଚନାବଳୀ

(କ) ପୁସ୍ତକ ରୂପରେ

(ପ୍ରବନ୍ଧ ଓ ସମାଲୋଚନା)

୧. ଓଡ଼ିଆ ସାହିତ୍ୟର ଭୂମିକା- ୧୯୫୭

୨. ସାହିତ୍ୟ ପରିକ୍ରମା-୧୯୬୨

୩. ସାହିତ୍ୟ ବିଚାର-୧୯୬୨

୪. ଭାରତୀୟ ସାହିତ୍ୟର ଭୂମିକା-୧୯୬୮

୫. ପ୍ରବନ୍ଧ ଓ ସମାଲୋଚନା- ୧୯୬୮

୬. ସାହିତ୍ୟ ସଂହତି ଓ ସଂସ୍କୃତି-୧୯୭୨

୭. ଗଙ୍ଗାଧର ସାହିତ୍ୟ ଓ ତପସ୍ୱିନୀ- ୧୯୭୨

୮. ସମାଜ ଓ ସାହିତ୍ୟ-୧୯୭୫

୯. ଜୀବନୀ ସାହିତ୍ୟ-ଏକ ଅଧ୍ୟୟନ-୧୯୭୭

୧୦. ଓଡ଼ିଆ ସାହିତ୍ୟର ଇତିହାସ-୧୯୭୮

୧୧. ସାହିତ୍ୟ ଓ ସମୀକ୍ଷା-୧୯୭୮

୧୨. ସାହିତ୍ୟ ଓ ସଂସ୍କୃତି-୧୯୭୯

୧୩. କବି ମନୀଷୀ ନୀଳକଂଠ-୧୯୮୪

୧୪. ଜାତୀୟ କବି ବୀରକିଶୋର- ୧୯୯୩

୧୫. ଶ୍ରୀଜଗନ୍ନାଥ ଓ ଆଧ୍ୟାତ୍ମିକ ଚେତନା-୧୯୯୩

୧୬. ସାହିତ୍ୟ ଓ ସମାଲୋଚନା- ୧୯୯୩

୧୭. ଓଡ଼ିଆ ସାହିତ୍ୟ ଓ ସମାଜର କଥା- ୧୯୯୩

୧୮. ସାହିତ୍ୟ, ଇତିହାସ ଓ ସଂସ୍କୃତି-୧୯୯୩

୧୯. ସାରଳା ଦାସ- ୧୯୯୬

୨୦. ସାହିତ୍ୟ ମନୀଷା- ୧୯୯୮

୨୧. ସାହିତ୍ୟ ଅନ୍ୱେଷା- ୧୯୯୯

୨୨. ସ୍ରଷ୍ଟା, ସୃଷ୍ଟି ଓ ସୌନ୍ଦର୍ଯ୍ୟ-୨୦୦୧
୨୩. ଓଡ଼ିଆ ସାହିତ୍ୟ-ତତ୍ତ୍ୱ-ତଥ୍ୟ-ତର୍ଜମା-୨୦୦୬
୨୪. ଓଡ଼ିଆ ଭାଷା-ସାହିତ୍ୟର ବରେଣ୍ୟ ସାଧକଗଣ-୨୦୦୭

## (ପ୍ରୌଢ଼ ଓ ଶିଶୁ ସାହିତ୍ୟ)

୧. ଦେଶ ବିଦେଶର କଥା ଓ କାହାଣୀ- ୧୯୭୨
୨. ସପନ ସତ ହେଲା- ୧୯୮୭
୩. ଲୋଡ଼ା ନାହିଁ ମୋର ଜାନି ଯଉତୁକ- ୧୯୮୮
୪. ବକୁଳ ବନର ପଞ୍ଚସଖା- ୧ମ/୨ୟ- ୧୯୮୮
୫. ଦୂର ଦେଶର ଲୋକକଥା-୧ମ/୨ୟ-୧୯୮୯
୬. ବିଚିତ୍ର ଜୀବନସଂସାରର କାହାଣୀ-୧୯୮୯
୭. ଜୈନଧର୍ମ କାହାଣୀ-୧୯୯୧
୮. ପିଲାଙ୍କ କଥାସରିତ ସାଗର-୧୯୯୧
୯. ଜାତକ କାହାଣୀ-୧ମ/୨ୟ-୨୦୦୧
୧୦. ଦେଶବିଦେଶର ବୁଢ଼ୀ ମା' କାହାଣୀ-୨୦୦୪
୧୧. ପଞ୍ଚତନ୍ତ୍ର କାହାଣୀ-୨୦୦୬
୧୨. ବୈଦିକ କାହାଣୀ- ୧ମ/୨ୟ-୨୦୦୬
୧୩. ତେନାଲି ରାମକୃଷ୍ଣ-୨୦୦୪

## ସମ୍ପାଦନା

୧. ସାହିତ୍ୟରେ ରହସ୍ୟବାଦ-୧୯୬୨
୨. ମେହେର ଆଲୋକ-୧୯୬୩
୩. ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ ୧ମ ଭାଗ-୧୯୬୯
୪. ରସକଲ୍ଲୋଳ-୧୯୭୩
୫. ବିଦଗ୍ଧ ଚିନ୍ତାମଣି-୧୯୭୩
୬. ଓଡ଼ିଆ ଗଳ୍ପମାଳା-(ନ୍ୟାସନାଲ ବୁକ୍‌ଟ୍ରଷ୍ଟ, ଇଣ୍ଡିଆ-ନୂଆଦିଲ୍ଲୀ-୧୯୭୩
୭. ଓଡ଼ିଆ କାହାନିୟା-ଏନ୍.ବି.ଟି. (ଓଡ଼ିଆ ଗଳ୍ପମାଳାର ହିନ୍ଦୀରୂପାନ୍ତର)-୧୯୭୫
୮. ଲାବଣ୍ୟବତୀ - ୧୯୭୮
୯. ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ-୨ୟ ଭାଗ-୧୯୯୭
୧୦. ଶତାବ୍ଦୀ ସ୍ୱାକ୍ଷର-୨୦୦୪
୧୧. ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟର ପରିଚୟ-୨୦୦୮

## (ଖ) ପତ୍ରିକା ପୃଷ୍ଠାରେ

### (କ୍ଷୁଦ୍ରଗଳ୍ପରେ)

### ସାହିତ୍ୟ ପତ୍ରିକାରେ ପ୍ରକାଶିତ କ୍ଷୁଦ୍ରଗଳ୍ପ

୧. ଭଲ ପାଇବାର ସ୍ୱପ୍ନ- ଡଗର-୧୩୫୫-୪୬-୪୭ ସଂଖ୍ୟା-
୨. କଳ୍ପନାବିହାର-ବୀଣା-ପ୍ରଥମ ବର୍ଷ
୩. ଜନତା ଅଦାଲତର ବନ୍ଦୀ- ଜାଗରଣ-ଷଢେଇକଳା ସଂଖ୍ୟା
୪. ସ୍ମୃତିପୂଜା-ତରଙ୍ଗ (ଗଳ୍ପ ସଂଗ୍ରହ-ତରୁଣ ସାହିତ୍ୟ ମନ୍ଦିର, ପୁରୀ)
୫. କୁଆଁର ପୁନେଇଁ (ପ୍ରଜାତନ୍ତ୍ର-୧୯୪୯ ନଭେମ୍ବର ୭ ତାରିଖ
୬. ରେଙ୍ଗୁନ ଯାତ୍ରୀ-ନବୀନ-ବ୍ରହ୍ମପୁର-୧୨.୪.୧୯୪୯
୭. ସମାଧାନ- ନବୀନ- ୩.୫.୧୯୪୯
୮. ଚକ ଘୂରିଯାଇଚି-ନବୀନ- ୨୧.୬.୧୯୪୯
୯. ଗୋଧୂଳି ନଇଁଆସେ-ନବୀନ- ୨୯.୮.୧୯୫୦
୧୦. ଜୀବନ ସ୍ମୃତି-ନବୀନ- ୫.୭.୧୯୪୯
୧୧. କାଳିଜାଇରେ ଗୋଟିଏ ରାତି-ନବୀନ-୨୩.୫.୧୯୫୦
୧୨. ଛୋଟର ମାୟା- କୁଙ୍କୁମ (ବମ୍ବେ) ୧୯୫୦ ୭ମ/୮ମ ସଂଖ୍ୟା
୧୩. ସେଦିନର ଆଶ୍ଚର୍ଯ୍ୟ ସକାଳ- ନବୀନ- ୧୦.୧୦.୧୯୫୦
୧୪. ଜୀବନର ମୋହ- ସଂଗ୍ରାମ-ସେପ୍ଟେମ୍ବର-୧୯୪୯
୧୫. ଲଗ୍ନ ମଉଳି ଯାଇଚି- ପ୍ରଜାତନ୍ତ୍ର-୧୯୫୨-ଫେବୃଆରୀ ୧୦/୧୧
୧୬. ଅଶାନ୍ତ ଝଡ଼-ଆସନ୍ତାକାଲି-ମେ'-୧୯୫୪

### (କବିତା)

୧. ମେଘ ଉଠି ଆସେ କଳାହାଣ୍ଡିଆ-ମୀନାବଜାର ସ୍ୱତନ୍ତ୍ର ସଂଖ୍ୟା-ପ୍ରଜାତନ୍ତ୍ର-୧୯୫୦
୨. ପ୍ରଣୟତାଜ-ସଂଗ୍ରାମ (ଛଦ୍ମନାମ-କୁମାରୀ ପଟ୍ଟନାୟକ)
୩. ଗୋଲାପରାଣୀ-ସଂଗ୍ରାମ (ଛଦ୍ମନାମ-କୁମାରୀ ପଟ୍ଟନାୟକ)
୪. ମାଟିର ମଣିଷ (ସନେଟ) ଉତ୍କଳକେଶରୀ-ପୁରୀ
୫. ଅନାଗତ (ସନେଟ) ଉତ୍କଳକେଶରୀ-ପୁରୀ
୬. କାହିଁ ରହିଛ ପ୍ରିୟ-ନବୀନ- ୧୯୫୧ ଏପ୍ରିଲ ୨୪
୭. ସ୍ୱପ୍ନ ଓ ବାସ୍ତବତା- ନବୀନ- ୧୯୫୦ ମେ' ୧୬
୮. ଅଭିସାର ପଥେ- ନବୀନ- ୧୯୫୦ ମେ' ୯
୯. କବି ପ୍ରକୃତି- ନବୀନ- ୧୯୫୦ ଅପ୍ରେଲ ୧୧
୧୦. ପାଶେପାଶେ ରହ- ନବୀନ- ୧୯୫୦ ମାର୍ଚ୍ଚ ୧୧

୧୧. ପଲ୍ଲୀସଂଜ- ନବୀନ- ୨୪.୫.୧୯୪୯
୧୨. ଅନ୍ଧାର ଯାତ୍ରୀ- ନବୀନ- ୨୮.୬.୧୯୪୯
୧୩. ଅଚିହ୍ନା ଅତିଥି- ନବୀନ- ୧୯୫୦ ଜୁଲାଇ ୧୮
୧୪. ପଥପ୍ରାନ୍ତେ- ଚତୁରଙ୍ଗ-୨ୟ ବର୍ଷ ୩ୟ ସଂଖ୍ୟା
୧୫. ଗାଁ ଦାଣ୍ଡର ଅଳସ ସଂଜେ-ପ୍ରଜାତନ୍ତ୍ର ମୀନାବଜାର- ୨୫.୧୦.୧୯୫୧
୧୬. ମୋ ପିଲାବେଳ-ପ୍ରଜାତନ୍ତ୍ର ମୀନାବଜାର

(ସଂବାଦଧର୍ମୀ ଲେଖା ଓ ଅନୁବାଦ)

୧. ଗାନ୍ଧୀବାଦ ଓ ଚରଖା-ପୂର୍ଣ୍ଣିମା
୨. ଗାଁ ଗଣ୍ଡାର ଅତୀତ ଓ ବର୍ତ୍ତମାନ- ଉତ୍କଳ କେଶରୀ
୩. ହରିଜନ ଆନ୍ଦୋଳନ-ସେବକ-୧୫.୮.୧୯୪୮
୪. କଳା ଓ ତାର ପ୍ରୟୋଜନ-ଡଗର- ୧୬.୧୨.୧୯୪୮
୫. ସାହିତ୍ୟର ଆଦର୍ଶ-ପ୍ରଜାତନ୍ତ୍ର
୬. ପ୍ରାଚ୍ୟ ଭାରତର ସାଂସ୍କୃତିକ ଇତିହାସର ଧାରା- ସହକାର
୭. ଗୋପବନ୍ଧୁ ଓ ଲୋକଶାସନ- ଦୈନିକ ଆଶା
୮. କୋରିଆ ସଂଘର୍ଷ ଓ ୩ୟ ମହାଯୁଦ୍ଧ-ଦୈନିକ ଆଶା
୯. ବର୍ଣ୍ଣବୈଷମ୍ୟ ନୀତି ଓ ଦକ୍ଷିଣ ଆଫ୍ରିକା ଭାରତୀୟ ସମସ୍ୟା- ଦୈନିକ ଆଶା
୧୦. ୟୁ.ଏନ୍.ଓ ଓ ଜାତୀୟବାଦୀ ଚୀନ ପ୍ରତିନିଧି-ଦୈନିକ ଆଶା
୧୧. ଗାନ୍ଧିଜୀଙ୍କ ରାଷ୍ଟ୍ରନୀତି ଓ ଗଣତନ୍ତ୍ର ଶାସନ-ଡଗର
୧୨. ବାପୁଜୀ ଓ ଅହିଂସା-ପ୍ରଜାତନ୍ତ୍ର
୧୩. ସ୍ୱାଧୀନତା ପରେ ପୁନର୍ଗଠନ ପରିକଳ୍ପନା-ପ୍ରଜାତନ୍ତ୍ର
୧୪. ଉପନ୍ୟାସ-ନାଟକ ଓ ଗଳ୍ପ-(ଅନୁବାଦ)-ଝଙ୍କାର
୧୫. ସାହିତ୍ୟର ଉଦ୍ଦେଶ୍ୟ-(ଅନୁବାଦ)-ଝଙ୍କାର
୧୬. ସମ୍ବଲପୁର ସାହିତ୍ୟ ସମ୍ମିଳନୀ-ଝଙ୍କାର
୧୭. ଶାନ୍ତି ନା ଅଶାନ୍ତି-ଆସନ୍ତାକାଲି
୧୮. ଯଦି ଇଂରେଜମାନେ ଭାରତକୁ ଆସିନଥାନ୍ତେ-ପ୍ରଜାତନ୍ତ୍ର
୧୯. ଓଡ଼ିଆ ଭାଷା ଓ ସାହିତ୍ୟ ସହିତ ବଂଗ ସାହିତ୍ୟର ସଂପର୍କ-କୁଙ୍କୁମ-ପ୍ରଥମ ବର୍ଷ-ଅଗଷ୍ଟ-୧୯୪୯
୨୦. ଉତ୍କଳମଣି ଗୋପବନ୍ଧୁ-ରବିବାର ପ୍ରଜାତନ୍ତ୍ର
୨୧. ସୃଜନ ଆଳାପ (ସାରସ୍ୱତ ସାକ୍ଷାତକାର) ଜନସୁଧା-ଏପ୍ରିଲ ୨୦୦୩

## ।। ଦୁଇ ।।

# ପ୍ରାପ୍ତ ସମ୍ମାନ-ପୁରସ୍କାର-ସଂବର୍ଦ୍ଧନା

୧. ଜୀବନରଂଗ କଲଚରାଲ ଆସୋସିଏସନ-୧୯୭୦
୨. ସାଲେପୁର ମହାବିଦ୍ୟାଳୟ ଛାତ୍ର ସଂସଦ-୧୯୭୯
୩. ଶ୍ରାବଣୀ ସାହିତ୍ୟ ସଂସଦ, କେନ୍ଦ୍ରାପଡ଼ା-୧୯୭୨
୪. ଫାଲଗୁନି ସମ୍ମାନ, ଭୁବନେଶ୍ୱର-୧୯୮୪
୫. ଆଜାଦ୍‌ହିନ୍ଦ୍ ସାଂସ୍କୃତିକ ଅନୁଷ୍ଠାନ, କୁଜଙ୍ଗ-୧୯୮୪
୬. ନୀଳଶୈଳ, କଟକ-୧୯୮୬
୭. ବିଷୁବମିଳନ, ଝଙ୍କାର ପୁରସ୍କାର-୧୯୮୭
୮. ନୂତନ ଛାତ୍ରାବାସ, ଖ୍ରୀଷ୍ଟ ମହାବିଦ୍ୟାଳୟ-୧୯୮୮
୯. ନନ୍ଦିଘୋଷ ସମ୍ମାନ, କଳା ସାହିତ୍ୟ ସଂସ୍କୃତି ବିକାଶ ଅନୁଷ୍ଠାନ, ବୋଲଗଡ଼, ଖୋର୍ଦ୍ଧା-୧୯୯୨
୧୦. ଖୋରଧା ସାହିତ୍ୟ ସଂସଦ ସମ୍ମାନ- ୧୯୯୧
୧୧. ଚା ଚା ନେହେରୁ ସମ୍ମାନ, କଟକ- ୧୯୯୧
୧୨. ଜୀବନରଂଗ ରଜତ ଜୟନ୍ତୀ ସମ୍ମାନ- ୧୯୯୨
୧୩. ଓଡ଼ିଶା ସାହିତ୍ୟ ଏକାଡ଼େମୀ ସମ୍ମାନ-୧୯୯୩
୧୪. ସାରଳା ସମ୍ମାନ- ସାରଳା ସ୍ମାରକ, ତେନ୍ତୁଳିଆପଦା, କଟକ- ୧୯୯୩
୧୫. ବର୍ତ୍ତିକା ପୁରସ୍କାର- ଦଶରଥପୁର, ଯାଜପୁର-୧୯୯୪
୧୬. ଗୋପୀନାଥ ନନ୍ଦ ପ୍ରବନ୍ଧ ଓ ସମାଲୋଚନା ସମ୍ମାନ- ଉତ୍କଳ ସାହିତ୍ୟ ସମାଜ, କଟକ-୧୯୯୪
୧୭. କ୍ଷେତ୍ରବାସୀ ସାହିତ୍ୟବିଦ୍ୟା ପୁରସ୍କାର-ଓଡ଼ିଆ ଗବେଷଣା ପରିଷଦ, କଟକ-୧୯୯୪
୧୮. ସାରଳା ସମ୍ମାନ- ସାରଳା ସାହିତ୍ୟ ସଂସଦ, କଟକ- ୧୯୯୪
୧୯. ପଲ୍ଲୀକବି ନନ୍ଦକିଶୋର ସମ୍ମାନ-ଭୁବନେଶ୍ୱର-୧୯୯୫
୨୦. ପାଠକ ସଂସଦ ସମ୍ମାନ, କଟକ- ୧୯୯୫
୨୧. ଓଡ଼ିଶା ପୂଜ୍ୟପୂଜା ଏକାଡ଼େମୀ ସମ୍ମାନ, କଟକ-୧୯୯୫
୨୨. ମାଣିକ୍ୟ ସ୍ୱାଇଁ ସ୍ମାରକୀ ଅରୁଣ ସାହିତ୍ୟ ସମ୍ମାନ- ୧୯୯୬
୨୩. ଖରସ୍ରୋତା ସାଂସ୍କୃତିକ ପରିଷଦ ସମ୍ମାନ- କଣ୍ଠିଆହାଟ, କଟକ-୧୯୯୭
୨୪. ଭଞ୍ଜ ପ୍ରତିଭା ସମ୍ମାନ, ଗୋକନ, ମାହାଙ୍ଗା-୧୯୯୭
୨୫. ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ ସମ୍ମାନ, କଟକ-୧୯୯୮
୨୬. ଚୟନିକା ସମ୍ମାନ, ନୟାଗଡ଼- ୧୯୯୯
୨୭. ଚିରସନ୍ଧାନ ସମ୍ମାନ-ଭୁବନେଶ୍ୱର-୧୯୯୯

୨୮. ଶ୍ରୀକ୍ଷେତ୍ର ଲେଖକ ସାମୁଖ୍ୟ ସମ୍ମାନ, ପୁରୀ
୨୯. ଲେଖକ ସାମ୍ମୁଖ୍ୟ ସମ୍ମାନ, ଭୁବନେଶ୍ୱର-୨୦୦୦
୩୦. ପ୍ରବାହ ସାହିତ୍ୟ ପରିଷଦ ସମ୍ମାନ, କାମାକ୍ଷାନଗର, ଢେଙ୍କାନାଳ-୨୦୦୦
୩୧. ''ସମୟ'' ଦୈନିକ ସଂବାଦପତ୍ର-ଉପେନ୍ଦ୍ରଭଞ୍ଜ ସମ୍ମାନ-୨୦୦୦
୩୨. ରୋଟାରୀ କ୍ଲବ୍, କଟକ ଇନର ହୁଇଲ କ୍ଲବ୍-ଅନରାରୀ ରୋଟାରିଆନ-୨୦୦୦
୩୩. ଚାନ୍ଦୋଳ 'ପୁନର୍ନବା' ସହସ୍ରାବ୍ଦୀ, ଚାନ୍ଦୋଳ, କେନ୍ଦ୍ରାପଡ଼ା, ପ୍ରବନ୍ଧ ପୁରସ୍କାର-୨୦୦୧
୩୪. ସାହିତ୍ୟ ଭାରତୀ ସମ୍ମାନ, କଟକ-୨୦୦୧
୩୫. ବିଭାବନା ସମ୍ମାନ, ଢେଙ୍କାନାଳ-୨୦୦୧
୩୬. ବାବା ଭୈରବାନନ୍ଦ ମହାବିଦ୍ୟାଳୟ ରୌପ୍ୟଜୟନ୍ତୀ ଉତ୍ସବ ସମ୍ମାନ-୨୦୦୧
୩୭. ସଂଧ୍ୟାତାରା ସାହିତ୍ୟ ସଂସଦ ସମ୍ମାନ-୨୦୦୧
୩୮. କଳାବିନୋଦ ସମ୍ମାନ- ୨୦୦୧
୩୯. ଖ୍ରୀଷ୍ଟ ମହାବିଦ୍ୟାଳୟ ଘରୋଇ ଏମ୍.ଏ.,ଓଡ଼ିଆ ବିଭାଗ ସମ୍ମାନ-୧୯୮୮
୪୦. ଉତ୍କଳ ସାହିତ୍ୟ ସମାଜ ଶତବାର୍ଷିକୀ ସମ୍ମାନ-୨୦୦୨
୪୧. ଉତ୍କଳ ବିଶ୍ୱବିଦ୍ୟାଳୟ ଶ୍ରୀଧର ଦାସ ସ୍ମୃତିନ୍ୟାସ ଶତବାର୍ଷିକୀ ସମ୍ମାନ-୨୦୦୨
୪୨. ଉତ୍କଳରତ୍ନ ସମ୍ମାନ, ଭୁବନେଶ୍ୱର-୨୦୦୨
୪୩. ସୁଲେଖା ସମ୍ମାନ, ପୁରୀ-୨୦୦୨
୪୪. 'ସହଯୋଗୀ'-କଟକ ସମ୍ମାନ-୨୦୦୩
୪୫. ଏଭରେଷ୍ଟ ଟିମ୍ ବୁଢ଼ୀ ଠାକୁରାଣୀ-କଟକ-ସୁବର୍ଣ୍ଣଜୟନ୍ତୀ ସମ୍ମାନ-୨୦୦୩
୪୬. 'ଜନସୁଧା' ସମ୍ମାନ, କଟକ-୨୦୦୪
୪୭. 'ସହକାର' ପ୍ରବନ୍ଧ ସମ୍ମାନ-୨୦୦୫
୪୮. ପୁରୀ ପୁସ୍ତକମେଳା ସମ୍ମାନ- ୨୦୦୫
୪୯. ଇନ୍ଦିରାଗାନ୍ଧୀ ମହିଳା ମହାବିଦ୍ୟାଳୟ-ରୌପ୍ୟଜୟନ୍ତୀ ସମ୍ମାନ-୨୦୦୫
୫୦. ମହମ୍ମଦାନ ୟୁଥ କଲ୍‌ଚରାଲ୍ ଆସୋସିଏସନ ସମ୍ମାନ, କଟକ-୨୦୦୫
୫୧. ଖ୍ରୀଷ୍ଟ କଲେଜ ଡାଇମଣ୍ଡ ଜୁବୁଲି ସମ୍ମାନ- ୨୦୦୬
୫୨. ବରିଷ୍ଠ ନାଗରିକ କଲ୍ୟାଣ କେନ୍ଦ୍ର, ଅନ୍ଦରପୁର- କଲ୍ୟାଣନଗର, କଟକ-୨୦୦୭
୫୩. ବିଶ୍ୱକଲ୍ୟାଣ ପାଠଚକ୍ର, ସାଇଭବନ, ମେରିଆବଜାର, କଟକ-୨୦୦୭
୫୪. ଜାତୀୟ ପ୍ରକାଶନ ସମିତି, କଟକ-୨୦୦୭
୫୫. ''ବିଜୟ ଭାରତୀ'' ସମ୍ମାନ, ଭୁବନେଶ୍ୱର-୨୦୦୭
୫୬. ସହକାର ସମ୍ମାନ-୨୦୦୮
୫୭. ୨୯ତମ ଭୁବନେଶ୍ୱର ପୁସ୍ତକମେଳା ସମ୍ମାନ- ୨୦୦୮

## ।। ତିନି ।।

# ଜୀବନ ସମ୍ବଳିତ ଫଟୋ



ଭୂମି ଆସନରେ ବସିଥିବା ବାଳକ ପଠାଣି ପଟ୍ଟନାୟକ



ଡାହାଣରୁ ଦ୍ୱିତୀୟ ଲେଖକଙ୍କ ପିତୃଦେବ ସୋମନାଥ ପଟ୍ଟନାୟକ



ବାମରୁ ପ୍ରଥମ ଲେଖକଙ୍କ ବୋଉ ଚିତ୍ରମାଳୀ ଦେବୀ



ପତ୍ନୀ, ଦୁଇପୁତ୍ର, ଦୁଇକନ୍ୟା ଓ ନାତୁଣୀ ଗହଣରେ



ତରୁଣ ବୟସରେ



ଡିଗ୍ରୀ ଗ୍ରହଣ ଅବସରରେ ପଠାଣି ପଟ୍ଟନାୟକ (ପଛଧାଡ଼ି ମଝି)



ଲେଖକ ଜୀବନର ସ୍ମରଣୀୟ ମୁହୂର୍ତ୍ତ
ଭାରତର ପ୍ରେସ୍ କମିଶନଙ୍କ ଆୟୋଜିତ ସର୍ବଭାରତୀୟ ଭାଷା ପ୍ରତିନିଧିମଣ୍ଡଳରେ
ଓଡ଼ିଆ ଭାଷାର ପ୍ରତିନିଧିତ୍ୱ



ସହଧର୍ମିଣୀ ଶ୍ରୀମତୀ ପ୍ରଭାତ କୁମାରୀ ପଟ୍ଟନାୟକଙ୍କ ସହ



କେଉଁଝର କଲୋନୀ ଠିକଣା ସୂଚାଏ ଏହି ଘରକୁ



ପଠାଣି ପଟ୍ଟନାୟକଙ୍କ ବୈଠକଖାନା



ପଠାଣି ପଟ୍ଟନାୟକଙ୍କ ପୁସ୍ତକାବଳୀରୁ ଅଳ୍ପକିଛି



ଖ୍ରୀଷ୍ଟ ମହାବିଦ୍ୟାଳୟ : ଏହି ଅନୁଷ୍ଠାନରେ ବିତିଛି ଜୀବନର ସାର ସାର ବର୍ଷ



ଖ୍ରୀଷ୍ଟ ମହାବିଦ୍ୟାଳୟ ଅଧ୍ୟକ୍ଷ ଆସନରେ




ଶ୍ରୀରାମଚନ୍ଦ୍ର ଭବନ ସମ୍ମୁଖରେ
ବିରଳ ଯୋଗରେ ବିରଳ ପୋଷାକରେ ପଠାଣି ପଟ୍ଟନାୟକ



ପରିଣତ ବୟସରେ ଏକ ବିଶେଷ ଭାବାବେଶରେ



ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନ ସମ୍ମୁଖରେ : ଡାହାଣରୁ ଫତୁରାନନ୍ଦ, ଲୋକରତ୍ନ
କୁଞ୍ଜବିହାରୀ ଦାଶ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଅନନ୍ତ ପ୍ରସାଦ ପଣ୍ଡା, ସରଳା ଦେବୀ,
ମନମୋହନ ମିଶ୍ର, ଜଷ୍ଟିସ୍ ନବକିଶୋର ଦାସ, ସୁଧାକର ପଟ୍ଟନାୟକ, ବିଚିତ୍ରାନନ୍ଦ କର ।
ପଛଧାଡ଼ିରେ-ଚନ୍ଦ୍ରଶେଖର ମହାପାତ୍ର, ମ...ାରଞ୍ଜନ ଦାସ, ଅନନ୍ତ ପଟ୍ଟନାୟକ,
ପଠାଣି ପଟ୍ଟନାୟକ, ଜାନକୀ ବଲ୍ଲଭ ମହାନ୍ତି



ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ବିଶିଷ୍ଟ କବି ଜୟନ୍ତ ମହାପାତ୍ର ଏବଂ
ଓଡ଼ିଶାର ପ୍ରବାଦ କାବ୍ୟ ପୁରୁଷ ସଚ୍ଚି ରାଉତରାୟଙ୍କ ସହିତ



୧୯୫୧ ମସିହାରେ ଖ୍ରୀଷ୍ଟ ମହାବିଦ୍ୟାଳୟର ସହକର୍ମୀ ଓ ଛାତ୍ରଙ୍କ ସହ
ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଶ୍ରୀନିବାସ ମିଶ୍ର, ଶ୍ରୀଧର ଦାସ
(ପଛଧାଡ଼ିରେ) କୈଳାସ ବିହାରୀ ଦାସ, ବିବେକାନନ୍ଦ ଦାସ, ରାମନାରାୟଣ ହୋତା,
ଜଗନ୍ନାଥ ପ୍ରସାଦ ଦାସ ଓ ସୁଧାଂଶୁ ମୋହନ ରାଉତରାୟ




ମହାକବି ସଚ୍ଚି ରାଉତରାୟଙ୍କ ଦକ୍ଷିଣରେ ପଠାଣି ପଟ୍ଟନାୟକ



ଉତ୍କଳ ପାଠକ ସଂସଦର ଏକ ଆଲୋଚନା ବୈଠକରେ ଅଛନ୍ତି
ବ୍ରଜମୋହନ ମହାନ୍ତି, କୁଞ୍ଜବିହାରୀ ଦାଶ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ସଦାଶିବ ମିଶ୍ର,
ଉଦୟନାଥ ଷଡଙ୍ଗୀ, ଗୋବିନ୍ଦ ଚନ୍ଦ୍ର ପାତ୍ର, ସୁଜାତା ମହାନ୍ତି ଓ ପଠାଣି ପଟ୍ଟନାୟକ
(ମଝିଧାଡ଼ି ଡାହାଣରୁ ତୃତୀୟ)



ଗାନ୍ଧିବାଦୀ ଶ୍ରୀ ଉଦୟନାଥ ଷଡଙ୍ଗୀ, ନ୍ୟାୟମୂର୍ତ୍ତି ରାଜକିଶୋର ଦାସଙ୍କ ସହ



ଶତାୟୁ ଖଡ଼ିଆଳ ସାହିତ୍ୟ ସମାଜର କର୍ମକର୍ତ୍ତା ରାଜା ଅନୁପ ସିଂହଦେଓ, ଅର୍ଜୁନ ଜୋଷୀ, ଚନ୍ଦ୍ରଶେଖର ନନ୍ଦ ଓ ଅନ୍ୟମାନଙ୍କ ଗହଣରେ ବାମରୁ ତୃତୀୟ ପଠାଣି ପଟ୍ଟନାୟକ



ବାମରୁ ଉଦୟନାଥ ଷଡ଼ଙ୍ଗୀ, ହରେକୃଷ୍ଣ ମହତାବ, ଜଷ୍ଟିସ୍ ଦାସ ଓ ପଠାଣି ପଟ୍ଟନାୟକ



ମହାମହିମ ରାଜ୍ୟପାଳଙ୍କ ଦ୍ୱାରା ପୁରସ୍କୃତ ହେବା ଅବସରରେ



ଉତ୍କଳ କେଶରୀ ଡକ୍ଟର ମହତାବଙ୍କ ପ୍ରତିକୃତିରେ ମାଲ୍ୟାର୍ପଣ କରୁଛନ୍ତି ।
ପାଖରେ ଅଛନ୍ତି ମାନ୍ୟବର ଚିଫ୍ ଜଷ୍ଟିସ୍ ରଙ୍ଗନାଥ ମିଶ୍ର ।



ସାହିତ୍ୟ ଭାରତୀ ପୁରସ୍କାର
ପ୍ରତିଷ୍ଠାତା ଶ୍ରୀଯୁକ୍ତ ଗଙ୍ଗାଧର ରଥ, ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ
ପଟ୍ଟନାୟକଙ୍କ ଗହଣରେ



ଚେନ୍ନାଇଠାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ବିଶେଷ ଅଧିବେଶନରେ
ସଭାପତି ପଠାଣି ପଟ୍ଟନାୟକ
ମାନ୍ୟବର ରାଜ୍ୟପାଳ ଏମ୍.ଏମ୍. ରାଜେନ୍ଦ୍ରନ୍, ବାଚସ୍ପତି ଶରତ ଚନ୍ଦ୍ର କର
ଓ ଡାକ୍ତର କବି ପ୍ରସାଦ ମିଶ୍ର



ମାନ୍ୟବର ରାଜ୍ୟପାଳ ଏମ୍.ଏମ୍. ରାଜେନ୍ଦ୍ରନ, ନାଟ୍ୟକାର ରତ୍ନାକର ଚଇନ
ଓ ଅଧ୍ୟାପକ ବିଜୟାନନ୍ଦ ସିଂହଙ୍କ ସହିତ



ଶ୍ରୀରାମଚନ୍ଦ୍ର ଭବନ ସଭାକକ୍ଷରେ
କିଶୋରୀ ଚରଣ ଦାସ ଓ ବ୍ରଜମୋହନ ମହାନ୍ତି ସହିତ




ପଠାଣି ପଟ୍ଟନାୟକଙ୍କ ସଭାପତିତ୍ୱରେ
ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଓ ଜ୍ଞାନମଣ୍ଡଳର ପାବକ କାନୁନ୍‌ଗୋ



ପୁରୀ କଲେଜରେ ଅଧ୍ୟକ୍ଷ ହୃଦାନନ୍ଦ ରାୟ, ହରିହର ବାହିନୀପତିଙ୍କ ସହିତ



ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ, ପଠାଣି ପଟ୍ଟନାୟକ
ଓ ଶାନ୍ତନୁ କୁମାର ଆଚାର୍ଯ୍ୟ



ଭାଷଣ ଦେଉଥିବାବେଳେ
ଗାନ୍ତିକ ସାତକଡ଼ି ହୋତା ଓ କବି ରମାକାନ୍ତ ରଥ



ଡଃ ଶ୍ରୀମତୀ ପ୍ରତିଭା ରାୟ ସମୀପାସୀନା




ଜନସୁଧା ସାହିତ୍ୟ ପତ୍ରର ପ୍ରଥମ ଉନ୍ମୋଚନ ଉତ୍ସବରେ
ଦିଲୀପ କୁମାର ବେଉରା, ଡକ୍ଟର ରେଖା ମହାନ୍ତି, ପଠାଣି ପଟ୍ଟନାୟକ,
ଡକ୍ଟର ଗଙ୍ଗାଧର ବଳ, ମୃତ୍ୟୁଞ୍ଜୟ ନାୟକ ଓ ଡକ୍ଟର ହେମନ୍ତ କୁମାର ଦାସ



ଶାଲ୍ପୀଠ ସାରଳା ମନ୍ଦିର ପରିସରରେ ପୁରସ୍କୃତ କରିଛନ୍ତି ପଠାଣି ପଟ୍ଟନାୟକ
(ବାମରୁ) କବି ଶରତ ଚନ୍ଦ୍ର ପ୍ରଧାନ, ସଭାପତି ମୃତ୍ୟୁଞ୍ଜୟ ନାୟକ
ମୁଖ୍ୟବକ୍ତା ଶାନ୍ତନୁ କୁମାର ଆଚାର୍ଯ୍ୟ



ଜୀବନର ଚଲାପଥେ ପୁସ୍ତକର ଲେଖକ ଓ ସ୍ନେହାଧୀନ ପ୍ରକାଶ



ଜୀବନର ଚଲାପଥେ ପୁସ୍ତକର ଲେଖକ
ଓ ସ୍ନେହାଧୀନ ପ୍ରକାଶକ ଦିଲୀପ କୁମାର ବେଉରା

‘ମୁଁ’ ର ବଡ଼ପଣ ଜାହିର ନ କରି ଓଡ଼ିଆ ଭାଷା-ସାହିତ୍ୟ-ଶିକ୍ଷା-ସଂଗଠନ-ସଂପାଦନା କ୍ଷେତ୍ରରେ ପର୍ଯ୍ୟାପ୍ତ ଯୋଗଦାନ ରଖିଥିବା ଜଣେ ବ୍ୟକ୍ତି କିପରି ଆତ୍ମଜୀବନ ଚରିତରେ ସୁଷମ ପ୍ରବନ୍ଧ (ଚରିତକଥା) ଲେଖିପାରନ୍ତି, କିପରି କାହାକୁ ତୁଷ୍ଟ କି ରୁଷ୍ଟ କରିବାର ଛଦ୍ମ ଉପାୟ ଭାବେ ଆତ୍ମଚରିତକୁ ଉପଯୋଗ କରାଯାଏ ନାହିଁ, କିପରି ଆତ୍ମଚରିତ ନାମରେ ଆତ୍ମପ୍ରଶଂସା ନୁହଁ ଅଥଚ ପ୍ରଶଂସାଯୋଗ୍ୟ ସବୁ ଶ୍ରଦ୍ଧା ସ୍ମରଣ କରାଯାଇପାରେ- ତାହାର ଏକ ନଜିର ଭାବେ “ଜୀବନର ଚଳାପଥେ” ଗୃହୀତ ହୋଇପାରେ ।

-ଡକ୍ଟର ପ୍ରକାଶ କୁମାର ପରିଡ଼ା

ଓଡ଼ିଆ ଭାଷା-ସାହିତ୍ୟ-ସଂସ୍କୃତି ଓ ଶିକ୍ଷା କ୍ଷେତ୍ରକୁ ସମର୍ପିତ ଜଣେ ପ୍ରାଜ୍ଞ ଓ ପ୍ରବୁଦ୍ଧ ମଣିଷଙ୍କ ଏଇ ଆତ୍ମଜୀବନ ଚରିତ “ଜୀବନର ଚଳାପଥେ” ଅନାଗତ ଦୂର ଭବିଷ୍ୟ ପାଇଁ ଆଲୋକସ୍ତମ୍ଭ ରୂପେ ସ୍ଥାପନ କରିଯାଉନ୍ତୁ ।

-ପ୍ରକାଶକ




ISBN 81-89881-24-8
9788189881245